ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ଏପ୍ରିଲ୍, ୨୦୦୮
(୭୦୦ ବହି)

ମୂଲ୍ୟ : ଟ. ୧୭୫.୦୦
ସାଦା ବଂଧାଇ : ଟ. ୧୬୦.୦୦

# ମୁଖଶାଳା

ବିସ୍ତୃତ କୁଟୁମ୍ବର ନୂଆ ପୁରୁଣା ଏକତ୍ର ହୋଇଗଲେ ଏକ ସମାରୋହର ପରିବେଶ ସୃଷ୍ଟି ହୁଏ । ବ୍ୟଷ୍ଟି ଭଳି ସମଷ୍ଟିର ମଧ୍ୟ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ପ୍ରକାଶ ପାଇଥାଏ । ଫକୀରମୋହନଙ୍କୁ କୌଣସି ଏକକ ଗ୍ରନ୍ଥରେ ଯେତେ ଅନୁଭବ କରିହୁଏ ନାହିଁ, ତାଙ୍କର ସମଗ୍ର ସୃଷ୍ଟିସମ୍ଭାରକୁ ଏକତ୍ର ଗୋଟିଏ ମଲାଟ ଭିତରେ ଧାରଣକଲେ ତଦପେକ୍ଷା ଅନେକ ଅଧିକ ପରିମାଣରେ ଅନୁଭବ କରିହୁଏ । କ୍ରମଶଃ ଗଭୀର ଓ ବିସ୍ତୃତ ହେଉଥିବା ନଈ ଭଳି ଏକ ସୃଜନଶୀଳ ଲେଖକ ଅହରହ ନିଜକୁ ଅତିକ୍ରମ କରୁଥାଏ । ଏଣୁ ଏକ ଦୀର୍ଘ ପ୍ରବାହଖଣ୍ଡକୁ ଏକତ୍ର ନ ଦେଖିଲେ ତା'ର ବିସ୍ତାର ବିଷୟରେ ଧାରଣା କରିହୁଏନାହିଁ । 'ଅନେକ ବନ୍ୟା ପରେ' ସଂକଳନ ପ୍ରକାଶିତ ହେବାଦିନଠାରୁ ପ୍ରତ୍ୟେକ ଗଳ୍ପବହିରେ ବାରଟି ମାତ୍ର ଗଳ୍ପ ମୁଁ ଛାପିବାକୁ ଦେଇ ଆସିଛି । ଏବେ 'କ୍ରମଶଃ ଗଭୀର ନଈ' ସଂକଳନରେ ପ୍ରଥମ ବ୍ୟତିକ୍ରମ ଘଟିଲା । ସେଥିରେ ଏକୋଇଶଟି ଗଳ୍ପ ଏକାଠି କରାଯାଇଛି – କିଛି ପୁରୁଣା କିଛି ନୂଆ । ସେଇ ଅନୁକ୍ରମରେ ଏ ଗ୍ରନ୍ଥଟି ହେଲା ଦ୍ୱିତୀୟ ପ୍ରୟାସ ।

'ଚନ୍ଦ୍ରଶେଖର କଥାସରିତ୍-୧' ନାମକରଣରୁ ଜଣାଯାଉଛି ଯେ ଏହା ବୋଧହୁଏ ଗ୍ରନ୍ଥାବଳି ଢଙ୍ଗରେ ଏକାଠି କରାଯାଇଥିବା ପ୍ରଥମଖଣ୍ଡ । ତାହା ହୁଏତ କିଛି ମାତ୍ରାରେ ସତ୍ୟ । କିନ୍ତୁ ମୋର ବା ଆଉ କାହାର ଗ୍ରନ୍ଥାବଳୀ ତା'ର ଜୀବଦ୍ଦଶାରେ ବା ଅନ୍ତତଃ ତା'ର ଲେଖନୀ ସୃଷ୍ଟିଶୀଳ ଥିବା ପର୍ଯ୍ୟନ୍ତ ଛପାହେବା ଅନୁଚିତ ବୋଲି ମୋର ଧାରଣା । ସାତକାଣ୍ଡ ଯଦି ସରିଗଲା ତା'ହେଲେ ରାମାୟଣକୁ ଏକତ୍ର ବାନ୍ଧିଦିଆଯାଉ, ଲଂକାକାଣ୍ଡ ପରେ ନୁହେଁ ।

ଗ୍ରନ୍ଥାବଳୀ ପ୍ରକାଶନ ବ୍ୟୟସାପେକ୍ଷ ବ୍ୟାପାର । 'ଗ୍ରନ୍ଥମନ୍ଦିର' ମୂଳରୁ ମୋର ଏକମାତ୍ର ପ୍ରକାଶକ ହୋଇଥିବାରୁ ଯଥାବିଧି ଗ୍ରନ୍ଥାବଳି ଛାପିବାର ଅଧିକାର ମଧ୍ୟ ତାଙ୍କର । ତେବେ ମୁଁ ତ କୌଣସି କ୍ଷୀଣତନୁ କବି ନୁହେଁ ଯେ ମୋର ସମସ୍ତ କୃତିକୁ ଗୋଟିଏ ମଲାଟ ଭିତରେ ଅନାୟାସରେ ଏକତ୍ର ଛାପିଦେଇ ହେବ ! ମୋର ଗଦ୍ୟଭାରକୁ ଖଣ୍ଡଖଣ୍ଡ ନ କଲେ ତାହା ସବୁମତେ ଦୁର୍ବହ ହେବାର ଆଶଙ୍କା ରହିଛି ।

ଏଣୁ 'କଥାସରିତ୍-୧' ପ୍ରକାଶିତ ହେବା ଆଉ ଏକ ପର୍ଯ୍ୟାୟର ପ୍ରଥମ ପର୍ବ । ସହୃଦୟ ସୁଧୀ ପାଠକବର୍ଗଙ୍କୁ ଏହା ନୂତନ ଶତାବ୍ଦୀର ବିନମ୍ର ଉପହାର ।

ଚନ୍ଦ୍ରଶେଖର ରଥ

# ସୂଚୀପତ୍ର

□□□

# ସମ୍ପଦ

ମୁଁ ଅନୁମାନ କରିପାରୁଥିଲି ଯେ, ପଶ୍ଚିମରୁ ଖରା ପଡ଼ିଲେ ଏ ଅଞ୍ଚଳର ଦୃଶ୍ୟ ଅନେକ ବଦଳିଯିବ; କିନ୍ତୁ କାହା ଉପରେ କାହା ଛାଇ ପଡ଼ିଲେ କେମିତି ଦେଖାଯିବ, କ'ଣ ଲୁଚ଼ିବ, କ'ଣ ବା ଦିଶିବ, ଏ ଦୃଶ୍ୟଟିକି ମୋଟଉପରେ ଚିହ୍ନିହବ ନା ନାହିଁ, ଏ କଥା ଭାବିପାରୁନଥିଲି । ଯେତେ ଯାହା ହେଉ ପଛେ ଯେ' ତ ଆଉ ଅସୁନ୍ଦର ଦିଶିବନାହିଁ ! ଏତେ ପ୍ରକାର ସବୁଜ, ନେଳିମିଶା, କଳାମିଶା, ହଳଦିଆ, ଧଳାମିଶା ଧୂସର ପାଉଁଶିଆ, ପାଣିଚ଼ିଆ, ଗାଢ଼ ସବୁଜର ଏ ବିଚ଼ିତ୍ର ଅରଣ୍ୟରେ ଯୁଆଡୁ ଖରା ପଡ଼ିଲେ ସୁଦ୍ଧା କ'ଣ ଅସୁନ୍ଦର ଦିଶିପାରେ ? ପଶ୍ଚିମରୁ ଖରା ପଡ଼ି ଦିଶୁ ଅନ୍ୟପ୍ରକାର ଅଚିହ୍ନା ! – ତାକୁହିଁ ଦେଖୁଥିବି ଏ ଗଛଉପରକୁ ଅନ୍ଧାର ଆସିବାଯାଏଁ ।

ମୁଁ ଏଇ କିଛିଦିନହେଲା ପ୍ରାୟ ଛାତରେ ବସି ଏ ବିଚ଼ିତ୍ର ସୁନ୍ଦର ପୃଥିବୀକୁ ଦେଖୁଛି । ଏମିତି ଦେଖିବାର ସୁଯୋଗ ଆଗରୁ ଏତେ ମିଳୁ ନଥିଲା । ଏ ଘର ପଛପଟ ରାସ୍ତାରେ ମୁଁ ଅନ୍ୟ ସମସ୍ତଙ୍କ ପରି ଯାଉଥିଲି, ଆସୁଥିଲି, ଫେରୁଥିଲି ରାଉଳବସ୍ତା, ପରିବାମୁଣା ରିକ୍ସାରେ ଲଦି । ବେଳେବେଳେ ଗରମ ଶିଙ୍ଗଡ଼ା, ଆଳୁଚପ୍ ପତରପୁଡ଼ାରେ ନେଇଆସୁଥିଲି । ଏଇ ଛାତରେ ମୁନା, କୁନି ଆଉ ତା ବୋଉ ଘେରି ବସି ଯାଉଥିଲେ । ମୁଁ ବି ବସୁଥିଲି । ମତେ ସେମାନେ ପ୍ରାୟ ଅଲଗା କରି ବାଢ଼ିଦଉଥିଲେ; ସେମାନେ କିନ୍ତୁ ଗପ କରି କରି, ହସି ହସି ଏକାଠି ଖାଉଥିଲେ । ମୋ'ଠେଇ କ'ଣଟାଏ ଅଚିହ୍ନା ବୋଧେ ସବୁକାଳେ ରହିଆସିଚି – ମୁଁ ସତେ ବା ଅନ୍ୟ ଗାଆଁରୁ ଆସିଥିବା ମଉସାଟିଏ । ତା'ଠାରୁ ଅନେକ ବେଶୀ ପରିଚ଼ିତ ହୁଏତ; କିନ୍ତୁ ଭିନ୍ନ ନୁହେଁ । – ସେଇ ଶିଙ୍ଗଡ଼ା ଖାଇବାବେଳେ ମୁଁ ଏଆଡ଼କୁ ଚାହୁଁଥିଲି ନିଶ୍ଚୟ, କିନ୍ତୁ ମୋତେ ବୋଧେ କିଛି ଦେଖାଯାଉନଥିଲା । ଏଥିରୁ ଅନେକ ଗଛଲତା ସେତେବେଳେ ଖୁବ୍ ପିଲା; ସାରା ପୃଥିବୀ ସେତେବେଳେ ଖୁବ୍ କଅଁଳିଆ ।

ତିରିଶ ବର୍ଷ ପୂର୍ବେ ପ୍ରଥମ ମାସର ଦରମା ନେଇ ମୁଁ ଫେରିଥିଲି । ଆକାଶରେ ନୂଆ ମେଘ ଟେକିଥିଲା । ମନେଅଛି, ଖୁବ୍ ବର୍ଷା ଛେଚ଼ିଥିଲା ସେ ରାତିସାରା । ଆମେ ଦି'ଜଣ ଜମା ଶୋଇନଥିଲୁ । ଏବେ ସେଇ ଅଗଷ୍ଟ ପହିଲା ଦିନ ଜରିମାଳଟିଏ, କାଚ଼ବନ୍ଧା ବିଦାୟ ପତ୍ରିକାଟିଏ ନେଇ ଫେରିଲାବେଳକୁ ମେଘ ଓହଳି ରହିଥାଏ ଆକାଶରୁ । କିନ୍ତୁ ଏ ମେଘଟାରେ ପାଣି ଅପେକ୍ଷା ଅନ୍ଧାର ବେଶି । ଘରେ ମୁନା, ତା ସ୍ତ୍ରୀ, ତା ପୁଅ, କୁନି, ତା ଝିଅ, ମୁନାବୋଉ ଆଉ କିଏ କିଏ ପାଖଆଖ ଲୋକସବୁ ବସିଥାନ୍ତି ଦାଣ୍ଡଘରେ, ଚା' ଫା' କ'ଣ ଟିକିଏ ଦେଲେ ପିଇବାକୁ, କଣ ସବୁ

କହିଲେ । ମତେ ସବୁ ଏକାପ୍ରକାର ଶୁଭିଲା । ତା'ପରେ – ତା'ପରେ ବର୍ଷା ହେଲା । ରାତି ହେଲା । – ବର୍ଷା ଅପେକ୍ଷା ଅନ୍ଧାର ବେଶି ।

ଚାକିରିରୁ ମୋର ଅବସର ନେବା ଆସି ବର୍ଷେ ପାରିହୋଇଗଲାଣି । ଏବେ ଜୀବନରେ ଠାଏ ଠାଏ ଖାଲିପଡ଼ିଯାଉଛି ଶସ୍ତା ଡଟ୍ କଲମରେ ଲେଖିଲାଭଳି ! ମାସ ମାସ ବିତିଯାଉଛି । କାହାପାଖରୁ ଚିଠି ଆସୁନାହିଁ । ମୋ ସ୍ତ୍ରୀଙ୍କ ମନହେଲା ଝିଅ ପାଖରେ ଆସାମରେ ପାଞ୍ଚ-ଛ' ମାସ ରହିବେ । ମୁଁ କିଛି କହିଲି ନାହିଁ; କହିପାରିଲି ନାହିଁ । କହିବାକୁ ମୁଁ କିଏ ? ମୁଁ କ'ଣ ଜାଗିର୍‌ଦାରି ରଖିଛି ଯେ, ମୋତେ ଶେଷ ପର୍ଯ୍ୟନ୍ତ ଜଣେ ସେବାରେ ଖଟିଥିବ ! କୁନି ଗଲାବେଳେ ଆଖି ଛଳଛଳ କଲା । ମା' ଝିଅ ସୁକ୍‌ସୁକ୍ ହେଲେ । ମାଇକିନିଏଁ ସେମିତି ହୁଅନ୍ତି । ଗାଡ଼ିରେ ସେମାନେ ପଛପଟ ରାସ୍ତାକୁ ବୁଲିଗଲେ ଷ୍ଟେସନ୍‌ଆଡ଼େ । ମୁଁ ସାମ୍ନାରେ ଏ ବିଚିତ୍ର ସବୁଜ ସମ୍ଭାରକୁ ଚାହିଁ ରହିଲି । ପଶ୍ଚିମରୁ ଖରା ପଡୁଥିଲା, ସୁନ୍ଦର ଦିଶୁଥିଲା; କିନ୍ତୁ ଦିଶୁଥିଲା ସମ୍ପୂର୍ଣ୍ଣ ନୂଆ, ଖୁବ୍ ନିରୋଳା, ଏକପ୍ରକାର ଅପରିଚିତ ।

ପଶ୍ଚିମରୁ ଖରା ପଡ଼ିବାକୁ କ'ଣ ମୁନାର ସ୍ତ୍ରୀ ଦାୟୀ ନା ମୁନା ନିଜେ ? – ତା ମା' ଦାୟୀ ନା ଆଉ କିଏ ଏ ସଂସାରରେ ?? ବେଳ ଜାଣି ଖରା ତ ପଶ୍ଚିମରୁ ପଡ଼ିବହିଁ ପଡ଼ିବ ! ପୁଅ ବୋହୂ ମୋ ସାଙ୍ଗରେ ବସିଲେ କିଛି ସମୟ, ଖୁବ୍ ଭିଡ଼ିହେଲାପରି କଥା ହେଉଥାନ୍ତି । ମନନେଲାଭଳି ମିଠା ମିଠା କଅଁଳ କଥା କହିବାକୁ ଚେଷ୍ଟା କରୁଥାନ୍ତି ।

''ଦେଖ ମିତୁ, ବାପାଙ୍କୁ ସନ୍ତୁଳା ସବୁଠୁ ଭଲଲାଗେ । ତୁମେ ସନ୍ତୁଳା କେମିତି ବଢ଼ିଆ କରୁଚ ପରା ।''

''ମୁଁ ତ ବାପାଙ୍କୁ କହୁଚି, ସେ ଆମ ସାଙ୍ଗେ ଆସି ତାଳଚେରରେ ରହିଲେ କେତେ ଭଲ ହୁଅନ୍ତା !''

''ଛାଡ଼, ଆଉ ସେ ବିଷୟ କହି ଲାଭ ନାହିଁ । ତାଙ୍କ ଘର । ସେ ଯେତେବେଳେ ଚାହିଁବେ ଆସିବେ, ତେବେ ଆମେ ଆସି ମଝିରେ ମଝିରେ ସବୁ ବୁଝିଯିବାକୁ ପଡ଼ିବ ।'' କଥାରେ କଥାରେ ଟଣାଓଟରା ଜଣାପଡୁଥାଏ ।

– ''ଆରେ ପିଲେ, ତମେ ମୋ ପାଇଁ କାହିଁକି ବ୍ୟସ୍ତ ହଉଚ ? ତମେ ସତରେ କ'ଣ ଚାହିଁଲେ ବି ଆଉ ମୋ ପାଇଁ ସମୟ ଦେଇପାରିବ ? ତମର ହାତ ବାନ୍ଧି ହେଇଯିବ; ମନ ବାନ୍ଧି ହେଇଯିବ । ତାଳଚେରରୁ ତମ ଗାଡ଼ି ଚକ ପଛକୁ ଭିଡ଼ିହଉଥିବ । ମୋ ଭାଗରେ ଯାହା ପଡ଼ିବ ମୁଁ ଜାଣେ । ତା' ଦିନୁଦିନ ଊଣା ହେଇଯିବ – ତା' ବି ମୁଁ ଜାଣେ । ସେ ସବୁ କ'ଣ ନ ବୁଝି ମୁଁ ଏମିତି ଖାଲି ବୁଢ଼ା ହେଇଯାଇଚି !''

ଅଳ୍ପ ହସିଲି । ପୁଣି କହିଲି, ''ଆରେ, ତମେ ରାତି ଦଶଟାଯାଏ କାଇଁକି ବସିଚ ? ଯାଅ ଶୋଇବ । ମୋର ତ ଅଭ୍ୟାସ ଜାଣିଚ, ମୁଁ କିଛି ସମୟ ପଢ଼ିବି, ତା' ପରେ ଶୋଇବି ।''

''ମା' ମୁଣ୍ଡକୁ କ'ଣ ଏମିତି ଯୁଟିଲା ? ସେ କାହିଁକି କୁନି ସାଙ୍ଗରେ ଆସାମ ବାହାରିଗଲା ?'' – ମୋତେ ଖୁବ୍ ଦେଖିପାରିଲାପରି ମୁନା କହିଲା । ଭାରି ମାନୁଥିଲା ତାକୁ ସେ କୃତ୍ରିମ ରାଗଟିକକ !

''ମୁଁ ତାକୁ କହିଲି ବୁଲିଆସିବାକୁ । ସେ ବିଚାରୀ ଘରୁ ଗୋଡ଼ କାଢ଼ି କେବେ ବାହାରିପାରୁନଥିଲା । ମୁଁ ତାକୁ କୁଆଡ଼େ ନେଇପାରିନଥିଲି । ଯାଉ, ଟିକିଏ ବୁଲାବୁଲି କରି ଆସୁ । ମୋର କ'ଣ ଏମତି ଦର୍କାର କି ? ମୋର ବେଶ୍ ଚଳିଯିବ !''

ମୁନା ଭାରି ଚାଲାକ ଟୋକା । ମୋ କଥାରୁ କୋଉଠି ଟିକିଏ ଓଦା ଧରିଯିବା ବୋଧେ ବାରିଦେଲା । ମୋ ଆଖିକୁ ଚାହିଁରହିଲା କିଛି ନକହି । ମୁଁ ମୁହଁ ଫେରେଇ ଟିକିଏ ହସିଦେଲି । ସେଇଟା ମୁହଁ ଫେଦ୍‌କେଇଲା ପରି ହେଇଗଲା ନା କ'ଣ । ଦୁହେଁ ଜାଣିଗଲେ ଯେ ବୁଢ଼ା ଟିକିଏ କମ୍‌ଜୋର୍ ହେଇଯାଇଛି । ଖୁବ୍ ମନଦେଇ ସେମାନେ ମୋ କଥା ଚାରିଦିନ ବୁଝାସୁଝା କଲେ । ତା'ପରେ ମୁଁ ତାଙ୍କୁ କହିଲି ତାଳଚେର ଚାଲିଯିବାପାଇଁ ।

ବବ୍‌ଲୁ ତାଙ୍କ ଗେହ୍ଲା ପୁଅ । ତା' ପାଇଁ ଦୁହେଁ ଦିନରାତି ବ୍ୟସ୍ତ । ବବ୍‌ଲୁଟା ମୋ ପାଇଁ ବି ଗୋଟାଏ ନୂଆ ମୋହ । ତିନି ବର୍ଷର ଟୋକା, ଦିଶୁଚି ପୃଥିବୀର ସମ୍ରାଟ୍ ପରି – ଶଳାଟା ଏମିତି ସୁନ୍ଦର ହେଇଚି ନା ! ମୁଁ ତା' ଗୋଲାମ୍ ହେଇ ଖଟିବାକୁ ଆପତ୍ତି ନାହିଁ । ସେ ମୋ ପାଖକୁ ଆସିଲେ ମୋ ଥୋଡ଼ିଟିକୁ ନିଶ୍ଚେ ତା' ପାପୁଲିରେ ମୁଠେଇବ, ଆଉ କିର୍‌କିର୍ ହେଇ ହସିବ । ତା ଚିକ୍‌କଣ କଅଁଳ ହାତକୁ ବୋଧେ ସଲସଲ ଲାଗୁଥିବ ଏ ବୁଢ଼ିଆ ଥୋଡ଼ି ! – ଆବେ ହାରାମି; ତୁ'ଟା କୋଉଠି ଥିଲୁ ? – ଆକାଶରେ ଥିଲୁ ନା ପବନରେ ? – ମୋରି ରକ୍ତରେ ତୁ ଲୁଚିଥିଲୁ, ବୁଢ଼ାମାରି ରହିଥିଲୁ ଏମିତି ଆସି ମୋତେ ଶାସନ କରିବାକୁ ?

ମୁଁ ହିଁ ସେମାନଙ୍କୁ ବିଦାୟ କରିଦେଲି ତାଳଚେରକୁ । ପୁଅବୋହୂ ନିଶ୍ଚୟ ଚାହୁଁଥିଲେ ଯିବାକୁ – ଖୁବ୍ ସ୍ୱାଭାବିକ କଥା । ତାଙ୍କ ସଂସାରର ଚାରିଆଡ଼େ ବାଡ଼ ଉଠିଗଲାଣି; ସେ ଭିତରକୁ ପଶିବାକୁ ଏ ବୁଢ଼ାଟା କିଏ ? ଅନେକ ମୁଲାହିଜା, ନାନାପ୍ରକାର ବିଚାରକୁ ନେଇ ସେମାନେ ସେ ବେଢ଼ା ଭିତରୁ ହାତ ବଢ଼ାନ୍ତି । କିନ୍ତୁ ସେ କି ଆଉ ହୁଏ ? କେବେ ହେଇଥିଲା ଯେ ହବ ?

ମୋର ଏଣିକି ଛାତରେ ବସି ଏ ସବୁଜ ଭୂଇଁରୁ ସାୟାହ୍ନ ଖରାରେ ଚାହିଁବାହିଁ ଏକମାତ୍ର କାମ । ପ୍ରତିଦିନ ରୂପ ବଦଳ ହୁଏ, ପ୍ରତିଦିନ ସେ ଅପରିଚିତ ଦିଶେ; କିନ୍ତୁ ସୁନ୍ଦର ଦିଶେ ବୋଲି ସହିହୁଏ ।

ମୁଁ ଏବେ ପ୍ରାୟ ପ୍ରତିଦିନ ଫୁଲ ଗମ୍‌ଲାରେ ପାଣି ଦିଏ । ଗୁଡ଼ିଏ ସେବତୀ ଗଛକୁ ପାଳିଛି – ଶୀତରେ କଢ଼ ଦେଇପାରେ ଏଇ ଆଶାରେ । ଖୁବ୍ ଗହଳ ପାଖୁଡ଼ାର ବଡ଼ ବଡ଼ ସୁନା ସେବତୀ ! ଗୋଟାଏ ଗଛରେ ସତୁରିଯାଏ ଫୁଟିଯାଏ; ବୋ଼ଝେଇହୋଇ ରହେ ମାସେକାଳ । ଏ ବାଟଦେଇ ଯାଉଥିବା ଲୋକଙ୍କର ଆଖି ଫୁଟିଯାଏ ତାକୁ

ଦେଖି । ସକାଳର ଦିଅଁପୂଜା ନାଁରେ ପର ବାଡ଼ିରୁ ଫୁଲ ଚୋରାଉଥିବା ବୁଢ଼ାମାନେ, ଆଙ୍କୁଡ଼ି ଧରି ପାକୁଆ ପାଟି ମେଲେଇ ଉପରକୁ ଚାହିଁରହନ୍ତି ଢଳଢଳ ଚଷମା ଭିତରୁ । ମୋତେ ଦେଖିଦେଇ କିଛି ନଜାଣିଲାପରି ଚାଲିଯାନ୍ତି । ତାଙ୍କ ଦୀର୍ଘଶ୍ୱାସ ଛାତ ଉପରକୁ ଶୁଣାଯାଏ ।

ମୁଁ ଜଗଦୀଶ ଦାଶ ଘରେ ବ୍ରିଜ୍ ଖେଳେ ଆଉ ତିନିଜଣ ବୁଢ଼ାଙ୍କ ସାଙ୍ଗରେ । ଅଲଣା ଲାଗେ । କାରଣ ହାରିଗଲେ କେହି ଆଉ ତାତିଉଠେନାହିଁ; ଜିଣିଲେ ଦାଉଦାଉ ଦିଶେନାହିଁ । ସବୁ ଥଣ୍ଡା ନିର୍ଜୀବ ମଲା ଧଣ୍ଡପରି ! ପାଟିତୁଣ୍ଡ ନଥିଲେ କି ବ୍ରିଜ୍ ଖେଳ ସେ !

ମୁଁ ଗୌରାଙ୍ଗ ମଠକୁ ପ୍ରବଚନ ଶୁଣିବାକୁ ଯାଏ । କିଛି ଶୁଣେ । ଇଂରାଜୀରେ ବ୍ୟାକରଣ ଭୁଲଗୁଡ଼ାକୁ ଗଣିଥାଏ । ଓଡ଼ିଆରେ ବାକ୍ୟଗଠନଗୁଡ଼ାକ ଭୁଲ୍ ଜଣାଯାଏ । ଝାଙ୍କିହେଉଥିବା ସେ ବକ୍ତାଟିକୁ ଆଉ ଚାହିଁରହିବାକୁ ମନ ହୁଏ ନାହିଁ । ସେଇଠୁ ଉଠିଆସିଲେ ଏଣେ କିଛି କାମ ନାହିଁ । ମୁଁ ବସି କିଛିବେଳ ଘୁମାଏ ସେଇଠି ।

ତଥାପି ସେ ସବୁଜ ଗଛଗୁଡ଼ିକୁ ଚାହିଁଦେଲେ ପୃଥିବୀରେ ରହିବାକୁ ଲୋଭ ହୁଏ । ଏଡ଼ିକି ସୁନ୍ଦର ସତେ ଏ ପୃଥିବୀ !

ଝରକା ପାଖରେ ଗୋଟାଏ ମଧୁମାଳତୀ ଲଇ ଖୁବ୍ ଝଙ୍କାଳିଆ ହେଇ ଉପରକୁ ଉଠିଥାଏ । ବର୍ଷର ଏଇ ସମୟକୁ ରାତିରେ ବାସେ, ଦିନବେଳେ କାକର ଲାଗେ । ସେ ବି ଏତେ ସୁନ୍ଦର ବୋଲି ମୁଁ ଜାଣି ନଥିଲି । ମୋଟଉପରେ ଏ ପୃଥିବୀକୁ ଆଉ ଥରେ ଆସିବାର ମୋହ ବୋଧହୁଏ ମୁଁ ସଂଗ୍ରହ କରୁଛି, ଏଇ ବର୍ଷେ ହେଲା ।

ଦିନେ ଦେଖିଲାବେଳକୁ ସେଇ ଝରକାସନ୍ଧିରେ ଘରଚଟିଆ ହଳେ ଆସି ବସା ବାନ୍ଧିଲେଣି । ମୁଁ ଅନେକ ସମୟ ସେମାନଙ୍କ ପରିଶ୍ରମକୁ ଚାହିଁଥାଏ, ହସୁଥାଏ ! ତାଙ୍କୁ ସେତେବେଳେ ବେକୁବ୍ ବୋଲି ସାରା ସଂସାର କହିଲେ କ'ଣ ସେମାନେ ସେ କଥାକୁ ଖାତିର କରିଥାନ୍ତେ ? ମୁଁ ଖାଲି ସେମାନଙ୍କର ଆତୁରତା, ହାଇଁପାଇଁ ହେବାର ଦୁଃଖ ଦେଖୁଥାଏ । ମଝିରେ ମଝିରେ ସେମାନେ କୁଳୁକୁଳୁ ଶବ୍ଦ କରୁଥାନ୍ତି, ଅକ୍ଲାନ୍ତ ସଙ୍ଗମ କରୁଥାନ୍ତି, ମୋତେ ଦିଶୁଥାଏ ଚିତ୍ରପଟ ପରି ।

ସେମାନେ ଉଡ଼ିଗଲେ ସେବତୀ ଗଛରେ ପତ୍ର ଅଙ୍କୁରିବାର ଦେଖେ । ସାମ୍ନା ଅରଣ୍ୟକୁ ଦେଖେ । ସବୁଜ ରଙ୍ଗର ଖେଳକୁ ଦେଖେ ।

ଚାକରପିଲାଟି ତା' ଢଙ୍ଗରେ ଯା'ଆସ କରୁଥାଏ । ତା' ସାଙ୍ଗରେ ମୋର ସେଭଳି କଥାବାର୍ତ୍ତା ନଥିଲା, ଏବେ ବି ନାହିଁ । ଏକୁଟିଆ ଘରଟା ଭିତରେ ଏତେଗୁଡ଼ାଏ ଖାଲି ସମୟକୁ ନେଇ କ'ଣ କରିହେବ ? ମୁଁ ଏମିତି ବସି ସେ ଚଟିଆମାନଙ୍କୁ ଦେଖୁଥିବା ଭିତରେ ଯୋଡ଼ିଏ ଛୋଟ ଅଣ୍ଡା ଦେଇସାରିଥାଏ । ମା' ପକ୍ଷୀ ତା' ଉପରେ ପେଟେଇ ବସିଥାଏ, ଘୁମଉଥାଏ ଅନେକ ବେଳ ।

ମୁଁ ଚିଠି ଲେଖିଲି ତାଳଚେରକୁ — ବବୁଲୁକୁ ନେଇଆସ, ସେ ଚଟିଆଛୁଆ ଦେଖିବ । ବାପା ମା'ଙ୍କ ଯତ୍ନ କରିବା ଦେଖିବ, ଆହାର ଖୁଆଇବା ଦେଖିବ ।

ଚିଠି ପାଇ ମୁନା ନିଶ୍ଚେ ହସିଥିବ । ସେ ତା' ବାପାର ଖୋଇ କିଛି କିଛି ଜାଣେ ତ ! ଅନେକ ବର୍ଷ ତଳେ ମୁଁ ତାକୁ ତା' ସ୍କୁଲରୁ ଦି'ପହରବେଳେ ଆଣିବାକୁ ଯାଇଥିଲି, ସେ ରତନୀ ଗାଈର କଅଁଳା ବାଛୁରୀକୁ ଦେଖିବ ବୋଲି । ସ୍କୁଲ୍ ମାଷ୍ଟ୍ରଟି କିଛି ବୁଝିନପାରି ମୋ ମୁହଁକୁ ଚାହିଁଥିଲା । ତା'ରି ଭଳି ଜଣେ ବୟସ୍କ ଅଭିଭାବକର କଥାକୁ ଏଡ଼ିନପାରି ଦୋଦୋପାଞ୍ଚ ହୋଇ ମୁନାକୁ ମୋ ସାଙ୍ଗରେ ଛାଡ଼ିଦେଇଥିଲା । ସେ ଏଯାଏଁ ବୋଧେ ବୁଝିନଥିବ, କାହିଁକି ପିଲାଙ୍କୁ ପାଠ ଛଡ଼େଇ କଅଁଳା ବାଛୁରୀଟିଏ ଦେଖେଇବାକୁ ନିଆଯାଏ ।

ମୁଁ ଚିଠି ପଠେଇବାର ପରଦିନ ଅଣ୍ଡା ଫୁଟିଗଲା । ଯୋଡ଼ିଏ ମାଉଁସ ଗୋଟାଳି ତା' ଭିତରୁ ବାହାରି ଧକେଇଲେ । ମା' ବାପାଙ୍କର ଧାଁ-ଦଉଡ଼ ପାଟିତୁଣ୍ଡ ଆଉ କହିଲେ ନ ସରେ । ଛୁଆ ଦି'ଟାଙ୍କର ଚିଁ-ଚିଁ ଚାଲିଥାଏ । ପାଟି ମେଲାକରି ସେମାନେ ଜଗତଯାକ ଭକ୍ଷିଯିବାକୁ ଚାହୁଁଥାନ୍ତି ।

ମୁନାବୋଉକୁ ଏଯାକ ସୁଖ ଲାଗେନାହିଁ । ସେ ହୁଏତ ଚିଡ଼ିଥାନ୍ତା । ଅଯଥା ଝରକା ପାଖ ମଇଳା ହେଲା ବୋଲି ସେ ଟୋକା ହାତରେ ଘରଚଟିଆ ବସାଟିକୁ ଭାଙ୍ଗିଦେବାକୁ ଧମକେଇଥାନ୍ତା । କିନ୍ତୁ ନିଜେ ସବୁଦିନେ ଝାଡୁମାରି ତଳ ସଫା କରିଥାନ୍ତା । ମଝିରେ ମଝିରେ ଲୁଚି ଲୁଚି ସେ ବସା ଭିତରକୁ ବୁଝିଲାଭଳି ଚାହିଁଥାନ୍ତା । ଦେଖିଦେଲେ କି ପଚାରିଦେଲେ ଚିଡ଼ିଥାନ୍ତା । ମାଇକିନିଆମାତ୍ରେ ବୋଧେ ସେମିତି – ତାଙ୍କର କେତେଗୁଡ଼ିଏ କଥା ଆଉ କିଏ ଜାଣିବାକୁ ସେମାନେ ଚାହାନ୍ତିନାହିଁ । – ପିଲା ଜନ୍ମ କରିବା, କଅଁଳା ପିଲାଙ୍କୁ ପାଳିବା ସେମାନଙ୍କର ଏକଚାଟିଆ – ସେଥିରେ ଅଣ୍ଡିରେ କାହିଁକି ମୁଣ୍ଡ ଖେଳେଇବେ ? ଅଣ୍ଡିରେ ଯଦି ବୋକାଙ୍କ ଭଳି ଅନେଇବେ, ଡାଙ୍କୁବ ହେଇ ପାଟି ପାକୁ-ପାକୁ କରିବେ, ତେବେ ମାଇକିନିଆଙ୍କ ଖୁସି କହିଲେ ନସରେ ।

ଚାକରଟୋକା ହାତରେ ଶାଗପୋକ ସଂଗ୍ରହ କରି ମୁଁ ସେ ଚଟିଆ ଛୁଆଙ୍କୁ ଖୁଆଇବାକୁ ଇଚ୍ଛାକଲି । ସେଇଆ ତ ତା' ମା' ଖୁଆଉଚି ! ତାକୁ ଅପୂର୍ବ ଲାଗିଲା ସେ କାମ । ବେଶ୍ ନୂଆ ଖେଳ । ଶାଗପୋକ ଆଣି ସେ ବ୍ଲେଡ୍‌ରେ ପଗ ପଗ କରି କାଟିଲା । ଛୋଟ ଚିମୁଟାରେ ସେଥିରୁ ଗୋଟିଏ ମୁଗଭଳି ଟେକି ଧରିଲେ ଚିଁ-ଚିଁ ଶବ୍ଦ କରି ଦୁଇଟି ରଙ୍ଗଣି ଫୁଲ ଫୁଟିଯାଏ ! ପକେଇ ଦଉ ଦଉ ଟପ୍‌କିନା ଗିଳିଦିଏ; ପୁଣି ପାଟି ମେଲେଇ ଚିଁ-ଚିଁ କରେ ।

ମା' ପକ୍ଷୀ ଚାରା ଖୁଆଇଦେଇ ବସାରେ ଏଠିସେଠି ଟିକିଏ ଥଣ୍ଟମାରି ଯତ୍ନ କରିଦିଏ; ତା' ପରେ ଉଡ଼ିଯାଏ ! ସେଇଠୁ ଆମେ ଦିହେଁ ଲାଗିଯାଉ ସେବାରେ । ପୋକ ଦେଇ ପକ୍ଷୀ ପାଳିବା କୋଉ ନୂଆ କଥା ହେଇଚି, କାହିଁ କୋଉ ଆଦିମ ଯୁଗର ନିୟମ । ଏଥିରେ ମାଇକିନିଏ ଏତେ ବାହାଦୁରି ନେବାର କ'ଣ ଅଛି ?

ମୁଁ ଉତ୍ସାହିତ ହୋଇ ଭାବିଲି, ଚଟିଆଛୁଆଙ୍କୁ ଆଉ ଟିକିଏ ସାରବାନ୍ ଖାଦ୍ୟ ଦେଲେ କେମିତି ହୁଅନ୍ତା ? ଧରାଯାଉ କିଛି କ୍ଷୀର । କ୍ଷୀରଟା ସଚରାଚର ପ୍ରାଣୀଙ୍କ

ପାଇଁ ଉପାଦେୟ ଖାଦ୍ୟ । ପକ୍ଷୀମାନଙ୍କର ନିଜର କ୍ଷୀର ନାହିଁ, କିନ୍ତୁ ସେମାନେ କ୍ଷୀର ଖାଇବାକୁ ନିଶ୍ଚୟ ଭଲପାଇବେ । କ୍ଷୀର ବିଷୟରେ ଅଧିକ ଆଉ କ'ଣ କହିବା – କ୍ଷୀରହିଁ ତ ଅମୃତ ।

ମୁଁ ଗୋଟିଏ ଡ୍ରପର୍ ଯୋଗାଡ଼ କରିନେଲି । ଚାକର ଟୋକା ଗୋଟିଏ ଚାମଚ୍‌ରେ କ୍ଷୀର ଧରି ଠିଆହେଲା । ମେଲା ଚଞ୍ଚୁ ଭିତରେ ଟୋପାଏ କ୍ଷୀର ପଡ଼ିଗଲେ ସେ ସାଙ୍ଗେ ସାଙ୍ଗେ ବୁଜିହୋଇ ପୁଣି ଫିଟିଯାଉଥିଲା । ସେ ପ୍ରାୟ ଉପରଓଳି ଘଟଣା । ସେଦିନ ଛାତ ଉପରକୁ ଯାଇପାରିନାହିଁ; ଘୋର ସଂସାର-କର୍ମରେ ଲାଗିଥାଏ ତ ! ଚାକରଟୋକା ଚାଲିଯାଇଥାଏ । ମୁଁ ଭାବୁଥାଏ ତା' ଆରଦିନ ସକାଳ ହେଲେ ବବ୍‌ଲୁ ଆସିଯିବ । ଏ ଚଟିଆଛୁଆଁଙ୍କ ସାଙ୍ଗେ ବେଶ୍ ଜମିଯିବ କିଛି ଦିନ ।

ରାତିରେ ମୁନାବୋଉ ପୁଣି ମନ ଭିତରକୁ ଆସି ଗୋଳଘାଣ୍ଟ କଲା । ମୁଁ ଏଯାଏଁ କହିନାହିଁ କାହିଁକି ସେ ପ୍ରକୃତରେ ଆସାମ ଗଲା କୁନି ସାଙ୍ଗରେ । ସେ ଗୋଟାଏ ଛିଦାଛିଦି କଥା । ଘଟଣା ଏହିପରି –

କାମରୁ ଅବସର ନେବାର ବର୍ଷ-ପୂରଣିକୁ ପିଲାଏ ଆସିଥିଲେ ତ; ସେମାନେ ଅଲକ୍ଷ୍ୟରେ ପ୍ରସ୍ତୁତ ହେଉଥାନ୍ତି ଯିବାପାଇଁ । ମୁନାବୋଉର ମନ ନାନା କାରଣରୁ ଭାରି କଷ୍ଟ । ଆସି ଉଖୁରେଇ ହେଲାପରି କହିଲା, ''ଛାଡ଼ । ଦିହକଯାକ କୂଅ ଭିତରେ ବେଙ୍ଗପରି ପଡ଼ି ପଡ଼ି ବିତିଗଲା ।'' ମତେ ଶୁଭିଲା ଖୁଣ୍ଟାଦେଲାପରି ।

ମୁଁ ଟିକିଏ କଡ଼ାସ୍ୱରରେ କହିଲି, ''ହେଲା ଏବେ ମୋ ଆୟତ୍ତରେ ମୁଁ ତୁମକୁ ପୃଥିବୀଯାକ ବୁଲେଇ ପାରିଲିନାହିଁ । ଏବେ ତ' ତୁମ ପୁଅ ଝିଅ ପାରିଲେଣି, ଦୂରଦୂରାନ୍ତରେ ଯାଇ ରହୁଛନ୍ତି – ଯାଉନ ତାଙ୍କ ସାଙ୍ଗରେ ।''

''ହଅଅ ! ମୁଁ ପୁଣି ଯିବି !! ହୁଁ, ମୁଁ ଗଲେ ଏଠି ସେବାରେ ଖଟିବ କିଏ ? ତମେ କ'ଣ ଦଣ୍ଡେ ଚଳିପାରିବ ।''

''ମୋ କଥା କାଇଁକି ପଡ଼ିଚି । ତମେ ଏବେ ବେଙ୍ଗ ଭଳି ଏ କୂଅରେ ପଡ଼ିରହିଥିବ କାହିଁକି ? ଆମର ଆଉ କ'ଣ ଅଛି – ଆମେ ବେଦରକାରୀ ହେଇଗଲୁ । ଆମେ ନଥିଲେ ସେ ଅଫିସଟା ଚଳୁଚି; ଏ ସଂସାରଟା ବି ଚଳିବ – ଆଉରି ଭଲରେ ଚଳିବ । ତମେ କାହିଁକି ଏବେ ଆମପାଇଁ କଷ୍ଟ କରୁଚ ? କେବେ ସିନା ଆମେ ଉପାର୍ଜନ କରି କୁଟୁମ୍ବ ପୋଷୁଥିଲୁ ବୋଲି ଆମର ଯତ୍ନ ନିଆହଉଥିଲା – ଏବେ ଯେଉଁଠି ପଇସା, ଯୋ୍ଉଠି ଆଦର – ସେଠିକୁ ଯାଉନ !''

''କେମିତି ଖୁଣ୍‌ଖୁଣିଆ ମଣିଷଟିଏ ତମେ ହୋ ! ଆଡ଼େ ବଇଲେ ଥାଡ଼େ କାହିଁକି ବୁଝୁଚ ?''

''ଏଣିକି ତ ଏମିତି ତମେ କହିବ ! ମୁଁ କ'ଣ ଏବେ ଖୁଣ୍‌ଖୁଣିଆ ହେଇଗଲି – ମୁଁ ଯାହା ଥିଲି ସେଇଆ । କିନ୍ତୁ ଏତେ ବର୍ଷ ତ ଠିକ୍ ବୁଝିପାରୁଥିଲି, ଆଜି କ'ଣ

ହେଇଗଲା । – ତମେ ଗଲ ବୁଲିଆସିବ – ଯାଅ ! ଏଠି ରହି କଷ୍ଟ ସହିବାର କିଛି ଦର୍କାର ନାହିଁ ।''

ସେ ଫାଇଁକିନା ରାଗିଯାଇ କହିଲା, ''ହଉ, ମୁଁ ମଲେ ଯାଇଁ ତମେ ଜାଣିବ ! ହଉ, ମୁଁ ଏବେ ଯାଉଚି କୁନି ସାଙ୍ଗରେ । ସେ ତ ଲଗେଇଚି ଆସିଲାଦିନୁ । ମୁଁ ବାହାରିଲି ।''

''ଯାଉନ, କାହାକୁ ଡରୋଉଚ ?''

କଥା ଏତିକି ଏବଂ ସେ ସତକୁ ସତ ବନ୍ଧାଛନ୍ଦା କରି ବାହାରିଗଲା; ମୁଁ ବି ମନାକଲିନାହିଁ । ଆସି ମାସେ ଉପରେ ହୋଇଗଲା । ଜିଦ୍‌ରେ ଚାଲିଛି ବୋଲି ସିନା; ନ ହେଲେ କ'ଣ ଊଣା ଅସୁବିଧା ? ସକାଳୁ ପତ୍ରିକା ପଢ଼ିଲାବେଳେ ଦିନେ ଦିନେ ଲାଗୁଛି ଯେ, ସେ ଠିଆହୋଇ ଚା' ବଢ଼େଇଦଉଛି । ଅଭ୍ୟାସରେ ତୁଣ୍ଡରୁ ବାହାରି-ଯାଉଛି – 'ଟେବୁଲ ଉପରେ ଥୋଇଦଉନ ! – ତମର ଚା' କାଇଁ ?' ତା'ପରେ ଆଖିପାଖରୁ ପତ୍ରିକା ଆଡ଼େଇହେଇଯାଏ । ନୌକର ଟୋକାକୁ ଡାକପକେଇଲେ ସେ ଚା' କପେ ଆଣିଦିଏ । ଯେତେ ବଡେଇଲେ ସୁଦ୍ଧା ଚା'ଟା ଆଉ ଠିକଣା ଲାଗୁନାହିଁ । ଭାବିଚି, ଏ ଚା'ଟାକୁ ବଦଳେଇଦେବି । ଗୋଟାଏ କଲିକତି ଦୋକାନ ଫିଟିଛି – ସେଇଠି ଭଲ ଚା' ମିଳୁଛି ବୋଲି କିଏ କହୁଥିଲା । ଦେଖିବା ! –

ସକାଳୁ ନୌକର ଟୋକାକୁ ଡାକପକେଇଲି – ଆରେ ପୋକ ଗୋଟେଇଲୁ ? କ୍ଷୀର ସଜିଲ କଲୁ ? ସେ କିଛି ସମୟ ଆସିଲାନାହିଁ । ତା' ପରେ ଡରିଡାରି ଆସି ହାତ ମନ୍ଥି ଠିଆହେଲା ।

''କିରେ, ଏମିତି କ'ଣ ଠିଆହେଲୁ ? କ୍ଷୀର କାଇଁ ?''

''ନାଇ ବାବୁ, ଚଟିଆଛୁଆ ଦି'ଟା ମରିଗଲେ ।''

''ହେଁ-ଏଁ...'' କହି ମୁଁ ଚୌକିରୁ ଉଠିପଡୁଥିଲି । ଆଣ୍ଠୁ ଲାଖିଗଲା, ବସିପଡ଼ିଲି । ତା'ପରେ ସାବଧାନ ହୋଇ ଉଠିବାକୁ ପଡ଼ିଲା ।

ଝରକା ପାଖକୁ ଯାଇ ଅନେଇଲି, ସବୁ ଚୁପ୍ । କ'ଣ ହେଲା ? – ଦେଖିଲାବେଳକୁ ରଙ୍ଗପିମ୍ପୁଡ଼ି ଧାର ଲାଗିଚି ବସା ଭିତରକୁ । ଅନେଇଲି । ଯୋଡ଼ିକଯାକ ମାଂସପିଣ୍ଡୁଳାକୁ ପିମ୍ପୁଡ଼ି ବେଢ଼ିଯାଇଛନ୍ତି !

ପଛରୁ ନୌକର ଟୋକା କହିଲା, ''ରାତିରେ ବଡ଼ ଚଟିଆ ଦି'ଟା ଏଇଠି ଶୋଇନାହାନ୍ତି । ସକାଳୁ ସେ ଶେଣି ଖୋପରେ ବସି ଢୁଳୋଉଥିଲେ । ସେଉଠୁ ଉଡ଼ି ଚାଲିଗଲେ ଯେ ଆଉ ଆସିଲେ ନାହିଁ ।''

ମୁଁ ସେ ଛୋଟ ଶ୍ମଶାନଟିକୁ ଚାହିଁରହିଲି କିଛି ସମୟ । ମୋ ହାତଗୋଡ଼ ଭାରି ଭାରି ଲାଗିଲା । ମୁଁ ଅବଶ ବୋଧକଲି; ଅପରାଧୀ ବୋଧକଲି । ଫେରିଆସିଲି ଚୌକିକୁ ।

କେତେ ବେଳ ବସିଲି ଜଣାନାହିଁ । ଫୋନ୍ ବାଜିଲା । ଆରପାଖରୁ ମୁନା କହୁଚି, "ବାପା, ଚଟିଆଛୁଆ ଦେଖିବାକୁ ବବ୍‌ଲୁ ଭାରି ଜିଦ୍ ଧରିଚି । ମୋର ଆଜି ଅଫିସ୍‌ରେ ଅସୁବିଧା ଅଛି । ଆମେ କାଲି ସକାଳେ ଆସି ପହଞ୍ଚିବୁ ।"

ମୁଁ ତାକୁ ମନାକରିଦେଲି ଆସିବାକୁ । ତା' ମା'କୁ ଲୁଚେଇ ବବ୍‌ଲୁକୁ ଟଫି ଖୁଆଇବାର ମନେପଡ଼ିଗଲା । ଦେହ ଶୀତେଇଗଲା । ମୁଁ ଖୁବ୍ ଡରିଗଲି; ଦୀନହୀନ ବୋଧକଲି ।

ଅନେକ ବେଳ ଚୌକିରେ ବସି ବସି ଅନେଇଥାଏ ସାମ୍ନାକୁ । ସବୁଜ ଅରଣ୍ୟ ଆଉ ପ୍ରକାରେ ଦିଶୁଥାଏ ।

ଆଉ କପେ ଚା' ଖାଇଲି । ପୁଣି ଥରେ ପେପର୍ ଲେଉଟେଇଲି । ସାମାନ୍ୟ ଦମ୍ଭ ଲାଗିଲା । ବସି ଚିଠି ଲେଖିଲି ଆସାମକୁ ।

"– ମୁଁ ଏକପ୍ରକାର ଭଲରେ ଅଛି, ଜାଣିବ । ତୁମ୍ଭର ସେଇଠି ସମସ୍ତଙ୍କ କୁଶଳକୁ ପରମେଶ୍ୱର ମାଲିକ । ତୁମ ଆଣ୍ଠୁ ଟିକିଏ ଭଣା ହେଲାଣି ନା ନାହିଁ ? ଔଷଧ ଖାଉଚ ନା ସେଇଠି ? ଆଉ ଡାକ୍ତରକୁ ଦେଖେଇଲ ? – ଶୁଣ, ତୁମେ ଆସନ୍ତା ସପ୍ତାହକୁ ଚାଲିଆସିଲେ ଭଲ ହୁଅନ୍ତା । ରାଗ-ରୋଷ କରିବାକୁ ଆମର ଆଉ ବେଳ କାହିଁ ? ଚାକିରି କରୁଥିଲାବେଳେ ତମେ ଘର ସାମ୍ନା ଗଛଗୁଡ଼ାକୁ ଚାହିଁ ବସୁଥିଲ । ଉଡ଼ିଗଲା ପକ୍ଷୀଙ୍କୁ ଚାହିଁ ରହୁଥିଲ ଅଦୃଶ୍ୟ ହେବାଯାଏ । ଏବେ ପୂଜାପର୍ବ ପୁଣି ପାଖେଇ ଆସିଲାଣି । ଭାରି ସୁନ୍ଦର ଦିଶୁଚି ଚାରିଆଡ଼ । ଆସ, ସାଙ୍ଗହେଇ କିଛିଦିନ ସଞ୍ଜବେଳେ ଛାତରେ ବସି ଦେଖିବା । ଆସିଲାବେଳେ କଲିକତାରୁ କିଛି ଫଜ୍‌ଲି ଆମ୍ବ ଆଣିଥିବ; ଏଠା ବଜାରରୁ ଉଠିଗଲାଣି ।"

ସମୟ ଦଶଟା ଉପରେ । ନୌକର ଟୋକା ଚିଠି ପକେଇ ଚାଲିଆସିଲା; ଆସି ମୋ ହାତକୁ ଖଣ୍ଡେ ଚିଠି ବଢ଼େଇଦେଲା । ସକାଳର ପହିଲା ଡାକ । ଚଷମା ଲଗେଇ ଚିଠିର ଖାମ୍ ଦେଖି ଅଳ୍ପ ହସିଲି । ସିଲିଗୁରିରୁ ଆସିଚି । ଖୋଲି ପଢ଼ିଗଲି । କାଗଜର ଫାଳକରେ ମୁନାବୋଉ ଲେଖିଚି; ଆଉ ଫାଳକରେ କୁନି ।

ତା' ହେଲେ ଅସନ୍ତା ଗୁରୁବାର ଦିନ ସେ ଆସି ଏଠି ପହଞ୍ଚିବ । ସେଠି କୁଆଡ଼େ ତା' ଦେହ ସୁଖ ରହୁନାହିଁ । ବବ୍‌ଲୁ ପାଇଁ ଗୋଟାଏ କ'ଣ ଜିନିଷ କିଣିଚି । ବ୍ରହ୍ମପୁତ୍ର ନଈର ଭଲ ମାଛ ଆସିଥିଲା । ତାକୁ ଭାଜି ବଡ଼ ଅମୁଲ୍ ଡବାରେ ଭର୍ତ୍ତି କରି ଆଣୁଛି । ମୁଁ ମାଛ ପ୍ରଚୁର ଭଲପାଏ ।

ସେ ମୋ'ଠୁ ବୟସରେ ଜମା ଦି' ବର୍ଷ ଛୋଟ । ଠିଆହେଲେ ମୋ''ଠୁ ଦି' ଆଙ୍ଗୁଳ ସାନ । ରଙ୍ଗରେ ମୋ'ଠୁ ଖୁବ୍ ବେଶୀ ଚଟକ ନୁହେଁ, ହେଲେ ଗୋରୀ । ବେଳେବେଳେ ତାକୁ ତା' ନାଁ ଧରି ଡାକିବାକୁ ମୋର ମନ ହୁଏ । କଳ୍ପଲତା ! ନାଁଟା ଭଲହେଇନି ?

□□□

# ଯଦି ସେ ଈଶ୍ୱର ନୁହେଁ

ମହୁଫେଣା ପରି ସେଦିନ ମେଘ ଓହଳିରହିଥାଏ । ଥାପିପଡୁଥାଏ ଈଶାନ କୋଣ । ସେ ମେଘ ବର୍ଷିଦେଲେ ମାଟି ତାଡ଼ିନେବ, ଖଣ୍ଡ-ପ୍ରଳୟ କରିଦେବ ବୋଲି ସମସ୍ତେ ଅନୁଭବ କରୁଥା'ନ୍ତି । ଚାହିଁରହିଥା'ନ୍ତି ଆଷାଢ଼ର ସେ ଅପୂର୍ବ ଆଡ଼ମ୍ବରକୁ; କିନ୍ତୁ ମେଘ ବର୍ଷିନଥାଏ । ସମସ୍ତେ ଅପେକ୍ଷା କରି ରହିଥା'ନ୍ତି – ପଶୁ, ପକ୍ଷୀ, ତରୁ, ତୃଣ ଏବଂ ମଣିଷମାନେ ।

ମାନୁବାବୁ ଉପରମହଲାର ଉତ୍ତର ପିଣ୍ଡାରୁ ସେ ଚକମକ ମେଘକୁ ଚାହିଁଦେଇ ଚମକିପଡ଼ିଲେ । ଆଖିମିଟିକା ମାରି ଆଉ ଥରେ ଚାହିଁଲେ । ବିସ୍ତୀର୍ଣ୍ଣ ସହରର କୋଠା, ଲମ୍ବା ଲମ୍ବା ଝାଉଁଗଛ, ପାଣିଟାଙ୍କି, ସେ ଲଇଁଆସୁଥିବା ସନ୍ଧ୍ୟାର ସ୍ତବ୍ଧତା – ଏସବୁ ଯେମିତି ସେ ଆଉ ଥରେ କେବେ ଦେଖିଛନ୍ତି ! ଅବିକଳ ଏମିତି, ଟିକିଏ ବି ଏପାଖ ସେପାଖ ନାହିଁ । ଆଶ୍ଚର୍ଯ୍ୟ ! ସେଇଠି ଠିଆହୋଇ ସେ ବର୍ଷ-ବର୍ଷଧରି ମେଘ ଦେଖିଛନ୍ତି । ତିନିପୁରୁଷର କୋଠା । ତାଙ୍କ ପିଲାବେଳୁ ଏଯାଏଁ ଆସି ଷାଠିଏ ବର୍ଷ ହେଲା । ସେ ସେଇ କୋଠାର ପ୍ରତିଟି ଅଂଶ ସହିତ ପରିଚିତ; ଅଥଚ ହଠାତ୍ ସେଇ ମୁହୂର୍ତ୍ତରେ ତାଙ୍କୁ ମନେହେଲା ଯେ ସେଇଟା ଆଉ କାହା ଘର – ସେ ନୂଆହୋଇ ଆସିଛନ୍ତି, ଜମା ଚିହ୍ନିପାରୁନାହାନ୍ତି ! କିନ୍ତୁ ସେ ମେଘ, ସେ ଲମ୍ବା ପାଣିଟାଙ୍କି, ସେ ଗଛ; ସେ ସମଗ୍ର ଦୃଶ୍ୟଟି ଅବିକଳ ସେମିତି ସେ ନିଶ୍ଚୟ ଆଉ ଥରେ କେବେ ଦେଖିଛନ୍ତି । ସେଇଠି ଗୋଟିଏ ବେତଚୌକି ଉପରେ ସେ ଥମ୍ ହେଇ ବସିଗଲେ । ଆଖି ବୁଜିଦେବାରୁ ତାଙ୍କୁ ଲାଗିଲା ସେ ପାଣି ହୋଇଯାଉଛନ୍ତି, ପବନ ହୋଇଯାଉଛନ୍ତି, ଶୂନ୍ୟ ହୋଇ ମିଳେଇଯାଉଛନ୍ତି ।

ମାନୁବାବୁ ବେଶ୍ ପ୍ରତିଷ୍ଠିତ ଲୋକ ଧନରେ, ମାନରେ, କୁଳମର୍ଯ୍ୟାଦାରେ । ମାନ୍ଧାତା ମହାପାତ୍ରଙ୍କୁ କିଏ ନ ଜାଣେ ? ତାଙ୍କ ଲଢୁଆ ମିଜାଜ, ଭୁର୍କୁଣ୍ଡା ଟାଆଁସା ନିଶ, ରାଉ ରାଉ ଭ୍ରୂଲତା, ରାହୁଆ ଆଖି, ସିଂହ ଗର୍ଜିଲାପରି ସ୍ୱର ତାଙ୍କୁ ହଜାରେ ମଣିଷ ଭିତରେ ଜଣେକରି ବାରିଦିଏ । ଲୋକେ ଜାଣନ୍ତି ଯେ ମାନୁବାବୁ ଜୀବନସାରା ଲଢ଼ିଛନ୍ତି, ମୁକାବିଲା କରିଛନ୍ତି ପଟାଳିଆ ବାଘମାନଙ୍କ ସାଙ୍ଗରେ; କେବେ କିନ୍ତୁ ହାରିନାହାନ୍ତି । ତାଙ୍କୁ ହରାଇବାପାଇଁ ସେମିତି ଜଣେ କେହି ଜନ୍ମିନାହିଁ । ଏବେ ସେ ପ୍ରାୟ ଘରେ ରହୁଛନ୍ତି । ତାଙ୍କର ବିରାଟ ପରିବାର ତାଙ୍କୁ ଚାରିଆଡୁ ଘେରିରହିଛନ୍ତି । ପୁଅ ଝିଅ ସବୁ ବିଛେଇହୋଇ ରହିଛନ୍ତି ଦେଶସାରା । ସବା ବଡ଼ପୁଅ ସୁରେନ୍ଦ୍ର ପାଞ୍ଚବର୍ଷ ହେବ ବିଦେଶରେ ରହିଯାଇଛି । ତା' ପୁଅକୁ ଆସି ଚାରିବର୍ଷ । ସେ କୁଆଡ଼େ

ଭାରି ଚାଲାଖ୍ ହେଇଛି, ଖୁବ୍ ବକ୍ୱାଜିଆ ହେଇଛି । ମାନୁବାବୁଙ୍କ ଇଚ୍ଛା ତାକୁ ଦେଖିବାକୁ । ସେଦିନ ସକାଳୁ କେବ୍‌ଲ୍‌ରେ ସେ କଥା ହେଇଛନ୍ତି ସୁରେନ୍ଦ୍ରର ସ୍ତ୍ରୀ ସାଙ୍ଗରେ । ସେମାନେ ଟିକେଟ୍ କରିସାରିଲେଣି; ତିନିଦିନ ପରେ ଏଠି ଆସି ପହଞ୍ଚିବେ ।

ସନ୍ଧ୍ୟାରେ ପ୍ରକାଣ୍ଡ ମେଘ ଟେକିଛି । ମାନୁବାବୁ ଏମିତି ସାମାନ୍ୟ ଉଦାସ ଭଙ୍ଗୀରେ ଆସି ମେଘକୁ ଦେଖିଦେଲାପରେ ଥମ୍ ହୋଇ ଚୌକିରେ ଆଖିବୁଜି ବସିଯାଇଛନ୍ତି । ତାଙ୍କୁ କେମିତି ଗୋଟାଏ ଅପୂର୍ବ ଅନୁଭବ ହେଉଛି – ଏ ଘରଟା ନୂଆ ଏବଂ ଅପରିଚିତ ଭାବିବାର ଅର୍ଥ କ'ଣ ? ପୁଣି ସେ ମେଘ, ସେ ସମଗ୍ର ଚିତ୍ର ତାଙ୍କୁ ପରିଷ୍କାର ଭାବରେ ପରିଚିତ ଜଣାଯିବାର ଅର୍ଥ କ'ଣ ? ସେ କେମିତି ଗୋଟାଏ ଅସୁସ୍ଥ ବୋଧ କରୁଥାନ୍ତି । ମନେହେଉଥାଏ ଯେମିତି ଘରଟା ଘର ନୁହେଁ, ଆପଣାର ନୁହେଁ; ସେ ନିଜେ ସେ ଘରର ନୁହଁନ୍ତି, ବାହାରର । ବାହାରେ ସେ ସମସ୍ତ ପରିବେଶ ଖୁବ୍ ନିଜର, ଖୁବ୍ ଆପଣାର – ଏମିତି ସେ ତାଙ୍କର ଦୀର୍ଘ ଷାଠିଏ ବର୍ଷ ଭିତରେ କେବେ ଅନୁଭବ କରିଥିବାର ମନେ ପକାଇ ପାରୁ ନଥାନ୍ତି ।

ସେ ଅପେକ୍ଷା କରିଥାନ୍ତି, ଉନ୍ମୁଖ ମେଘପରି ତାଙ୍କ ଭିତରେ ଉତ୍କଣ୍ଠା ଟୋଳିହୋଇ ରହିଥାଏ । ବାହାର ଦୃଶ୍ୟରୁ ଯଦି କିଛି ଅଂଶ ବର୍ଷିଯାଏ, ସାମାନ୍ୟ ବଦଳିଯାଏ, ତେବେ ସେ ସାଂଘାତିକ ପ୍ରାଞ୍ଜଳ ପରିଚୟଟା ବିଲାଙ୍କି ହୋଇଯିବ । ସ୍ଥିର ପାଣିରେ ଆଙ୍ଗୁଠି ମାରିଦେଲେ ପ୍ରତିବିମ୍ବ ଚହଲିଗଲାପରି ଆଉ ତାକୁ ଚିହ୍ନିହେବନାହିଁ । ଆଉ ଯେକୌଣସି ଗୋଟିଏ ଆଷାଢ଼-ସନ୍ଧ୍ୟା ପରି ସେଇଟା ହୋଇଯିବ ଖୁବ୍ ସାଧାରଣ । ତା'ପରେ ହୁଏତ ସେ ସୁସ୍ଥ ବୋଧ କରିପାରିବେ । ତାଙ୍କ ଶୋଇବାଘର ବାଲ୍‌କୋନିକୁ ଆଉ କେହି ଉଠିଆସିବାର ସମ୍ଭାବନା ମଧ୍ୟ ନଥିଲା; ନହେଲେ ଅବା ସେ ପଚାରିପାରିଥାନ୍ତେ, ଆଉ କାହାକୁ ସେମିତି ଲାଗୁଛି ନା କେବଳ ତାଙ୍କୁ ? – ସେ ଆଖି ବୁଜିଦେଉଥାନ୍ତି; କିନ୍ତୁ ପୁଣି ମଟମଟ ଅନାଇଥାନ୍ତି, ଏମିତି ଯୋଡ଼ାଏ ପୃଥିବୀରେ ଏକାସମୟରେ ବିସ୍ତାରିହେଇ ରହିଲାଭଳି ତାଙ୍କୁ ଲାଗୁଥାଏ । ସେ ମାନିନେବାକୁ ପ୍ରସ୍ତୁତ ନଥିଲେ ଯେ, ତାଙ୍କୁ କିଛି କିଛି ଡର ହୁଏତ ମାଡୁଥାଏ । ସେ ବୋଧହୁଏ ହାଲିଆ ହୋଇଗଲେ । ସେମିତି ଆଖି ବୁଜିଦେଇ ବେତଚୌକିଟି ଉପରେ ସେ କିଛି ସମୟ ପରେ ଶୋଇଗଲେ ।

ୟା ଭିତରେ ଖୁବ୍ ଅସ୍ରାଏ ଦୁମୁକାଣି ବର୍ଷା ଛେଚିଦେଇଗଲା ମାନୁବାବୁଙ୍କୁ ଜଣାନାହିଁ । ଆଖିଖୋଲି ଚାହିଁଲାବେଳକୁ ବାହାରେ ଅନେକ ଅନ୍ଧାର । ତାଙ୍କ ଶୋଇବା ଘରୁ ସୋରାଏ ଆଲୁଅ ଆସି ପଡ଼ିଥାଏ ବାଗାନ୍‌ରେ, ବର୍ଷାରେ ତିନ୍ତି ଠିଆହୋଇଥିବା ନବୋଢ଼ା ଆମ୍ବଗଛଟି ଉପରେ ।

''ବାପା, ଚା' ଆଣିଦେବି ?''

''ତୁମ ଦେହ ଭଲ ଅଛି ତ ? – ଏମିତି ଏ ମୁହଁସଞ୍ଜବେଳେ କାହିଁକି ଶୋଇଗଲ ?''

''ବାପା ଉଠିଲଣି କି ? – ଶୋଇବାଘରକୁ ଚାଲିଆସ । ବାହାରେ ଥଣ୍ଡା, ପବନ ବହୁଚି ।''

ମମତାର ଗୁଡ଼ାଏ ସ୍ୱର – ଝିଅ, ପୁଅ, ସ୍ତ୍ରୀ ! ମାନୁବାବୁ ଅନେକଟା ସୁସ୍ଥବୋଧ କଲେ । ଚୌକିରୁ ନ ଉଠି ଗୋଡ଼ ଲମ୍ବେଇ ଅଳସ ଭାଙ୍ଗିଲେ । କହିଲେ, ''ପିଣ୍ଡା ବତିଟା ଲଗେଇଦେ ।''

ଆଲୁଅ ଜଳିଲା । ଆଉ ତିନୋଟି ବେତଚୌକିରେ ସେମାନେ ଆସି ବସିଲେ । ତାଙ୍କୁ ଚାହିଁ ହସିଲେ । ସନ୍ତୁଷ୍ଟ ହେଲେ । ଦେବେନ୍ଦ୍ର ସାନପୁଅ । ସାଇକୋଲଜିରେ ଗବେଷଣା କରେ । ଭାରି ସୁନାମ କଲାଣି, ଆହୁରି କରିବ । ନମିତା ସବା ସାନଝିଅ । ଏମ୍.ଫିଲ୍. କରୁଛି ଇଂରାଜୀରେ । କହୁଚି ବାହା ହବ ନାଇଁ, ପ୍ରଫେସର ହବ । ସ୍ତ୍ରୀ ନିରୂପମା ଅଦ୍ଭୁତ ମହିଳା । ସମଗ୍ର ପରିବାରକୁ ସମ୍ଭାଳି ଆସିଛନ୍ତି ତିରିଶବର୍ଷଧରି । ମାନଧାତା ମହାପାତ୍ର ତାଙ୍କୁ ଯେତିକି ସ୍ନେହ କରନ୍ତି, ସେତିକି ସମ୍ମାନ ଦିଅନ୍ତି । ଦୋଅଡ଼ପକ୍ଷ ସ୍ତ୍ରୀ ବୋଲି ତାଙ୍କର ଅନେକ ସମୟରେ ମନେପଡ଼େନାହିଁ; କିନ୍ତୁ ମନେପଡ଼ିଲେ ବର୍ଷା-ବତାସିରେ ସବୁ କବାଟ ଝର୍କା ସାହାଣ ମେଲା ହୋଇଗଲା ପରି ଲାଗେ । – ସେ ଅଣ୍ଡାଳି ହୁଅନ୍ତି ନିରୂପମାଙ୍କ ପାଇଁ । ତାଙ୍କୁ ପାଇଗଲେ ଦମ୍ଭ ଲାଗେ । ନିରୁପମା ତାଙ୍କ ଆଖିକୁ ଚାହିଁଦେଲେ ତାଙ୍କ ଭିତରର ସବୁ ଅନ୍ଦିକନ୍ଦି ବୁଝିଯାଆନ୍ତି – ତାଙ୍କୁ ସମ୍ଭାଳିନିଅନ୍ତି, ଯେମିତି ସମ୍ଭାଳିଆସିଛନ୍ତି ସେତେ ବଡ଼ ପରିବାରର ଦାୟିତ୍ୱ ! ସେ କିନ୍ତୁ ଜାଣନ୍ତି ଯେ, ମାନଧାତା ମହାପାତ୍ରଙ୍କୁ କେହି କେବେ ଦୟା ଦେଖେଇଲେ ସେ ଭୟଙ୍କର ଚିଡ଼ିଯାଆନ୍ତି । କାହା ପାଖରୁ ତଳହାତରେ ସେ କିଛି ନେଇନାହାନ୍ତି; ସ୍ତ୍ରୀ ପାଖରୁ ବି ନୁହେଁ । ଏଣୁ ଖୁବ୍ ସତର୍କ ରହି ତାଙ୍କୁ ସମ୍ଭାଳିବାକୁ ହୁଏ ।

ବତି ଜଳିଲାପରେ ସମସ୍ତେ ତାଙ୍କୁ ଅନେଇଲେ । ମାନୁ ମହାପାତ୍ର ବେଶ୍ ସୁସ୍ଥ ଜଣାଯାଉଥା'ନ୍ତି । କୌଣସି ଅସୁବିଧା ତା'ହେଲେ ନାହିଁ । ନମିତା ବାପାଙ୍କୁ ଚା' କପେ ବଢ଼େଇଦେଇ ତାଙ୍କ ଚୌକି ପାଖରେ ଆଣ୍ଠେଇ ବସିପଡ଼ିଲା । କହିଲା, ''ବାପା, ସୁରଭାଇଙ୍କ ଚିଠି ଏଇ ସଞ୍ଜବେଳେ ଆସି ପହଞ୍ଚିଲା । ସେମାନେ ପଅରଦିନ, ମାନେ ରବିବାର ତିନିଟାବେଳେ ଏଠି ଓହ୍ଲେଇବେ !''

ସେ ଚୌକିରେ ସଳଖି ବସିଲେ ! ''ଆଚ୍ଛା, ଆଚ୍ଛା, ମିଚୁ ବି ସେଇଆ ଟେଲିଫୋନ୍‌ରେ କହୁଥିଲା !'' ସ୍ତ୍ରୀଙ୍କୁ ଚାହିଁ କହିଲେ, ''ସୁର ପାଇଁ କ'ଣ ସବୁ ପିଠା କରୁଚ ? ସେ ଟୋକାର ରୁଚି ଆଉ ବଦଳିଲାନାଇଁ । ମଫସଲୀ କାହାଁକା; ଗୁଡ଼ାଏ ଆରିଷା ଖାଇବ, ଚିତଉ, ଧୂଆପୁରମଣ୍ଡା, ଅଟକାଳି ଖାଇବ । ତାକୁ କ'ଣ ଲାଗେ ଏସବୁ କେଜାଣି ?''

''ସେଇଟା ବାପା, ହେରିଡେଟେରି, ମାନେ ପୁରୁଷାନୁକ୍ରମିକ । ତୁମର ନ ହେଲେ ମା'ଙ୍କର ସେମିତି ରୁଚି ଥିବ, ନ ହେଲେ ଆମର ଜେଜେମା'ଙ୍କର ନିଶ୍ଚୟ ଥିବ ।''

ଚା’ ପିଇ ପିଇ ମାନଧାତା ଅଳ୍ପ ହସି କହିଲେ, ‘‘ସେଇଟା ତୋର ପାଠ କଥା । ସେମିତି ହେଲେ ତ ଗୋଟାଏ ଗୋଟାଏ ପରିବାରରେ ଖାଲି ଚିଡଉ ଖାଉଥାନ୍ତେ ।’’ ସମସ୍ତେ ହସିଲେ । ବାପା ତା ପାଠକୁ ଏମିତି ଥଟ୍ଟା କରନ୍ତି । ଦେବେନ୍ଦ୍ରକୁ ଭଲଲାଗେ ।

‘‘ନାଇଁ ବାପା, ଆମ ପାଠ କ’ଣ ସେଇଆ କହୁଚି ? ସେଥିରେ...’’

‘‘ଥାଉ ଥାଉ’’ ମଝିରେ କହିଲା ନମିତା, ‘‘ଆମର ଏଇନା ସାଇକୋଲଜି ପଢ଼ିବାକୁ ବେଳ ନାଇଁ ।’’

‘‘ଏମିତି କୌଣସି ବିଷୟ ଶୁଣୁ ଶୁଣୁ ଚିଡ଼ିବା ମଧ୍ୟ ଗୋଟାଏ ପ୍ରକାର ମନସ୍ତାତ୍ତ୍ୱିକ ଲକ୍ଷଣ ।’’

‘‘ବୁଝିଲ ଦେବୁଭାଇ, ତମକୁ ସବୁ ସେମିତି ଦେଖାଯାଉଚି ।’’

‘‘ଦୁଃଖର କଥା, ଏତେ ପାଠ ପଢ଼ି ତତେ କିଛି ଦେଖାଯାଉନାହିଁ ।’’

ନିରୁପମା ପିଲାଙ୍କ କଳି ତୁଟାଇବାକୁ କଥା ବଦଳାଇ କହିଲେ, ‘‘ଆରେ, ସୁରଭାଇ ଆସିବ; ସମସ୍ତେ କୁଆଡ଼େ ଭୋଜି କରି ଯିବାକୁ କହୁଥିଲ ପରା ।’’

‘‘ସେଇଟା ତ ସ୍ଥିର ହୋଇସାରିଚି । ନଭେମ୍ବର ସାତ ତାରିଖ ରବିବାର ।’’ ଦେବେନ୍ଦ୍ର ନିଷ୍ପତ୍ତିର ସ୍ୱରରେ କହିଲା ।

‘‘ନଭେମ୍ବର ସାତ ?’’ – ଅଚାନକ ପଚାରିଲେ ମାନୁବାବୁ ।

ନିରୂପମା କ’ଣଟାଏ ହଠାତ୍ ବୁଝିଗଲା ପରି କହିଲେ, ‘‘ନା, ସାତ ତାରିଖ କର ନାହିଁ – ତା’ ଆର ରବିବାର କରନା । ଚୌଦ ତାରିଖଟା ଭଲ ହେବ ।’’

‘‘କିନ୍ତୁ ସାତଟାହିଁ ସାତ ହବ । ତୁମେ ମା’ ଆଉ ଏମିତି କଥାଟାକୁ ବିଗାଡ଼ନାଇଁ ।’’

‘‘ନାଇଁ ମା’ ସେମିତି କରନା । ଆମେ ଭାଇଙ୍କୁ ଚିଠି ଦେଇସାରିଚୁ ପରା !’’ କହିଲା ନମିତା ।

‘‘ଆଚ୍ଛା, ଠିକ୍ ଅଛି, ପିଲାଏ ଯଦି ଚାହୁଁଛନ୍ତି ସେଇ ସାତ ତାରିଖହିଁ ରହିଲା ।’’ ମାନଧାତା ମହାପାତ୍ରଙ୍କର ସ୍ୱରରେ କଥା ଛିଣ୍ଡିଗଲା ।

ପିଲାଏ ଖୁସିରେ ଉଠି ଚାଲିଗଲେ ।

ନିରୁପମା ବସିରହିଲେ ତଳକୁ ଚାହିଁ କିଛି ସମୟ । ପଇଁତ୍ରିଶ ବର୍ଷତଳର ଏଇ ନଭେମ୍ବର ସାତ ତାରିଖ ମାନଧାତାଙ୍କର ଭିତର ଉଖାରି ହେଇଯାଉଥିବ । ସେ ଅନୁଭବ କରୁଥାନ୍ତି ! କିଛି କହିବାର ଉପାୟ ନାହିଁ । ସେ ଯଥାସମ୍ଭବ ଶାନ୍ତ, ସ୍ଥିର ହସଟି ଭିତରେ ଅନେଇଲେ ସ୍ୱାମୀଙ୍କୁ ! କହିଲେ, ‘‘ଆଜି ପାଗ ଏମିତି ହେଇଚି । ଖାଇବା ଏଇ ଉପରକୁ ନେଇଆସିବି କି ?’’

ମାନଧାତା ବୋଧହୁଏ କିଛି ଶୁଣିପାରିଲେ ନାହିଁ । ଅନ୍ତତଃ ଶୁଣିବାର କୌଣସି ଲକ୍ଷଣ ନଥିଲା ।

ସୁରକୁ ଦୁଇବର୍ଷବେଳେ ନିରୂପମା ଆସି ତା' ଦାୟିତ୍ୱ ନେଲେ – ଗୋଛା ଗୋଛା ବିଜୁଳି ଆକାଶରୁ ଛିଡ଼ିପଡୁଥିଲା । ଅନ୍ଧାର ଗର୍ଜୁଥିଲା ଝଡ଼ରେ ସମୁଦ୍ରପରି । ଅନେକ ସଂଗ୍ରାମ ପରେ ଗଛମାନଙ୍କର ଛିନ୍ନଛତ୍ର ଅବୟବ କୁଢ଼ କୁଢ଼ ଗଦାହୋଇଥିଲେ ଏଠି ସେଠି । ନିରୂପମା ପ୍ରଥମେ ଶାଢ଼ିଟିଏ, ଚୁଡ଼ିଟିଏ, ନାରୀଟିଏ, ମହିଳାଟିଏ ଏବଂ ଶେଷରେ ସର୍ବଂସହା ମା'ଟିଏ ହେଇ ସେ ଅବିନ୍ୟସ୍ତ ପୃଥିବୀକୁ ଆୟତ୍ତ କଲେ, ସଜାଡ଼ିନେଲେ, ପାଳିନେଲେ ! ତିରିଶ ବର୍ଷ ଭିତରେ ସେ କେବେ ପଚାରିନାହାନ୍ତି କେମିତି ମାନଧାତାଙ୍କ ସଂସାର ସେମିତି ବିଧ୍ୱସ୍ତ ହୋଇଯାଇଥିଲା । କୌତୂହଳ ହେଇଚି; କିନ୍ତୁ ସେସବୁ ଜାଣିବାକୁ ସେ ପ୍ରୟୋଜନ ମନେକରିନାହାନ୍ତି – ମାନଧାତା ମହାପାତ୍ର ଅନେକ ସମୟରେ ସେ ଅତଡ଼ା ଦାଢ଼ରେ ଠିଆହେଇ ନଦୀଗର୍ଭର ବିକରାଳ ଭଉଁରିକୁ ଚାହିଁରହିଥିବାର ସେ ଦେଖିଛନ୍ତି । କିନ୍ତୁ ଅସମ୍ଭବ ଧୈର୍ଯ୍ୟ ସେ ମଣିଷଟାର ! କେବେ ପାଟି ଫିଟେଇ ସେ ନିରୁପମାଙ୍କୁ ପଦଟିଏ ବି କହିଦେଇନାହାନ୍ତି । ଅନେକ ବର୍ଷରେ ସେଦିନ ହୁଏତ ପୁଣି ସେ ଅତୀତର ଘା'ଟା ଖଣ୍ଡିଆ ହେଇ ରକ୍ତ ଝରୁଥିଲା । ନିରୁପମା ଚୁପ୍‌ରହି ଅପେକ୍ଷା କଲେ ।

କିଛି ସମୟ ପରେ ମାନୁବାବୁ ଗୋଟିଏଆଡ଼େ ଚାହିଁରହି କହିଲେ, ''ବୁଝିଲନା, ଆଜି ଗୋଟେ ବିଚିତ୍ର କଥା ଘଟିଲା ।''

'ଓ...ତା'ହେଲେ ଏଇଟା ଆଉ ଗୋଟାଏ କ'ଣ କଥା ।' ନିରୁପମା ଅନେକ ଆଶ୍ୱସ୍ତ ବୋଧକଲେ । ତାଙ୍କ ମୁହଁରୁ ମେଘ ଓହ୍ଲେଇଯିବାରୁ କପାଳ ଚକ୍‌ଚକ୍ ଦେଖାଗଲା । ସେ ଯଥେଷ୍ଟ ଆଗ୍ରହରେ ପଚାରିଲେ – ''କ'ଣ ଘଟିଲା ?''

ଆଜି କିଛି ସମୟ ପାଇଁ ମୋର ପରିଷ୍କାର ମନେହେଲା ଯେ, ମୁଁ ଏ ଘରର କେହି ନୁହଁ । ମୁଁ ଗୋଟାଏ ବାହାର କୋଉଠିକାର ମଣିଷ ! ଏ ଘର ମୋର ସମ୍ପୂର୍ଣ୍ଣ ଅପରିଚିତ !''

''ହଅଅ ! ତମର ଯୋଉ କଥା !'' – ହସି ହସି କହିଲେ ନିରୁପମା – ''ଏମିତି ଅସମ୍ଭବ କଥାଗୁଡ଼ା କାଇଁକି ଭାବୁଚ ?''

''ତୁମେ ବିଶ୍ୱାସ କରିବନାଇଁ, ମୁଁ ଜାଣେ ! ଆଉ କିଏ କହିଥିଲେ ମୁଁ ବି ବିଶ୍ୱାସ କରିନଥାନ୍ତି; କିନ୍ତୁ ନିଜର ଅନୁଭବକୁ କେମିତି ଉଡ଼େଇଦେଇହେବ ? ମୁଁ ପରିଷ୍କାର ଚାହିଁଥାଏ, ସେଇ କଣଟାରୁ ମେଘ ଟେକିରଖିଥାଏ; ସେ ମେଘ, ସେ ଟାୱାର, ସେ ଝାଉଁଗଛ ଖୁବ୍ ପରିଚିତ ଲାଗୁଥାଏ । ସେଇଠି ଥାଇ ବାହାରୁ ସତେ ବା ମୁଁ ଏ ଘରଟାକୁ ଦେଖୁଥାଏ ଏବଂ ଚିହ୍ନିପାରୁନଥାଏ । ଏଇଠି ଠିଆହେଇ ଏ ଚୌକି, ଏ କାନ୍ଥକୁ ଚିହ୍ନି ପାରୁନଥାଏ, ଏ କବାଟଟା ଯେମିତି ମୁଁ ଜାଣେନାହିଁ କୁଆଡ଼କୁ ଫିଟିଛି – ହେଇ ତ ଦେବୁ ଆସିଲାଣି – ତାକୁ ପଚାରିବା ।

ଦେବେନ୍ଦ୍ର ବାପାଙ୍କର ଶେଷବାକ୍ୟ ଶୁଣିଦେଇଥାଏ । ସେ ବସୁ ବସୁ କହିଲା – ''କବାଟଟା ଗୋଟାଏ ସିମ୍ବଲ ବାପା ! ତା'ର ସେପାଖେ ସବୁବେଳେ ଗୋଟାଏ ମିଷ୍ଟ୍ରି, ମାନେ ଗୋଟାଏ...''

ନିରୁପମା ଦେଖିଲେ ଯେ କଥାବାର୍ତ୍ତା ଆଉ ଅନ୍ୟଆଡ଼େ ବାଗେଇଲାଣି । ସେ ଆସ୍ତେ ଉଠୁ ଉଠୁ କହିଲେ, ''ଉପରକୁ ଖାଇବା ତା'ହେଲେ ପଠାଇଦେବି । ଦେବୁ, ତୁ ବାପାଙ୍କ ସାଙ୍ଗେ ଏଇଠି ଖାଇବୁ ନା ତଳକୁ ଆସିବୁ ?''

''ନା କାହାରି ଖାଇବା ଉପରକୁ ପଠାଇବା ଦରକାର ନାହିଁ, ଆମେ ତଳକୁ ଚାଲିଆସିବୁ । ସେଇଠି ସମସ୍ତେ ଏକାଠି ଖାଇବା ।''

ନିରୁପମା ଖୁବ୍ ଖୁସିହୋଇ ଚାହିଁଲେ । ଖୁସିରେ ହସିଲେ ସେ ଏବେ ବି ଅଦ୍ଭୁତ ସୁନ୍ଦର ଦେଖାଯାନ୍ତି । ସେ ଆସ୍ତେ ପରଦା ଆଡ଼େଇ ଚାଲିଗଲେ ।

''ହଁ ବାପା, କବାଟ ବିଷୟ କହୁଥିଲି –''

''ଆରେ ଶୁଣ, କବାଟ କଥା ମୁଁ ଶୁଣିବାକୁ ଚାହେଁନାହିଁ – ତମ ବିଦ୍ୟାରେ ଅତୀତଟାକୁ କେମିତି ବୁଝାଅ ?''

''ମାନେ ?''

''ମାନେ ଅତୀତଟା ମୃତ ନା ଜୀବନ୍ତ ?''

''ଆମେ ତାକୁ ଏକପ୍ରକାର ଜୀବନ୍ତ ବୋଲି ଭାବୁ । ସେ ଜିନିଷ ଅବଚେତନା ଭିତରେ ଶୋଇରହିଥାଏ । କିନ୍ତୁ ମଣିଷର ସମସ୍ତ ଆଚରଣ, ରୁଚି, ତା'ର କାମ, କଥା, କୃତିତ୍ୱ ସବୁ ନିୟନ୍ତ୍ରଣ କରୁଥାଏ ।''

''ଆଚ୍ଛା, ସେ କଥା ବୁଝିହଉଚି, ଆମେ ତାକୁ ସଂସ୍କାର ବୋଲି ଜାଣିଚୁ ! ସେଇଟା ଗତଜନ୍ମମାନଙ୍କରୁ ମଧ୍ୟ ସଞ୍ଚିତ ହେଇ ରହିଥିଲା । ସ୍ମୃତି ରହେନାହିଁ; କିନ୍ତୁ ସଂସ୍କାର ରହେ । ତେବେ ମୁଁ ଜାଣିବାକୁ ଚାହୁଁଥିଲି ଯେ ଏ ବଖରାରୁ ସେ ବଖରାକୁ ଗଲାଭଳି ଆଉ ଗୋଟାଏ ସମୟକୁ ଯାଇହେବ କି ?''

''ତା' ଉପରେ ତ, ବାପା, ଏବେ ହଜାରେ କଥା ହେଲାଣି । ଅବଚେତନା ଭିତରେ ବୁଡ଼ିରହିଥିବା ଅନେକ ସ୍ମୃତିକୁ ପୁଣି ତିଆରିନିଆଯାଇପାରୁଚି ! ଗୋଟେ ବୁଢ଼ାକୁ ତା'ର ପାଞ୍ଚବର୍ଷର ଚେତନାକୁ ଫେରାଇ ନିଆଯାଇପାରୁଛି ! ଅନୁମାନ କରାଯାଉଚି ଯେ ଏଥର ପୂର୍ବଜନ୍ମର ସ୍ମୃତି ବା ସଂସ୍କାରକୁ ମଧ୍ୟ ଖୋଲିଦେଇହେବ ।''

–''ହଁ !'' ମାନୁବାବୁ ଗମ୍ଭୀର ଜଣାଗଲେ ।

ଦେବୁ ସାମାନ୍ୟ ଇତସ୍ତତଃ ହେଲା, କାଳେ ବାପା ବିରକ୍ତ ହେଇଯାଇପାରନ୍ତି, ଏଇ ଭୟରେ । ମାନୁବାବୁ ମନକୁ ମନ ପଚାରିଲାପରି କହିଲେ, ''ଅଦେଖା ରାଜ୍ୟ କିମ୍ବା ଅଜଣା ସମୟକୁ ଜଣେ କ'ଣ ଯାଇପାରିବ ନାହିଁ ?''

ଦେବୁ କିଛି କହିବା ଆଗରୁ ଖବର ଆସିଲା ଯେ ବଢ଼ାହେଇଗଲାଣି । ଖାଇବାକୁ ଯିବାପାଇଁ ମା' ଡକେଇପଠେଇଛନ୍ତି – ଉଭୟେ ଉଠିଲେ । କୌଣସି କାରଣରୁ

ଭାରାକ୍ରାନ୍ତ ଜଣାଗଲେ ମାନୁବାବୁ; ଆଉ ଦୁଇଦିନଯାଏଁ ସେ ବିଷୟ ଉଠେଇଲେ ନାହିଁ, ବୋଧହୁଏ ଭୁଲିଗଲେ । ସୁରେନ୍ଦ୍ର ଆସିବା ଆୟୋଜନରେ ଘରେ ଗୋଟାଏ ପ୍ରକାର ଛନଛନ ଭାବ ଭରିରହିଥାଏ । ସବୁଠାରୁ ସ୍ଥିର ଥାଆନ୍ତି ମାନୁବାବୁ । ସେଇଟା ତାଙ୍କର ସ୍ୱଭାବ । ସେଦିନ ପନ୍ଦର ମିନିଟ୍ ଡେରିରେ ପ୍ଲେନ୍ ଓହ୍ଲେଇଲା । ଆଉ ପନ୍ଦର ମିନିଟ୍‌ରେ ଦୁଇଟାଯାକ ଗାଡ଼ିରେ ସମସ୍ତେ ଆସି ପହଞ୍ଚିଗଲେ ।

ମାନୁବାବୁ ସେଇ ଉପର ପିଣ୍ଡାରେ ଥାଇ ଅନେଇଥାନ୍ତି । ଦେବୁ, ନମିତା, ତା' ମା' ଗାଡ଼ିରୁ ଓହ୍ଲେଇଲେ । ସୁରେନ୍ଦ୍ର ତା' ପୁଅକୁ ହାତ ଧରି ଓହ୍ଲେଇଆଣିଲା । ତା' ପଛରେ ତା' ସ୍ତ୍ରୀ । ସୁରେନ୍ଦ୍ରର ପୁଅ ପପୁକୁ ମାନୁବାବୁ ଦେଖୁ ଦେଖୁ କେମିତି ଗୋଟାଏ ଚମକିଲାପରି ହେଲେ । ତାଙ୍କ ଭିତରେ କ'ଣଟାଏ ଛକ୍‌କରି ଅଟକିଗଲା, ପୁଣି ହୁଗୁଳି ବୋହିଗଲା । ସାଏବ ପିଲାପରି ଚେହେରା, ସେମିତି ବେଶ, ସେମିତି ଢଙ୍ଗ ! — ସେ ବାପାର ହାତ ଧରି ଠିଆହୋଇଥାଏ, ତା'ପରେ ସେ ଚାରିଆଡ଼କୁ ବଲବଲ ଚାହିଁଲା । ଛନଛନ ହେଲା, ବାପର ହାତକୁ ଛିଞ୍ଚାଡ଼ିଦେଇ କୋଠା ଉପରକୁ ଚାହିଁଗଲା ।

ତା'ପରେ ମାନୁବାବୁଙ୍କୁ ଦେଖିଦେଇ ବଡ଼ପାଟିରେ ଚିହିଁକିଲା, "ମାନା — ମାନା — !" ସେ ଡାକରେ ମାନୁବାବୁ ହଠାତ୍ ବିବର୍ଣ୍ଣ ଦେଖାଗଲେ ! ତାଙ୍କୁ ସେଭଳି ଆଉ କେହି ଡାକିପାରେ ବୋଲି ସେ କଳ୍ପନା କରିନଥିଲେ । ସେ ବାଲ୍‌କୋନିର ବାଡ଼ ଧରି ଠିଆହୋଇ ରହିଗଲେ ।

ତକ୍ଷୁ ପପୁ କାହାକୁ ଖାତିର୍ ନକରି ଘର ଭିତରକୁ ପଶିଆସିଲା — "ଆରେ ରହ", "ଆରେ ପଡ଼ିଯିବୁ" — କହି କହି ବାପ ମା' କକେଇ ଗୋଡ଼େଇଲେ ! କିନ୍ତୁ ପପୁ ସତେବା ବହୁକାଳୁ ଏ ଘରକୁ ଜାଣେ, ଏମିତି ସେ ପଶିଗଲା — ପାହାଚ୍ ଡେଇଁ ଯାଉଥିଲା । ସୁରେନ୍ଦ୍ର ଯାଇ ତାକୁ ଧରିପକାଇଲା । ଅନ୍ୟମାନେ ଆସି ଘେରିଗଲେ । ମା' ପଚାରିଲେ, "କିରେ, ଇଏ ଏମିତି କ'ଣ ହଉଚି ?"

— "ସାଇବ ପିଲା ତ... ତାକୁ ଛାଡ଼ିଦଉନ୍ତୁ; ସେ ଏମିତି କୁଆଡ଼େ ଯିବ କି ?"

ସମସ୍ତେ ପପୁ ପଛେ ପଛେ ଚାଲିଥାନ୍ତି । ସେ ତା'ର ଠିକ୍ ବାଟ ବାରି ଆସି ମାନୁବାବୁଙ୍କ ଶୋଇବା ଘରେ ପଶିଲା — ବାକି ସମସ୍ତେ କାବା ହୋଇ କଥା ହଉ ହଉ ପଶିଆସିଲେ ।

"କିରେ କିଏ ବତେଇଦେଲାପରି ଏ କ'ଣ ବାଟ ବାରିଦେଉଚି ।"

"ଖୁବ୍ ଆଶ୍ଚର୍ଯ୍ୟ କଥା" — ତୁମେ କେହି ତାକୁ ଡିଷ୍ଟର୍ବ କରନାହିଁ" — କହିଲା ଦେବୁ ।

ମାନୁବାବୁ ତଥାପି ବାହାରକୁ ଚାହିଁ ଠିଆହୋଇଥାନ୍ତି । ତାଙ୍କ ଦେହସାରା ରୁମ ଠିଆ ଠିଆ ହେଇଗଲା — ଶୋଇବାଘରୁ ଖପ୍‌ଖପ୍ ଡେଇଁଗଲା ପପୁ ।

ପିଣ୍ଡାରେ ପହଞ୍ଚି ସେମିତି ତାଳିମାରି ଚିତ୍କାର କଲା, "ମାନା ! ମାନା !" ଏବଂ ସମସ୍ତଙ୍କୁ ବିସ୍ମିତ କରି ମାନୁବାବୁ ଗର୍ଜି ଉଠିଲେ — "ୟୁ... ସଟ୍ ଅପ୍ ।"

ସେ ପପୁକୁ ସେମିତି ଥଟ୍ଟାକରି ଅଭିନୟ କରୁଥିଲେ କି ସତକୁ ସତ ରାଗିଯାଇଥିଲେ, ବୁଝିବାକୁ ସମଗ୍ର ପରିବାର ଥ'ହେଇ ଠିଆରହିଥାନ୍ତି । – ସେଇ ସ୍ତବ୍ଧତା ଭିତରେ ପପୁ ବିନା କାରଣରେ ଖଳଖଳ ହସିଉଠିଲା । ତା'ର ସାନ ହାତଟିକୁ ଉପରକୁ ଟେକି ଟିପରେ ମାନୁବାବୁଙ୍କୁ ଦେଖେଇ ପୁଣି କହିଲା... "ମାନା ! ମାନା" ...ଏବଂ ପୁଣି ହସିଲା ।

ମାନୁବାବୁ ବେତ ଚୌକି ଉପରେ ଲଥିକିନା ବସିପଡ଼ି ଗୋଟାଏ ନିଃଶ୍ୱାସ ରୋକି ତା'କୁ ଚାହିଁଲେ । ସେ ବି ତା'ପରେ ହୋ-ହୋ ହସିଉଠିଲେ ।

ଘଟଣା କ'ଣ ? ସମସ୍ତେ ତଟସ୍ଥ ହେଲାପରି ଚାହିଁଥାନ୍ତି ! ନାତି-ଗୋସେଇଁବାପ ଭିତରେ କ'ଣ ରହସ୍ୟ ଚାଲିଥାଏ, କେହି ବୁଝିବାର ଉପାୟ ନଥିଲା ।

ଦେବୁ ଗଳା ସଫାକରି ପଚ଼ାରିଲା, "ସୁରଭାଇ, ଏଇଟା ମୋତେ ଭାରି ଷ୍ଟ୍ରେଞ୍ଜ ଜଣାଯାଉଚି ! ପପୁ ଏମିତି ସବୁବେଳେ ବ୍ୟବହାର କରେ କି ?"

"ନା ନା" – କହି ସୁରେନ୍ଦ୍ର ଏବଂ ତା' ସ୍ତ୍ରୀ ଦୁହେଁ ପୁଅ ପାଖକୁ ଚାଲିଆସିଲେ । ଦେବୁ ହାଁ-ହାଁ କରି ତାଙ୍କୁ ମନାକଲା । ପପୁ ସାମ୍ନାରେ ଆଣ୍ଠେଇ ବସିପଡ଼ି କହିଲା, "ହାଲୋ... ଡୁ ୟୁ ନୋ ଆଓ୍ୱାର ଡାଡି ।"

ପପୁ ଆଖିମିଟିକା ମାରି ମୁଣ୍ଡ ଟୁଙ୍ଗାରି କହିଲା, "ୟେସ୍... ହି ଇଜ୍ ମାନା – ମାନା... ହିଁ-ହିଁ, ହି-ହି !" ସୁରେନ୍ଦ୍ର ଚଟ୍‌କିନା ତା' ମୁହଁରେ ହାତ ରଖି ତାକୁ ଜବରଦସ୍ତି ନେଇଗଲାବେଳକୁ ଦେବୁ ପୁଣି ବୁଲିଯାଇ ପଚ଼ାରିଲା, "ଡୁ ୟୁ ନୋ ଦିସ୍ ହାଉସ୍ ?"

– "ୟେସ୍... ୟେସ୍..."

ପପୁକୁ ତା ବାପା ଟେକିନେଇ ଚାଲିଗଲା ତଳକୁ । ସମସ୍ତେ ଆଉସବୁ କଥା ଭୁଲି କେବଳ ଏଇ ଅଦ୍‌ଭୁତ ଘଟଣାରେ ବିଚ଼ଳିତ ଏବଂ ଏକପ୍ରକାର ଆକ୍ରାନ୍ତ ରହିଥାନ୍ତି । ପପୁର ମା' କେବଳ କାନ୍ଦ କାନ୍ଦ ହୋଇ ପପୁକୁ ଆଉଁସିବାରେ ଲାଗିଥାଏ; ପୁଅର ବିପଦ ଆଶଙ୍କା କରି ବିକଳ ବିବର୍ଣ୍ଣ ହୋଇଯାଉଥାଏ । ସବୁଠୁ ବେଶି ମାଲିକାନା ଦେଖଉଥାଏ ଦେବେନ୍ଦ୍ର – "ଆରେ, ତମେସବୁ କିଛି ପାଟିକରନାହିଁ; କିଛି ଗୋଳମାଳ କରନାହିଁ । ଏଇଟା ଗୋଟାଏ ପାରା-ସାଇକୋଲଜିକାଲ କେସ୍ । କେହି କିଛି ବ୍ୟସ୍ତ ହୁଅନାହିଁ । ମୁଁ ସବୁ କରୁଛି । ମିନୁ, ମୋ ଟେପ୍ ରେକର୍ଡ଼ରଟା ନେଇଆ; ଧାଇଁଯା । ସୁରଭାଇ, ଏଇ ଡାଇନିଂ ଟେବୁଲରେ ପପୁକୁ ବସେଇଲ । ଦେଖ ଭାବୀ, ତମେ ଏମିତିହେଲେ ସବୁ ଭଣ୍ଡୁର ହୋଇଯିବ । ମୁଁ ତମକୁ ନିର୍ଭର ଜବାବ ଦେଲି ଯେ ପପୁର କିଛି ହୋଇନାହିଁ; ସେ ପୂରାପୂରି ଠିକ୍ ଅଛି । ତମେ ଖାଲି ଦେଖ ଏବଂ କିଛି ନକହି ଶୁଣ ।" କେଜାଣି କେମିତି ସମସ୍ତେ ଦେବୁକୁ ଚୁପ୍‌ଚାପ୍ ମାନିଗଲେ । ପପୁ ଡାଇନିଂ ଟେବୁଲ ଉପରେ ବସି ଗୋଡ଼ ଝୁଲଉଥାଏ; ଚାରିଆଡ଼େ ଚାହିଁ ମୁବମୁବ ହସୁଥାଏ ।

ହଠାତ୍ ନିରୁପମାଙ୍କୁ ଚାହିଁ ଆଙ୍ଗୁଠି ଦେଖେଇ କହିଲା, ‘‘ଡଲି !’’

ସେ ପ୍ରାୟ· ଚମକିପଡ଼ିଥାନ୍ତେ । ଗାଲରେ ହାତ ଦେଇ ଏଡ଼େ ଏଡ଼େ ଆଖିରେ ଚାହିଁରହିଲେ । ବିସ୍ମୟରେ ପାଟି ମେଲାରହିଗଲା ।

– ‘‘କିରେ, ମୋ ପିଲାବେଳର ଡାକ-ନାଁ ଇଏ କେମିତି ଜାଣିଲା ?’’

ସମସ୍ତେ ଥମ୍‌ହୋଇ ରହିଗଲେ । କାହାକୁ ଜଣାନଥିଲା ଯେ, ନିରୁପମାଙ୍କ ଡାକ-ନାଁ ‘ଡଲି’ ଥିଲା । ଦେବେନ୍ଦ୍ର ପ୍ରାୟ ଡାକ୍ତର ଢଙ୍ଗରେ ଟେପ୍ ରେକର୍ଡ଼ରକୁ ଚଳେଇଦେଇ ପପୁର ଆଖିକୁ ଚାହିଁଲା । ଆଖିଯୋଡ଼ିକ ସାମାନ୍ୟ ପେଚୁଆ – ମନେହେଉଥିଲା ଯେମିତି ସେଠିକା କୌଣସି ଜିନିଷ ତାକୁ ଦିଶୁନଥିଲା । ଦେବେନ୍ଦ୍ର ଏଇ ସନ୍ଦେହରେ ପଚାରିଲା, ‘‘ପପୁ, ହ୍ୱାୟାର ଇଜ୍ ୟୋର ମମି ?’’...

ପପୁ ପୂର୍ବଭଳି ନିରୁପମାଙ୍କୁ ଚାହିଁ ଖଳଖଳ ହସୁଥିଲା । ଆଙ୍ଗୁଠି ଦେଖେଇ କହୁଥିଲା, ‘‘ଡଲି – ଡଲି ।’’ ତା’ ବାପା-ମା’ ବ୍ୟସ୍ତ ହୋଇପଡ଼ିଲେ । ଦେବେନ୍ଦ୍ରର ତାଗିଦରେ କେବଳ ଚୁପ୍ ରହିଲେ ଭାରି କଷ୍ଟରେ ।

‘‘ନାଓ, ପପୁ, ପପୁ, ହ୍ୱାୟାର ଇଜ୍ ୟୋର ମମି ।’’ ପପୁ ଚୁପ୍‌ଚାପ୍ ମା’ ଆଡ଼େ ଚାହିଁଲା, ଅଳ୍ପ ହସିଲା । ଦି’ହାତ ଟେକି କାଖ ହେବାକୁ ଡାକିଲା – ‘‘ମମି ।’’

ମିତୁ ଝାମ୍ପମାରି ପୁଅକୁ ଟେକିନେଇ ଜାକିଧରିଲା; ଭଦ୍‌ଭଦ୍ ଗୁଡ଼ାଏ କାନ୍ଦିପକେଇଲା । ସମସ୍ତେ ଆଶ୍ୱସ୍ତ ବୋଧକଲେ । ଦେବେନ୍ଦ୍ର କିନ୍ତୁ ଚାହିଁରହିଥାଏ କୌତୂହଳରେ, ଅବିଶ୍ୱାସରେ । ପପୁ ସ୍ୱାଭାବିକ ହୋଇଯିବାରୁ ସୁରେନ୍ଦ୍ର ମଧ୍ୟ ସ୍ୱାଭାବିକ ହୋଇଗଲେ । ଚାକର ନୌକର ଯେ ସବୁ ରୁଣ୍ଡ ହୋଇଥିଲେ, ଯେ ଯାହା କାମକୁ ବାହାରିଗଲେ । ଜିନିଷ ବୁହାହେଲା । ସବୁ ଚାଲିଲା ଠିକ୍ ଯୋଜନା ଅନୁସାରେ । କିନ୍ତୁ ପପୁର ସେଇ କେତେ ମିନିଟ୍‌ର ଆଚରଣ ମେଘ-ରାତିରେ ବିଜୁଳିପରି ଚମକି ଯାଉଥାଏ ସମସ୍ତଙ୍କ ମନ ଭିତରେ ।

ସନ୍ଧ୍ୟାରେ ମାନଧାତା ମହାପାତ୍ର ଅନେକ ଦିନ ହେଲା ପଦାକୁ ବାହାରୁ ନଥିଲେ । ସେଇଦିନ ପାଇଜାମା ପଞ୍ଜାବି ପିନ୍ଧି ହାତୀଦାନ୍ତ ବେଣ୍ଟ ଲାଗିଥିବା ଶିଂଘ ବାଡ଼ିଟିଏ ଧରି ବୁଲିବାହାରିଲେ । ସାଙ୍ଗରେ ଆଲ୍‌ସେସିଆନ୍ କୁକୁରକୁ ଧରି ନୌକର ପିଲାଟି ଗଲା । ସାଢ଼େ-ଚାରିଟାରେ ଚା’ ପିଇବାବେଳେ ସେ ବିଶେଷ କିଛି କଥା କହିନଥିଲେ । ପପୁକୁ ଦେଖିବାକୁ ମାସେକାଳ ଆଗ୍ରହ ଦେଖାଉଥିଲେ ସୁଦ୍ଧା ଜମା ସେକଥା ସେ ଉଠାଉ ନଥିଲେ । ଆଉ କେହି ମଧ୍ୟ ସାହସ କରି ପପୁକୁ ତାଙ୍କ ସାମ୍ନାକୁ ଆଣିବା କଥା ଚିନ୍ତା କରିପାରିନଥିଲେ ।

ସେ ରାସ୍ତାଧରି ଗଲାବେଳେ ଯେ ଯାହା ଢଙ୍ଗରେ ମାନୁବାବୁଙ୍କୁ ସମସ୍ତେ ପଛରୁ ଅନେଇଥାନ୍ତି । ଘରଟା କେମିତି ଅଜବ ଧରଣର ଚୁପ୍‌ଚାପ୍ ହୋଇଯାଇଥାଏ । କ’ଣଟାଏ ମଡ଼େଇହେଇ ପଡ଼ିଥାଏ ସମସ୍ତଙ୍କ ଉପରେ । କେହି ଆଉ ଖୋଲାମନରେ କଥାବାର୍ତ୍ତା ହେଇପାରୁନଥାନ୍ତି ।

ଦେଖାଗଲା ଯେ, ଦେବୁ ତା' ବଖରାରେ କିଛି ଚୌକି ପକେଇ ସମସ୍ତଙ୍କୁ ଡାକିନେଇ ବସେଇଲା । ପପୁ ଶୋଇଯାଇଥିବାରୁ ଜଣକୁ ଜଗେଇଦେଇ ମିତୁ ମଧ ଆସି ବସିଲା । ଦେବୁ ବୁଝେଇବା ଢଙ୍ଗରେ କହିଲା, ''ସମସ୍ତେ ମନଦେଇ ଶୁଣ, ମୁଁ କଣ କହୁଚି ! ଏଇଟା ଖୁବ୍ ଜରୁରି ସମସ୍ତଙ୍କର ଜାଣିବା – ବାପାଙ୍କୁ ମୁଁ ଏକୁଟିଆ ଦେଖି ବୁଝେଇଦେବି ! – କ'ଣ ହେଲା ଯେ, ପପୁ ଆଜି ସେମିତି ହେଲା ? ତା'ର ଅନେକ କାରଣ ଥାଇପାରେ; କିନ୍ତୁ ମତେ ଲାଗୁଛି ଯେ, ସେ ତା'ର ପୂର୍ବଜନ୍ମକଥା କହୁଛି । ଏମିତି ଅନେକ ରିପୋର୍ଟ ରହିଛି । ଏଇ କେସ୍‌ଟାରେ ଅସୁବିଧା ହେଲା ଯେ, ସେ ତାର ପୂର୍ବ-ପରିଚୟ ଦେଇପାରିନାହିଁ ଏଯାଏଁ । ଆଉ ମଧ ସେ ଏଯାଏଁ ସେ ଅଞ୍ଚଳର ଭାଷା କହିପାରିନାହିଁ । ଗୋଟିଏ କଥା ନିଶ୍ଚିତରୂପେ ଜଣାଯାଉଛି ଯେ, ବାପା ଏବଂ ମା'ଙ୍କୁ ସେ ପିଲାବେଳେ ଜାଣିଚି ଖୁବ୍ ପାଖରୁ; ଘନିଷ୍ଠ ଭାବରେ ଜାଣିଛି । ସେ କିଏ ହୋଇପାରେ ବାପା ମା' ହିଁ ଆମକୁ କହିପାରିବେ !''

ନିରୁପମା ଛେପ ଢୋକିଲେ ! କେମିତି କହିବେ – ସେତେବେଳେ 'ମୋ ନାଁ ଡଲି ଥିଲା । ସମସ୍ତେ ମତେ ସେଇ ନାଁରେ ଡାକୁଥିଲେ । ଇଏ କି ସିଏ ଡାକୁଥିଲା ବୋଲି କହିହେବନାହିଁ ।'

''ଆଚ୍ଛା... ମା' ! ଟିକିଏ ମନେପକାଅ ! – ତୁମ ସାଙ୍ଗରେ ଖୁବ୍ ଘନିଷ୍ଠ କିଏ ଥିଲା ? ଆଉ କିଏ ତମର ପରମ ଶତ୍ରୁ ଥିଲା ? – ବରଂ ତୁମ ସାଙ୍ଗରେ କିଏ ଝଗଡ଼ା କରିଥିଲା, କୁହ ? କାରଣ ବାପାଙ୍କୁ 'ମାନା' ବୋଲି ଡାକିଦେବାରୁ ସେ ଭୟରେ ଚିଡ଼ିଯାଇଥିଲେ – ତୁମେ ସମସ୍ତେ ଦେଖିଚ ।''

ସମସ୍ତଙ୍କ ମୁହଁଟିମାନ ଶୁଖିଗଲା । ପୁଣି ଆତଙ୍କ ମଡ଼େଇହେଇପଡ଼ିଲା । ଚୁପ୍‌ଚାପ୍ ସନ୍ଧ୍ୟା ନଇଁଆସୁଥିଲା ତିନିପୁରୁଷର ସେ ପୁରୁଣା ବଙ୍ଗଳା ଉପରକୁ ।

ସୁରେନ୍ଦ୍ର ଭାରି ଗମ୍ଭୀର ହୋଇ ବସିଥାଏ । କହିଲା, ''ଆଚ୍ଛା ଦେବୁ, ତୋ' କହିବା କଥା ଯଦି ଠିକ୍ ହୁଏ, ମାନେ, ପପୁ ଯଦି ପୂର୍ବଜନ୍ମକଥା ମନେପକଉଥାଏ, ତେବେ ଏମିତି ହଠାତ୍ କାହିଁକି ହବ । – ଅବଶ୍ୟ ଗୋଟାଏ ଖୁବ୍ ପିକ୍ୟୁଲିଅର କଥା ଯା' ଆଗରୁ ହେଇଚି । ମିତୁ, ମନେପକାଅ – ଯେଉଁ ଦିନ ମାର୍ଟିନ୍ ଆସିଥିଲା ଆମ ଘରକୁ । ଆମ ଆଲବମ୍ ଦେଖୁଥିଲାବେଳେ ବାପାଙ୍କ ଫଟ ଦେଖି ପପୁ କେମିତି ପାଟିକରିଥିଲା – ଚିତ୍‌କାର କଲାଭଳି ! ତା' ଆଗରୁ ସେଇ ଫଟ ସେ ଅନେକ ଥର ଦେଖିଥିଲା – ସେମିତି ତ କେବେ ହେଇନଥିଲା ।''

ଦେବେନ୍ଦ୍ର କ'ଣ କହିବାକୁ ଯାଉଥିଲା; ତା' ଭାଉଜ ମିତୁ କହିବାରୁ ତୁନିପଡ଼ିଗଲା । ମିତୁ କହିଲା, ''ମୋର ଏବେ ମନେପଡୁଚି । ସେ ବାପାଙ୍କ ଫଟଟାକୁ ଖୁବ୍ ବେଶି ଦେଖୁଥିଲା । ଖୋଜି ଖୋଜି ସେ ଫଟଟାକୁ ବାହାରକରୁଥିଲା – ତା' ଉପରେ ଟିପ ଘୋଷାରୁଥିଲା । ଆମେ ଭାବୁଥିଲେ ଯେ, ସେ ବାପାଙ୍କୁ ନଦେଖି ଖୁବ୍ ଭଲପାଉଥିଲା –''

"ତା' ହେଲେ ଭାବୀ, ଏଇଟା ପୂରା ପ୍ରମାଣିତ ହୋଇଗଲା । ପପୁର ସ୍ମୃତି ତା' ଭିତରେ ଛଟପଟ ହେଉଥିଲା; କିନ୍ତୁ ଠିକ୍ ପ୍ରକାଶ ପାଇପାରୁନଥିଲା । ଏଠିକି ଚାଲିଆସିବାରୁ ପୁରୁଣା ପରିବେଶରେ ବାପାଙ୍କୁ ଦେଖିଦେଇ ହଠାତ୍ ଦ୍ୱାର ଫିଟିଗଲା । ମୁଁ ଭାବୁଚି, ପପୁ ଏବଂ ବାପାଙ୍କର ଗୋଟାଏ ମୁହାମୁହିଁ ଇଣ୍ଟରଭ୍ୟୁ କରେଇବି ।"

ଚାରିଆଡ଼୍ରୁ ଆତଙ୍କର ସ୍ୱର ଶୁଣାଗଲା – "ନା, ନା, ନା, ନା ।"

ଦେବୁ ହସିଲା – "ଏଥିରେ କାହାରି କିଛି ଅନିଷ୍ଟ ହେବାର ଆଶଙ୍କା ନାହିଁ । ବରଂ ଏଭଳି କେସ୍ ଷ୍ଟଡିଟାଏ ବାହାରିଲେ ସେ ଦୁହେଁ ପୃଥିବୀବିଖ୍ୟାତ ହୋଇଯିବେ ।"

ପୁଣି ସେଇ ସ୍ୱର – "ନା... ଆମର ସେ ସବୁ ଦରକାର ନାହିଁ – ନା ନା !"

"ଶୁଣ, ଏମିତି କ'ଣ ଅଶିକ୍ଷିତଙ୍କ ଭଳି ହଉଚ ସବୁ ? ବାପା ବୋଧହୁଏ ଜାଣିସାରିଲେଣି, ସେ କିଏ । ତାଙ୍କୁ ଖାଲି ସିଧାସଳଖ ପଚାରିବା କଥା । ମୋର ପୂରା ବିଶ୍ୱାସ ହେଉଚି ଯେ ପପୁ ଅକ୍ଲେଶରେ ବାପାଙ୍କ ସାଙ୍ଗରେ ଓଡ଼ିଆରେ କଥାବାର୍ତ୍ତା ହୋଇପାରିବ । ମୁଁ କହୁଚି, ଏଇଟା ଏତେ ଡ୍ରାମାଟିକ୍ ହେବ ଯେ, କହିହେବନାହିଁ ! ତୁମେମାନେ ସବୁ ଚୁପ୍‌ରହି ଦେଖିବ । ମୁଁ ସବୁ କରିବି । ଆମେ ଭାରି ଲକ୍‌କି । ଏଇଟା ଗୋଟାଏ ବିଖ୍ୟାତ ଘଟଣା ହେବ । ମୁଁ ବାପାଙ୍କ ସାଙ୍ଗେ କଥାବାର୍ତ୍ତା ହେଇଯାଏ । ତାଙ୍କ ଫେରିବା ସମୟ ହେଇଗଲା ?"

ସମସ୍ତେ ଉଠିଲେ । ସୁରେନ୍ଦ୍ର ଦେବୁ ହାତ ଧରି ବାହାରକୁ ଚାଲିଲେ । ସେମାନେ ବୁଲାବୁଲି କରି ଫେରିଲାବେଳକୁ ମାନୁବାବୁ ଆସିସାରିଥାନ୍ତି । ଦୁଇଭାଇ ଉପରମହଲାକୁ ଉଠିଗଲେ । ବିନା କାରଣରେ ଦେବୁକୁ କେମିତି ଡରଡର ଲାଗୁଥାଏ ! ସେ ଭାବୁଥାଏ ସେଇଟା ଉଦ୍‌ବେଗ କେବଳ ।

ମାନୁବାବୁ ସେଇ ପଞ୍ଜାବି ପାଇଜାମା ପିନ୍ଧି ଆରାମଚୌକିରେ ବସିଥାନ୍ତି; ଅସ୍ୱାଭାବିକ ଗମ୍ଭୀର ଦିଶୁଥାନ୍ତି । ଅନ୍ୟ ସମୟ ହେଇଥିଲେ ଦେବୁର ସାହସ ନଥିଲା ସେ ବାପାଙ୍କୁ ସାମ୍ନା କରିବାପାଇଁ; କିନ୍ତୁ ସେ ସମଗ୍ର ଘଟଣାଟା ବୁଝିଚି ବୋଲି ଭାବୁଥିବାରୁ ତା'ର ହିମ୍ମତ ବଢ଼ିଯାଇଥିଲା । ସେ ଘର ଭିତରକୁ ପଶିଯାଇ ଗୋଟାଏ ଚୌକିରେ ବସି ସୁରେନ୍ଦ୍ରକୁ ଆଉ ଗୋଟାଏ ଦେଖାଇଦେଲା ।

"କୁଆଡ଼େ ଆସିଲ ?" – ଖୁବ୍ ଉଦାସ ଅନାତ୍ମୀୟ ସ୍ୱରର ପ୍ରଶ୍ନ ଶୁଣି ଉଭୟେ ସାମାନ୍ୟ ଦବିଗଲେ ।

ଦେବୁ କହିଲା, "ନାଇଁ ବାପା, ସେ ପପୁ ବିଷୟରେ... !!"

ତାକୁ କହିବାକୁ ନଦେଇ ମାନୁବାବୁ ସେଇଭଳି ସ୍ୱରରେ କହିଲେ, "ନା, ମୁଁ ବର୍ତ୍ତମାନ କିଛି ଶୁଣିବାକୁ ଚାହେଁନାହିଁ । ମୋର ଅନେକ କାମ ଅଛି କରିବାକୁ ।"

ଦେବୁ ଇତସ୍ତତଃ ହେଉଥିଲା । ସୁର କହିଲା, "ବାପା, ଦେବୁ ଯାହା କହୁଚି, ଯଦି ସତ ହୋଇଥାଏ, ତେବେ ଘଟଣାଟା ସିରିଅସ୍ ! ସେ ଟୋକା ସେମିତି କେବେ ବ୍ୟବହାର କରିନାହିଁ । ଆଶ୍ଚର୍ଯ୍ୟ କଥା, ସେ ତୁମକୁ ଦେଖୁ ଦେଖୁ ସେମିତି କାହିଁକି

ହେଲା ? ଦେବୁ କହୁଛି, ସେ ତାର ପୂର୍ବଜନ୍ମରେ ତୁମକୁ ଜାଣିଥିଲା ।...''

''ନନ୍‌ସେନ୍‌ସ ! ଦେବୁ କିଛି ଜାଣେନାହିଁ ! ସେ ଯାହା କହୁଛି ସବୁ ପୋଥିବିଦ୍ୟା । ତୁମେ ଏବେ ଯାଅ – ମୋର କାମ ଅଛି ।''

ଦୁଇଭାଇ ବାଧ ଡରକୁଳା ଛୁଆଙ୍କୁ ଭଳି ଉଠିଲେ ଏବଂ ଚାଲିଆସିଲେ । ଅନେକ ରାତିଯାଏଁ ସେ ଘରେ କେହି ଶୋଇପାରିଲେନାହିଁ । ନାନାପ୍ରକାର କଳ୍ପନାରେ ଘର ଉଛୁଳୁଥାଏ । ଉପର ବଖରାରେ ଆଲୁଅ ଜଳୁଥାଏ ରାତି ଗୋଟାଏ ପର୍ଯ୍ୟନ୍ତ ! ଦେବୁ କ'ଣ ଗୁଡ଼ାଏ ସବୁ ଲେଖିପକଉଥାଏ । ସୁରେନ୍ଦ୍ର ତା'ର ପୁରୁଣା ଡାଏରୀପତ୍ର ଘାଣ୍ଟୁଥାଏ । ନମିତା ଚେଷ୍ଟାକରୁଥାଏ ପଢ଼ିବାପାଇଁ; କିନ୍ତୁ ଅଧିକାଂଶ ସମୟ ଖାଲି କାନ୍ଥଟାକୁ ଚାହିଁ ରହିଯାଉଥାଏ । ନିରୁପମା ଘରୁ ଅଗଣା, ଅଗଣାରୁ ଘର ଚାଲବୁଲ ହେଉଥାନ୍ତି । ଏତେ ରାତିଯାଏଁ କାହିଁକି ଉପରେ ଆଲୁଅ ଜଳୁଚି ବୋଲି ତାଙ୍କ ମନରେ ଅନନ୍ତ ଦୁର୍ଭାବନା ।

କିଏ ଜାଣେ, କ'ଣ ରହସ୍ୟ ସେ ବିଚିତ୍ର ଘଟଣାଟିରେ ଲୁଚିରହିଥିଲା ? ହୁଏତ ଦେବୁ ଭାବୁଥିଲା, ତା' ନିଶ୍ଚୟ ପ୍ରେମ ଏବଂ ମୃତ୍ୟୁଜନିତ ହେଇଥିବ; ନହେଲେ ବାପା ଏତେ ଦୋହଲିଯିବା ଲୋକ ନୁହନ୍ତି । ସେମାନେ ଜନ୍ମ ହେବାର ପୂର୍ବ ଘଟଣା ନିଶ୍ଚୟ; ନହେଲେ କେହିହେଲେ ତ କିଛି ମନେରଖିଥାନ୍ତେ ! ମାନଧାତା ମହାପାତ୍ରଙ୍କର ଶତ୍ରୁ ଅସଂଖ୍ୟ ! କଥାକଥାକେ ଲୋକଟାକୁ ଶେଷକରି ନଈକୁ ଲାସ୍ ଫିଙ୍ଗିଦେବା ସେ କାଳର ସାଧାରଣ କଥା । ସେମିତି ଗୋଟାଏ କେହି ହୁଏତ ପଶିଆସିଚି – ପରିବାର ଭିତରକୁ । ହୁଏତ ସେ ଅନେକ ଗୁପ୍ତ ତଥ୍ୟ ଜାଣେ, ଯାହା ପ୍ରଘଟ ହେଇଯିବା ଭୟରେ ବାପା ସେମିତି ଚିଡ଼ିଉଠିଥିଲେ ।

ନିରୁପମା ପିଲାଦିନ କଥା ମନେପକାଇ ସେ ସମୟର ଲୋକଙ୍କ ସାଙ୍ଗରେ ସେଦିନର ଅନୁଭବକୁ ଯୋଡୁଥାନ୍ତି, ଭାବୁଥାନ୍ତି – କିଏ ହୋଇପାରେ ଏ ଆତ୍ମା ? ତାଙ୍କ ଭାଇନା, ଯେ କି ଟୋକା ବୟସରେ ହାଣଖାଇଗଲେ – ତାଙ୍କ କଥା ବେଶି ମନେପଡୁଥାଏ । ମନେପକେଇ ଦେହ ଶୀତେଇ ଉଠୁଥାଏ । ମାନଧାତାଙ୍କ ସାଙ୍ଗରେ ଭାଇନାଙ୍କର ଘୋର ଝଗଡ଼ା, ପାଟିତୁଣ୍ଡ, ଜିଦ୍ ମନେପଡୁଥାଏ । ସେ ଥରିଉଠୁଥାନ୍ତି ଗୋଟାପଣେ । ସେ ବିଭାହେଇଛନ୍ତି ସିନା, କିନ୍ତୁ ମାନଧାତାଙ୍କୁ ସେ ପ୍ରାଣେ ଭୟ କରନ୍ତି ଏବେ ମଧ । ତାଙ୍କ ସ୍ୱାମୀ ତାଙ୍କୁ କୌଣସି କଥାରେ ଏଯାଏଁ ଗାଳିପଦେ ଦେଇନାହାନ୍ତି; ତଥାପି ତାଙ୍କୁ ଦେଖିଲେ ବୁକୁ ଧଡ଼ଧଡ଼ ହେବା ତାଙ୍କ ଜୀବନସାରା ସେ ଲକ୍ଷ୍ୟ କରିଆସିଛନ୍ତି । ଧର ଯଦି ଭାଇନାଙ୍କ ଆତ୍ମା ଏମିତି ପପୁରୂପରେ ଜନ୍ମ ନେଇଥାଏ, ସେ ତ କହିଦେବ – ତାଙ୍କୁ କିଏ ମାରିଥିଲା, କେମିତି ମାରିଥିଲା । ଧର, ଯଦି... । ନିରୁପମା ଝାଳେଇଗଲେ । ଅଗଣାକୁ ଅନେଇଲେ, ଉପରୁ ଆଲୁଅ ତଥାପି ପଡ଼ିଥିଲା । ଧାର ଧାର ଲୁହ ଆଖିରୁ ବୋହିଗଲା । କାହିଁକି ବୋହିଗଲା, ସେ କହିପାରିନଥାନ୍ତେ ।

ମିଟୁ ପପୁ ଉପରେ ହାତଦେଇ ସେମିତି ଶୋଇଥାଏ; ଆଖିକୁ ନିଦ ନାହିଁ। ଭାବୁଥାଏ ଅସଂଖ୍ୟ କଥା। ତାକୁ ଲାଗୁଥାଏ ଯେ ପପୁ ଖୁବ୍ ଅସୁସ୍ଥ। କେହି ତା' ବିଷୟରେ ଡାକ୍ତରକୁ ଡାକୁନାହାନ୍ତି। ଏମିତି ହଉ ହଉ ଯଦି ପପୁ ସତକୁ ସତ ପାଗଳ ହେଇଯାଏ... ସେ ସୁରେନ୍ଦ୍ରକୁ ଯାଇ କହିଲା। ସେ କୌଣସି ଉତ୍ତର ନ ଦେଇ ମିଟୁକୁ ତାଗିଦ କଲା ଶୋଇଯିବାପାଇଁ।

ସେ ରାତିରେ ଭୀଷଣ ଗରମ। ମେଘ ଟେକିରଖିଥାଏ। ଟିକିଏ ବି ପବନ ନ ଥାଏ। ପାହାନ୍ତା ପହରକୁ ଦେବୁ ମୁଣ୍ଡରୁ ଟପ୍‌ଟପ୍ ଝାଳ ଛିଡ଼ିପଡ଼ିଲା। ସେ ଏକରକମ ସ୍ତବ୍ଧ ହେଇଯାଇଥିଲା। ତାକୁ ଗୋଟିଏ ମାତ୍ର ସମ୍ଭାବନା ଦିଶୁଥିଲା – ତା'ର ହଠାତ୍ ମନେପଡ଼ିଯାଇଥିଲା ଯେ, ସୁରଭାଇଙ୍କ ମା' କେମିତି ମରିଗଲେ ଏତେ ଚଞ୍ଚଳ! ତା'ରି ସହିତ ନିଶ୍ଚୟ କେହି ଜଣେ ସଂପୃକ୍ତ ଥିଲା। ସେ ହୁଏତ ତାଙ୍କର ଗୁପ୍ତ ପ୍ରେମିକ ଥିଲା... ଏବଂ ହୁଏତ ବାପା ଯେମିତି ମିଜାଜର ଲୋକ, ତାକୁ ହତ୍ୟା କରିଛନ୍ତି ଏବଂ ହୁଏତ ନିଜ ସ୍ତ୍ରୀକୁ ମଧ୍ୟ ସେଇ କାରଣରୁ ହତ୍ୟାକରିଛନ୍ତି। ଇସ୍... ସେଇଥିପାଇଁ ସେ ପପୁକୁ ଦେଖି ଏମିତି ଚିଡ଼ିଯାଇଛନ୍ତି – ସେ ହୁଏତ ଆହୁରି ରାଗିଗଲେ ଆଉ କ'ଣ କରିଦେଇପାରନ୍ତି। ପପୁ ହୁଏତ ଏଠି ନିରାପଦ ନୁହେଁ। ଦେବୁ ଉଭ୍ୟକ୍ତ ଅବସ୍ଥାରେ ବାହାରେ ଆସି କାକରରେ ବୁଲିଲା। ତା' ମୁଣ୍ଡରୁ ଟପ୍ ଟପ୍ ଝାଳ ଛିଡ଼ିପଡୁଥାଏ।

ସକାଳୁ ସମସ୍ତଙ୍କର ନିଦ-ମଳମଳ ଆଖି। ସମସ୍ତେ ବିମର୍ଷ, କାତର, କ୍ଳାନ୍ତ ଦିଶୁଥାନ୍ତି। ଉପରେ ଶୋଉଥିବା ନୌକର ଟୋକା ଆସି ଡାଇନିଂ ଟେବୁଲ୍ ପାଖରେ ଠିଆହେଲା। ସମସ୍ତେ ତାକୁ ଆତଙ୍କିତ ହେଇ ଚାହିଁରହିଲେ। ଦେବୁ ଛେପ ଢୋକି ଅପେକ୍ଷା କଲା; ତାକୁ ଲାଗିଲା ଯେ ନୌକର ଟୋକା କହିବ, ବଡ଼ବାବୁଙ୍କ କବାଟ ଫିଟୁନାହିଁ। ଭିତରୁ ବନ୍ଦ ଅଛି। ହୁଏତ ପଙ୍ଖାରୁ କ'ଣଟାଏ ଝୁଲୁଚି !!

ସେ କିନ୍ତୁ ଦାନ୍ତନିକୁଟି କହିଲା, ''ବାବୁ ସମସ୍ତଙ୍କୁ ଡକେଇଛନ୍ତି ଉପରେ ଚା' ଖାଇବାକୁ।'' ଦେବୁ ଚୌକିଟା ଉପରେ ଲଥ୍‌କିନା ବସିପଡ଼ିଲା। ମୁହଁ ଘୋଡ଼େଇ ନିଜକୁ ସମ୍ଭାଳିନେଲା। ନିରୁପମା ଖୁବ ତତ୍‌ପର ଜଣାଗଲେ। ସମସ୍ତଙ୍କୁ ଡାକିଲେ। ରୋଷେଇଆକୁ କହିଲେ ଚା' ସଜିଲ୍ କରି ଆଣିବାକୁ। ମିଟୁକୁ ଛାଡ଼ି ବାକି ସମସ୍ତେ ଉଠିଲେ ଉପରକୁ।

ମାନୁବାବୁ ବସିଥାନ୍ତି ତାଙ୍କ ଚୌକିରେ। ବେଶ୍ ସୁସ୍ଥ ଦେଖାଯାଉଥାନ୍ତି। ଏମାନେ ଯାଇ ନିଃଶବ୍ଦରେ ବସିଗଲେ; ସତେବା କୌଣସି ବିଚାରାଳୟର ଆସାମୀ ସବୁ। ମାନୁବାବୁ କହିଲେ, ''କିରେ ସୁର, ତୋ ପୁଅ କାହିଁ? ତା ମା' କାହିଁ?''

ଦେବୁ ତା ଅଣାୟତ୍ତରେ ଭଡ଼୍‌କିନା ଠିଆହେଇପଡ଼ିଲା। କହିଲା, ''ମାନେ ତୁମେ ପପୁକୁ ଏଠିକି ଆଣିବାକୁ ଚାହୁଁଚ?''

ମାନୁବାବୁ ସ୍ୱାଭାବିକ ଢଙ୍ଗରେ କହିଲେ, ''କାଇଁ କ'ଣ ହେଲା କି ?''

ଚା' ଆସିଲା । ଅନେକ ଇତସ୍ତତଃ କରି ଦୁଇ ଥର ଡକେଇବାରେ ପପୁକୁ ନେଇ ମିତୁ ଆସିଲା । ଡରି ଡରି ରୋଗିଣା ପିଲାକୁ ଧରିଲାପରି ଗୋଟାଏ ଚୌକିରେ ଆସି ବସିଲା ।

ମାନୁବାବୁ କହିଲେ, ''ଆରେ, ସେ ପିଲାଟାକୁ କାଇଁ ଏମିତି ଧରିଚୁ ? ତା' ଦେହ ବ୍ୟସ୍ତ ଅଛି କି ? ତାକୁ ଏଇ ମୋ ପାଖ ଚୌକିରେ ବସା ।''

ପପୁ ବଡ଼ ସ୍ୱାଭାବିକ ଭାବରେ ବସିଲା, ଗୋଡ଼ ହଲେଇଲା । ବିସ୍କୁଟ୍‌ଟିଏ ଚୋବେଇଲା । ତା' ପରେ ସମସ୍ତଙ୍କୁ ଚାହିଁଲା । ମାନୁବାବୁଙ୍କୁ ମୁବ୍‌ମୁବ୍ ହସି କହିଲା, ''ମାନା-ମାନା !''

କାହା ହାତରୁ ଚା' କପ୍‌ଟା ତଳେ ଖସିପଡ଼ିଲା । ମାନୁବାବୁ ଠୋ-ଠୋ ହସିଲେ । ଟେବୁଲ ଉପରେ କପ୍ ରଖି ପପୁ ପିଠିରେ ହାତ ରଖି ହସିଲେ ।

ଦେବୁ ମୁହଁରୁ ରକ୍ତ ଫାଟିପଡୁଥାଏ । କ'ଣ ହବ ତା' ପରେ । ମାନୁବାବୁ କହିଲେ, ''ହଇ ରେ, ତୁ ଈଶ୍ୱର ବେହେରା କାହୁଁ ଆସିଲୁ ? ମୁଁ ତୋ ନାଁଟାହିଁ ଭୁଲି ଯାଇଥିଲି – କାଲି ଖୋଜି ଖୋଜି ପାଇଲି ।''

ନିରୁପମା ଚମକିଲାପରି କହିଲେ, ''ହଁ, ଯିଏ ଆମ ଘରେ ମାଛ ଲାଗୁଆଣି ଦଉଥିଲା । ସେଇ ବୁଢ଼ା କେଉଟ ? ସେଇ ତ, ମତେ 'ଡଲି' ବୋଲି ଚିଡ଼ଉଥିଲା ।

ମାନୁବାବୁ ଦେବୁକୁ ଚାହିଁ କହିଲେ, ''ଆଜିକୁ ପଚାଶ ବର୍ଷତଳେ ସେଇ କେଉଟ ବୁଢ଼ା ମୋତେ 'ମାନା' ବୋଲି ଡାକୁଥିଲା ! ଆମ ବାପାଙ୍କଠୁ ବଡ଼ ବୟସରେ । ଖୁବ୍ ସ୍ନେହ କରୁଥିଲା ମୋତେ । ହୁଏତ, ତୁ ଯାହା କହୁଚୁ ତା' ଠିକ୍ ।''

ଦେବୁ ମୁହଁ କେମିତି ଦିଶୁଥିଲା କେଜାଣି; ତାକୁ ଚାହିଁ ସମସ୍ତେ ହସିଉଠିଲେ !

□□□

# ଘାଟ-ମହାସୁଲ

କଥା ସରିଆସିଲା ବୋଲି ସମସ୍ତେ ଜାଣୁଥିଲେ; କିନ୍ତୁ କେହି କିଛି କହୁ ନଥିଲେ । ସେଭଳି କଥା ବି ଆଉ ଗୁଡ଼ାଏ ଦିନ ଗଡ଼ିଯିବା ଉଚିତ ନୁହେଁ । ପୁଅ-ବୋହୂ, ନାତି-ନାତୁଣୀ, ବନ୍ଧୁ-ବାନ୍ଧବ ସମସ୍ତେ ବାନ୍ଧିହୋଇ ପଡ଼ିଥାନ୍ତି । ବୁଢ଼ା ଚଞ୍ଚଳ କେମିତି ଉଠିଗଲେ ଯେ ଯୁଆଡ଼େ ସେମାନେ ତାଙ୍କ କାମରେ ଯିବେ; ନା ଏମିତି ବସି ବାଉଳୁ-ଚାଉଳୁ ଶୁଣୁଥିବେ, ବାଉଳୁ-ଚାଉଳୁ ହେଉଥିବେ ! ସମସ୍ତେ ଜଣେଇଲାଗିଥାନ୍ତି କେମିତି ସେ ପୁରୁଣା ପଞ୍ଜୁରି ଭିତରୁ ଛଟପଟ ହେଉଥିବା ପକ୍ଷୀଟି ଉଡ଼ିଯାଉ ! – ଯାଉ ବୁଢ଼ା ଏ ଗୁହମୂତରୁ ତ୍ରାହିପାଇଯାଉ; ସେମାନେ ବି ଏ ଜଞ୍ଜାଳରୁ ମୁକୁଳିଯାଆନ୍ତୁ, ତ୍ରାହିପାଇଯାଆନ୍ତୁ !

ସେଦିନ ସଞ୍ଜବେଳେ ବଡ଼ ବୋହୂକୁ ଘେରି ସମସ୍ତେ ଆଗ୍ରହରେ ଶୁଣୁଥାନ୍ତି । ବଡ଼ବୋହୂ ମେଦିନୀପୁର ଝିଅ । ଓଡ଼ିଆ ଏବେ ବି ତା ତୁଣ୍ଡରେ ବଙ୍କାବଙ୍କା, ମିଠା ମିଠା । – ''ଆରେ ମୁଁ କହୁଚି ପରା ଆର କେଉ ନାଇ ବୋଲି... ବାପା, ମୁଁ ବଡ଼ ବଉ, ମୁଁ ପରା ଏକ୍‌ଲା, ତମ ପାଶେ ଅଛି''... ଯେତେ କହିଲେ ସେ ବାର୍‌ ବାର୍‌ କହୁଥାନ୍ତି, ''ଆରେ ତୋ ସାଙ୍ଗରେ ସେ'ଟା କେ ?''... ''କାଇଁ, କେଇ ନାଇଁ ତ'' ! ମୁଁ ଚାରିଦିଗେ ଡରି ଡରି ଚାହିଁଲି ବାପାଙ୍କର ଆଖିଗୁଡ଼ା ଏମ୍‌ତି ବଡ଼ ବଡ଼, ସେ ତାକୁ ଆଉରି ବଡ଼ କରି ଚାହିଁଥାନ୍ତି ''ଆରେ, ତୋ'ର ପଛରେ ସେ ଠିଆହୋଇଛି, ମୁହଁ ଦେଖାଉନାଇ !'' ମୁଁ ଚମ୍‌କି କରି ଛୁଟିଆସିଥାନ୍ତି, ହଲ୍ଲା କରିଥାନ୍ତି !''

ମଝିଆଁ ପୁଅ ଆର୍ମିରେ କେପ୍‌ଟେନ୍‌ ! ''ନାହିଁ, ବଡ଼ ବଉ, ବାପାଙ୍କୁ ସେମିତି ଦିଶିବାର କାରଣ ଅଛି । ସେମିତି ସମସ୍ତଙ୍କୁ ଦେଖାଯାଏ । ଦୁଇଟା ଇଲାକାର ସୀମାରେ ଠିଆହେଲେ ଉଭୟ ପକ୍ଷକୁ ଦେଖିହୁଏ !''

''ହିନ୍ଦୁସ୍ଥାନ୍‌ ପାକିସ୍ଥାନ କଥା କହୁଛ ନା ?'' – ବଡ଼ବୋହୂ ଥଟ୍ଟା କରିବାରୁ ସମସ୍ତେ ହସିଉଠିଲେ । ତା'ପରେ ସେ ନିଜେ ଖୁବ୍‌ ଗମ୍ଭୀର ହୋଇ କହିଲା, ''ଦେଖ, କଥାଟାକୁ ଉଡ଼େଇଦେଲେ ହବନାଇଁ । ବାପା ଶେଷକୁ କହିଲେ, ''ମୁଁ ଜାଣେ, ସେ'ଟା ସୁଦର୍ଶନର ସ୍ତ୍ରୀ ! ସେ ଏଠିକି କାଇଁକି ଆସିଚି ? – ମତେ ସେ ବଦ୍‌ନାମ କରିବାକୁ ଆସିଚି । . . .ତମେ ସୁଦର୍ଶନକୁ ଡାକ ! ସୁଦର୍ଶନ ! ତା ଉତ୍ତାରୁ ତ ସେଇ ଡାକ ଚାଲିଚି – ସୁଦର୍ଶନ, ସୁଦର୍ଶନ !'' ବୁଢ଼ା ଏଣେ କିଛି ଦେଖିପାରୁନାହାନ୍ତି, କିଛି ଶୁଣିପାରୁନାହାନ୍ତି !''

ବିଷମ ସମସ୍ୟାର ସାମ୍ନାସାମ୍ନି ହୋଇଯିବାରୁ ସମସ୍ତେ ନୀରବ ହେଇଗଲେ । ଛଅସ୍ତରି ବର୍ଷର ବୁଢ଼ା ଶ୍ରୀନିବାସ ବ୍ରହ୍ମା । ତାଙ୍କର ଶେଷ ଇଚ୍ଛା ସୁଦର୍ଶନ ମହାପାତ୍ରଙ୍କୁ

ଦେଖିବାକୁ । ସୂର୍ଯ୍ୟ ପଛେ ପଶ୍ଚିମରେ ଉଦୟ ହେବା ସମ୍ଭବ; କିନ୍ତୁ ଏ ଦୁଇ ବୁଢ଼ା କେବେ ପରସ୍ପରକୁ ଚାହିଁ କଥାବାର୍ତ୍ତା ହେବା କାହାରି ବିଶ୍ୱାସ ହେଲାନାହିଁ ।

ଦିନ-ଓଳିକ କଥା ନୁହେଁ; ପଚାଶ ବର୍ଷର ଅପଢ଼ । ଦି'ଟା ମେରୁ ପରି ଦୁହେଁ ଅଟଳ ରହିଛନ୍ତି । ସମସ୍ତେ ଜାଣନ୍ତି ଯେ, ସେ ଦୁଇଭାଇ – ମାମୁପୁଅ ପିଉସୀପୁଅ ବିହେଁ । ଦୁହିଁଙ୍କର ବିଖ୍ୟାତ ପରିବାର । ସେମାନଙ୍କ ପିଲାମାନେ ମଧ୍ୟ ପାଠଶାଠ ପଢ଼ି ବେଶ୍ ବଡ଼ଲୋକ ହୋଇଗଲେଣି । ନାତିନାତୁଣୀ ମଧ୍ୟ ବଡ଼ହୋଇଗଲେଣି । ତଥାପି ସେମାନଙ୍କ ଭିତରେ ଅଦୃଶ୍ୟ ବାଡ଼ଟାଏ କାହିଁ କେଉଁ କାଳରୁ ଠିଆହେଇଚି । ସେ ମୂଳରହସ୍ୟ କାହାକୁ କିଛି ଜଣାନାହିଁ । ଆଜି ଶ୍ରୀନିବାସ ବ୍ରହ୍ମା ଆରପାରିକୁ ବାହାରିଲାବେଳେ କହୁଛନ୍ତି 'ସୁଦର୍ଶନକୁ ଡାକ' । କିଏ ଯିବ ? କେମିତି ଯିବ ? କେମିତି କ'ଣ ହବ ? ଏଡ଼େ ବଡ଼ ପଥର ପାଚେରି କିଏ ଲଂଘିଯାଇପାରିବ ? ସେ ଯକ୍ଷ କ'ଣ ଶୁଣିବ, ନା ରାଜି ହବ ଆସିବାକୁ ? ଭାରି ଅଡୁଆ କଥା । ସମସ୍ତଙ୍କୁ ଅଠାକାଠିରେ ପଡ଼ି ଛଟପଟ ହେଲାପରି ଲାଗୁଥାଏ ।

ଗୋଟାଏ ଚାଲାକ ନାତି ଟୋକା କହିଲା, "ଜେଜେକୁ ତ ଦିଶୁନାହିଁ । ସେ କାହାକୁ ଚିହ୍ନିପାରୁନାହାନ୍ତି । ମତେ ନେଇ ଆଗରେ ଠିଆକରାଇଦିଅ ସୁଦର୍ଶନ ମହାପାତ୍ର ବୋଲି ।" ସେ ପାକୁଆ ପାଟିରେ ବୁଢ଼ା ପରି କଥା କହିବାର ଅଭିନୟ କରିବାରୁ ଗୁଡ଼ାଏ ହାସ୍ୟରୋଳ ହେଲା; କିନ୍ତୁ ପୁଣି ଠପ୍‌କିନା ଚୁପ୍‌ପଡ଼ିଗଲା ସବୁ । ଭିତର ବଖରାରୁ ଭାରି କ୍ଷୀଣ ସ୍ୱରଟିଏ ଶୁଭିଲା, "ସୁଦର୍ଶନ କାହିଁ ? ସୁଦର୍ଶନକୁ ଡାକ ।"

ସମସ୍ତଙ୍କୁ ବୋଧହେଲା ସେମାନଙ୍କ ଭିତରକୁ ଆଉ ଜଣେ କିଏ ପଶିଆସିଲା ନୀରବରେ । ସେଇ ଜଣକ ନିଃଶବ୍ଦରେ ବିଚରଣ କଲା ଘରସାରା । ସନ୍ଧ୍ୟା ସମୟ । ଶୀତ ମଡ଼େଇପଡୁଥାଏ । ସମସ୍ତେ ଚୁପ୍ । ବୁଢ଼ାଙ୍କ ବଖରାରେ ବଡ଼ ଉଦ୍ବେଗରେ ରଡ଼ନିଆଁ ଡହକୁଥାଏ ।

କେପ୍‌ଟେନ୍ ପୁଅ ବଡ଼ଭାଇକୁ ଚାହିଁ କହିଲା, "ସେ ଆସୁ ନଆସୁ, ତମେ ଥରେ ଯାଇ ଡାକିଦିଅ । ଏମିତି କଥାଟାକୁ ବୁଝେଇ କହିଲେ, ସେ ହୁଏତ ମାନିଯିବ । ଧର, ଯଦି ନ ବୁଝି ଦି'ପଦ କହି କ'ଣ ଅପମାନ ଦେଲା, ସହିବାକୁ ପଡ଼ିବ – ନା କ'ଣ କହୁଛ ? ଆଉ କ'ଣ ଉପାୟ ଅଛି ?"

ବଡ଼ପୁଅ ଜିଲ୍ଲା ଜଜ୍ । ସିଗାର୍ ଟାଣି ତଳକୁ ଚାହିଁ ବସିଥାଏ । ବୁଝିବାକୁଗଲେ ଏ ସମଗ୍ର ଦାୟିତ୍ୱ ତା'ର । ସେ ହିଁ ତିଳୋଦକ ଦବ । ସେ କ୍ରିୟା ଧରିବ, ପିଣ୍ଡ ବାଢ଼ିବ ।

ପାଞ୍ଚ ଛ' ମାଇଲ ରାସ୍ତା ଗଲେ ସୁଦର୍ଶନ ମହାପାତ୍ରଙ୍କ ଗାଁ । ଗଲେ ଶୀଘ୍ର ଯିବା କଥା; ନ ହେଲେ ଶୀତ ରାତି ବଳେଇଗଲେ ଯିବା-ଆସିବା ଭାରି କଷ୍ଟ । ଅବଶ୍ୟ ରାସ୍ତା ଉପରେ ଗାଁ । ଗାଡ଼ିନେଇ ଗଲେ ପନ୍ଦର ମିନିଟ୍‌ରେ ଯାଇ ଫେରିଆସିହେବ । କିନ୍ତୁ ଲାଗୁଥାଏ କାହିଁ କେତେ ଦୂରନ୍ତ ସେ ଜାଗା । ଏ ପଚାଶ ବର୍ଷରେ ମୁଣ୍ଡିଆଳ

ବୁଢ଼ା ଦି'ଜଣଙ୍କ ଲଢ଼େଇକୁ ନେଇ ଦି' ଗାଁ ଭିତରେ ବାଡ଼ ପଡ଼ିଯାଇଛି; ସବୁବେଳେ ଠେଙ୍ଗାଠେଙ୍ଗି । ଏମିତି ଅନ୍ଧାର ରାତିରେ ତାଙ୍କ ବ୍ୟୁହ ଭିତରେ ପଶିଯିବା ଉଚିତ ହେବ କି ?

ଶ୍ରୀନିବାସ ବ୍ରହ୍ମା ଖଣ୍ଡାଧାରରେ ଚାଲିବା ଲୋକ । ଜପ-ତପ-ସନ୍ଧ୍ୟାରେ ଦିହକ ବିତିଯାଇଛି । ଶାସ୍ତ୍ର-ପୁରାଣରେ ପାରଙ୍ଗମ । ବୁଢ଼ା ଅନେକ ତତ୍ତ୍ୱକଥା ବୁଝାନ୍ତି; କିନ୍ତୁ ଗୋଟାଏ କଥାରେ ସେ ଅଟଳ । ସୁଦର୍ଶନ ମହାପାତ୍ର ପ୍ରସଙ୍ଗ ପଡ଼ିଲେ ସେ ତୁନିପଡ଼ିଯାଆନ୍ତି । ସେ ନାଁ ତାଙ୍କ ତୁଣ୍ଡରେ କେହି କେବେ ଶୁଣିନାହିଁ । କେହି ବୁଝିପାରନ୍ତିନାହିଁ, ପଚାରିପାରନ୍ତି ନାହିଁ । କିନ୍ତୁ ଗାଁର ମୁରବି ସେ । ଯାହା କହିବେ ମୁଣ୍ଡେଇନେବା । ତାଙ୍କ ଇଜ୍ଜତ୍ ଗାଁର ଇଜ୍ଜତ୍ ।

ସେ ଏବେ ଚାହୁଁଛନ୍ତି ସୁଦର୍ଶନ ମହାପାତ୍ର ପାଖରେ ମୁଣ୍ଡ ନୁଆଁଇବାକୁ । ତାଙ୍କର ଏଇଲାଗେ ମତିଭ୍ରମ ବେଳ । ପଚାଶ ବର୍ଷର କଥା ଅନେକ ଆଗେଇଗଲାଣି । ଦୁଇପକ୍ଷ ଭିତରେ ଅକାତକାତ ବଢ଼ିପାଣି । ଏ କୂଳ ସେ କୂଳ ଓସାରିହେଇଗଲାଣି – ଆଉ ତାକୁ ଏକାଠି କରିବା ଦୁଃସାଧ । ଗାଁଲୋକେ ଜାଣିଲେ କ୍ଷେପି ଆସିବେ । ଆମ ପାଇଁ ସେମାନେ ମୋଚି ସାହି; ଆମେ ତାଙ୍କ ପାଇଁ ହାଡ଼ି ସାହି । ଆମେ ତାଙ୍କୁ ଦେଖିଲେ ବିଷ୍ଣୁପାଣି ହଉଚୁ, ଛୁଇଁଦେଲେ ସ୍ନାହାନ । ତାଙ୍କ ପାଖରେ ଶ୍ରୀନିବାସ ବ୍ରହ୍ମା ମୁଣ୍ଡ ନୁଆଁଇଦେବେ ଆମେ ବଞ୍ଚି ଥାଉ ଥାଉ ! କେତେ କେତେ ମୁକାବିଲା ନ ହେଇଚି ? ମାଲିମକଦ୍ଦମା ମାଳ ମାଳ । କୋଉ କଥାରେ ଛୁଞ୍ଚିମୁନରେ ମୁନେ ବଳେଇଯାଇନାହାନ୍ତି ମୋଚି ସାହିଆ । ଏବେ କ'ଣ ନା, ଦାନ୍ତରେ ତିରଣ ଧରି ଶରଣ ପଶିଲାପରି ବ୍ରହ୍ମା ନିମନ୍ତ୍ରଣ କରିଆଣୁଛନ୍ତି ସୁଦର୍ଶନ ମହାପାତ୍ରକୁ ? କେଢ଼େ କଥା ସତେ !

କାପଟେନ୍ ପୁଅ ପୁଣି କହିଲା, ''କିଏ କ'ଣ କହିବ, ନ କହିବ ସେଥିକୁ ଆମେ ଏତେବେଳୁ ଗୁଡ଼ାଏ ଅତର୍କ ହେବାର କାରଣ ନାହିଁ । ଆମକୁ ତ ଏ ରାତିଟା ପାରିହେବାକୁ ହବ । ସଂକଟ ଆମର; ଆଉ କାହାରି ନୁହେଁ । ବାପାଙ୍କର ଶେଷ ଇଚ୍ଛା । ମୋ ମତରେ ଆମେ ଥରେ ଯାଇ ତାକୁ ଡାକିଦେବା ଦରକାର – ତେଣିକି ସେ ଆସୁ ନ ଆସୁ, ଭିନ୍ନ କଥା । ତୁମକୁ ନ ପଠେଇ ମୁଁ ନିଜେ ଯାଆନ୍ତି; କିନ୍ତୁ ମତେ ଦେଖିଲେ ସେମାନେ ଚମକିବେ । ତାଙ୍କ ଧାରଣା, ମୁଁ ଗୁଳିମାରି ବୁଢ଼ାର ଖପୁରି ଉଡ଼େଇଦେବି ।''

ବଡ଼ବୋହୂ କହିଲା, ''ଏଟା ତ ଲଢ଼ାଲଢ଼ି ବ୍ୟାପାର । ତୁମି ଯାଅ ନା କେନ ?'' ତୁଣ୍ଡରୁ ବଙ୍ଗଳା ଖସିଯିବାରୁ ସେ ଜିଭ କାମୁଡ଼ିପକେଇଲା । ସମସ୍ତେ ମୁରୁକି ମାରି ହସିଲେ ।

''ଆଚ୍ଛା, ତା'ହେଲେ ଠିକ୍ ଅଛି – ମୁଁ ଯାଉଛି ।'' ପାଖରେ ବସିଥିଲା ତା' ସ୍ତ୍ରୀ । ତାକୁ ଚାହିଁ ଟିକିଏ ହସିଦେଲା – ସତେ ବା ଲଢ଼େଇ ପାଇଁ ପରୱାନା ମିଳିଗଲା ଏବଂ ସେ ବିଦାୟ ନଉଚି, ଏମିତି ଭଙ୍ଗୀରେ । ସାନବୋହୂ ସାମାନ୍ୟ ଭୂରୁ କୁଞ୍ଚେଇ

ବଡ଼ଭାଇ, ବଡ଼ବୋହୂକୁ ମୁହୂର୍ତ୍ତେ ଚାହିଁଦେଲା । ଆଖି ଫେରାଇଆଣିଲା ତଳକୁ । ସେମିତି ତଳକୁ ଚାହିଁ କହିଲା ''ଚଞ୍ଚଳ ଚାଲିଆସିବ ।'' ସମସ୍ତଙ୍କୁ ସାମାନ୍ୟ ଅସୁସ୍ଥ ବୋଧହେଲା ।

ଫଟ୍‌କିନା ଠିଆହୋଇପଡ଼ି ସେ ବାହାରିଗଲା । ଗୋଟାଏ ଓଭର କୋଟ୍ ପିନ୍ଧି ଠପ୍‌ଠପ୍ ଓହ୍ଲାଇଗଲା ପାହାଚ । ତା' ସ୍ତ୍ରୀ କୌଣସି ବାହାନା ନ ଥାଇ ତା ନିଜ ବଖରାକୁ ଚାଲିଗଲା ।

ଦାଣଘରୁ ସମସ୍ତେ ଆସ୍ତେ ଆସ୍ତେ ଉଠିଗଲେ । ପିଣ୍ଡାରେ ଚେସ୍ ଖେଳ ଧରି ବସିଗଲେ ଦୁଇ ନାତି । ଗୋଟାଏ ସେଥିରୁ ଢେଭିଅର୍ସରେ ପଢ଼େ; ଆରଟା ପଢ଼େ ଯାଦବପୁରରେ । ପାଞ୍ଚଦିନ କାଳ ଗାଁରେ ରହି ତାଙ୍କୁ ଉବେଇ-ଟୁବେଇ ଲାଗୁଥାଏ । ସମୟ କଟୁ ନଥାଏ । ଏଣେ ଆଉ ବି କିଛି ଘଟୁ ନଥାଏ । ଚେସ୍ ବୋର୍ଡ଼ ପାଖରେ ଆଉ ସବୁ ଭାଇଭଉଣୀ ଦୁଇଭାଗ ହୋଇ ବସିଗଲେ; ଧଳା ରଙ୍ଗ ଏବଂ କଳା ରଙ୍ଗର ସମର୍ଥକମାନେ ।

ଦାଣଘରେ କେବଳ ବଡ଼ପୁଅ ଚୁରୁଟ୍ ଟାଣି ବସିରହିଲା । ଘର ସାରା କୋର୍ଟ ରୁମ୍ ପରି ଚୁପ୍‌ଚାପ୍; ଆସାମୀ ହୁଏତ ଅପେକ୍ଷା କରିଛି ନିଷ୍ପତ୍ତି ଶୁଣିବାପାଇଁ । ଭର୍ତ୍ତିହେଇ ରହିଛନ୍ତି ଅଦୃଶ୍ୟ ଦେଖଣାହାରି । ସୋରିଷ ପକେଇବାକୁ ଥାନ ନାହିଁ । ପଛକଥା, ଆଗ କଥା, ଶୀତରାତିରେ ହାତ ଧରାଧରି ହେଇ ଲମ୍ବା ଓଭର କୋଟ୍ ପିନ୍ଧି ପଶିଆସୁଛନ୍ତି । ପୁରୁଷ-ପୁରୁଷଧରି ପାପ କରୁଛନ୍ତି ମଣିଷମାନେ; ଦଣ୍ଡ ଭୋଗୁଛନ୍ତି ଅସୁମାରି । କିନ୍ତୁ ସବୁବେଳେ ବଢ଼ିପାଣି ନିଜ କୂଳ ଲଂଘିଯାଉଚି । ମଣିଷ ନିଜେ ଗଢ଼ିଥିବା କାନୁନ୍‌କୁ ନିଜେ ଲଂଘିଯାଉଚି ।

କିଏ ଆସି ସେ ଘରୁ କ'ଣଟାଏ ନେଇ ନିଃଶବ୍ଦରେ ଚାଲିଗଲା । ବୋଧହୁଏ ଦେବେନ୍ଦ୍ରର ସ୍ତ୍ରୀ ଥାର୍ମୋସ ଫ୍ଲାସ୍କଟା ନେଲା ତା ସାନପୁଅକୁ କ୍ଷୀର ପିଆଇବାକୁ । କେପ୍‌ଟେନ୍ ଦେବେନ୍ଦ୍ର ବ୍ରହ୍ମାର ସ୍ତ୍ରୀ ଆସିଛି ଜବଲ୍‌ପୁରରୁ । ସେଠିକା ଆଦବକାଇଦା ସାଙ୍ଗରେ ଗାଁ କଥା ଜମା ମିଶୁନାହିଁ । ତଥାପି ଏ ଶେଷ ଦାୟିତ୍ୱ ତୁଲାଇବାକୁ ପଡ଼ିବ । କୌଣସି ପ୍ରକାରେ ଏଠୁ ବିଦାୟ ନେଇଗଲେ ତାଙ୍କ ଜୀବନ ତାଙ୍କର । କ୍ଲବରେ ଡିନ୍‌ର, ଡାନ୍‌ସ ! – ଖୁବ୍ ସଫା, ଖୁବ୍ ଚତୁର, ଖୁବ୍ ମାପଚୁପ୍ ଜୀବନ ।

ଅଧଘଣ୍ଟାଏ ବୋଧେ ପାରିହୋଇଗଲା । ପିଣ୍ଡାରୁ ଶୁଭିଲା ''ଚେକ୍ !'' ଭିତର ଘରୁ ଶୁଭିଲା ଖୁବ୍ ଅସ୍ପଷ୍ଟ କିଛି । ତା ସାଙ୍ଗକୁ ମେଦିନୀପୁରିଆ କଥା, ବଙ୍କାବଙ୍କା, ମିଠା ମିଠା । ଆଉ ଥରେ ବୋଧେ ଦେବେନ୍ଦ୍ରର ସ୍ତ୍ରୀ ଆସ୍ତେ ଆସି ଚାଲିଗଲା । ଦେବେନ୍ଦ୍ର ଫେରିଲା ନାହିଁ । ଫେରିଆସିବା କଥା । ଏମିତି ରାତି ଦଶ-ଏଗାର-ବାର ବାଜିଯିବ କି ?

ବାପ ପାଖକୁ ଉଠିଯାଇ ସେ ଲହଡ଼ି ମାରୁଥିବା ସମୁଦ୍ରକୁ ଦେଖିବାକୁ ଇଚ୍ଛା ନାହିଁ । ଏଣେ ପିଲାଙ୍କ ପାଖେ ଠିଆହୋଇ ଘୋଡ଼ାଖେଳ ଦେଖିଲେ ଚଳନ୍ତା । ମନ

ଘାଣ୍ଟିହେଉଚି । ବାହାର ପିଣ୍ଡାକୁ ଯାଇ ଅନ୍ଧାର ଭିତରକୁ ଚାହିଁରହିବାର ଅର୍ଥ ନାହିଁ । ଖାଲିଟାରେ ଚାରିଆଡ଼କୁ ଟାଣିହେଇ, ଚାରିଆଡୁ ବିମୁଖ ହେଇ ଚୁରୁଟ୍ ଟାଣିବା ମଧ ଭାରି କଷ୍ଟ । ସେ ଦିନର ଇଂରାଜୀ ପତ୍ରିକାଟା ପଢ଼ିଥିଲା – ଆଖି ପକଉ ପକଉ ଦିଶିଲା ବଡ଼ ବଡ଼ ଅକ୍ଷରରେ ନାରୀଧର୍ଷଣ, ହତ୍ୟା ଅପରାଧ । ଇସ୍, କେଡ଼େ ଆଦିମ, କେଡ଼େ ସାଧାରଣ ସେ ଅପରାଧ ! ସବୁଠି ସବୁକାଳେ ଘଟିଆସୁଛି । ...ଅନ୍ଧାରରାତି, ଶୀତରାତି... ଅପରାଧର ରାତି ।

କ'ଣ ହେଲା ସତେ ? ବାଟରେ ଗାଡ଼ି ଅସୁବିଧା ହେଲା କି ? ଗାଁବାଲା କ'ଣ ହଇରାଣ କଲେ କି ? ବୁଢ଼ା କ'ଣ କହିବାରୁ ତାକୁ ବସେଇ ଦେବେନ୍ଦ୍ର ବୁଝେଉଚି କି ? ନ ହେଲେ ଏତେ ବିଳମ୍ବ ହେବା କଥା ନୁହେଁ ତ । ତା' ସ୍ତ୍ରୀ ଯାହାସବୁ ଭାବୁଛି, ସେଗୁଡ଼ାକ କାହିଁକି ହବ ? କାହିଁକି ଏକ୍ସିଡେଣ୍ଟ ହବ ?... କାହିଁକି ଗାଁବାଲା ମେଳି ହୋଇ ଗାଡ଼ି ପୋଡ଼ିଦେବେ ? କାହିଁକି ତାକୁ ଛୁରୀ ଭୁସିଦେବେ ? ...କାହିଁକି ହୁତ୍‌ହୁତ୍ ଗୁଡ଼ାଏ ନିଆଁ ଜଳିଉଠିବ ??

ସେ ଧଡ଼ପଡ଼ ଉଠି ଠିଆହୋଇପଡ଼ିଲା । ବସିରହିବା ସମ୍ଭବ ହେଲାନାହିଁ । ପିଲାଏ ଗୋଳ କଲେ – ବୋଧେ କଳା ରଜା ଜିଣିଗଲା । ତଳକୁ ଯାଇ ଖାଇବା ପାଇଁ ଖବର ଆସିଲା । ପିଲେ ପାଟିତୁଣ୍ଡ କରି ଓହ୍ଲେଇଗଲେ ।

''କାଇଁ ତୁମେ ଖାଇନେଇ ନାଇଁ ?'' – ପଚ଼ାରିଲା ବଡ଼ବୋହୂ ।

''ନା, ଦେବେନ୍ଦ୍ର ଫେରିଆସୁ ।''

ସାନବୋହୂ ସେଇଠି କୋଉଠି ଥିଲା; ଆସି ପଚ଼ାରିଲା, ''ଆଚ୍ଛା, ସେ ଗାଁଟା ଏମିତି କେତେ ବାଟ କି ?''

ହଠାତ୍ ଚାରିଆଡ଼େ ନୀରବ ହେଇଗଲା । କେହି ଜଣେ ଅଦୃଶ୍ୟ ରହି ବିଚ଼ରଣ କଲା ସେ ଖାଲି ବଖରାଗୁଡ଼ିକରେ । ଦେବେନ୍ଦ୍ରର ସ୍ତ୍ରୀ ଧଡ଼ପଡ଼ ଚାଲିଗଲା ଶୋଇଥିବା ପୁଅ ପାଖକୁ । ବିନା କାରଣରେ ମଶାରି ଟେକି ତା ଗରମ ଶାଲଟିକୁ ସଜାଡ଼ିଦେଲା । ଭାରି ସୁନ୍ଦର ଦିଶୁଥିଲା ଦେବେନ୍ଦ୍ରର ସ୍ତ୍ରୀ ।

ବୁଢ଼ା ବାପକୁ ଏପରି ସମୟରେ ସମସ୍ତେ ବେଢ଼ି ରହି ବିଦାୟ ଦେବା କଥା । କିନ୍ତୁ ସେ ଫୁରୁକୁଟିଆ ଗନ୍ଧ, ସେ ଡହକୁଥିବା ରଡ଼ନିଆଁର ତାତି, ସେ ଡାହାଣିଆ ଆଲୁଅ, କମକୁଟ ହେଇଥିବା ମଳି-କଟକଟ ପୁରୁଣା ଉଞ୍ଚ ପଲଙ୍କ, ପାଖରେ ମୂତନଳି, ବେଡ଼ପାନ୍, ଧୂପଧୂଆଁକୁ ବୁଡ଼େଇ ଉଠିଆସୁଥିବା ସେପାରିର ଗନ୍ଧ – ସମ୍ଭାଳିବା ପାଇଁ ଅସୀମ ଧୈର୍ଯ୍ୟର ପ୍ରୟୋଜନ ।

''ବାପା କେମିତି ଅଛନ୍ତି'' – ବୋଲି ଏଇଠି ଥାଇ ପଚ଼ାରିବା ଉଚ଼ିତ ହେବ କି ? ତଥାପି ଚୁରୁଟ୍ ଲିଭେଇ ଦେଇ ବଡ଼ପୁଅ ସୁରେନ୍ଦ୍ର ଖୁବ୍ ଧୀରେ ଭିତର ବଖରା ଆଡ଼କୁ ଚାଲିଗଲା । ଦେବେନ୍ଦ୍ରର ସ୍ତ୍ରୀ ଚାଲିଗଲା ବାହାର ପିଣ୍ଡାକୁ । ଶୀତରାତି ଖୁବ୍ ନିସ୍ତବ୍‌ଧ । ଏ ଅଞ୍ଚଳର ରାତି ସତେ ଭାରି ଅନ୍ଧାର ।

ଖାଇବା ପାଖରୁ ପିଲାଏ ଗୋଳ କଲେ । କୋବି ତରକାରି ସମସ୍ତଙ୍କୁ ରାଗ ଲାଗିଲା । ସୁ' ସା' ହେଇ ସମସ୍ତେ ଉଠିଆସିଲେ ପୁଣି ଥରେ ଚେସ୍‌ଖେଳ ପାଖକୁ । କାହାର ଧକ୍କା ରଖା ହେବ ବୋଲି ବହେ ପାଟିତୁଣ୍ଡ କରି ସବୁ ଚୁପ୍‌ଚାପ୍ ବସିଗଲେ । ଦୁଇପକ୍ଷ ସୈନ୍ୟ ଧାଡ଼ି ବାନ୍ଧି ଠିଆହେଇଗଲେ ସବୁବେଳେ ସେମିତି ଚୁପ୍‌ଚାପ୍ ଗୋଟାଏ କ'ଣ ଓହ୍ଲେଇଆସେ ।

ରାତି ଦଶ । ପିଲାଏ ହାଇମାରିଲେ । ସୁରେନ୍ଦ୍ର ଏ ବଖରାରୁ ସେ ବଖରା, ଘରକୁ ବାହାର ଅସ୍ଥିର ହେଇ ଟହଲିଲାଗିଥାଏ । ବଡ଼ବୋହୂ ପାଖକୁ ଲାଗିଆସି ସାନବୋହୂ କାନ୍ଦ କାନ୍ଦ ହେଇ ପଚାରିଲା ''କାଇଁ, ଏତେବେଳ ହେଲା ସେ ଆସିଲେ ନାହିଁ; ରାତି ଆସି ଦଶଟା ହେଇଗଲା ?''

ଶୀତଦିନେ ଦଶଟା ରାତି ଢେର୍ ରାତି ! ସୁରେନ୍ଦ୍ରର ଇଚ୍ଛା ଟର୍ଚ୍ଚ ଧରି ରାସ୍ତାକୁ ବାହାରିପଡ଼ିବାକୁ । ପାଟି ଦରମେଲା କରି ନିଶ୍ଚଳ ହୋଇ କାହାକୁ ଅପେକ୍ଷା କରିଥିବା ବାପାଙ୍କୁ ଉଠେଇ ପଚାରିବାକୁ ଯେ, କାହିଁକି ସେ ଅସମୟରେ ଏମିତି ଗୋଟାଏ ଅସମ୍ଭବ କଥା ମାଗିବସିଲେ ? ଏତେବେଳେ ଏମିତି ବିପଜ୍ଜନକ ଖେଳ ଖେଳିବାର ପ୍ରୟୋଜନ କ'ଣ ?

ଅନ୍ଧାର ପଡ଼ିଆରୁ ଖେଳାଳି ଫେରୁଥିବାବେଳେ ହିସାବ-ନିକାଶ କରେ ନାହିଁ । ଯାହା ମିଳିଛି ଭଲ, ନ ମିଳିଛି ଭଲ । ଏମିତି କ'ଣ ବାପାଙ୍କ ମୁଣ୍ଡରେ ବୋଝ ଲଦି ହେଇ ରହିଚି, ଯାହାକୁ ଓହ୍ଲେଇଦେଇପାରିଲେ ସେ ସଳଖ୍ ହୋଇ ଚାଲିଯାଇ ପାରବେ ? – କ'ଣ ଘଟିଥାଇପାରେ ସେ ପଚାଶ ବର୍ଷ ତଳେ ?

କାଇଁ – ଯାହା ପାଞ୍ଚବର୍ଷତଳେ, କିମ୍ୱା ପାଞ୍ଚ ହଜାର ବର୍ଷତଳେ ଘଟିଥିଲା, ସେଇଆହିଁ ଘଟିଥାଇପାରେ ! ମଣିଷ ଆଉ କେବେ କ'ଣ ଅଲଗା କଥା କଲା କି ?

ସାଢ଼େ ଦଶ୍ ! ଦୁମୁଦୁମୁ ହେଇ ଦୌଡ଼ିଗଲା ପିଣ୍ଡାକୁ ଦେବେନ୍ଦ୍ରର ସ୍ତ୍ରୀ । ବହୁ ଦୂରରୁ ଗାଡ଼ି ଶବ୍ଦ ଶୁଣାଗଲା; ତାଙ୍କରି ଗାଡ଼ିର ଶବ୍ଦ । ଚାଲିଆସିଲେ ସୁରେନ୍ଦ୍ର ଆଉ ବଡ଼ବୋହୂ । ଓହ୍ଲେଇଗଲା ଗୋଟାଏ ପଥର ବୋଝ । ତଥାପି କେମିତି କେମିତି ଲାଗୁଥାଏ । ଦେବେନ୍ଦ୍ର ତ ଏମିତି ଗାଡ଼ି ଚଳାଏନାହିଁ । ସେ ଚଳେଇଲେ ଏମିତି ଶବ୍ଦ ହୁଏ ନାହିଁ ।

ଦୁଆରକୁ ନ ଆସି ଦଶହାତ ଆଗରୁ ଗାଡ଼ି ରହିଗଲା । ତା ଭିତରୁ ଓହ୍ଲେଇଲେ ଚାରିଜଣ ଲୋକ । ଖୁବ୍ ସାବଧାନରେ ଭିତରୁ ଓହ୍ଲେଇଆଣିଲେ ଜଣେ ବୁଢ଼ା ଲୋକକୁ – ସୁଦର୍ଶନ ମହାପାତ୍ର ! ସୁରେନ୍ଦ୍ରର ଭ୍ରୂରୁ କୁଞ୍ଚେଇଗଲା । ଡ୍ରାଇଭର ସିଟ୍‌ରୁ ଆଉ ଜଣକୁ ଓହ୍ଲେଇବାର ଦେଖି ଦେବେନ୍ଦ୍ରର ସ୍ତ୍ରୀ ଚିତ୍କାରକରିଉଠିଲା । ତଳୁ ସମସ୍ତେ ଚାହିଁଲେ ଉପରକୁ । ସ୍ଥିର ହେଇ ରହିଗଲେ ସେମିତି ।

ସୁରେନ୍ଦ୍ର ଠପ୍‌ଠପ୍ ଓହ୍ଲେଇଗଲା ତଳକୁ । ବୁଢ଼ା ପାଖରେ ଠିଆହୋଇଥିବା ସେ ଚାରିଜଣଙ୍କୁ ଦେଖି ତା' ଦେହ ଶୀତେଇଗଲା । ସେମାନେ ଏକବସ୍ତ୍ରୀ ଫୁଙ୍ଗୁଳା ଲୋକ;

କୋକେଇ କାନ୍ଧେଇବା ଲୋକ । ଡ୍ରାଇଭରର ପିଠିଟା ଖୁବ୍ ଚଉଡ଼ା । ତା ମୁହଁ କେମିତି କେଜାଣି !

ସୁରେନ୍ଦ୍ର କିଛି ପଚାରିବା ପୂର୍ବରୁ ଗୁମ୍ଫା ଭିତରୁ କହିଲାପରି ବୁଢ଼ା କହିଲେ – ''ଦେବେନ୍ଦ୍ର ଭଲ ଅଛି । ଆମେ ଗଲେ, ସେ ଆସିବ । ସେ ସେଇଠି ଶୋଇଯାଇଚି ।''

ଏମିତି କ'ଣ ସ୍ୱର ଶୁଭୁଛି କେଜାଣି ! ସୁଦର୍ଶନ ମହାପାତ୍ରଙ୍କ ସ୍ୱର ତ ସେ ବହୁକାଳୁ ଶୁଣିନାହିଁ ! ଗୋଟାଏ କୂଅ ଭିତରୁ କହିଲା ପରି ଏ ସ୍ୱର । ତାଙ୍କ ସ୍ୱର ଏମିତି ହୋଇଥିବ !

ପୁଣି ଶୁଭିଲା, ''ମତେ ପରା ଶ୍ରୀନିବାସ ବ୍ରହ୍ମା ଡକେଇଛନ୍ତି ? – ଚାଲ ଦେଖିବା !''

ନିରୁପାୟ ସୁରେନ୍ଦ୍ର ବୁଲିପଡ଼ି ପାହାଚ୍ ଧରିଲା । ତା' ପଛରେ ପାଞ୍ଚଜଣ । ଡ୍ରାଇଭରଟା ରହିଗଲା । କିଏ ସେ ଡ୍ରାଇଭର ? – ଦେବେନ୍ଦ୍ର କାହିଁକି ଶୋଇଗଲା ? ଶୋଇଯିବାର ଅର୍ଥ କ'ଣ ?

ଆଉ ଜମା ଦି'ଟା ପାହାଚ୍ । ମୁଣ୍ଡ ପଛରୁ ଗୋଇଠିଯାଏ ରୁମ ଠିଆ ଠିଆ ହେଇଗଲା ସୁରେନ୍ଦ୍ରର । ତା' ପଛରେ ଆଦୌ ପାଦଶବ୍ଦ ନାହିଁ । ସେମାନେ କ'ଣ ରିଭଲ୍‌ଭର୍ ଟେକି ରହିଛନ୍ତି ? ପଛକୁ ଫେରି ଚାହିଁଦେବାକୁ ତା'ର ସାହସ ନାହିଁ । ଗୋଟିଏ ପାହାଚ୍ ଅତି କଷ୍ଟରେ ଉଠିଗଲା । ଆଉ ପାହାଚେ ଗଲେ ଉପରେ ଆଲୁଅ; ବଡ଼ବୋହୂ, ଦେବେନ୍ଦ୍ରର ସ୍ତ୍ରୀ, ପଲଙ୍କରେ ଶୋଇଥିବା ବାପ, ଉହ୍ଲେଇରେ ରଡ଼ନିଆଁ !... କିନ୍ତୁ ସେମାନେ ??

ଓହୋ, ସେମାନେ ସମସ୍ତେ ଖାଲିପାଦରେ ଆସୁଛନ୍ତି ପରା ! ସେ ଭୁସ୍‌କିନା ଶେଷ ପାହାଚଟା ଉଠିଗଲା । ବୁଲିପଡ଼ି ଚାହିଁଲାବେଳକୁ ସେମାନଙ୍କର ମୁଣ୍ଡ ଦିଶୁଚି । ସେମାନେ ସେମିତି ନିଃଶବ୍ଦରେ ଉଠିଆସୁଛନ୍ତି ।

ଆଲୁଅରେ ସୁଦ୍ଧା ବୁଢ଼ା ମୁହଁଟା ଝାପ୍‌ସା ଦିଶୁଥିଲା । ସୁରେନ୍ଦ୍ର ଆଖିକୁ ବୋଧେ ସେମିତି ଦିଶୁଥିଲା । ବାପାଙ୍କ ଶୋଇବା ବଖରାରେ ଖଟ ଆଉ କାନ୍ଥ ସନ୍ଧାରେ ଠିଆହୋଇଥା'ନ୍ତି ଦି'ବୋହୂ – ଆଖିରେ ପଲକ ନାହିଁ; ତୁଣ୍ଡରେ କଥା ନାହିଁ । ପିଲାଗୁଡ଼ାକ କୁଆଡ଼େ ଗଲେ । ସମସ୍ତେ କ'ଣ ଶୋଇଗଲେ ?

ସୁଦର୍ଶନ ମହାପାତ୍ର ଘରେ ପଶୁ ପଶୁ ପଲଙ୍କ ଉପରେ ସେ ଚଞ୍ଚଳ ହୋଇଉଠିଲେ । ଆଖି ଫିଟିଗଲା ।

''ସୁର ! ସୁଦର୍ଶନ ଆସିଲା ?'' ବାପାଙ୍କର ସ୍ୱର ଏମିତି କାହିଁକି ଶୁଭୁଚି – ଅବିକଳ ସୁଦର୍ଶନ ମହାପାତ୍ର ସ୍ୱର ପରି ? ବୁଢ଼ାହେଇଗଲେ ସମସ୍ତଙ୍କର ସ୍ୱର ସମାନ ହେଇଯାଉଥିବ ପରା ? କଅଁଳା ପିଲାଙ୍କ କାନ୍ଦଣା ଏକାଭଳି ନୁହେଁ କି ?

ସୁଦର୍ଶନ ମହାପାତ୍ର ପଲଙ୍କ ଦାଢ଼ରେ ବସି ଗଳା ଝାଡ଼ି କହିଲେ ''କାହିଁକି ଡାକିଲ ?''

ତାଙ୍କ ସାଙ୍ଗରେ ସେ ଯେଉଁ ମାଲଭାଇ ପରି ଚାରିଜଣ ଆସିଥିଲେ, ସେମାନେ ସେଇ ଡହକୁଥିବା ବଡ଼ ଉହ୍ନେଇଟାକୁ ଘେରି ବସିଗଲେ ।

ଇସ୍... ସୁରେନ୍ଦ୍ରକୁ ଏତେ ଗରମ ଲାଗୁଛି କାହିଁକି ? ତା' କପାଳ ଝକେଇଯାଉଛି । ବଡ଼ବୋହୂ ଭୁଲତାରୁ ନାକ ଅଗକୁ ଝାଳ ନିଗିଡ଼ିଯାଉଛି କାହିଁକି ?

ଶ୍ରୀନିବାସ ବ୍ରହ୍ମା ସେମିତି ସ୍ଥିର ପଡ଼ିରହି କହିଲେ, "ଆସିଲୁ, ଭଲକଲୁ ! ସୁଦର୍ଶନ. . . ମୁଁ ତତେ କହିବାକୁ ଡାକିଲି . . . ତୁ ମୋ ମାମୁଘୁଅ ଭାଇ . . . ସାନଭାଇ . . ."

"ହେ... ହେ... ହେ... !" ସୁଦର୍ଶନ ମହାପାତ୍ରଙ୍କ ସ୍ୱର ବୋଧେ ସେମିତି !!

"ମତେ ବେଳ ନାହିଁ... ଶୁଣ... ତୋ' ହାତ ଧରୁଚି... ମତେ କ୍ଷମାକରିଦେ... । ମୁଁ... ମୁଁ... ପାପ କରିଚି ! ଓଃ... ସେ ଯଦି ନାହିଁକରିଥାନ୍ତା... ମୁଁ... ମୁଁ... ତାକୁ ଜମା ଛୁଇଁ ନ ଥାନ୍ତି ! – ସେ ଠିଆରହିଗଲା । ମୁଁ ଦ୍ରୋହ କରିଚି... ମଠ। ପିଣ୍ଡି ମନ୍ଦିରକୁ ବେଲପତ୍ର ନେଇ ଯିବାବାଟରେ ସେ ନିଛାଟିଆ ଗଛଗହଳିରେ ଠିଆହେଇଗଲା । ମୁଁ ପାପୀ... ମୁଁ ବେଲପତ୍ର ଥାଳି ଫୋପାଡ଼ିଦେଲି... ଦୋସଡ଼ା ଫିଙ୍ଗିଦେଲି... ରୁଦ୍ରାକ୍ଷମାଳ ଛିଣ୍ଡିଗଲା... ମୁଁ ଧର୍ମକୁ ହୁଡ଼ିଗଲି... ମାତ୍ର ସେ ପାଟି ଫିଟେଇଲା ନାହିଁ... ମତେ... ମତେ ସେ ସାରିଦେଲା... ସୁଦର୍ଶନ, ମୋ ଭାଇବୋହୂଟାକୁ ଭୂଇଁରୁ ଉଠି ଠିଆହେବାର ଦେଖି ମୁଁ ପଳେଇଆସିଲି !... ମୁଁ ସେକାଳୁ ତୋ' ମୁହଁକୁ ଆଉ ଚାହିଁପାରିଲିନାହିଁ । ଗାଁ ଛାଡ଼ି ଏଠିକି ପଳେଇଆସିଲି । ଲାଜ ଘୋଡ଼େଇବାକୁ ତୋର ଶତ୍ରୁତା କଲି !... ମୁଁ ପାପୀ... ଘୋର... ପାପୀ..."

ଶ୍ରୀନିବାସ ବ୍ରହ୍ମା ମୁଣ୍ଡ ଗଡ଼େଇଲେ କଷ୍ଟରେ । ଆଖିରୁ ପାଣି ନିଗିଡ଼ିଗଲା ।

"ହେ... ହେ... ହେ... ୟେ ଗୋଟେ କଥା ? ତମେ ଯାହା କରିଚ ସେଗୁଡ଼ା ସବୁ ପିଲାଖେଳ । ମନରୁ ଇନ୍ଦ୍ରି ଶୁଖିଗଲେ ସେ ବଳେ ଚାଲିଯାଏ । ମୁଁ କେତେ ସେମିତି ଖେଳିଚି ତା'ର ଠିକଣା ନାଇଁ ।"

ଉହ୍ନେଇ ଚାରିପଟୁ ସେମାନେ ବୋଧେ କିର୍‌କିର୍ ହସିଲେ । ଚାହିଁଲାବେଳକୁ ଚୁପ୍ । ବୋହୂଯୋଡ଼ାକ ତଳକୁ ମୁଣ୍ଡ କରି ଠିଆହେଇଛନ୍ତି । ସୁରେନ୍ଦ୍ରକୁ ଖୁବ୍ ଦୁର୍ବଳ ଲାଗୁଛି; ପଡ଼ିଯିବ କି ?

"ତେମେ ଏଡ଼େ ଜାଣିବା-ଶୁଣିବା ହୋଇ ହେମ୍‌ତି କାଇଁ ବାଉଳିହଉଚ ?" – କହିଲେ ସୁଦର୍ଶନ କକେଇ, "କିଏ ! ପାପ କ'ଣ, ପୁଣ୍ୟ କ'ଣ ? ଭାବିଲେ ପାପ, ନଇଲେ ନାଇଁ । ନାସାରନ୍ଧ୍ରରେ ପବନ ଯାଉଚି, ଆସୁଚି... ତାକୁ କ'ଣ କହିବା ସେ ଏ ପିଣ୍ଡକୁ ସମ୍ଭୋଗୁଚି, ପାପ କରୁଚି ନା ପୁଣ୍ୟ କରୁଚି ? – ଏଇ କଥାକୁ ଭାଇନା, ଏତେ କଟାଳ ? ଛ୍ୟା, ଛ୍ୟା... ମୁଁ ସେଥିରୁ ଭରଣ ଭରଣ କରିଚି । ମୁଁ ତାକୁ ଖ୍ୟାସ୍ କରେ ନାଇଁ !... ମାତ୍ର ତମକୁ ଆଉ କଥାଏ ମୋ ଆଡୁ କହିବାକୁ ଆସିଚି । ସେଥିରେ ମୁଁ ଘାଣ୍ଟିହୋଇଚି ତିରିଶ ବର୍ଷ ।"

ସୁଦର୍ଶନ ମହାପାତ୍ର ମୁଣ୍ଡ ତଳକୁ । ସ୍ୱର ଆହୁରି ଗହୀରିଆ । – ‘‘ତମ ପୁଅ କିଏ... ମୋ ପୁଅ କିଏ ? ତମ ବଡ଼ପୁଅ ନରେନ୍ଦ୍ରକୁ ବାରବର୍ଷ ହେଇଥାଏ । ରଜାଟାଏ ପରି ଦିଶୁଥାଏ ସେ ଟୋକା । ତାକୁ ଦେଖି ମୁଁ ସହିପାରିଲିନାହିଁ । ତେମେ ସେତେବେଳକୁ ଏଠିକି ଉଠିଆସିଲିଣି । ମାଲିମକଦ୍ଦମା, ଶତ୍ରୁତା, କାହିଁରେ କ’ଣ ! କ’ଣ ମତେ ଗ୍ରାସିଲା କେଜାଣି ମୁଁ ସେ ଟୋକାଟାକୁ ଚୈତନ ମିଶ୍ରର ପୂଜାରେ ପକେଇଦବାକୁ କହିଦେଲି । ସେଇଟା ପାଷଣ୍ଡଟାଏ । ତନ୍ତ୍ରରେ ପକେଇ ତିନିଦିନରେ ମାରିଦେଲା । ମୁଁ ସେ ଟୋକାର ରଇ ଛଳିବା ଗାଁମୁଣ୍ଡେ ଠିଆ ହେଇ ଦେଖିଚି । ସେଇଟା ମୋ ଭିତରେ ଜଳୁଚି ଏଯାବତ୍ । ଭାଇନା, ମତେ ସେଥିରୁ ମୁକ୍ତକେଇଦିଅ ।’’

ସୁରେନ୍ଦ୍ରକୁ କୋର୍ଟ ରୁମ୍‌ରେ ଗୋଟାଏ ମୁଦା କାଠବାକ୍ସ ଫିଟାଇ ରକ୍ତସାଲୁବାଲୁ କନା ଆଉ କଟୁରି କାଢ଼ି ସେ ଦାଢ଼ିଆ ମିଆଁ ଇନ୍‌ସପେକ୍ଟର ଦେଖଉଚି । ‘‘ହେ... ହେ... ହେ’’ – କିଏ ହସିଲା କେଜାଣି ! ଶ୍ରୀନିବାସ ବ୍ରହ୍ମା ରହି ରହି କହିଲେ, ‘‘ଆରେ, ଯାଉନୁ, ସୁଦର୍ଶନ ! ଏଥିରୁ ଗୋଟେ କଥା ଧରିବସିଚୁ । ଯେ ଯାହା ମାଣକ ନେଇ ଆସିଚି । ସେତକ ନ ପୂରିଲେ ଚୈତନ୍ୟ ମିଶ୍ର ନା ତା ବୋପା – କିଏ ତା ରୁମ ବଙ୍କାକରିଥାନ୍ତା ।... ସେଥିରୁ ଗୋଟେ ଅର୍ଘା ଟୋକା ଏ ଘରେ ଜନ୍ମିଥିଲା । ବଞ୍ଚିଥିଲେ କ’ଣ କରିଥାନ୍ତା କେଜାଣି । ଏ ପୃଥ୍ୱୀଟାକୁ ମଛିପକେଇଥାନ୍ତା ପରା ! ସେଥକୁ ତାକୁ ଏଠୁ ନେଇଗଲା । ସେଥିରେ ତୁ କିଏ, ମୁଁ କିଏ, ଆଉ ସେ ମଶାଣିମୁହାଁ ଚଇତନିଆ କିଏ ?... ହେ... ହେ ହେ... ହେ... ହେ...’’

ସୁରେନ୍ଦ୍ରର ପିଣ୍ଡ ଠକ୍‌ଠକ୍ ଥରିଲା । ତଳ ଶୋଇବାଘରୁ ପିଲାଟାଏ କିଏ ପାଟିକଲା । ବଡ଼ବୋହୂର ଆହୁରି ଝାଳ ଥୋପିଲା । ସାନବୋହୂର ହାର ବୁଡ଼ିଗଲା ଝାଳରେ ।

ଶ୍ରୀନିବାସ ବ୍ରହ୍ମାଙ୍କ ହାତଟାକୁ ତାଙ୍କ ବୁକୁ ଉପରେ ଥୋଇଦେଇ ସୁଦର୍ଶନ ମହାପାତ୍ର ଉଠିଲେ । ସୁରେନ୍ଦ୍ରକୁ ଦିଶିଲା ସେ ଭାରି ଉଚ୍ଚ । ତାଙ୍କ ପଛେ ପଛେ ଚାରିଜଣ ମାଲଭାଇ ଉଠିଲେ । ସେମାନଙ୍କର ଫୁଙ୍ଗୁଳା ପିଠି ତେଲ-ସରସର ଦେଖାଯାଉଥିଲା । ସେମାନେ ପାହାଚ୍‌ରେ ସେମିତି ନିଃଶବ୍ଦରେ ଓହ୍ଲେଇଗଲେ ।

ସୁରେନ୍ଦ୍ର, ସାନବୋହୂ, ବଡ଼ବୋହୂ ସେମିତି ଠିଆ ହୋଇ ରହିଲେ ଉପର ପିଣ୍ଡାରେ ।

ବୁଢ଼ାକୁ ସେମାନେ ହାତଫନ୍ଦାରେ ଟୋକି ନେଇ ଗାଡ଼ି ଭିତରେ ପୂରେଇ ଦେଲେ । ଡ୍ରାଇଭର ସେମିତି ପଛକରି ଠିଆହୋଇଥାଏ । ତା’ ପିଠିଟା କୁଲା ପରି ଓସାର । ସେ କେତେବେଳେ ଚଟ୍‌କିନା ବସିଗଲା ଗାଡ଼ିରେ । ଗାଡ଼ିର ଆଲୁଅ ପଡ଼ିଲା । ଘାଇଁ ଘାଇଁ ଡାକ ଦେଇ ଗାଡ଼ି ବୁଲିଗଲା ଅନ୍ଧାରକୁ, ବଡ଼ରାସ୍ତାକୁ ।

ହଠାତ୍ ଆଲୁଅଟା ଲିଭିଗଲା, ପୁଣି ଜଳିଲା ।

କିନ୍ତୁ ଗାଡ଼ି ମୁହଁ ମୋଡ଼ି ଫେରିଲା କାହିଁକି ? ନା ଇଏ ଆଉ ଗୋଟାଏ ଗାଡ଼ି । ସୁଦର୍ଶନ ମହାପାତ୍ର ପୁଣି ଫେରିଲା କି ? କାହିଁକି ? ସୁରେନ୍ଦ୍ରର ତଣ୍ଟି ଶୁଖିଗଲା । ସାନବୋହୂ ମୁହଁ ଘୋଡ଼େଇ ଟଳିଲା । ବଡ଼ବୋହୂ ପାଟି ମେଲେଇ ଧକେଇଲା ।

ଗାଡ଼ି-ଆଲୁଅ ମାଡ଼ିଆସିଲା ଏକାଥରେ ଦୁଆରମୁହଁକୁ । କବାଟଟା ଦୁମ୍ କିନା ବାଡ଼େଇ ଗାଡ଼ି ପାଖରେ ଏକୁଟିଆ ଠିଆହେଲା ଓଭରକୋଟ ପିନ୍ଧି ଦେବେନ୍ଦ୍ର । ତା' ସ୍ତ୍ରୀ ଚିତ୍କାର କରିଉଠିଲା । ଓଭରକୋଟ ମୁଣାରେ ହାତ ଭର୍ତ୍ତିକରି ସେ ଉପରକୁ ଚାହିଁ ସ୍ଥିରହେଇଗଲା ।

ସୁରେନ୍ଦ୍ର ଓହ୍ଲେଇଗଲା ତଳକୁ । ତା' ହାତଗୋଡ଼ ଠକ୍‌ଠକ୍ ଥରୁଥିଲା । ସେ କିଛି କହିବା ଆଗରୁ ତା' ନାକରେ ସରାବ୍ ଗନ୍ଧ ବାଜିଲା । ସେ ବୁଝିଗଲା । ଦେବେନ୍ଦ୍ର ଥଙ୍ଗେଇଲା ପରି କହିଲା, ''ସେ ଶଳା ସୁଦର୍ଶନ ମହାପାତ୍ର ଆଜି ସଞ୍ଜବେଳୁ ମଲାଣି । ମଲାବେଳେ ଶ୍ରୀନିବାସ ବ୍ରହ୍ମାକୁ ଡାକୁଥିଲା... ହେ... ହେ... ଶାଲେ ଦୋନୋ ବେକୁବ୍ ବୁଡ୍‌ଢେ !''

ପଛଆଡ଼ିଆ ଲଡ଼ବଡ଼ ଘୁଞ୍ଚିଯାଇ ସୁରେନ୍ଦ୍ର ଦାଣ୍ଡପିଣ୍ଡାରେ ଲଥ୍‌କିନା ବସିପଡ଼ିଲା । ଉପର ପିଣ୍ଡାରେ ଦି'ବୋହୂଯାକ ସେମିତି ନଦ୍‌ନାଦ୍ ବସିପଡ଼ିଲେ, ଗୋଡ଼ ହୁଗୁଳି ଗଲା । ଭିତର ଘରୁ ପିଲାଏ ଚିହୁଁକୁଥିଲେ ।

ରାତି ବାରଟା । ଦେବେନ୍ଦ୍ର ଉପରକୁ ଉଠିଆସୁନାହିଁ କାହିଁକି ? ସେଇଠୁ ଘୁଞ୍ଚୁନାହିଁ କାହିଁକି ??

□□□

# ବାନପ୍ରସ୍ଥ

ଏମିତି ସବୁ ହଠାତ୍ ଚୁପ୍‌ଚାପ୍ ହେଇଗଲା ଯେ ! ଝଡ଼ଟାଏ ହବ କି ?

ସମସ୍ତଙ୍କୁ ଖୁବ୍ ଅସ୍ୱସ୍ତି ଲାଗୁଥାଏ । ତାତିଯାଉଥାଏ କାନ୍ଥବାଡ଼ ସେ ସ୍ତବ୍ଧତାରେ । ନିଃଶ୍ୱାସ ରୋଧି ଉତ୍କଣ୍ଠିତ ଅବସ୍ଥାରେ ସମସ୍ତେ ଠିଆହୋଇଥାନ୍ତି । କୃଷ୍ଣ ବାହିନୀପତିଙ୍କ ସମଗ୍ର ପରିବାର ଦୁରୁଦୁରୁ ଛାତିରେ ଅପେକ୍ଷା କରିଥାନ୍ତି କେତେବେଳେ ଛାତ ଭୁଶୁଡ଼ି ପଡ଼ିବ ଏବଂ କାନ୍ଥମାନେ ସୋରା ସୋରା ହୋଇ କୁଢ଼େଇହୋଇଯିବେ ଚାରିଦିଗକୁ ।

କିନ୍ତୁ କୃଷ୍ଣ ବାହିନୀପତିଙ୍କ କୁଞ୍ଚିତ ଭୃରୁ ସଳଖିଗଲା । ସାମାନ୍ୟ ତଳକୁ ଏବଂ ଶୂନ୍ୟକୁ ଚାହିଁ ସେ ଅଳ୍ପ ହସିଦେଲେ ।

କାହାରି ବିଶ୍ୱାସ ହେଲାନାହିଁ । କେହି ମୋଟଉପରେ ପ୍ରସ୍ତୁତ ନ ଥିଲେ ସେ ହସଟି ପାଇଁ । ତାଙ୍କ ବଡ଼ପୁଅ, ଯେ କି ଅଣ୍ଟାରେ ହାତ ରଖି ଗୋଡ଼ ଫରକଟେଇ ଠିଆହୋଇଥିଲା ଝଡ଼ର ପ୍ରତ୍ୟାଶାରେ ଝଡ଼ର ମୁକାବିଲା କରିବାକୁ, ସେ ବି ନୁହେଁ ।

ସମସ୍ତେ ଘୋର ଅସୁସ୍ଥବୋଧକଲେ । ପ୍ରତ୍ୟାଶିତ ଝଡ଼ ନ ଆସିବାରୁ କେମିତି ଗୋଟାଏ ହତାଶ, ବିଫଳ ଏବଂ ବ୍ୟର୍ଥ ଲାଗିଗଲା ହଠାତ୍ । ସବୁ ଭାଙ୍ଗିରୁଜି ଦେଉ ବରଂ ଝଡ଼ ହିଁ ଆସୁ ବୋଲି ସେମାନେ ନିଃଶ୍ୱାସ ରୋଧି ଅପେକ୍ଷା କରିଥିଲେ ତ; ସେଥିପାଇଁ ସେ ହସଟିକୁ ନେଇ ସେମାନେ କ'ଣ କରିବେ ବୁଝିପାରିଲେନାହିଁ । ସିଂହଗୁମ୍ଫା ଆଗରେ ସିଂହ ଗର୍ଜିବ; ସିଂହ ଝାମ୍ପିବ ବୋଲି ଅପେକ୍ଷା କରୁଥିଲାବେଳେ ହଠାତ୍ ହାତ ଉପରେ ଗଙ୍ଗଶିଉଳି ଫୁଲଟିଏ ଖସିପଡ଼ିଲା । ନିହାତି ଅସ୍ୱସ୍ତି ଲାଗିବା କଥା ।

ସମସ୍ତଙ୍କ ସାମ୍ନାରେ ସେଇ ପାତଳ ହସଟିକୁ ଘୋଡ଼େଇ ହୋଇ କୃଷ୍ଣ ବାହିନୀପତି ପଦାକୁ ବାହାରିଗଲେ । ତାଙ୍କ ପାଦଶବ୍ଦ କାହାରିକୁ ଶୁଣାଗଲା ନାହିଁ । କାନ୍ଥଘଣ୍ଟାଟି କେବଳ ଟିକ୍‌ଟିକ୍ ଚାଲୁଥିଲା ପୁରୁଣା ହୃତ୍‌ପିଣ୍ଡଟିଏ ପରି ।

ରାଜୀବ ବାହିନୀପତି ଦୁମ୍‌ଦୁମ୍ ହେଇ ଚାଲିଗଲା ଦୋ'ମହଲାରେ ତା ଶୋଇବାଘରକୁ । ସାନଭାଇ ରଞ୍ଜନ ଚାଲିଗଲା ରୋଷେଇଘର ଆଡ଼କୁ । ମଝିଆ ଦୁଇ ଭାଇ, ବୋହୂମାନେ, ନାତିନାତୁଣୀମାନେ ଯେ ଯାହା ଦିଗରେ ବାହାରିଗଲେ ଏକୁଟିଆ ବସି ଘଟଣାଟାକୁ ନିରେଖିବାପାଇଁ । ରାଜୀବ ଅନେକ ବର୍ଷଧରି ସେଇ ଭଳି କହିଆସିଛି; କିନ୍ତୁ ଅନ୍ୟମାନଙ୍କ ଆଗରେ । ସମସ୍ତେ ଭାବିଛନ୍ତି ଯେ, ଏମିତି ସେ ବାପ ପଛରେ ସିନା ପଚାଶ କଥା କହୁଥିବ; କିନ୍ତୁ କୃଷ୍ଣ ବାହିନୀପତି ସାମ୍ନାରେ ତା' ପାଟି ଫିଟିବ ନାହିଁ । ତଥାପି ରାଜୀବର ବୟାଳିଶ ବର୍ଷୀୟ ପୁରୁଷକାର ଉପରେ ସେମାନେ ତାଉ ଚଢ଼େଇଆସିଛନ୍ତି । ସେମିତି ବି ଦୈନନ୍ଦିନ ଘଟଣା ଘଟିଆସିଛି ।... ଦିନେ ରାତି

ଦଶଟାରେ ଘରକୁ ଫେରିଲାବେଳେ ବାଟରୁ ତା' ସାନପୁଅର କାନ୍ଦ ଶୁଣି ସେ ତାତିଯାଇଥିଲା । ତାକୁ ସେତେବେଳେ ଖୁବ୍ ଭୋକ ବି କରୁଥିଲା । ସେ ଧାଇଁଲାପରି ତା' ବଖରାରେ ପଶି ଭୟଙ୍କର ଚିତ୍କାର କରିଥିଲା । ପୁଅ ତୋଟିକୁ, ନ ହେଲେ ମାଈପ ତୋଟିକୁ ହୁଏତ ଚିପିଦେଇଥାନ୍ତା । ତା' ସ୍ତ୍ରୀ କିନ୍ତୁ ଆଦୌ ବିଚ୍‌ଳିତ ନ ହୋଇ ସୁକ୍‌ସୁକ୍ କାନ୍ଦ ଭିତରେ କହିଥିଲା, ''ବାପକୁ ହାତ ନ ପତେଇଲେ ଯଦି ଚଳିବାକୁ ତୁମର ବଳ ନାହିଁ, କାହିଁକି ପିଲାଝିଲାଗୁଡ଼େ ଜନ୍ମକରୁଥିଲ ? କାହିଁକି ବିଭା ହଉଥିଲ ? ମୁଁ ମୋ ପିଲା ପାଇଁ କାହାକୁ ଅମୁଲ କ୍ଷୀର ମାଗିପାରିବି ନାହିଁ । ନ ହେଲେ ମତେ ଛାଡ଼ିଦଉନା; ମୁଁ ଦୁଃଖ କରି ମୋ ପିଲାକୁ ପୋଷିବି !'' ରାଜୀବକୁ ଦଶଦିଗ ଅନ୍ଧାର ଦିଶିଥିଲା । ସେ କାନ୍ଥରୁ ବନ୍ଧୁକ ଉଠାଇଆଣିଥିଲା ବାପକୁ ଯୋଉଠି ପାଇବ ସେଇଠି ଲାଛିଦେବ ବୋଲି – ''ଶଳା ବୁଢ଼ାକୁ ଏଇନା ଖତମ କରିବି ।'' ପାଗଳ ପରି ବାହାରିପଡ଼ିଲାବେଳକୁ ନୌକର ଟୋକା ଝୋଲାଟିଏ ଧରି ପଶିଆସିଲା । ତା' ଭିତରୁ କେଜିକିଆ ବଡ଼ ଅମୁଲ୍ ଡବାଟିଏ ଥୋଇଦେଇ ଆଡ଼େଇହୋଇଯାଇଥିଲା ।

କୃଷ୍ଣ ବାହିନୀପତି ମାଲିକ । ସମଗ୍ର ଖାନ୍ଦାନର ଏକଚ୍ଛତ୍ର ଅଧିପତି । ତାଙ୍କରି ଇଚ୍ଛାରେ ଉତ୍ତରମୁହାଁ ଘର । ତାଙ୍କରି ଇଚ୍ଛାରେ ଅଗଣାରେ ଅଗସ୍ତି ଗଛ । ତାଙ୍କରି ଇଚ୍ଛାରେ ବର୍ଷକ ଧାନ କିଣିବାକୁ ଏକମାତ୍ର ବନୱାରିଲାଲ୍ । ଅଥଚ୍ ଆଖପାଖ ସମସ୍ତଙ୍କ ଘରକୁ ଦକ୍ଷିଣମୁହାଁ ପବନ ଆସେ । ଅନେକଙ୍କ ଅଗଣାରେ ଜାତି ଜାତି ଫୁଲ ଫୁଟେ । ସମସ୍ତଙ୍କ ଧାନ ପାଇଁ ସରକାରୀ ବ୍ୟବସାୟୀ ବସ୍ତାରେ କୋଡ଼ିଏ ଟଙ୍କା ଦିଏ । କିନ୍ତୁ କ'ଣ କରାଯାଇପାରେ ? କୃଷ୍ଣ ବାହିନୀପତିକୁ ବୁଝେଇବ କିଏ ?

ସେହିପରି ରାଜୀବର ମନ ନଥିଲେ ସୁଦ୍ଧା ସେ ଡାକ୍ତରୀ ପଢ଼ି ପଢ଼ି ଆଉ ଡାକ୍ତର ହେଇପାରିଲାନାହିଁ । ତା' ତଳ ଭାଇ ଦି'ଟାଯାକ ଓକିଲାତି ପଢ଼ିପାରିଲେ ନାହିଁ । ସାନଭାଇ ଭିଡ଼ିହଉଚି ବାଣିଜ୍ୟ-ବିଦ୍ୟା ପଢ଼ିବ ନାହିଁ; ଶେଷକୁ ସେ ବି ଛାଡ଼ିଦେବ । ସମସ୍ତଙ୍କ ପାଇଁ ସବୁବେଳେ ସବୁ ନିଷ୍ପତ୍ତି କେବଳ ଜଣେ ନେଇଆସିଛି ଗତ ଚାଳିଶବର୍ଷଧରି । ଅନ୍ଧାରଘରୁ ବାହାରିବାକୁ ବାଟ ନପାଇ ଗୋଟାଏ କାନ୍ଥରେ ସମସ୍ତେ ବାଡ଼େଇହେଉଛନ୍ତି । ପରସ୍ପର ପାଖରେ ଗୁଡ଼ାଏ ଅଶଢ଼ କଥା କହୁଛନ୍ତି । ତ୍ରୁଟି ଧରି ପିଟାପିଟି ହେଉଛନ୍ତି । ଭାତଖିଆ ପାଖରେ ଥାଳି ଗିନା ଫୋପାଡୁଛନ୍ତି । ସାଧାରଣ କାରଣ ପାଇଁ ମା'ମାନେ ପିଲାଙ୍କୁ ମାଡ଼ ମାରୁଛନ୍ତି । ତଥାପି ପିଲାଙ୍କ ଜାମା କିଣାହଉଚି ନିୟମିତ ଭାବରେ – ପ୍ରତି ରଥଯାତ୍ରାକୁ, ଜନ୍ମଦିନକୁ, କୁମାରପୂର୍ଣ୍ଣିମାକୁ । ନାତିନାତୁଣୀଙ୍କ ଯାବତୀୟ ପ୍ରୟୋଜନ ପାଇଁ ବ୍ୟବସ୍ଥା ହେଉଛି ପ୍ରତିଦିନ । ରନ୍ଧାଶାଳରେ ଦୈନିକ ଆମିଷ ନିରାମିଷ ଚାରିଠା' ପ୍ରସ୍ତୁତ ହେଉଛି । ବାହାରେ ବାହିନୀପତିଙ୍କ ପରିବାରର ଇଜ୍ଜତ ଯେମିତି ଥିଲା ସେମିତି ରହିଛି ।

ସେଦିନ ଥିଲା କୁମାରପୂର୍ଣ୍ଣିମା । ସକାଳ ବଜାର ସରିଆସିଲା ପରେ ନୌକର ଟୋକା ଗୋଟାଏ ଥାକ ନୂଆ ଲୁଗା ଆଣି ଭିତର ପିଣ୍ଡାରେ ଦୁମ୍‌କିନା ଥୋଇଦେଲା ।

ଛୋଟପିଲା ସବୁ ଝପଟିଆସି ବେଢ଼ିଗଲେ । ନୂଆ ଜାମା ଆସିଗଲା ସମସ୍ତଙ୍କ ପାଇଁ । ଯେ ଯାହାର ବାଛି ପିନ୍ଧିସାରିଲା ପରେ ଦାଣ୍ଡବଖରାରେ ଯାଇ ଜେଜେଙ୍କୁ ମୁଣ୍ଡିଆ ମାରିଥାନ୍ତେ; ଟଙ୍କା ମାଗିଥାନ୍ତେ । ଜହ୍ନ ଉଇଁଥାନ୍ତା – ଏଡ଼େବଡ଼ ଥାଳିପଟ ପରି ପୂନେଇଁ ଜହ୍ନ । ଘରେ ବାହାରେ ଜହ୍ନ ଉଇଁଯାଇଥାନ୍ତା । ମହୋତ୍ସବର ଜହ୍ନ ।

କିନ୍ତୁ ବଡ଼ବୋହୂ ଓହ୍ଲେଇ ଆସି କେଜାଣି କାହିଁକି ତା' ତିନିଟା ପିଲାଙ୍କୁ ସେ ଗହଳି ଭିତରୁ ଓଟାରିନେଲା । ତାଇ ତାଇ ବଜେଇଦେଲା ସେମାନଙ୍କ ହସକୁରା ଗାଲମାନଙ୍କରେ ଚଟକଣା । ସେମାନେ ଆବାକାବା ହେଇ ଅନେଇଲେ; ଝିଙ୍କି ହେଲେ, କାନ୍ଦିଲେ । ତାକୁ ଦେଖି ଆର ଦୁଇ ବୋହୂ ମଧ ସେଇଆ କଲେ । ମା'ମାନଙ୍କର ରୋଷ, ପିଲାଙ୍କ କାନ୍ଦଣାରେ ମେଣ୍ଢାଶାଳରେ ନିଆଁ ଲାଗିଲାପରି ଗୋଳ ଉଠିଲା । ବାପମାନେ ଉଠିଆସି ଠିଆହେଲେ ସେମାନଙ୍କ ପଛରେ । ନୌକର ଟୋକା ଲୁଗା ଗଣ୍ଠିଲିଟି ଫିଟେଇଦେଇ ବସିରହିଲା ବୋକାଙ୍କ ଭଳି ।

ରାଜୀବ ପେଣ୍ଟମୁଣାରେ ହାତ ଭର୍ତ୍ତିକରି ଖେପିଆସିଲା ତା'ରି ଉପରକୁ । ସେ ଭୟରେ ଉଠି ଲେଉଟି ପଡୁ ପଡୁ ତା' ଅଣ୍ଟାରେ କଚ୍‌କିନା ଗୋଟାଏ ଲାତ ବସିଗଲା । ସେ ପଡ଼ିଉଠି ଘୁଷୁରିଗଲା ଅଗଣାକୁ ।

– "ଶଳା ଆସିଚି କାଙ୍ଗାଳଙ୍କୁ ଲୁଗା ବାଣ୍ଟିବାକୁ ? ଆଉ ପଡ଼ି ଖଞ୍ଜାହେଇଚି – ଏ ଶଳା ଲୁଗା ବେଠିଆ, ମୂଲିଆଙ୍କ ସାଙ୍ଗରେ ଆମ·ପାଇଁ ??"

ସେ ଗୋଡ଼ ମାରି ଦଳିଚକଟି ସେ ନୂଆ ଜାମାପଟାକୁ ଛିନିଛତ୍ର କରିପକେଇଲା । ପିଲାଏ ଯାହା ଭେଁ-ଭାଁ ହଉଥିଲେ, ଏଡ଼େଟାମାନ ଆଖିକରି ଅନେଇଲେ । ବଡ଼ ଦଦେଇକୁ ପିଲାଏ ପ୍ରାଣେ ଭୟକରନ୍ତି । ତାଙ୍କୁ କିଏ କହିଦେଇଚି ଯେ, ସେ ନିଶା ଖାଆନ୍ତି । ଅଣ୍ଟାରେ ସବୁବେଳେ ଏଡ଼େବଡ଼ ଛୁରୀ ଖୋସାହେଇଥାଏ ।

ଭାଇ, ଭାଇବୋହୂ, ପିଲାମାନେ ସମସ୍ତେ ଆଡ଼ ହେଇଗଲେ । ସାପଖେଳ ଦେଖିଲା ଭଳି ସେମାନେ ଘେର ମାରି ଠିଆହୋଇଥାନ୍ତି । ମଝିରେ ପାଗଳ ପରି ରାଜୀବ ସେ ଛୋଟ ଛୋଟ ନାଲିନେଳି ଜାମାଯୋଡ଼, ଶାଢ଼ି, ପ୍ଲାଷ୍ଟିକ୍ ମୁଣାମାନଙ୍କରେ ଦଢ଼ ପେଣ୍ଟସାର୍ଟ ସବୁ ଚକଟିପକଉଥାଏ । ଲାତମାଡ଼ରେ ଛିଟିକି ପଡୁଥାନ୍ତି ସେ ସବୁ କୁଆଁର ପୂନେଇଁର ଖଣ୍ଡ ଖଣ୍ଡ ଜହ୍ନପରି ।

ଏତିକିବେଳେ କୃଷ୍ଣ ବାହିନୀପତି ଆସି ପିଣ୍ଡାମୁଣ୍ଡରେ ଠିଆହେଇଗଲେ । ରାଜୀବ ସେଇଭଳି ଚକଟିଲାଗିଥାଏ । କହୁଥାଏ, "ଶଳା, ଗୋଟାଏ ପତିଆରା ଚାଲିଚି । ଆମେ କ'ଣ ଏଠି ଖାଲି ବେଧପିଲାଗୋଠ କରି ପଡ଼ିଚୁ । ମେଣ୍ଢା ପୋଷି ପଲ ମଡ଼େଇଲା ପରି ସେ ଆମକୁ ପଡ଼ି ଖଞ୍ଜୁଥିବ ? ମାର୍ ଶାଲା । ଯାଃ ଶାଲା ! ହମ୍ ନହିଁ ମାଁଗ୍‌ତା ! ଶଳା ତୋ ପଇସା, ଜମିବାଡ଼ି, କୋଠା କୋଉଠୁ ଆଣିଚୁ, ମୁଁ ଜାଣିନାଇଁ ? ଶାଲା, ବୁଢ଼ା ଟାଉଟର । କେତେ ଲୋକଙ୍କୁ ନ ଠକିଚୁ । କେତେ ଜୁଆ ନ ଖେଳିଚୁ ? ହମ୍ ସବ୍ ଜାନ୍‌ତା ହେ । ତତେ ଶଳା ମୁଁ ଫାଶୀଚଢ଼େଇଦେବି । ଏ

ବଙ୍ଗଳାକୁ ନିଆଁ ଲଗେଇଦେବି । ଶାଳା, ମୁଁ ଏଠି ଆଉ ଏକ ମିନିଟ୍ ରହିବାକୁ ଚାହେଁ ନାହିଁ ।''

ସମସ୍ତଙ୍କ ଆଖିରେ ପଲକ ନ ପଡ଼ିବା, ସମସ୍ତଙ୍କ ପିତୁଳା ସ୍ଥିର ହୋଇ ଯାଇଥିବା ସେ ଦେଖି ପାରୁ ନ ଥିଲା । ଚାରିଆଡୁ କ'ଣଟାଏ ପାକଳ କାଟି ଘେରିଆସୁଥିବା ସେ ଅନୁଭବି ପାରୁ ନ ଥିଲା । ତା'ର ଦୁର୍‌ଦୁରୁ ପାଦଶବ୍ଦ ଲୁଗା ଉପରେ ଧିମେଇଗଲା, ଲିଭିଗଲା । ତା' ସଁ ସଁ ନିଃଶ୍ୱାସ ତାକୁ ଖୁବ୍ ନିକଟରେ ଶୁଣାଗଲା । ସେ ବୁଲି ଚାହିଁ ଦେଖିଲା, ବାପ ଠିଆହେଇଚି !

ମୁହୂର୍ତ୍ତେ ରହି ପୁଣି ଚକଟିଲା ଲୁଗାକୁ । ଗର୍ଜିଲା, ଗୋଡ଼ ଫରକଟେଇ ହାତକୁ ଅଣ୍ଟାରେ ରଖି ଠିଆହେଲା ନୂଆ ଜାମାର ବିପର୍ଯ୍ୟସ୍ତ କୁଞ୍ଚ ଉପରେ । ଦାନ୍ତ କାମୁଡ଼ି ଅନେଇଲା କୃଷ୍ଣ ବାହିନୀପତିଙ୍କୁ ।

କୃଷ୍ଣ ବାହିନୀପତିଙ୍କ ଭୂରୁ କୁଞ୍ଚେଇଗଲା । ମୁହଁର ରେଖାସବୁ ଇସ୍ପାତ୍ ଗାର ପରି ଟାଣିଗଲା । ସ୍ତବ୍ଧ ହେଇଗଲା ଚାରିଆଡ଼ ଝଡ଼ର ପ୍ରତୀକ୍ଷାରେ ।

ଓଃ, କେତେ ଦିନର ପ୍ରତ୍ୟାଶିତ ସେ ଝଡ଼ – ଲୁହା ଜଂଜିର ଛିଣ୍ଡେଇବାର, ରୁନ୍ଧା ଅମୁହାଁ ଦେଉଳକୁ ଭାଙ୍ଗିଦେବାର ଝଡ଼ । ମୁକ୍ତି ! ସ୍ୱାଭାବିକ ହାତଗୋଡ଼ ମୁକୁଳିଯିବାର ସ୍ୱାଧୀନତା । ଏକୁଟିଆ ନିରାଲମ୍ବ ଖସିପଡ଼ିବାର ଭୟ । ଏଣେ ପୁଣି ସୁଅରେ ଭାସିଯିବାର ଆତଙ୍କ । ନିଆଁର ଜଳିଯିବାର ମୋହ । ଭୟାବହ ଝଡ଼ । ପ୍ରିୟ, ପ୍ରତ୍ୟାଶିତ ରକ୍ତାକ୍ତ ବିଦ୍ରୋହର ଝଡ଼ । କିନ୍ତୁ ଆକାଶର ଗ୍ରନ୍ଥି ଫିଟିଯାଇଥିଲା । ଝଡ଼ ହୋଇ ନ ଥିଲା ।

କୃଷ୍ଣ ବାହିନୀପତି ପାତଳ ହସଟିଏ ଘୋଡ଼େଇ ନୀରବ ହୋଇ ବାହାରିଯାଇଥିଲେ ପଦାକୁ । ରାଜୀବ ତା' ଶୋଇବାଘରକୁ ସିନା ଉଠିଯାଇଥିଲା, ସେଠି କିନ୍ତୁ ରହିପାରିଲାନାହିଁ । ସେମିତି ପକେଟରେ ହାତ ପୂରେଇ ପହିଚ କାଟୁଥାଏ । ତା' ଭୂରୁ ଓହଳିରହିଥାଏ । ସେ ଫଟ୍‌କିନା ବୁଲିପଡ଼ି ବାହାରିଆସିଲା । ଓହ୍ଲେଇଗଲା ତଳକୁ ଏବଂ ଦାଣ୍ଡକୁ ।

ବାଟରେ ସାନଭାଇ ରବି ସାଙ୍ଗେ ଦେଖାହେଲା । ସେ ଆଖି ଟେକି ଥରେ ଚାହିଁଲା । ତା'ପରେ ଚାଲିଗଲା ମୁହଁପୋତି । – ''କିଏ ସେଇଟା, ଇଡ଼ିଅଟ୍ କାହାଁକା ! ଶାଳା, ମାଇପବୋଲକରା, ଅକର୍ମଣ୍ୟ ଭାର୍ଦା । ଓଃ, ତା' ଚେହେରା କେମିତି ସେ ବୁଢ଼ା ଟାଉଟର ଭଳି ଦିଶିଆସିଲାଣି । ବେକୁବ୍ କାହାଁକା ! ମଲା ଧଣ୍ଡସାପ ପରି ପଡ଼ିଥାଏ, ଦି'ଓଳି ଭାତଗଣ୍ଡେ ଖାଇ ମନ୍ଦା ବଢ଼ଉଥାଏ । ଏମିତି ଯାଇ ବାହାରେ ଚା'କପେ ଖାଇବାକୁ ଅଣ୍ଟାରେ ବଳ ନାହିଁ । ୟା'ଠୁ ଅନ୍ତତଃ ଶହେ ଗଜ ଦୂରରେ ନ ରହିଲେ ନିଃଶ୍ୱାସ ରୁନ୍ଧିହେଇଯିବ ।'' – ରାଜୀବ ପିଉଥିବା ସିଗ୍ରେଟ୍‌ଟାକୁ ମୁହଁରୁ କାଢ଼ି ଜୋର୍‌ରେ ତଳକୁ ଫିଙ୍ଗିଦେଲା । ଶେଷ ଧୂଆଁକଳେ ଛାଡ଼ିଦେଇ ବଜାର ଆଡ଼କୁ ମୋଡ଼ିଗଲା ।

ରଞ୍ଜନ ସକାଳୁ ଚଳଖିଆ ଖାଇଦେଇ ବୁଲିବାକୁ ବାହାରିପଡ଼େ । ସେ ଏବେ ସୁଦ୍ଧା ବାପର ଅଲିଅଳ ପୁଅ । ଏକୁଡ଼ିଶାଳରୁ ମା'ଖିଆ ପିଲାଟା ତ ! ସେ ବାପ ଆଡ଼େ ଆଉଜି ରହିଥାଏ । ତା'ର ଝୁଙ୍କ୍ ଲାଗିଛି ସେ ବ୍ୟବସାୟ କରିବ, ଦୋକାନ କରିବ – ଝିଅଙ୍କ ମୁଦି, ମାଳି ଦୋକାନ । ମହିଳା କଲେଜ ସାମ୍ନାରେ କରିବ । ସବୁଦିନ ଦୋକାନ ଦୁଆରେ ପ୍ରଜାପତି ଉଡ଼ିବୁଲିବେ । କି ବଢ଼ିଆ ! ସେ ଆଉ ପାଠ ପଢ଼ି କ'ଣ କରିବ ? ବାଣିଜ୍ୟ-ବିଦ୍ୟାର ସାର କଥାଯାକ ସେ ଜାଣିଗଲାଣି; ଏଣିକି ତାକୁ ପ୍ରୟୋଗ କରିବା କଥା । ଚାଳିଶ-ପଚାଶ ହଜାର ଟଙ୍କାରେ ସେ ବିଜିନେସ୍ କରିବ । ଗୋଟାଏ ସଫାରି ସୁଟ୍ କରେଇଚି ବାପକୁ କହି । ହେଲେ ଭାଉନା ତ ସବୁଯାକ ଚକଟିପକେଇଲା । ତା' ମନ ସେଥିପାଇଁ ଭାରି ଉଣା । ସେ କେତେ ଥର ଭାବିଛି ମୁଠା ଟାଣକରି ବକ୍ସିଂ କରିବା ଢଙ୍ଗରେ ରାଜୀବ ବାହିନୀପତିର ତଳ ଥୋଡ଼ି ଉଡ଼େଇଦିଅନ୍ତା । ଭାଇନା ତାକୁ କେଜାଣି କାହିଁକି ଜମା ସୁଖପାଏନାହିଁ; ଆଉ ସେ ଭାଉଜ ଭାରି ଉପଦ୍ରଙ୍କରି । ଛୋଟଘର ଝିଅ । ଏଠିକି ଆସି ଖାଇବାକୁ ପିନ୍ଧିବାକୁ ପାଇବାରୁ କାହାକୁ ଖାତିର କରୁନାହିଁ । ପୁରୁଣା ଘରଭଙ୍ଗେଇ ସେ ତମମୁହାଁ । ଏ ଭାଇନାଟା ବି ଶଳା ମାଇଚିଆ; ତା'ରି କଥାରେ କାନ ଧରି ଉଠୁଚି ବସୁଚି ।

ରଞ୍ଜନ ରାସ୍ତାରେ ଗୋଡ଼ିଟାକୁ ଖୁରେଇପକେଇଲା । ଶୂନ୍ୟକୁ ଦୁଇ-ଚାରି ବକ୍ସିଂ ମାରିଦେଇଗଲା । ବଡ଼ଭାଇନାଟା ଗୋଟାଏ ବୁଢ଼ା ବେକାରିଆ; ଏଠି-ସେଠି ଟାଉଟରଙ୍କ ସାଙ୍ଗ । ଗଞ୍ଜେଇ, ମଦ, ତାସ୍‌ଖେଳରେ ଦିନ କାଟେ । ସବୁଠି ବାପ-ନାଁରେ କୁହା କରେ । ନିମକ୍‌ହାରାମ୍ ଶଳା । ଏଠୁ ଯିବ ଯିବ କହୁଚି, ଯାଉନାହିଁ କାହିଁକି ? ସେ ଏଠୁ ଗଲେ ଯୋଡ଼ାଏ ଦିନରେ ଗଛତଳେ ପଡ଼ି ମରିଯିବ । ରୋଜଗାର ତ ପଇସାଟିଏ ନାହିଁ – କଥା ଯେ ପର୍ବତ ପରି ! ହୁଁଃ !!

''କାମ କ'ଣ ହବ ? ବାହିନୀପତି ଘରେ କ'ଣ ପଇସା ନାହିଁ ?'' ଯୁକ୍ତି କରନ୍ତି ରବି ଆଉ ରମୁ – ରବୀନ୍ଦ୍ର ଏବଂ ରମେନ୍ଦ୍ର । ଯୋଡ଼ିକଯାକ ଖୁବ୍ ସାଙ୍ଗ । ଏକାଠି ଖାଆନ୍ତି, ଏକାଠି ବୁଲନ୍ତି । କେବେ କୌଣସି ଆପତ୍ତି ଅଭିଯୋଗ କରନ୍ତି ନାହିଁ । ରାଜୀବ ସେମାନଙ୍କୁ ଦେଖିଲେ ଚିଡ଼େ – କହେ, ସେ ଯୋଡ଼ାକ ହଳେ ବଳଦ; କୁଣ୍ଡାପାଣି ଖାଇ ଲଙ୍ଗଳ ଟାଣିବାକୁ ଜନ୍ମହେଇଛନ୍ତି । ପଘାରେ ବନ୍ଧାପଡ଼ିଲେ ତାଙ୍କୁ ନିଶ୍ଚିନ୍ତ ଲାଗେ; ନିଦମାଡ଼େ । ସେମାନଙ୍କ ମାଇପମାନେ ମଧ୍ୟ ଯୋଡ଼ିଏ ମାଈ ଘୁଷୁରି । ଅତି ଅସନା, ଅଲାଜୁକୀ ମାଦଳ । ତାଙ୍କୁ ପୁରୁଷ ଦେଖିଲେ କୌଣସି ବିକ୍ରିୟା ହୁଏନାହିଁ । ସେମାନେ ଖୁସିରେ ଖାଇପିଇ ଉଷୁମ ବଖରାଟିମାନଙ୍କରେ ମନ୍ଦା ମଡ଼େଇ ବସିଥାନ୍ତି । ତାଙ୍କ କୋଡ଼ରେ ସବୁବେଳେ କଅଁଳା ପିଲାଟିଏ କୁଁ-କୁଁ କରୁଥାଏ ।

ରବି, ରମୁ ଏଯାଏଁ ଚିନ୍ତା କରିବା ଶିଖିନାହାନ୍ତି । ତାଙ୍କୁ ମତେଇବାକୁ ରାଜୀବକୁ ଅନେକ ଦିନ ଲାଗିଗଲା । ଏବେ ସେମାନେ ମୁହଁ ଭାରି କରି ଅମାନିଆ ବଳଦ ପରି ବାପକୁ ବେଖାତିର୍ କଲେଣି । ତାଙ୍କୁ ନେଇଁ ଖେତକୁ ଅଡ଼େଇନେବ, ସେମାନେ

ପାକୁଳି କରି କରି ସେଇ ଖେତରେ ପଶିବେ, କିନ୍ତୁ ସେମାନେ ଦୈବାତ୍ ଯଦି ଏଠା ଛାଡ଼ି ବାହାରିଯାନ୍ତି, କରିବେ କ'ଣ ? ଖାଇବେ କୋଉଠୁ ? ମଜୁରି ଲାଗିବାକୁ ସୁଦ୍ଧା ସେମାନଙ୍କର ଯୋଗ୍ୟତା ନାହିଁ । ନ ଥାଉ । ଉପାର୍ଜନ କରି ନ ପାରି ମଗନ୍ତୁ ଯାନ୍ତେ ! ସେ ବଞ୍ଚିଥିଲେ କେତେ ମଲେ କେତେ !

ରାଜୀବ ପୁରୁଣା ଅଭ୍ୟାସରେ ପଶିଗଲା ବଜାରର ପଶ୍ଚିମପଟ ଚା' ଦୋକାନରେ । ବାଙ୍କା ଚା' ଦୋକାନ ବାହାରକୁ ଯାହା ଦିଶେ, ତା' ନୁହଁ । ଦିନରେ ଯାହା ଦିଶେ, ରାତିରେ ତା' ନୁହଁ । ଦିନ ଏଗାରଟାରେ ରାଜୀବ ପଶିଆସୁଥିବାର ଦେଖି ବାଙ୍କନିଧି ସାହୁ ସାମାନ୍ୟ ଆତଙ୍କିତ ହୋଇଯାଇଥିଲା । ରାଜୀବ କିଛି ନ କହି ଗୋଟାଏ କଣକିଆ ଟେବୁଲ ପାଖରେ ବସିପଡ଼ି କିଛି ସମୟ ପରେ କପେ ଚା' ପାଇଁ ବରାଦକଲା । ଏବେ ଅଳ୍ପଦିନ ତଳେ ସେ ସମସ୍ତଙ୍କ ହାତଉଧାରି ଶୁଝିଦେଲା — ପ୍ରାୟ ହଜାରେ ଟଙ୍କା । କୋଉଠୁ ଯୋଗାଡ଼ କଲା ହଜାରେ ଟଙ୍କା ? ଲୋକେ ଚୁପ୍‌ଚାପ୍ ହଉଥିଲେ ଯେ ତା' ପୂର୍ବର ବେଙ୍କ୍ ଡକେଇତିରେ ବୋଧେ ରାଜୀବର ହାତ ଥିଲା !

ରାଜୀବ ଚା' ପିଇଲାବେଳେ ଚାବି ପର୍ସଟିକୁ ଅନ୍ୟମନସ୍କ ଭାବରେ ଗଡ଼ଉଥାଏ । ସେ ନିଶ୍ଚୟ ଆମ୍ବାସେଡ଼ୋର୍ ଚଢ଼ିପାରିଥାନ୍ତା । ତା' ନିଜ ଉପାର୍ଜନରୁ ତା' ସାଙ୍ଗମାନଙ୍କୁ ରାତିଏ ମନଇଚ୍ଛା ଭଲ ମାଲ୍ ପିଆଇପାରିଥାନ୍ତା । ସିମ୍‌ଲାରେ ସପ୍ତାହେ ରହି ଛୁଟି କଟେଇପାରିଥାନ୍ତା । ତା' ପାଖରେ ହଜାରେ ଲୋକ ଖଟିଥାନ୍ତେ । ସେ ସିଗାର୍ ଲଗେଇ ଦଫ୍‌ତରରେ ବସୁଥାନ୍ତା । ସେକ୍ରେଟେରୀ ଥାନ୍ତା ଗୋଟାଏ ସ୍ମାର୍ଟ ସାଇବାଣୀ... ଏସବୁ ରାଜୀବର ନିତିଦିନିଆ ସ୍ୱପ୍ନ ଗତ କୋଡ଼ିଏ ବର୍ଷଧରି ।

କିନ୍ତୁ ସେ କିଛି କରି ପାରି ନାହିଁ । ବାପର ବଚସ୍କର ଭୃତ୍ୟ ସ୍କୁଲପିଲାଟିଏ ପରି ସେ ତା'ର ଦିନ-ଖର୍ଚ୍ଚ ପାଇଁ ବାପକୁ ହାତପତେଇଆସିଛି । ତା'ର ପେଣ୍ଟ ସାର୍ଟ ମୋଜା ଜୋତା ସବୁ ବାପ କିଣିଆଣି ଦେଇଚି । ନିଜେ ଯାଇ ଦୋକାନରୁ ଇଚ୍ଛାମତେ କିଣିବାର ସୁଯୋଗ ସେ ପାଇନାହିଁ । ତା' ଅଭାବକୁ ନେଇ ସେ କେବେହେଲେ ବଞ୍ଚିପାରିନାହିଁ । ଯାହା ଯେତେବେଳେ ଦରକାର, ସବୁ ଆସି ଖଞ୍ଜିହେଇଯାଇଛି । ଏଇ କେତେବର୍ଷ ହେବ, ତାକୁ ପ୍ରତିମାସ ଗୋଟିଏ ଲଫାପା ଭିତରେ ପାଞ୍ଚଶ' ଟଙ୍କା ମିଳେ । ତାକୁ ସେ କହେ ଧୂଆଁ-ପାଣି ଖର୍ଚ୍ଚ । ବାପ ଜାଣେ ଏବଂ ଯୋଗାଇଦିଏ । ଓଃ, ଏଭଳି ନିର୍ମମ ଭାବରେ ମୋଲାଏମ୍ ପାଟଡୋରରେ ଆସ୍ତେ ଚିପି ଚିପି ମଣିଷକୁ ହତ୍ୟା କରିବା ସେ ଆଉ ବରଦାସ୍ତ କରିପାରିବ ନାହିଁ ।

ସେ ତା' ଅଜାଣତରେ ଟେବୁଲ ଉପରେ ବିଧାଟାଏ ବସେଇଦେଲା । ଚା' କପ୍ ଉଛୁଳି ତଳେ ପଡ଼ିଗଲା । ଦୌଡ଼ିଆସିଲା ବାଙ୍କା ସାହୁ । ତରବର ହେଇ ନିଜେ କନା ଲଗେଇ ସଫା କରିପକେଇଲା । ଡାକ ଛାଡ଼ିଲା ନୌକର ଟୋକାକୁ ତଳୁ କପ୍ ପ୍ଲେଟ ଗୋଟେଇ ନେବା ପାଇଁ ।

''ଆପଣ ସାର୍ ଏଠି କାହିଁକି ବସିଲେ ? ଉଠନ୍ତୁ, ଆର ଟେବୁଲକୁ ଯିବା । ଆରେ, ହେ ଟୋକା, ସାହେବଙ୍କ ପାଇଁ ଚିଙ୍ଗୁଡ଼ି କଟ୍‌ଲେଟ୍ ଗୋଟାଏ ପ୍ଲେଟ୍ ଆଣିବୁ ।''

ରାଜୀବ ଗମ୍ଭୀର ହୋଇ ବସିଥାଏ । ବୁକୁ ଉପରେ ହାତ ଛନ୍ଦି ସାମ୍ନାକୁ ଆଖି ମିଟିକା ନ ପକାଇ ଚାହିଁଥାଏ । ବାଙ୍କା ଦୋହରାଇଲା, ''ସାର୍, ଉଠନ୍ତୁ ଆର ଟେବୁଲକୁ ଯିବା ।''

ରାଜୀବ ତିଳେ ନ ଘୁଞ୍ଚି ପଚାରିଲା, ''କାହିଁକି ?'' ଅତି ରୁକ୍ଷ ଅମାନିଆ ସ୍ୱର ! ବାଙ୍କା ଅଳ୍ପ ହସି କହିଲା, ''ଏଇ ଅଧଘଣ୍ଟାଏ ଆଗରୁ ପରା ବୁଢ଼ାବାବୁ, ଆପଣ ଯୋଉଠି ବସିଛନ୍ତି, ସେଇଠି ବସି ଚା' ପିଇ ଗଲେ ।''

ରାଜୀବ ଛପ୍‌କିନା ନିଜ ବାହୁକୁ ଭିଡ଼ିଧରିଲା । ବୁଢ଼ାବାବୁ – ମାନେ, କୃଷ୍ଣ ବାହିନୀପତି ! ସେ ଅଞ୍ଚଳର ସମସ୍ତଙ୍କ ପାଇଁ ସେଇ ବୁଢ଼ାହିଁ ଏକମାତ୍ର ମାନ୍ୟଗଣ୍ୟ ଲୋକ, ଏକମାତ୍ର ଧନୀ, ଏକମାତ୍ର ଭୟଙ୍କର ମଣିଷ; ଏକମାତ୍ର ଏମ୍. ଏଲ. ଏ., ଏକମାତ୍ର ମନ୍ତ୍ରୀ । ସେ ଆସି ବାଙ୍କା ଦୋକାନରେ ବସି ଚା' ଖାଇଲାଣି ? ଏଠିକି ସେ ବୁଢ଼ା କାହିଁକି ଆସିଲା ?

କିଛି ନ ଜାଣିବା ଢଙ୍ଗରେ ପଚାରିଲା, ''କୋଉ ବୁଢ଼ାବାବୁ ?'' ବାଙ୍କା ଭୂରୁ କୁଞ୍ଚେଇ ରାଜୀବକୁ ଫିକ୍‌କିନା ହସିଦେଇ କହିଲା – ''ଏ ଖଣ୍ଡମଣ୍ଡଳରେ ବୁଢ଼ାବାବୁ ଆଉ କେଇ ଜଣ କି ?''

କୃଷ୍ଣ ବାହିନୀପତି କ'ଣ ଆମଭଳି ଗୋଲାମମାନଙ୍କ ଚା' ଦୋକାନକୁ କେବେ ପଶିପାରିବ ? ସେ ତ କେବେ ନଇଁପାରିବ ନାହିଁ ।

ରାଜୀବ ପାଟି ଫିଟେଇ ପଚାରିଲା – ''କ'ଣ ଚାଲିଆସିଥିଲା ଭୁଲରେ ?'' ମନେ ମନେ ଉଲ୍ଲସିତ ହେଲା; ଆଜି ମାଡ଼ ବସିଚି ତ ଅଣ୍ଟା ଉପରେ ।

ବାଙ୍କା ଚାରିଆଡ଼କୁ ଏବଂ ପଛକୁ ଚାହିଁଦେଇ ମୁହଁ ପାଖେଇ ନେଇ କହିଲା, ''ଏମିତି କେତେ ଥର ଆସିଲେଣି । ସେଇ କୋଣଟାରେ ଦାଣ୍ଡକୁ ପଛକରି ବସନ୍ତି; କପେ ଚା' ଖାଇଦେଇ ଉଠିଯାନ୍ତି । କେତେ ଲୋକ ଦେଖିଲେଣି । କହୁଥିଲେ ଯେ, ବୁଢ଼ା ଏବେ ଖୁବ୍ ଦୁର୍ବଳ ହେଇଗଲେଣି ।''

ବଜାରୀ ଚାଲୁ ଚା' ଦୋକାନରେ କାହିଁକି କୃଷ୍ଣ ବାହିନୀପତି ଆସି ଚା' ଖାଉଚି ? ତା'ର କ'ଣ ଆଉ ବଂଶମର୍ଯ୍ୟାଦାକୁ ଖାତିର ନାହିଁ ? ନା, ମୁଣ୍ଡ ପାଗଳ ହେଲାଣି ? ସେ ଏବେ ସବୁମନ୍ତେ ଆମକୁ ମାରିବାକୁ ବସିଲାଣି । ଘରର ଗୋଟାଏ ଯେଉଁ ଟେକ ଥିଲା, ତାକୁ ଏମିତି ଦି'କଡ଼ାର କାହିଁକି କରିଦେଉଚି ?

ହଠାତ୍ ମନେପଡ଼ିଗଲା, 'ବୁଢ଼ା ଏବେ ଦୁର୍ବଳ ହେଇଗଲେଣି !' ରାଜୀବ ବାଙ୍କା ସାହୁକୁ ଏଥର ପ୍ରଶ୍ନ କଲାବେଳେ ତା' ସ୍ୱରରେ ସାମାନ୍ୟ ଉଦ୍‌ବେଗକୁ ଲୁଚେଇ ପାରିଲା ନାହିଁ – ''ଆଚ୍ଛା, କିଏ ସେ କହୁଥିଲା ବୁଢ଼ା ଦୁର୍ବଳ ହେଇଗଲାଣି ବୋଲି ?''

ବାଙ୍କା ସାହୁ ତା' ଢଙ୍ଗରେ ଭାରି ଚାଲାକ । ସେ ମଣିଷର ଆଖି ମୁହଁକୁ ଚାହିଁଦେଇ ତା' ମନକଥା କଳିଦେଇପାରେ । ଆତ୍ମୀୟତାର ଆବେଗ ନେଇ କହିଲା, ''କିଏ ଆଉ କହିବ ସାର୍ ? ମୁଁ ତ ନିଜେ ଦେଖୁଛି, ବୁଢ଼ାଙ୍କର ଅଧେ ଦେହ ଭାଙ୍ଗିଯାଇଛି । ମୁହଁରେ ଆଉ ସେ ପୂର୍ବ ତେଜ ନାହିଁ । କ'ଣ ତାଙ୍କ ଦେହପା' ଭଲ ରହୁନାହିଁ କି ?''

ରାଜୀବ କିଛି ନ କହି ଆସ୍ତେ ଖଣ୍ଡେ ସିଗ୍ରେଟ୍ ଲଗେଇଲା – ''ବୁଢ଼ା ଦେହ ଭଲ ଅଛି ତ ।''

''ହେଇଥିବ ସାର୍, ଆପଣ ଯେବେ କହୁଚନ୍ତି; ମାତ୍ର ବୁଢ଼ା ଝଡ଼ିଗଲେଣି । ଆଉ ଆଗଭଳି ପିନ୍ଧାପିନ୍ଧି ମଧ ନାଇଁ । ଆଜି ତ ମୁଁ ପାଖରେ ଥାଇ ଦେଖିଚି – ତାଙ୍କ ଧୋତିରେ ଜଂଘ ପାଖରେ ଗୋଟାଏ ତାଳି ପଡ଼ିଥିଲା ।''

''ଚୋପ୍ ବେ'' – କହି ଚିହିଁକିଉଠିଲା ରାଜୀବ । ଚମକି ଘୁଞ୍ଚିଗଲା ବାଙ୍କା ସାହୁ ସେ ପାଖରୁ । ତା ପାଖକୁ ଅତି ଧୀରେ ମାଡ଼ିଆସି ରାଜୀବ କହିଲା, ''ଦେଖ୍ ବାଙ୍କା, ତୁ ଯଦି ଏଭଳି ମିଛକଥା ଆଉ ଥରେ କହୁ... ।'' ଅଧା ଅଧା ବାକ୍ୟର ଅର୍ଥ ବାଙ୍କା ସାହୁ ପାଇଁ ଖୁବ୍ ସ୍ପଷ୍ଟ । ସେ ଛେପ ଢୋକିଲା । କ'ଣ କହିବାକୁ ଯାଉଥିଲା; ପାଟି ଫିଟିଲା ନାହିଁ ।

ରାଜୀବ ଓହ୍ଲେଇଗଲା ରାସ୍ତାକୁ । ତଳକୁ ମୁଣ୍ଡ ପୋତି ଖୁବ୍ ଧୀରେ ସିଗ୍ରେଟ୍ ପିଇ ପିଇ ସେ ଘରମୁହାଁ ଆଗେଇଯାଉଥିଲା । ମନେପଡ଼ିଗଲା ଗତ ରାତିର ଛୋଟ ଘଟଣା । ରୋଷେୟା ଜଗୁ ଠିଆହୋଇଥାଏ କାନ୍ଧରେ ଗାମୁଛା ପକେଇ । ''କିବ୍‌ବେ, ଏ ବୁଢ଼ା କୁକୁଡ଼ା କୋଉଠୁ ଆସିଲା ? ରଖିଦେ, ତୋ' ବୁଢ଼ାକୁ ଖାଇବାକୁ ଦବୁ ।''

''ଆପଣ ବାବୁ, ନ ଖାଇ କାଇଁ ଫିଙ୍ଗୁଛନ୍ତି । ଆଜି ସମସ୍ତେ ଖୁସିରେ ଖାଇଛନ୍ତି ! ଆଉ ବୁଢ଼ାବାବୁ ତ କେବେଠୁ ଆଇଁଷ ଛାଡ଼ିଦେଲେଣି । ଆଉ ତାଙ୍କର ଖାଇବାରେ ଆଗଭଳି ଶ୍ରଦ୍ଧା ଅଛି କି ? ଥିଲେ ସୁଦ୍ଧା, ତାଙ୍କ ପାଇଁ କିଛି ତ ଭଲ ଜିନିଷ ବଳୁନାହିଁ । ପିଲାମାନେ, ଆଉ ମା'ମାନେ ଡେକ୍‌ଚି ପୋଛି ବାଣ୍ଟିଆଣୁଛନ୍ତି ।''

''କାଇଁ ମାଲିକେ ଆଗ ଖାଇଦଉନାହାନ୍ତି ? ବଳକା ହେଲେ ଆମେ ସିନା ଖାଇବୁ ।''

''ନାଇଁ ବାବୁ, ହୁକୁମ୍ ପରା ହେଇଚି ସମସ୍ତେ ଖାଇସାରିଲେ ତାଙ୍କୁ ଡାକିବାକୁ ଯିବି ।'' ରାଜୀବ ରାସ୍ତାରେ ଥମିଯାଇଥିଲା । ସିଗ୍ରେଟ୍‌ଟା ହାତରେ ସେମିତି କୁହୁଳୁଥିଲା ।

''ଆବେ ଯା'' କହି ସିଗ୍ରେଟ୍‌ଟାକୁ ଛାଟିଦେଲା ଏବଂ ବଡ଼ ବଡ଼ ପାହୁଣ୍ଡ ପକେଇ ଚାଲିଗଲା କିଛିବାଟ... । 'ଶୁଣ ରାଜୀବ୍, ତୁ ଡାକ୍ତରୀ କଲୁନାଇଁ ବୋଲି ତୋର କିଛି ଅଭାବ ହେଇଯିବ, ଏ କଥା ନୁହେଁ । ତୁ ଡାକ୍ତରଟିଏ ହେଇଥିଲେ ମୋ ମର୍ଯ୍ୟାଦା ବଢ଼ିଥାନ୍ତା । ଲୋକେ କହିଥାନ୍ତେ, କୃଷ୍ଣ ବାହିନୀପତି ପୁଅ ଯୋଗ୍ୟ ହେଇ ବାହାରିଲା... ।'

ରାଜୀବ ପୁଣି ଘିମେଇଯାଉଥିଲା । ସେ ଯାହାହେଉ ପଛେ, ବୁଢ଼ାଟା ନିହାତି ଅସହ୍ୟ ବୋଝଭଳି ମଡ଼େଇ ହେଇ ପଡ଼ିଛି । ଏଠୁ ମୁକୁଳି ନ ଗଲେ ଆଉ ରକ୍ଷା ନାହିଁ । ଯୁଦ୍ଧ ଘୋଷଣା ହେଇଗଲା ପରେ ଆଉ ପଛେଇବାର ପ୍ରଶ୍ନ ଉଠୁ ନାହିଁ । ଯାହା ହବାର ହବ... । ହୁଁ, କୁଆଁରପୂନେଇଁ – ଆରେ ଯାଃ... ନୂଆ ଜାମା ବଣ୍ଟାହବ ହଳିଆ ମୂଲିଆମାନଙ୍କୁ ? ନାଇଁ ? ତୁ ନିଜେ ସେଥିରୁ ଖଣ୍ଡେ ପିନ୍ଧୁନୁ ?

ହାଉକିନା ରାଜୀବର ମନେପଡ଼ିଗଲା, ବାଙ୍କା କହୁଚି, 'ମୁଁ ଦେଖିଚି ପରା ବୁଢ଼ାବାବୁଙ୍କ ଧୋତିରେ ଗୋଟାଏ ତାଳିପଡ଼ିଥିଲା... । ବୁଢ଼ାବାବୁଙ୍କ ଦେହ ଅସୁସ୍ଥ... ସେ ଅଧେ ଝଡ଼ିଗଲେଣି ।'

ରାଜୀବ ଘର ସାମ୍ନାରେ ପହଞ୍ଚିଲାବେଳକୁ ତାକୁ ଭୋକକରୁଥିଲା । ସେ କିନ୍ତୁ ସ୍ଥିରକରିସାରିଥିଲା ଯେ ସେଦିନ ସେ ଖାଇବ ନାହିଁ । ସେ ଏତେ ରାଗିଛି । ଏତେ କଥା ବକିଚି । ଏମିତି ସାମ୍ନାସାମ୍ନି ମୁକାବିଲା ହେଇଚି । କ'ଣ ନା, ପୁଣି ଗୁଡୁଗୁଡୁ ହେଇ ରୋଷେୟା ବାଡ଼ିଦେଇଥିବା ଭାତଗଣ୍ଡାକ ଗିଳିଦେବ ! ଅଣପୁରୁଷିଆ, ବେହିଆ ଆଉ କାହାକୁ କହନ୍ତି ? ହେଇଚି ଯଦି, ଭଲକରି ଗୋଟାଏ ହେଇଯାଉ ଏଥର । ସେ ଆଜି ଜମା ଖାଇବ ନାହିଁ !

ଓହ୍ଲେଇ ଆସୁଥିଲା ରବି । ନୂଆ ସଫାରି ସୁଟ୍ ପିନ୍ଧିଥିଲା । ବାହିନୀପତି ପରିବାରର ଅଯୋଗ୍ୟ ପୁଅ । କାଣିକଉଡ଼ିକୁ ଅସମର୍ଥ ସୋହଦ୍ ସୁନ୍ଦର ଭେଣ୍ଡା । ରାଜୀବ ତାକୁ ଖାତିର ନ କରି ପଶିଯାଇଥାନ୍ତା । କିନ୍ତୁ ବଡ଼ ବିଚିତ୍ର ଢଙ୍ଗରେ ସେ ଠିଆ ହୋଇ ତାକୁ ଚାହିଁଲା; ଅଳ୍ପ ହସିଲା । ଅତର୍କିତ ଭାବରେ ପଚାରିଦେଲା – "ବୁଢ଼ା ଖାଇଲାଣି କି ନାଇଁ ?"

ପଚାରିଦେଇ ନିଜେ ବିସ୍ମିତ ହୋଇଗଲା । ରବି ମଧ୍ୟ କାବା ହୋଇ ଅବିଶ୍ୱାସରେ ଚାହିଁରହିଲା ବଡ଼ଭାଇ ମୁହଁକୁ । ସତେ କ'ଣ ରାଜୀବ ଏକଥା ପଚାରୁଚି ? ବାପ ଖାଇଲା କି ନ ଖାଇଲା, ସେ କଥା କ'ଣ ରାଜୀବ ବାହିନୀପତି କେବେ ଖାତିର କରିଚି ଜାଣିବାକୁ ? ଦିନ ଏଗାରଟାରେ ଅବା କେବେ ଖାଇଥିଲା ଯେ ଆଜି ଖାଇବ ?

ଅବସ୍ଥା ସମ୍ଭାଳିବାକୁ କହିଲା, "ବୁଢ଼ା ତ ସେତେବେଳୁ ସେଇ ଗୋଟାଏ ମାଡ଼ରେ କୁଆଡ଼େ ପଳେଇଚି ଯେ, ତାର ପତ୍ତା ନାହିଁ । ପାଇଚି ପାନେ !" ସେ ପାଟି ତେଢ଼େଇ ଅଳ୍ପ ହସିଲା ।

ଫାଇଁକିନା ରାଗିଗଲା ରାଜୀବ । କିଛି ନ କହି କଟମଟ ଅନେଇଲା ରବିକୁ ପାଦଠୁ ମୁଣ୍ଡଯାଏ । ଦୁମ୍‌ଦୁମ୍ ପଶିଗଲା ଘରଭିତରେ । ଉଠିଗଲା ଦୋ'ମହଲା ତା' ଶୋଇବା ବଖରାକୁ । ସେ ଦେଖିଲା, ତା' ସ୍ତ୍ରୀ ପିଲାମାନଙ୍କୁ ନେଇ ଚିଙ୍ଗୁଡ଼ି କଟ୍‌ଲେଟ୍ ଆଉ ଆଳୁଚପ୍‌କୁ ବେଢ଼ି ବସିଛନ୍ତି । ଖୁସି ଗପ ଭିତରେ ଖିଆଚାଲିଚି । ହଠାତ୍ ରାଜୀବକୁ ସେମାନେ ଦେଖି ଶଙ୍କିଗଲେ । ଖାଇବା ବନ୍ଦକରି ଅନେଇଲେ । ସେ ଗୋଡ଼ ଫରକଟେଇ ଅଣ୍ଟାରେ ହାତ ରଖି ଅନେଇଥାଏ ।

"କୋଉଠୁ ଏ ଜିନିଷସବୁ ଆସିଲା ?"

"ଆମେ କି ଜାଣୁ ! ଆମେ ତ ଖାଇବା ଗୋସେଇଁ । ବଜାରରୁ କୋଉଠୁ ଆସିଥିବ ! ସମସ୍ତଙ୍କ ପାଇଁ ରୋଷେୟା ଆଣି ଥୋଇଦେଇଗଲା । ଆଜି କେମିତି ଭଲ ଜିନିଷ ମିଳିଲା କେଜାଣି !" କଥାର ଧାର ଚିକ୍‌ଚିକ୍ କରୁଥାଏ ।

ରାଜୀବକୁ ସେ କଥା ସୁଖ ଲାଗିଲା ନାହିଁ । ସେ ବୁଲିପଡ଼ି ବାଲ୍‌କୋନି ଚୌକିରେ ବସି ସିଗ୍ରେଟ୍ ଲଗେଇଲା । ବୁଢ଼ା କ'ଣ ସବୁ କଥାକୁ ବେଖାତିର କରି ଆହୁରି ବେଶୀ ଅପମାନ ଦେବାକୁ ଏମିତି କରୁଛି ? ଆଜି ବେଲ୍ଜିଡ୍ ହେବା ପରେ ସେ ସେଇ ବାଙ୍କା ଦୋକାନରେ ଚା' କପେ ପିଇଦେଇ କଟ୍‌ଲେଟ୍, ଚପ୍ ପଠେଇ ଦେଇଛି ଅନ୍ୟମାନଙ୍କ ପାଇଁ ? ନିଜେ ତାଳିପକା ଧୋତିଟାଏ ପିନ୍ଧି ଦେଢ଼ ହଜାର ଟଙ୍କାର ଜାମାପଟା ପଠେଇଦେଇଚି ଏ ବନ୍ଦୀମାନଙ୍କ ସକାଶେ ?

ସେ ଚୌକିରୁ ଉଠି ଚାଲିଲା କିଛି ସମୟ । ସେଇଠୁ ପାଟିକରି କହିଲା, "ସବୁ ଜିନିଷ ବନ୍ଧାବନ୍ଧି କରିବା ଆରମ୍ଭକର । ପଅରଦିନ ଏଇଠୁ ଉଠିଯିବା । ଭଡ଼ାଘର ଠିକ୍ କରି ସାରିଚି ।"

ହୀରା ନାଏକ ପୁରୁଣା ବେଶ୍ୟାଟିଏ – ହେଲେ କ'ଣ ଭାସିଗଲା ? ତା' ଘର ସେ 'ପ୍ରୀତିମହଲ'ରେ କ'ଣ ପାପଯାକ ଲାଗିରହିଚି ? ତା' ସମୟରେ ସେ ଖୁବ୍ ଗରାଖ ପାଉଥିଲା । ସେମାନଙ୍କ ଟଙ୍କାରେ ଏ ଘର । ବାହିନୀପତି ଖାନ୍ଦାନିର କିଛି ଅର୍ଥ ସେଥିରେ ନ ଲାଗିଛି ବୋଲି କିଏ କହିବ ? ସେଥିରେ କ'ଣ ଥାଏ ? ମାସକୁ ଶହେ ଟଙ୍କାରେ ଏମିତି ଘର କୋଉଠି ଆଉ ମିଳିବ ?

ସ୍ତ୍ରୀ ଚିଙ୍ଗୁଡ଼ି ମୁଣ୍ଡ କୁଡ଼ୁମୁଡ଼ୁ ଚୋବେଇ ପଚାରିଲା, "କୋଉଠି ଘର ମିଳିଲା ?"

ରାଜୀବ ଚିଡ଼ିଲା ଭଳି କହିଲା, "ସେଥିରେ ତୁମର କ'ଣ ଥାଏ ? ତୁମେ ତ ରହିବା ଗୋସେଇଁ । ଶୁଣ, ମୁଁ ଆଜି ଖାଇବି ନାହିଁ ।"

ସ୍ତ୍ରୀ ଶୁଣି ନଶୁଣିଲା ପରି କୁଡ଼ୁକୁଡ଼ୁ କଲା ।

ରାଜୀବ ପାଟି ଶୁଣେଇ କହିଲା, "ମୁଁ ଆଜି ଜମା ଖାଇବି ନାହିଁ ।"

"ଓ, କ'ଣ ପାପର ପ୍ରାୟଶ୍ଚିତ୍ତ କରିବ କି ? ହଉ, ଯାଉ ଆଉ ଘଣ୍ଟେ, ଦେଖିବା ନାଇଁ ?"

"ମୁଁ ଏ ଶଳା ଘରେ ପାଣି ଛୁଇଁବି ନାହିଁ ।"

"କାଇଁ, ଏ ଘରଟା କାହାର କି ? ଏ ଘର କାଇଁ କିଏ ଛାଡ଼ିବ ବା ? ଯିଏ ଯିବାର ଯାଉଥାଉ । ମୁଁ ଆଉ ମୋ ପିଲାମାନେ ଯିବୁ ନାଇଁ ।"

"କ'ଣ ହେଲା ?" ଗର୍ଜିଲା ରାଜୀବ – "ନ ଗଲେ ସମସ୍ତଙ୍କ ତୋଟି କଣା କରି ଲାସ୍‌ଯାକ ବୁହାଇନେବି ।"

''ଏମିତି ବୋକା ଲୋକଙ୍କୁ କଣ ବୁଝେଇବ ? ଆହେ, ମୁଁ ବି କ'ଣ ଯିବାକୁ ମନାକରୁଚି ? ମୋର କହିବାର କଥା, ଏ ଉପରମହଲଟା ତା'ହେଲେ କାହାକୁ ଭଡ଼ା ଲଗେଇଦିଅ । ଏ ମହଲାଟା ତ ଆମର ।''

ରାଜୀବ ବିସ୍ମିତ ହୋଇ ସ୍ତ୍ରୀକୁ ଚାହିଁଲା । ଘୁଞ୍ଚିଗଲା ବାଲ୍‌କୋନି ଚୌକି ଉପରକୁ ।

ଦିନ ଦୁଇଟା । ରବି, ରମୁ ପାଟିତୁଣ୍ଡ କରି ଫେରିଲେଣି । ଖୁବ୍ ଭଲ ମାଂସ ତରକାରି କୁଆଡ଼େ ହେଇଥିଲା । ସେମାନେ କହୁଥିଲେ, ଏମିତି ବୁଢ଼ାକୁ ସବୁଦିନ ପାନେ ଲେଖା ଦେଲେ କୁଆଡ଼େ ତା' ଅଣ୍ଟାରୁ ପଇସା ଝଡ଼ିବ ।

ରାଜୀବ ଚୁପ୍‌ଚାପ୍ ବସିରହିଲା ଦାନ୍ତକୁ ଦାନ୍ତ ଚାବି ।

ପିଲାମାନେ ସମସ୍ତେ ଖାଇସାରି ଫେରିଲେଣି । ଘର ନୀରବି ଆସିଲାଣି, ଏଣିକି ସବୁ ଶୋଇଯିବେ । ତା' ସ୍ତ୍ରୀ ଆସି ବିରକ୍ତ ହେଇ କହିଲା – ''ଖାଉନ କାହିଁକି ବା ? ଅତି ଗୋଟେ ବାହାଦୁରିଆ । ଖାଇବ ତ; ଏମିତି ମାଈଙ୍କ ଭଳି କ'ଣ ରୁଷିବ ମ ?''

''ନା, ମୁଁ ଖାଇବି ନାହିଁ । ତୁମେ ଖାଇପକାଅ ।''

''ମୁଁ ମୋ ପିଲାଙ୍କ ସାଙ୍ଗେ ଖାଇସାରିଲିଣି ନା ! ମୁଁ କ'ଣ ତୁମ ପାଇଁ ଜଗିବସିଥାନ୍ତି ?''

ରାଜୀବ ସ୍ତ୍ରୀ ମୁହଁକୁ କେମିତି ଗୋଟାଏ ନୂଆ ଢଙ୍ଗରେ ଚାହିଁଲା । ତା' ଆଖି ପାଣି ପାଣି ଦିଶୁଥିଲା ।

ରାଜୀବକୁ ବୋଧେ ଆଉ ଭୋକ କରୁ ନ ଥିଲା । ରୋଷେୟା ଆସି ଫେରି ଯାଇଥିଲା । ପଚାରିବାରୁ କହିଲା, ''ବୁଢ଼ାବାବୁ ସକାଳ ପହରୁ ଯାଇଛନ୍ତି ଯେ ଆହୁରି ଫେରିନାହାନ୍ତି । ଆଜି ବୋଧେ ଆସିବେ ନାହିଁ ।''

ରାଜୀବ ତଳକୁ ଓହ୍ଲେଇ ଦାଣ୍ଡପିଣ୍ଡାର ଆରାମଚୌକିରେ ବସିରହିଲା । ସିଗ୍ରେଟ୍ ଲଗେଇବାକୁ ବି ଇଚ୍ଛା ହେଲା ନାହିଁ । ଆଖିବୁଜି ବସୁ ବସୁ ଛାଇନିଦ ମାଡ଼ିଗଲା ।

ତାକୁ କେହି ଉଠେଇ ନାହାନ୍ତି । କେହି ଡାକି ନାହାନ୍ତି । ଲୋଡ଼ି ନାହାନ୍ତି । ଘର ଭିତରେ ଯଥା ସମୟରେ ଚା'ପିଆ ମଧ୍ୟ ସରିଗଲା ।

X X X X

ମୁହଁସଞ୍ଜ ବେଳକୁ ହାତଗୋଡ଼ ପଥର ପରି ଲାଗୁଥାଏ; ହାଲିଆ ଲାଗୁଥାଏ । ଗୋଟିଏ ରିକ୍ସା ଆସି ଦାଣ୍ଡଦୁଆରେ ରହିଲା । ରିକ୍ସାରୁ ଯେ ଓହ୍ଲେଇଲା ସେ ହୀରା ନାଏକ ।

କିନ୍ତୁ ଆରଜଣକ କିଏ ? ରାଜୀବ ଆଣ୍ଠୁ ହୁଗୁଳିଯାଇଥାନ୍ତା । ସେ ସେଇଠି ହୁଏତ କୁଢ଼େଇ ହୋଇ ପଡ଼ିଥାନ୍ତା । ଅସମ୍ଭବ । କୃଷ୍ଣ ବାହିନୀପତି ହୀରା ସାଙ୍ଗରେ ଗୋଟିଏ ରିକ୍ସାରେ ବସି ଏ ଘର ଦୁଆରେ ଓହ୍ଲେଇବା କେହି କ'ଣ ବିଶ୍ୱାସ କରିପାରେ ?

ରିକ୍ସାରେ ଗୋଟିଏ ଛୋଟ ବାକ୍ସ । ଗୋଟିଏ ମୋଟ, ଖଣ୍ଡିଏ ବେଗ୍ ।

ହୀରା ଉଠିଗଲା ପାହାଚ୍ ଉପରକୁ । କିନ୍ତୁ କୃଷ୍ଣ ବାହିନୀପତି ସେଇ ରାସ୍ତାରେ ଠିଆ ହୋଇ ରହିଲେ । ରାଜୀବର ଆଖି ଡବଡବ ଫାଟିପଡୁଥାଏ । ସେ କଥା କହିପାରୁ ନ ଥାଏ । ଚିତ୍କାରଟାଏ ରୁନ୍ଧି ହୋଇ ନୀରବରେ ବିଛେଇହୋଇଯାଇଥାଏ ତା' ଦେହସାରା ।

ରାଜୀବକୁ ଗୋଟିଏ ଚାବି ବଢ଼େଇଦେଇ ହୀରା କହିଲା, ''ଏଇଟା ପ୍ରୀତିମହଲ ଚାବି ।'' ଯନ୍ତ୍ର ଭଳି ରାଜୀବ ସେ ଚାବିଟିକୁ ସେହିପରି ଧରି ଠିଆହୋଇ ରହିଥାଏ । କାଲୁରୁକାଲୁରୁ ହୋଇ ବାହିନୀପତି ପରିବାର ତୁଛେଇ ହୋଇ ଆସିଲା ଦାଣ୍ଡ ପିଣ୍ଡାକୁ । ସେମାନେ ରାସ୍ତା ଉପରେ କୃଷ୍ଣ ବିହିନୀପତିଙ୍କୁ ଠିଆହେବାର ଦେଖିଲେ । ରାଜୀବକୁ ଦେଖିଲେ ହାତରେ ଚାବିଟିଏ ଧରି ଠିଆହେଇଚି । କିଛି ନ ବୁଝି ଚାହିଁରହିଲେ କେବଳ । ରିକ୍ସା ପଛରେ ଆଉ କେତେ ଲୋକ ଆସି ରୁଣ୍ଡ ହେଇଯାଇଥିଲେ ।

ପାହାଚ୍ ଓହ୍ଲେଇ ଗଲାବେଳେ ହୀରା କହିଲା, ''ଆମେ ତୀର୍ଥ କରି ବାହାରିଚୁ ।''

ଉଭୟେ ବସିଲେ । କୃଷ୍ଣ ବାହିନୀପତି ଚାହିଁଥାନ୍ତି ସାମ୍ନାକୁ । ରିକ୍ସା ଚାଲିଗଲା ଷ୍ଟେସନମୁହାଁ ।

ରଞ୍ଜନ ମୁହଁ ଘୋଡ଼େଇ ସମସ୍ତଙ୍କୁ ଠେଲି ଘର ଭିତରକୁ ଧାଇଁଗଲା । ଲୋକେ ଗାଜୁ ଗାଜୁ ହେଲେ, ''ଛି ଛି ଛି... ନିର୍ଲଜ୍ଜଟାଏ... । କି ଅକାଳ କଥା ।'' ଇତ୍ୟାଦି ।

ଡାକ୍ତରବାବୁ କହିଲେ, ''ମୋତେ ପ୍ରୀତିମହଲକୁ ଡକେଇ ସବୁ ଔଷଧପତ୍ର ବୁଝିନେଲେ । ହାତରୁ କାଢ଼ି ଏ ମୁଦିଟା ଦେଇ କହିଲେ, ''ମନେରଖିଥିବେ ।''

ଓକିଲବାବୁ କହିଲେ, ''ଆଜି ଦି'ପହରସାରା ବସି ଏ ଉଇଲନାମା ଲେଖା ହେଇଚି । ସମସ୍ତଙ୍କୁ ଏ ସମ୍ପତ୍ତି ବାଣ୍ଟିଦେଇଛନ୍ତି । ଜଗୁ ରୋଷେୟା କିଏ ଅଛି – ତା'ର ଗଦିରେ ଶୋଇବାକୁ ମନ ବୋଲି ତା ପାଇଁ ପାଞ୍ଚଶ' ଟଙ୍କା ମଧ୍ୟ ବ୍ୟବସ୍ଥା ଅଛି ।''

ବୁଢ଼ା ସମସ୍ତଙ୍କ କଥା ବୁଝିଥିଲା । ସେ ଜାଣିଥିଲା କିଏ କ'ଣ ଚାହେଁ । କିନ୍ତୁ ତା' କଥା କାହାକୁ କହିନାହିଁ । କେହି ପଚାରିନାହାନ୍ତି – ବୁଢ଼ା ସତେ କ'ଣ ଭଲ ପାଉଥିଲା ?

ବାଙ୍କା ସାହୁ ମଝିରେ ପଶି କହିଲା, ''ମୁଁ ଜାଣେ ପରା । ହୀରା କହୁଥିଲା, ପାକଳ କଲରାକୁ ଛୋଟ ଛୋଟ କାଟି କଡ଼ା ଭଜା କଲେ, ବୁଢ଼ା ଭଲପାଉଥିଲା । 'ଅଦ୍ଧି' ଧୋତିଟିଏ ପିନ୍ଧିବାକୁ ଭଲପାଉଥିଲା । ହୀରା ଏ ସମସ୍ତ ଜାଣେ ବୋଲି ଏତେ ଆପଣାର ହୋଇଗଲା ନା ।''

ବାହାରେ ଅନ୍ଧାର ଘେରିଆସିଥିଲା । କାହାରି ମୁହଁ ବାରି ହେଉନଥିଲା । ରାଜୀବର ବି !

□□□

# ବାଘ ସବାର

''ଖବରଦାର୍ କହୁଛି । ମୋ ସାଙ୍ଗେ ବେଶୀ ବକ୍‌ବକ୍ କରନା । ତୁ ମତେ କ'ଣ ବୋଲି ଠଉରେଇଲୁ କି ?''

ମୁଁ ଚୁପ୍‌ଚାପ୍ ଚାହିଁଥାଏ ତା' କପାଳକୁ । ନିମିଷ ନିମିଷକରେ କାଳ ବଦଳିଯାଉଥାଏ; ରୂପ ବଦଳିଯାଉଥାଏ । ...ଇଏ କ'ଣ ସେଇ ? ମୁଁ ଯାହାକୁ ଦେଖିଛି, ଜାଣିଛି, ତା' ସଙ୍ଗେ ଯା'ର ସମ୍ପର୍କ କ'ଣ ? ତା' ଆଖି ତ ଏମିତି ରଙ୍ଗ-ଟହଟହ ହେଇ ଫାଟିପଡୁନଥିଲା ! ଏମିତି ତମ୍ବାଳିଆ ନିଶ ଦାଢ଼ି, ଏଭଳି ଭୟଙ୍କରିଆ ଚେହେରା ତ ତା'ର କେବେ ନଥିଲା... ଦିଶୁଥିବା ବିକଟାଳ ଚିତ୍ର ଆସ୍ତେ ଲିଭି ଯାଉଥିଲା; ତା' ଜାଗାରେ ଦିଶୁଥିଲା ମାଖୁନା ମୁହଁଟିଏ, ହାରିଲା ହାରିଲା ପରି ନିରୀହ ଆଖି ଆଉ ଚେହେରା । ସେ କ୍ୱଚିତ୍ ହସୁଥିଲା; କ୍ୱଚିତ୍ ଝଗଡ଼ା କରୁଥିଲା । ମୋଟଉପରେ ନିରୀହ ଗୁଣ୍ଡିଟିଏ ପରି ସେ ଦେଖାଯାଉଥିଲା ସମସ୍ତଙ୍କ ଆଖିକୁ । ଛେଳିଟିଏ ସୁଦ୍ଧା ତା'ର ସବୁଯାକ ତାଳପତ୍ର ନିର୍ବିରୋଧ ଚୋବେଇ ଖାଇଯାଇଥା'ନ୍ତା ଏବଂ ସେ ପ୍ରତିବାଦ କରି ପାରି ନଥାନ୍ତା । ଆହା... ବିଚାରା ଶ୍ୟାମାଚରଣ !

ମୁଁ ଆଖିମିଟିକା ମାରିଦେବାରୁ ଘାଉଁକିନା ଢଳିଉଠିଲା ଆଉ ଗୋଟାଏ ମୁହଁ । ବିଶ୍ୱାସକୁ ଅକୁଳାନ ସେ ସମ୍ଭାବନା । ତଥାପି ଏଇ ତ ସେଇ ମାଛିକୁ ମ' ବୋଲି କହୁନଥିବା, କଥାର ଉତ୍ତରରେ ତବତବ ଚାହିଁରହୁଥିବା, କିଛି ମାଇଚିଆ, କିଛି ଓଲା ଲାଜକୁଳା ଟୋକା ଶାମାଚରଣ । ବାଘଗର୍ଜନ ଭିତରେ ମୋତେ ଶୁଭୁଥାଏ ଅନେକ ଦୂରରୁ ସୂତାଖିଅ ପରି ଭାସିଆସୁଥିବା ଏତେ ଟିକିଏ ପରିଚିତ କ୍ଷୀଣ ସ୍ୱର । ମୁଁ ଚାହୁଁଥାଏ ସେଇ ଖିଅଟି ଉପରେ ମହଣେ ଅପରିଚିତ ପଥର ଓହଳେଇ ଦେବାପାଇଁ ।

''ଶୁଣ୍ ଭାଇ, ମୁଁ ତତେ ଏ ଯାଏଁ ବିଶ୍ୱାସ କରିପାରୁନାହିଁ । ତୁ କ'ଣ ସତେ ସେଇ ଶାମାଚରଣ ? – କେମିତି...ତୁ....ତୁ ମଣିଷ ଖୁନକରୁଚୁ? କରିପାରୁଚୁ ? କେମିତି ??

''ଏମିତି !!'' ତାଇକିନା ଚଟକଣାଟାଏ ମୋ କାନମୁଣ୍ଡାରେ ବସିଗଲା । ନିଆଁଝୁଲ ବିଞ୍ଚି ହୋଇଗଲା ଚାରିଆଡ଼େ । ମୋତେ ସବୁ ଅନ୍ଧାର ଦେଖାଗଲା । ସମ୍ଭାଳିବା ପୂର୍ବରୁ ମୋତେ ଦୁଇଜଣ, ଦୁଇ ପାଖରୁ ଧରିନେଲେ । ହୁକୁମ୍ ହେଲା – ''ଇସେ କଏଦ୍ ମେ ଡାଲ୍ ଦୋ !''

ଅନ୍ଧାର ଘର ଭିତର ଭାଁ ଭାଁ ଡାକୁଥାଏ । ମୋ ପିଣ୍ଡ ଥୟ ଧରୁ ନଥାଏ । ମୋ ମନ ଭିତରେ ସେମିତି ଅଭେଦ୍ୟ ଅନ୍ଧାର, ସବୁ ରୂପରେଖ ବୁଡ଼େଇ ଦେଇଥାଏ । ଏଠିସେଠି ସାମାନ୍ୟ ନିଆଁଝୁଲ ଦିଶି ଲିଭିଯାଉଥାଏ ।

କିଛି ସମୟରେ ପୃଥ୍ୱୀ ସ୍ଥିର ହେଲା । ମୋର ମନେପଡ଼ିଲା ସେ ଦିନର ସବୁ ଘଟଣା । ଏମାନେ କ'ଣ ମୋତେ ଭୁଲ୍‌ରେ ଏମିତି ହରଣଚାଳ କରି ନେଇ ଆସିଲେ ? ମୋତେ ଆଉ କିଏ ଭାବି ମୋ ଉପରେ ଲକ୍ଷେ ଟଙ୍କା ବାଜି ଲଗେଇବାକୁ ନେଇଆସିଲେ ? କିନ୍ତୁ ଚିହ୍ନିଲା ପରେ ଅନ୍ୟ ପ୍ରକାର ସ୍ଥିର ହେଲା ? ନା, ସେ ହୁଏତ ଜାଣିଶୁଣି ଆଣିଚି । ତେବେ ମୋତେ ଆଣି ସେ ପାଇବ କ'ଣ ? ମୋ ମୁଣ୍ଡର ମୂଲ୍ୟ ଟଙ୍କା ହଜାରେ ବି ହେବ ନାହିଁ । ସେ ନିଜେ ବି କ'ଣ ଏଡ଼ିକି ବେକୁବ୍ ଯେ, ଟଙ୍କା ପାଇବା ଆଶାରେ ସେ ମୋତେ ବାନ୍ଧିଆଣିବ ?

ତାହାହିଁ ବୋଧହୁଏ ଠିକ୍ । ସେ ଜାଣିଶୁଣି ମୋତେ ଆଣିଚି – ପଇସା ପାଇଁ ହୁଏତ ନ ହୋଇପାରେ । ସେମାନେ ନିଶ୍ଚୟ ଖୁବ୍ ପ୍ରସ୍ତୁତ ହୋଇ ରହିଥିଲେ ମସଜିଦ ଆଗକୁ ସେ କାଠ କେବିନ୍ ଛକ ପାଖରେ । ସେମାନେ ହୁଏତ ଜାଣିଥିଲେ ଯେ, ରାତି ଆଠଟା ପରେ ମୁଁ ସାଇକେଲରେ ସେ ବାଟେ ପ୍ରତିଦିନ ଆସେ । ମଣି ରାଘବନ୍‌ର ଝିଅକୁ ଟିଉସନ୍ କରିବାକୁ ମୁଁ ଦପ୍ତରରୁ ହିଁ ଚାଲିଯାଇଥାଏ । ସେ ଛକ ପାଖରେ ତିନିଟା ବତିଖୁଣ୍ଟରୁ ଆଲୁଅ କୋଉକାଳୁ ଲିଭିଯାଇଛି । ସେଇଠି ପାରିହେଲାବେଳେ ଛପ୍ ଛପ୍ ଲାଗେ । ତା'ପରେ ମୁଁ ମନକୁମନ ହସିଦେଇ ପାରିହୋଇଯାଏ । ମୋ ପାଖରେ ଚାରିଟଙ୍କା ଆଠଣାର ଖଣ୍ଡିଏ କଲମ ଏବଂ ବହୁକାଳୁ ସହଣିକ ବାପଟିଏ ଭଳି ମୋତେ ମୁଣ୍ଡେଇ ବୁଲୁଥିବା ସେ ବୁଢ଼ା ସାଇକେଲଟି ଛଡ଼ା କିଛି ଛଡ଼େଇନେବା ଭଳି ଜିନିଷ ନଥିଲା । ସେମିତି ଯଦି କେହି ମୋ ପୁରୁଣା ଜାମାଖଣ୍ଡିକୁ ଭିଡ଼ିଥାନ୍ତା, ମୁଁ ସେ ଦରିଦ୍ରକୁ ସେଇଟା ମୋ ଆଡୁ ଦାନ କରିଦେଇଥାନ୍ତି । ତେବେ ସେ ଦିନ ସେମାନେ ମୋତେ ଝାମ୍ପିପଡ଼ି ମୋ ମୁହଁରେ ପଟିଟାଏ ଭିଡ଼ିବା ପର୍ଯ୍ୟନ୍ତ ମୁଁ ଜମା ପ୍ରତିବାଦ କରିନାହିଁ, କିମ୍ବା ଛଟପଟ ହୋଇନାହିଁ । ମୋତେ କଉତୁକ ଲାଗୁଥାଏ । ସେମାନଙ୍କ ବିଡ଼ମ୍ବିତ ରୂପ କଳ୍ପନା କରି ମୁଁ ମନକୁ ମନ ହସୁଥାଏ । 'ଆବ୍‌ବେ ଏତେ ପରିଶ୍ରମ କରି ମୋଠାରୁ ପାଇବ କ'ଣ ? ତୁମ ଚାରିଜଣଙ୍କ ଚାହା ଖର୍ଚ୍ଚ ଉଠିଲା ଭଳି ମଧ୍ୟ କିଛି ନାହିଁ ।' ମୋ'ର ଶେଷ ପର୍ଯ୍ୟନ୍ତ ବିଶ୍ୱାସ ଥାଏ ଯେ, ସେମାନେ ମୋ ଦେହସାରା ଖୋଜାଖୋଜି କରି, ବିରକ୍ତିରେ ହୁଏତ ଦି'-ଚାରିଟା ବିଧା ଗୋଇଠା ମାରି ମୋତେ ଛାଡ଼ି ପଳାଇବେ ଏବଂ ସେତେବେଳେ ମୁଁ ମନେ ମନେ ହସୁଥିବି । କିନ୍ତୁ ସେମାନେ ମୋତେ ଖଣ୍ଡେ ଜିପ୍ ଭିତରେ ପକେଇ ଆଖିରେ ପଟି ଭିଡ଼ିଦେଲେ । ମନେ ହେଲା ଯେ, ସେମାନେ ନିର୍ଦ୍ଦିଷ୍ଟ କିଛି କରିବାକୁ ଯାଉଛନ୍ତି ।

ଶ୍ୟାମାଚରଣକୁ ଦେଖି ଚିହ୍ନିବାର ତ ଉପାୟ ନଥିଲା; କାରଣ ତାକୁ ସେଭଳି ପରିବେଶରେ ମୁଁ କାହିଁକି ବା କଳ୍ପନା କରିବାକୁ ଯାଇଥାନ୍ତି ? ସେ ପଛରେ ହାତ ଛନ୍ଦି ଗୋଡ଼ ଫରକଟେଇ ମୋ ସାମ୍ନାରେ ଛିଡ଼ାହେଲା । ମୋ ଆଖି ଭିତରକୁ କଟମଟ ଚାହିଁରହିଲା । ଡକେଇତ ସର୍ଦ୍ଦାରଟାଏ ।

"ତୋ ନାଁ ଫକୀର ଦାସ ? ତୁ ଜାଣୁ ଶ୍ୟାମାଚରଣକୁ ? ଶ୍ୟାମାଚରଣ..." ମୁଁ ଅବିଶ୍ୱାସରେ ସେ ନାଁଟାକୁ ଶୁଣିଲି । କୋଡ଼ିଏ ବର୍ଷର ପୁରୁଣା ସ୍ମୃତି ଚେଇଁଉଠିଲା । ହଠାତ୍ ସେ ସର୍ଦ୍ଦାରର ଆଖିଯୋଡ଼ାକୁ – ମୁଁ ଚିହ୍ନିଦେଲି – "ଆରେ ତୁ ଶ୍ୟାମାଚରଣ ?" – "ସଟ୍‌ଅପ୍ ।" ଗର୍ଜିଲା ସେ ଗୁମ୍ଫା ଭଳି ଅନ୍ଧାରୁଆ ବଖରା – "ମୁହଁ ସମ୍ଭାଳି କଥା କହିଜାଣିନୁ ? ଆଉ ସେମିତି ବେଖାତିର କଥା କହିଲେ, ହେଇ ଦେଖିଥା । ଶାଲାର ପୁଟା ଉଲାରିଦେବି ।"

ମୁଁ ଯଥାସମ୍ଭବ ସଂଯତ ସ୍ୱରରେ କହିଲି, "କ୍ଷମାକରିବେ । ଭାବିଥିଲି ଯେ, ଆପଣ ପୁରୁଣା ବନ୍ଧୁତାଖାତିରରେ ଆଗଭଳି ମୋତେ ଗ୍ରହଣ କରିବେ । – ହଉ ନହେଲା । ମୁଁ ଆପଣଙ୍କୁ କୌଣସି ପ୍ରକାରେ ଏ ପରିବେଶ ସହିତ ମିଶେଇପାରୁନାହିଁ । ଆପଣ... ହୁଏତ ଆଉ କେହି; ତା'ଭଳି ଦିଶୁଛନ୍ତି ।"

"ହୋହୋ, ହୋହୋ, ହୋହୋ..." ହସମାଡ଼ରେ ଛାତ ଝଡ଼ିପଡ଼ିଥାନ୍ତା । ସେ ଜଙ୍ଘ ଉପରେ ଥାପୁଡ଼ା ମାରି କାଳିଶି ଲାଗିଲା ପରି ଝୁଲିଝୁଲି ହସିଲା, ବହୁ କଷ୍ଟରେ ସମ୍ଭାଳି ନେଇ ପୁଣି ହସିଲା । ସେମିତି ଟହଟହ ହସ ଭିତରେ କହିଲା "ଆବ୍‌ବେ ଶଳା, ତୁ କ'ଣ ମତେ ଆପଣ, ଆପଣ କରୁଚୁ ? ଆବ୍‌ବେ ଫକୀରା ?" ସେ ମୋ କାନ୍ଧରେ ହାତ ଥାପି ମତେ ଝୁଙ୍କିଲା, ଆଉ ଗୋଟାଏ କାଠ ବେଞ୍ଚ ଉପରେ ବସି ମତେ ଓଟାରି ନେଇ ପାଖରେ ବସେଇଲା ।

ମୁଁ ହତଭମ୍ବ ହେଲାପରି ତାକୁ ଅନେଇଥାଏ । ସେ କହିଲା, "ଆବ୍‌ବେ ଶ୍ୟାମାଚରଣକୁ କେବେ 'ତୁ' ଛଡ଼ା ଆଉ କ'ଣ ବୋଲି ଡାକିଛୁ ?"

ତା' ପରେ ଅଧେ ବିଶ୍ୱାସ ଅଧେ ଅବିଶ୍ୱାସରେ ମୁଁ କହିଲି, "ଦେଖ୍ ଭାଇ ମୁଁ ତତେ ସେଇ ଶ୍ୟାମାଚରଣ ବୋଲି ଜୋର୍ ଦେଇ କହିପାରୁନାହିଁ । ତୁ ମଣିଷ ଖୁନ୍ କରୁଚୁ ? – କେମିତି ?" ଢାଇକିନା ଗୋଟାଏ ଚଟକଣାରେ ଜ୍ଞାନ ହଜିଗଲା । ତା' ପରେ ମୁଁ ଅପେକ୍ଷା କରି ରହିଲି ମୋର ଅନିର୍ଦ୍ଦିଷ୍ଟ ଭାଗ୍ୟକୁ ।

ରାତି ଘନେଇ ଆସିଲା ଚାରିଆଡୁ । ମୋ ମନ ଭିତରେ ଆଶଙ୍କାର ହୁଡ଼ା ହୁଡ଼ା ମେଘ । ସେତେବେଳକୁ ରାତି ଦି'ଟା ପାଖାପାଖି ହେବ ନା କ'ଣ । ରାତିର ପ୍ରକୃତ ସ୍ୱରୂପ ଜଣାଯିବାର ସେ ବେଳା; ତା'ର ଗଭୀର ରହସ୍ୟ, ନୀରବ ଅନ୍ଧାର ଭିତରେ ଘୋଡ଼େଇ ହୋଇ ରହେ । ଭାରି ଦୁଃସାଧ ଜଣାଯାଏ ରାତ୍ରି !

ମୋ କବାଟ ଫିଟେଇ କିଏ ଜଣେ ପଶିଆସିଲା । ମୁଁ ଶଙ୍କିଗଲି । ଭାବିଲି ବୋଧହୁଏ ଏଥର ମୋତେ ସେ ହତ୍ୟା କରିବା ପାଇଁ ଆସିଗଲା – ମୁଁ ସେଇ ଅନ୍ଧାରରେ, ନିଃଶ୍ୱାସ ରୋଧି ଅପେକ୍ଷା କରିଥାଏ ।

ଖୁବ୍ ଆସ୍ତେ ଶୁଭିଲା, "ଫକୀରା !" ମୁଁ ଧଡ଼ପଡ଼ ଉଠି ବସିଲି, "କିଏ ?" – "ଚୁପ୍‌କର । ପାଟି ଫିଟାନା କହୁଛି ।" – ଫିସ୍‌ଫିସ୍ କଲା ସେ ମୋ ପାଖରେ ।

"ମୁଁ ଶ୍ୟାମାଚରଣ । ମୋତେ ସେ ସବାଆଗ ହତ୍ୟା କରିଛି ।"

ମୁଁ ଚମକି ପଡ଼ିଲି । ମୋ ଦେହ ସାରା ରୋମ ଟାଙ୍କୁରିଗଲା । ସେଇଟା ତା'ହେଲେ ଅଶରୀରୀ ପ୍ରେତଟାଏ । ମୋ କପାଳରେ ଟୋପା ଟୋପା ଝାଳ ଜକେଇଗଲା ।

"ତତେ ମୁଁ ପଚାରିବାକୁ ଆସିଚି ଗୋଟିଏ ପ୍ରଶ୍ନ । ତତେ ତା'ର ଜବାବ ଦବାକୁ ପଡ଼ିବ । ତୋର ଗତ୍ୟନ୍ତର ନାହିଁ, ତୁ ମରିବୁ ନା ବଞ୍ଚିବୁ ? ଯଦି – ମରିବୁ ତେବେ ତୋର ସବୁ ସରିଗଲା । ବଞ୍ଚିଲେ କିନ୍ତୁ ସବୁଦିନ ପାଇଁ ଏଇଠି ରହିବୁ, ଡକେଇତି କରିବୁ – ଘର ଜାଳିବୁ; ମଣିଷ ମାରିବୁ । କହ, ତୁ କ'ଣ କରିବୁ ? ବଞ୍ଚିବୁ ନା ମରିବୁ ?"

ଭୟରେ ମୋର ବୁଦ୍ଧି ହଜିଗଲା । ମୋ ଦେହ ଥରିଲା ଗୋଟାପଣେ । ମୋତେ ବାହାରପାଣି ଦେଖେଇଲା ।

ସେ କହିଲା, "ଦେଖ୍ ଫକୀରା, ତୋତେ ତିରିଶ ବର୍ଷ ହେଇଗଲା । ତୁ ପିଲା ମାଇପ ନେଇ ସାତବର୍ଷ ଘରକଲୁଣି । ଯଦି ତୁ ଏଇନା ଲଢ଼େଇ କରି ମରିଯିବାକୁ ଚାହୁଁ, ତେବେ ତା'ର ଗୋଟାଏ କ'ଣ ଅର୍ଥ ଅଛି ? ତଥାପି, ସେଗୁଡ଼ାକ ସେତେ ସହଜ ନୁହେଁ । କିଏ ଏମିତି ଜାଣିଶୁଣି ମରିଯାଇଛି ? ସମସ୍ତେ ଚାହାନ୍ତି ବଞ୍ଚିବାକୁ । ତୁ'ବି । ତୋ'ପରି ପାଞ୍ଚଗଣ୍ଡା ମରିଗଲେ ଏ ସୃଷ୍ଟି ଗୋଡ଼ି ମାଟି ହୋଇଯିବ ନାହିଁ । ତୁ ମରିଗଲେ ତୋ ପୁଅ ମାଇପ କେମିତି ହେଲେ ବଞ୍ଚିବେ । ତୋତେ ଲୋଡ଼ିବେ କିଛିଦିନ, ତା'ପରେ ଦିହସହା ହେଇଯିବ, ଆଉ ମନେପକେଇବେ ନାହିଁ । ତଥାପି ତୁ କଣ ମରିବାକୁ ଚାହିଁବୁ ?... ଧର, ଯଦି ତୋ' ଘରେ ନେଇ ପଚାଶ ହଜାର ଟଙ୍କା ପହଞ୍ଚେଇ ଦିଆଯାଏ, ଯାହା ତୁ ଜୀବନସାରା ଉପାର୍ଜନ କରିନଥାନ୍ତୁ; କହ, ବଞ୍ଚିବୁ ନା ମରିବୁ ?"

ମୋର ଦମ୍ଭ ଆସ୍ତେ ଫେରିଆସୁଥାଏ । ମୋତେ ସେ ଫିସ୍‌ଫିସ୍ କଥାରୁ ଜଣାପଡୁଥାଏ ଯେ, ଏ ସେଇ ଦୁର୍ଦ୍ଧାନ୍ତ ସର୍ଦ୍ଦାର ନିଜେ । ତେବେ ସେ କାହା ଡରରେ ଏମିତି ଲୁଚି ଲୁଚି ମୋ ପାଖରେ ଆସି କଥା କହୁଛି; ଯା'ର ପୁଣି ଭୟ କାହାକୁ ? ଫେର୍ କହୁଛି ଯେ, ତାକୁ ଆଉ କିଏ ହତ୍ୟା କରିଛି । ମୁଁ ସାହସ କରି ଓଠ ଚାଟିଲି, ସେଇ ଅନ୍ଧାରରେ ମୋ ଗୋଡ଼ଯୋଡ଼ାକୁ ଦମ୍ଭକରି ଧରିଲି । ତଳକୁ ଚାହିଁ କହିଲି, "ତୁମେ ମୋତେ ଏଇଠୁ ବଞ୍ଚାଇ ନେଇ ପାରିବ ? ମୁଁ ବଞ୍ଚିବାକୁ ଚାହେଁ । ମୋର... ମୋର କେତେ କାମ ବାକି ପଡ଼ିଛି ।"

ଠିସ୍‌ଠିସ୍ ହସ । – "ବେକୁବ୍ କାହାଁକା, ଆରେ ବଞ୍ଚିବୁ ଯଦି ଏଇଠି ବଞ୍ଚିବୁ । ଛୁରୀ, ବନ୍ଧୁକର ଟ୍ରେନିଂ ନବୁ, ଦଳରେ ସାମିଲି ହେଇ ମାଉଁସ ଖାଇବୁ, ମଦ ପିଇବୁ । ଯେତେ ଇଚ୍ଛା ସେତେ ଟଙ୍କା ନେଇ ତୋ ବିବିକୁ ଲୁଚି ଲୁଚି ଦେଇଆସିବୁ । କିନ୍ତୁ ଯଦି, ତା'ପାଖରେ ବି ତୋର ନାଁ କହିଚୁ, ଯଦି ଏତେଟିକେ ବିଶ୍ୱାସ ଭାଙ୍ଗିଚୁ, ସେଇଠି ତୋ ପେଟ ପିଠିରେ ଦଶଟା ଛୁରୀ ବସିଯିବ । କଣ କହୁଚୁ କହ; ତୁ ବଞ୍ଚିବୁ ନା

ମରିବୁ ? ମରିବା ପାଇଁ କିଛି ଦରକାର ନାଇଁ, ଏଇଠି ଯଦି ପାଟି କରିଦଉ, ତୋତେ ଏକ ମିନିଟ୍‌ରେ ଶେଷ କରିଦିଆଯିବ । ଗୋଟାଏ ବସ୍ତାରେ ତତେ ତିନିଗଡ଼ କରି ପୂରେଇ ଗାଁମୁଣ୍ଡେ ଫୋପାଡ଼ି ଦିଆଯିବ ।'' ତା'ର ସେ ଚିକ୍‌କଣ ଇସ୍ପାତ୍ ପରି କଥାରେ ମୁଁ ଟଳମଳ ବୋଧକଲି । ଜାଣିପାରିଲି ମୋ ମର୍ମ ଭିତରେ ଯେ, ସେ ଯାହା କହୁଛି ତା' ନିଶ୍ଚୟ କରିବ ।

''ମୁଁ ଡକେଇତ ହବାପାଇଁ ଜନ୍ମି ନାହିଁ । ମୋର ସେ ତାଲିମ ନାଇଁ । ସେମିତି ଦୃଷ୍ଟି ନାହିଁ । ମୋତେ କେହି ତା' ଦଳରେ ନେଲେ ତା'ର ବି କିଛି ଲାଭ ହବ ନାହିଁ । ମୋ ହାତରେ ଏ ବିଦ୍ୟା ହବ ନାହିଁ ।''

''ଯଦି ଆଉ କୌଣସି ଉପାୟରେ ବଞ୍ଚିବାର ସମ୍ଭାବନା ନାହିଁ, ଯଦି ଏ ବିଦ୍ୟା ସାଧିବାକୁ ତୁ ବାଧ ତେବେ କ'ଣ କରିବୁ । ଏମିତି ବଞ୍ଚିବୁ, ନା ମରିବୁ ।''

ମୁଁ ବୁଝିପାରିଲି ଯେ, ସେ ଖୁବ୍ ଗୋଟାଏ ଗୁରୁତର ସଙ୍କଟ କଥା ସୂଚନା ଦେବାକୁ ଚେଷ୍ଟାକରୁଚି । ମୁଁ ସେ ଅନ୍ଧାର ବଖରାରେ ଡକେଇତମାନଙ୍କ ଖାପଚ୍‌ରେ ପଡ଼ିଥାଏ ସିନା; ରାତି ପାହିଲେ ମୋ ଭାଗ୍ୟ ଅନ୍ୟ ପ୍ରକାର ହେବ; ମୁଁ ପୁଣି ଫେରିଯିବି ଘରକୁ; ଏଇଟା ଗୋଟାଏ ଦୁଃସ୍ୱପ୍ନ ଭଳି ପାରିହୋଇଯିବ – ଏଭଳି ପ୍ରତ୍ୟୟ ମୋର ଥାଏ । କିନ୍ତୁ ସେ ବାରମ୍ବାର ପଚାରିବାରୁ ମୋର ହେଜ ପଶିଲା । ଆରେ, ସତେ ତ ? ଏମାନେ ତ ମୋତେ ଆଣିଛନ୍ତି ଗୋଟାଏ ମତଲବରେ । ସେମାନେ ଚାହାନ୍ତି ସେମାନଙ୍କର କୌଣସି ସେବାରେ ମୋତେ ହୁଏତ ନିଯୁକ୍ତ କରିବା ପାଇଁ । ରାଜି ନ ହେଲେ ହୁଏତ ମାରିଦେବେ । ମଣିଷଟାଏ ମାରିଦେବାକୁ ଏମାନଙ୍କୁ କେତେ ଘଡ଼ି ।

''ଆବ୍‌ବେ କ'ଣ ଭାବୁଛୁ ଏତେ କାଳ ?'' ଦାନ୍ତ କଡ଼ମଡ଼ ଭିତରେ ସେଇ ସ୍ୱର । ''ତୁ ଗୋଟାଏ ଅଯୋଗ୍ୟ ନାଲାଏକ । ତୋର ମିଜାଜ ଛୋଟ । ତୁ ଶାଳା ବଞ୍ଚିବାକୁ ଚାହୁଁଛୁ ଅଥଚ୍ ସେଥିରେ ପଦଟିଏ ପାଟି ଫିଟେଇ କହିବାକୁ ତୋର ବଳ ନାହିଁ ? ତୁ ଯଦି ଭାବୁଥାଉ ଯେ, ତୋତେ ନେଇ ଏମାନେ ତୋ' ଘରେ ଛାଡ଼ି ଦେଇ ଆସିବେ, ସେଇଟା ମିଛ । ଯା'ଭିତରେ ତୋ ଘରର ଛାତ ଉଡ଼ିଯିବଣି, ତୋ ମାଇପକୁ ପିଲାକୁ ବୋମା ଫୁଟାଇ ମାରିସାରିବେଣି ।'

ମୁଁ ଚିତ୍କାର କରିପକେଇଥାନ୍ତି । ସେ ମୋ ପାଟିରେ ହାତ ଦବେଇ ମାଡ଼ିବସିଲା । ଛୁରୀ ବାହାର କଲା ଅଣ୍ଟାରୁ ମୋ କାନପାଖେ ଭଣଭଣ ଗନ୍ଧଉଥିବା ସ୍ୱରରେ କହିଲା, ''ଶାଳା ପାଟି କରିବୁ ଯଦି ତତେ ଏଇଠି ଖତମ୍ କରିଦେବି । ତତେ ସେମାନେ ଗୋଟାଏ କାମରେ ଆଣିଛନ୍ତି । ଗୋଟାଏ ମତଲବ ଅଛି । ସେଇଟା ତତେ ଏଇନା କୁହାଯିବ ନାହିଁ; ତୁ ଏବେ କହ, ଏଇଠି ରହିବୁ ନା ମରିବୁ । କହ, ତୋର ଘରଚଳଣି ପାଇଁ କେତେ ପଇସା ଦରକାର ?''

କିଛି ସମୟ ପରେ ପୁଣି କହିଲା, ''ତୁ' ଜାଣୁ, ସେ ଶ୍ୟାମାଚରଣଟା କେମିତି ଡରକୁଳା, ହଗୁରା ମାଇଚିଆଟାଏ । ତା'ଘରେ ପଶି ଦିନେ ତା' ଗାଁର ଜ୍ଞାତିକୁଟୁମ୍ବ

ସବୁ ତା' ଚାଳ ଉଲାରିନେଲେ । ତା' ମା' ଦେହରୁ ଲୁଗା ଓଟାରିନେଲେ । ତା' ସାନ ଭଉଣୀକୁ ଚୁଟି ଧରି ଘୋଷାରି ନେଲେ । ଶ୍ୟାମାଚରଣକୁ ବିଧା ଗୋଇଠା ମା'ରି ଗୋଟାଏ କଣକୁ ପକାଇଦେଲେ । ସେ ସେଇଠି ମୁହଁ ଘୋଡ଼େଇ କାନ୍ଦିଲା । ଶାଳା ବେଇମାନ୍ ମାଇଗୁଲିଆ ଅମରଦ କାହାଁକା... ସେଇଠି ବିଧବା ମା' ବିବସ୍ତ୍ରା ହେଇ ଚିତ୍କାର କରୁଥାଏ, ଚିହିଁକି ଚିହିଁକି ରଡ଼ି ଛାଡୁଥାଏ, ସେ ମୁଖାପିନ୍ଧା ଜନତା ।·କି ଦୋଷ କରିଥିଲା ସେ ଅନାଥ ପରିବାର ? କେବଳ ତାଙ୍କ ଘରେ କେହି ମରଦ ନଥିଲା, କେହି ତାଙ୍କ ମୁକାବିଲା କରିବାକୁ ନଥିଲା ବୋଲି ଗୋଟିଏ ଟିମା ନାହାକର ପ୍ରରୋଚନାରେ ରାତିରେ ସେମାନେ ନିଶାଖାଇ ମାତିଉଠିଥିଲେ । ସେଇଠି ମୁଁ ଅନ୍ଧାର ଭିତରୁ କୁଦିପଡ଼ିଲି । ପ୍ରଥମେ ଧରିଲି ଶ୍ୟାମାଚରଣକୁ । ସେ ଗଁ-ଗଁ କଲା । ତା ଆଖି ତରାଟି ହେଇଗଲା । ମୁଁ ସେଇଠି ସେ ଟୋକାକୁ ନିର୍ବିଚାର ହତ୍ୟାକଲି । ସେ ଭଳି ନରମା ବେମରଦିଆର ବଞ୍ଚିବାର ଅଧିକାର ନାହିଁ ବୋଲି ଯୁକ୍ତି କରିଥିଲି । ତା'ପାଖରେ ଗୋଟାଏ ଥନ୍ତରା କଟୁରି ପଡ଼ିଥିଲା । ସେଇଥିରେ ଗୋଟାଏ ଚୋଟରେ ଟିମା ନାହାକ ଘୁଷୁରି ପରି ଚାରିକାତ ମେଲି ପଡ଼ିଗଲା । ଆଉ ଛ'ଜଣ ଅଣ୍ଡିରା କିଛି ବୁଝିପାରୁ ନଥାନ୍ତି । କେମିତି ଟୋକାଖଣ୍ଡେ ବିଜୁଳି ବେଗରେ କଟୁରି ଚଳଉଚି । ଛ'ଜଣ ଯାକ ମା଼ଉଁସ କୁଢ଼ ହୋଇ ଗଦାହେଇଗଲେ । ଗାଁ ଚମକିଲା ସେମାନଙ୍କ ରଡ଼ିରେ । ହୁଳା ଜଳିଲା । ଲୋକେ ରୁଣ୍ଡ ହେଇଗଲେ । ଦି'ଟା ମାଇକିନାଙ୍କୁ ଲୁଗା ଦେଇ ଲାଜ ଘୋଡ଼େଇଲେ । ହାଣଖିଆ ଭେଣ୍ଡିଆଗୁଡ଼ାକୁ ଚିହ୍ନିଲେ, ଚମକିଲେ । ମାତବ୍ବର ଘର ପିଲା ସେମାନେ । ଟିମା ନାହାକ ଆଉ ତା' ଦଳ ! ଶ୍ୟାମାଚରଣ ମରିସାରିଥିଲା; କିନ୍ତୁ ସେମାନେ ତା'ର ପତ୍ତା ପାଇଲେ ନାହିଁ । ମୁଁ ଜାଣେ, ଶ୍ୟାମାଚରଣକୁ ସବା ଆଗ ମୁଁ କଟୁରିରେ ଦୁଇପାଳ କରିଦେଇଛି; କିନ୍ତୁ ସେମାନେ ରାଷ୍ଟ୍ରକରି ପକେଇଲେ ଯେ, ଶ୍ୟାମାଚରଣ ସାତଟା ଖୁନ୍‌କରି ଫେରାର ହେଇଯାଇଚି । ହେ ହେ, ଶାମାଚରଣ ଶାଳା ରକ୍ତ ଦେଖିଲେ ମୁତି ପକାଇବ, ହଗୁରା ଡରକୁଳା । ସେ ପୁଣି କ'ଣ ସାତ-ସାତଟା ଖୁନ୍ କରିବ ?''

...''ମୁଁ ଶାମ୍ ସିଂ । ମୁଁ ସବୁ ଖୁନ୍ କରିଚି । ଶହ ଶହ ଖୁନ୍ । ମୁଁ ରକ୍ତ ନଈରେ ପହଁରୁଚି । ମୋ ଚାରିଆଡ଼େ ଯେଉଁମାନେ ଅଛନ୍ତି, ସେମାନେ ସମସ୍ତେ ମୁଠୁଣିଏ ରକ୍ତରେ ତିନ୍ତି ରହିଛନ୍ତି । ରକ୍ତ ଗୋଟାଏ ନିଶା । ତୁ ଶାଳା ଫକୀରା କାହୁଁ ବୁଝିବୁ ? ଅଠାଳିଆ ରକ୍ତରେ ସୁନାହାର ବୁଡ଼ିରହିଥିବ; ତାକୁ ମୁଠାରେ ଚିପୁଥିବୁ, ଛାଡୁଥିବୁ । ବେଖାତିରରେ ତାକୁ କାଦୁଅ ମେଞ୍ଚାଟାଏ ପରି ଲଦ୍‌କିନା ଛାଟିଦେବୁ ! ସେତେବେଳେ ଟହଟହ ହସିବାକୁ ମନ ହେବ । ଛାଡ଼ ମୁଁ ସେ କଥା ତତେ କହିବାକୁ ଆସିନାହିଁ । ମୁଁ କହୁଛି କ'ଣ କି, ଏ ଘୋଡ଼ାରେ ଥରେ ଚଢ଼ିଗଲେ ଆଉ ଓହ୍ଲେଇବା ସହଜ ନୁହେଁ । କାଇଁକି ଜାଣିଚୁ ? — ଏଇଟା ଘୋଡ଼ା ନୁହେଁ, ବାଘ । — ରକ୍ତମୁଖା ମହାବଳ ! ତା'ପିଠିରେ ବସି ତାକୁ ଚଳେଇବା ଯେତିକି କଷ୍ଟ, ତା'ଉପରୁ ଓହ୍ଲେଇଯିବା ସେତିକି

କଷ୍ଟ । ଓହ୍ଲେଇଲେ ସେ ଗାଉଁକିନା ମାଡ଼ିବସିବ । ବାଘର ଶୋଷ ମେଣ୍ଟେ ନାହିଁ । ପ୍ରତିଦିନ ସୂର୍ଯ୍ୟ ବୁଡ଼ିଗଲାବେଳେ ତା' ତଣ୍ଟି ଶୁଖି ଶୁଖି ଆସେ । ସେ ରଡ଼ି ଛାଡ଼େ । ଆଖି ତରାଟି ଅନାଏ । ବିଜୁଳିପରି ପଞ୍ଝା ଭିତରୁ ନଖ ବାହାରକରି ଲୁଚେଇନିଏ – ବାଘକୁ ଚଢ଼ିଲ ଯଦି, ବାଘକୁ ପୋଷିବାକୁ ହବ ।'

ସର୍ଦ୍ଦାର ଶାମ୍ ସିଂ ଖୁବ୍ ଆସ୍ତେ କଥା କହୁଥିଲା । ମନକୁ ମନ କହୁଥିଲା । ସେ କ'ଣ ଚାହୁଁଥିଲା କହିବାକୁ ? ସେ କ'ଣ ଅନୁତାପ କରୁଥିଲା ? ଡରୁଥିଲା ତା' ଦଳର ଅନ୍ୟମାନଙ୍କୁ ? ସେ କ'ଣ ସତେ ଚାହୁଁଥିଲା ଦଳ ଛାଡ଼ି ଡକେଇତି ଛାଡ଼ି ଆଲୁଅକୁ ବାହାରିଆସିବାକୁ ? ମୋଟଉପରେ ସେ କ'ଣ ଚାହୁଁଥିଲା ଫକୀରା ତାକୁ ସେଥିରେ ସାହାଯ୍ୟ କରୁ ?

...''କିବ୍‌ବେ ଫକୀରା, ତୋର କିଛି କମ୍ ବହପ ନୁହେଁ ତ ? ତୁ ପୁଣି ବସିଚୁ ଶାମ୍ ସିଂକୁ ସାହାଯ୍ୟ କରିବୁ ? ତୁ କ'ଣ ତାକୁ ସେ କାଳ ଶାମାଚରଣ ଠଉରେଇଲୁ କି ! ତା'ପାଖରେ ଅଣ୍ଡିରାପଣିଆ ଦେଖେଇବୁ ? ତୁ ପଡ଼ିଛୁ ଆସି ବାଘ ଗୁମ୍ଫାରେ । ତୋର ତ ନିଜ ରକ୍ଷଣେ ଅସମ୍ଭବ; ତୁ କ'ଣ ଭାବୁଚୁ ଆଉ କାହାକୁ ବଞ୍ଚେଇବାକୁ; ତା' ପୁଣି ଶାମ ସିଂକୁ ?''

''ଶୁଣ ଫକୀରା, ମୁଁ ଚାହିଁଲେ ତତେ ଏଇଠି କିମା କରି ଦେଇପାରେ । ଚାହିଁଲେ ମୋ ଦଳର ସମସ୍ତଙ୍କୁ ଗୁଳିରେ ଉଡ଼େଇ ଦେଇପାରେ । ମୋ ପାଇଁ ଅସମ୍ଭବ କିଛି ନାହିଁ; ଅକର୍ମ କିଛି ନାହିଁ । କିନ୍ତୁ ମୁଁ ତତେ ମାରିବାକୁ ଆଣି ନଥିଲି । ମୁଁ ତତେ ଗୋଟିଏ ପ୍ରଶ୍ନ ପଚ଼ାରିବାକୁ ଡାକିଥିଲି । ଯେତେ ପଚ଼ାରିଲେ ସୁଦ୍ଧା ତୁ ତା'ର ଉତ୍ତର ଦେଉନାହୁଁ; ଦେଇପାରୁନାହୁଁ । ତୁ ବୋଧେ କଥାଟାକୁ ବୁଝିପାରୁନାହୁଁ । ମୁଁ ଭାବିଥିଲି, ତୁ ଶାଳା ଖୁବ୍ ପାରିବାର ଲୋକ; ତୋର ବୁଝାମଣା ଖୁବ୍ ପାକଳ । ସେ କାଳୁ ଅଙ୍କରେ ବେଶି ନମ୍ବର ରଖୁଥିଲୁ, ପଚ଼ାରିଲେ କଷ୍ଟିଆ ପ୍ରଶ୍ନସବୁ ବୁଝେଇଦେଇପାରୁଥିଲୁ; ଏଥିରେ ତୋ ବୁଦ୍ଧି ଖଟୁ ନାହିଁ ଦେଖୁଚି; ମୁଁ ବି ତୋ ଉତ୍ତରକୁ ଖାତିର କରିନାହିଁ । ମୋର ସେମିତି କିଛି ଅସୁବିଧା ନାହିଁ । ମୁଁ ତତେ ଥରେ ଦୁଇଥର ରାତିରେ ଦେଖିଚି । ଗୋଟାଏ ଧଡଡ଼ା ସାଇକେଲରେ ଏକୁଟିଆ ନିରୋଳା ରାସ୍ତାରେ ଘରକୁ ଫେରିବାର ଦେଖିଚି । ତୋ ଘରକୁ ଯାଇଚି ତୋ ଅଜାଣତରେ । ତୁ ଶଳା ଏତେ ଗରିବ ବୋଲି ମୋର ଧରଣା ନଥିଲା । ମୋର ମନହେଲା ତତେ ଲକ୍ଷେ ଟଙ୍କା ଦବାକୁ । ଫେର୍ ଭାବିଲି, ତୁ ଯଦି ବେଶି ଘୋଟେ ସଚ୍ଚାପଣିଆ ଦେଖେଇ ଫୋପାଡ଼ି ଦଉ, ମୁଁ ରାଗରେ ତୋତେ, ଘରର ସମସ୍ତଙ୍କୁ ନିଆଁ ଲଗେଇ ପୋଡ଼ିଦେଇପାରେ । ତୁ କେମିତି ଏକୁଟିଆ ସେଇ ନିରୋଳା ରାସ୍ତାରେ ରାତିରେ ଫେରୁଚୁ ? ସେଇଠି ଏଥରକୁ ମିଶେଇଲେ ସତର ଜଣ ମଲେଣି । ତୋର କିଛି ପରବାଏ ନାହିଁ । ଶାଳା ନିଧଡ଼କ ଚାଲିଯାଉଚୁ । ତତେ ସେଥିପାଇଁ ଘୋଷାରିବାକୁ ମନ ହେଇଗଲା ।''

ମୁଁ କିନ୍ତୁ ତା' ସ୍ୱରରୁ ବୁଝିପାରୁଥାଏ ଯେ, କୋଉଠି ଗୋଟିଏ କ'ଣ ଅଟକୁଚି... ସେ କ'ଣ କହିବାକୁ ଯାଇ ଆଉ କ'ଣ ଗୁଡ଼େ କହିଦଉଚି । ମୋର ଅସୁବିଧା ଶାମ୍ ସିଂକୁ ନେଇ । ଶ୍ୟାମାଚରଣ ତ କୋଉକାଳୁ ମରିସାରିଥାଏ; ଏଇ ତାକୁ ଦୁଇଫାଳ କରି ଚିରିଦେଇଥାଏ ।

''ଫକୀରା, ମୋର ଆଉ ଗୋଟିଏ କାରଣ ଅଛି ତତେ ଆଣିବାରେ । ମୋର ଗୋଟାଏ କମ୍‌ଜୋର ବେଳା ଅଛି, ଯେତେବେଳେ ସେଇ ବେକୁବ ଶାମାଚରଣ ରକ୍ତନଇ ପହଁରି ବାହାରିଆସୁଛି ! ସେଦିନ ଗୋଟାଏ ମହାଜନ ଘରେ ଆମେ ନିଆଁ ଲଗେଇ ଦେଲୁ । ଗାଁରୁ ଟିକିଏ ଦୂରରେ ନିରୋଳା କୋଠା, ଖୁବ୍ ମଜବୁତ ତିଆରି । କୋଡ଼ିଏ ତିରିଶ ଲୋକ ଗୁଳିଚୋଟରେ ମରିସାରିଥାନ୍ତି । ଗାଁଲୋକଙ୍କର ସାହସ ନଥାଏ ପାଖ ପଶିବାକୁ, ନିଆଁ ଚହଟି ଆସୁଥାଏ । ତଳମହଲାରୁ ରଡ଼ି ଛାଡ଼ି ଡିର୍ଲାଟାଏ ବାହାରି ଆସିଲା; ତା ପିନ୍ଧାଲୁଗା ହୁଦ୍‌ହୁଦ୍ ଜଳିଯାଉଥାଏ, ମୁଣ୍ଡବାଳ ଫୁର୍‌ଫୁର୍ ଜଳି ଯାଉଥାଏ । ସେ ଏକମୁହାଁ ଆମ ଆଡ଼େ ଦୌଡ଼ିଆସିଲା । ମୁଁ କିଛି ଜାଣିବା ପୂର୍ବରୁ ଠୋ'କିନା ଗୋଟାଏ ଶବ୍ଦ ହେଲା । 'ସନ୍ତୁ' ଲୁହାରଡ଼ ପିଟି ତା ଖପୁରିଟାକୁ ଦୁଇ ଫାଳ କରିଦେଲା । ଗୋଟାଏ ଅତି ଭୟଙ୍କର ଚିତ୍କାର ଶୁଭିଲା । କିଛି ସମୟପରେ ମୋ ଦଳର ସମସ୍ତେ ଘେରି ଅନେଇଥିବାର ଦେଖି ମୁଁ ବୁଝିଲି ଯେ, ମୁଁ ସେଇ ଚିତ୍‌କାର କରିଥିଲି । ମୁଁ ସେଦିନ ଅସୁସ୍ଥ ହୋଇଯିବାର ଅନ୍ୟମାନେ ଲକ୍ଷ୍ୟକଲେ । 'ସନ୍ତୁ' ମୋ ଆଡ଼େ କଣେଇ ଚାହିଁ ମୁରୁକି ମ'ରିବାର ମୁଁ ଲକ୍ଷ୍ୟକଲି । ତା'ଆରଦିନ ସେଇଠୁ କୋଡ଼ିଏ ମାଇଲ ଅନ୍ତରରେ ଗୋଟାଏ ବଡ଼ ଧରଣର ଗୁଳିଗୁଳା ଚଳୁଥିବାବେଳେ ଅତର୍କିତ ଭାବରେ ମୁଁ 'ସନ୍ତୁ'କୁ ଗୁଳି କରିଦେଇଥିଲି । ତାକୁ ଗାଡ଼ିରେ ବୋହିଆଣି ଆମେ ଏଇ ବାରିଆଡ଼େ ନଈରେ ପୋଡ଼ିଦେଲୁ । ମୁଁ ସେଦିନ ଆଉ ଥରେ ଶାମା ଚରଣକୁ ହତ୍ୟାକଲି; ସେ ଶାଳା ଡିର୍ଲାଟାକୁ ମାରିଦେଲେ ସହିପାରିବ ନାହିଁ । ମାଛିକୁ ମ' କହିବ ନାହିଁ, ବେକୁବ, ସେ କି ସର୍ଦ୍ଦାର ହେବ ?... ମୋର ଅସୁବିଧା ଏଇ ଶାମାଚରଣକୁ ନେଇ; ମୁଁ କ'ଣ କରିବି ବୁଝିପାରୁନାହିଁ ।

ହଠାତ୍ ସାମାନ୍ୟ ଉତ୍ତେଜିତ ହେଇ କହିଲା ''ଆଚ୍ଛା ଫକୀରା, ଯଦି ତୋ ବିଧବା ମା' ଆଉ ଭଉଣୀକୁ କେହି ତୋ ସାମ୍ନାରେ ଘୋଷାରେ, ତୁ ତାହା ସହିପାରିବୁ ?''

ମୋ ତୁଣ୍ଡରୁ ଖୁବ୍ ଦୃଢ଼ସ୍ୱର ଶୁଭିଲା — ''ନା !''

ସେ ଗୋଟାଏ ଆବେଗରେ ମୋ ବାହାକୁ ଚାପିଧରି ମୋ ଉପରକୁ ନଇଁଆସିଲା ''ତୁ ସେମାନଙ୍କୁ ସେ ଦନ୍ଥଡ଼ା କଟୁରିରେ ହାଣିଦବୁ ନାହିଁ ?''

ସେହିପରି ଦୃଢ଼ସ୍ୱର ଶୁଭିଲା — ''ଅଲବତ ହାଣିଦେବି ।''

''ବାଆସ ! ସାବାସ୍ ।'' ମୋ ପିଠି ଥାପୁଡ଼େଇ ସେ ହୁଗୁଳା ହେଇଗଲା — ''ମୁଁ ଏତକ ତୋ ତୁଣ୍ଡରୁ ଶୁଣିବାକୁ ଚାହୁଁଥିଲି ।''

''ତୁ କିନ୍ତୁ ତେଣିକି ମଣିଷ ମାରିଚାଲିଥିବୁ – କଥା ମୁଁ ସ୍ୱୀକାର କରିପାରିବି ନାହିଁ ।''

''ଚୋପ୍ ଫକୀରା'' – ସର୍ଦ୍ଦାରର ଦାନ୍ତସନ୍ଧାରୁ ଛିଟିକି ଆସୁଥିବା ସ୍ୱର, ପଞ୍ଜରା ଭେଦି ଆରପାରି ମୁନ ବାହାରିଯିବା ସ୍ୱର । ''ବାଆସ୍ – ତେଣିକି ତୋର କାତ ପାଇବ ନାଇଁ ! ତୁ ବୁଝିପାରିବୁ ନାଇଁ, କ'ଣ ହେଇଥାଏ ତା'ପରେ । ଶ୍ୟାମାଚରଣ ମରିଯିବା କଥାଟା ବୋଧେ ତୁ ବୁଝିପାରୁନାହୁଁ । ମଣିଷ ମାରିଲେ ମାରିବାକୁ ହିଁ ପଡୁଥାଏ । ତୁ ଶାଳା ବୁଝିପାରୁନାହୁଁ । ତୁ କାହାକୁ ଫେରିଯିବାକୁ ଡାକୁଚୁ, ବୁଝିପାରୁ ନାହୁଁ । ସେ କୋଉଠିକି ଫେରିବ, ତୁ ଜାଣିନାହୁଁ; କେମିତି ଫେରିବ ଜାଣିନାହୁଁ । ତୁଛାଟାରେ ବକରବାଜି କରୁଚୁ ।' –

ନରମିଗଲା ସ୍ୱର । ହଜିଲା 'ହଜିଲା ପରି ରହି ରହି ଶୁଭିଲା... ସର୍ଦ୍ଦାର ସତେ ବା ଘୁମେଇ ପଡୁଛି, 'ରକ୍ତର ନଇ, ଜାଣିଚୁ... ଭାରି ଚଉଡ଼ା, ଖୁବ୍ ଗହୀର, ମୁଁ ମଝିରେ ବେକଯାଏଁ ରକ୍ତରେ ବୁଡ଼ି ଛିଡ଼ାହେଇଚି । ମୋ ପାଇଁ ଏ କୂଳ ଯାହା, ସେ କୂଳ ତାହା । ପାରିହେବା ଯେତିକି କଷ୍ଟ, ଫେରିଯିବା ସେତିକି କଷ୍ଟ । ମୁଁ ଆଉ ମୁହଁ ବୁଲେଇ ପାରିବି ନାହିଁ । ଆଜି ରାତିରେ ମୋତେ ପୁଣି ରକ୍ତସୁଅ କାଟିବାକୁ ହବ । ଏ ଆଡ୍‌ଡା ଭାଙ୍ଗି ଅନ୍ଧାର ଭିତରକୁ କୁଦିଯିବାକୁ ହବ, ସେ ନିଶା ମୋ ଖୁନ୍‌ରେ ଚଢ଼ିଆସୁଛି । ମୁଁ ସେଥିରେ ମାତିବା ଆଗରୁ ତତେ ବିଦାକରିଦବାକୁ ଚାହେଁ । ତୁ ଶାଳା ଫକୀରା ବଞ୍ଚିବୁ ! ଏଠୁ ମୁକୁଳି ଯାଇ ସେଠି ବଞ୍ଚିବୁ । ତୁ ଶାଳା ଶାମାଚରଣ ହେଇ ବଞ୍ଚିବୁ । – ମୁଁ ସେଇଆ ଚାହେଁ । ଚାଲ୍, ତତେ ନେଇ ଛାଡ଼ିଆସିବି ।''...

ତା' ଆରଦିନ ସନ୍ଧ୍ୟା ଖବର ପ୍ରଚାରିତ ହେଲା ଯେ, ଗୋଟାଏ ନଈକୂଳିଆ ଆଡ୍‌ଡା ଘରୁ ସର୍ଦ୍ଦାର ଶାମ ସିଂର ଶବ ଉଦ୍ଧାର କରାଯାଇଛି । ତା ଦେହସାରା ବୟାଳିଶିଟା ଗୁଳିଚୋଟର ଚିହ୍ନ ।

ସମସ୍ତେ ମିଶି ତା'ହେଲେ ତାକୁ ମାରିଦେଲେ ! ହେଇପାରେ ସର୍ଦ୍ଦାର ସେତେବେଳେ କମ୍‌ଜୋର ବେଳାଟାକୁ ପାରିହଉଥିଲା । ହେଇପାରେ ଶାମାଚରଣ ରକ୍ତନଈରୁ ଉଠିଆସିଥିଲା । ସବାରି ଓହ୍ଲେଇବାକୁ ଚାହୁଁଥିଲା ବାଘ ପିଠିରୁ । ଏଇଆ ନହୋଇ ଆଉ କ'ଣ ହୋଇଥାନ୍ତା ?

ଏଇଟା କିନ୍ତୁ ମୁଖାପିନ୍ଧା ଜାଲ୍ ସର୍ଦ୍ଦାରଟାଏ । ସେ ଆସିଲା ଯେମିତି, ଗଲା ସେମିତି । ଶାମାଚରଣ ତ ମରିନାଇଁ ! ସେ ପରା ହେଇ ମୁଁ । ମୋ ଭିତରେ ଜିଇରହିଛି ସେ ନିରୀହ ଗୁଳ୍ଲଟିଏ ପରି ।

ତୋର କୌଣସି ଭୟ ନାହିଁ ଶାମାଚରଣ । ତୁ ମୋର ସମଗ୍ର ଆୟୁଷ ନେଇ ମୋ ଜୀବନସାରା ବଞ୍ଚିଥା । ମୋର ପଇସାପତ୍ର ସିନା ନାହିଁ; ରକ୍ତ-ଲତପତ ସୁନାହାର ନାହିଁ; ମୁଁ କିନ୍ତୁ ଗରିବ ନୁହେଁ । ମୁଁ ତତେ ପାଳିନେଇପାରିବି, ମୋ ସ୍ମୃତିରେ, ସ୍ୱପ୍ନରେ, ଅଖଣ୍ଡ ରକ୍ତଧାରରେ ମୁଁ ବଞ୍ଚିଥିବାଯାଏଁ । □□□

# ପାତକ

ହିଲ୍‌ପାଟଣାର ତଳସାହି ଅନ୍ଧାରକୁ ଦୁଇଟି ଅନିର୍ଦ୍ଦିଷ୍ଟ ଛନ୍ଦାଛନ୍ଦି ସ୍ୱର ଓହ୍ଲେଇଗଲା । – କଅଣ ସବୁ ଆବୁରୁ-ଜାବୁରୁ କଥା । – ପାତଳ 'ଲୁନା' ଗାଡ଼ିଟି ଉପରେ ସୋଲ ଟୋପିପିନ୍ଧି ନହକା ଟୋକାଟିଏ ଷ୍ଟେସନ ଆଡ଼ିକି ବାହାରିଗଲା । – କିଏ ସେ, କେଜାଣି !

ବଙ୍ଗଳା ସାମ୍ନାର ବତିଖୁଣ୍ଟରୁ କାହିଁ କେତେ କାଳ ହେଲା ଆଲୁଅ ଲିଭିଯାଇଥିବାରୁ 'ଲୁନା' ଗାଡ଼ିଟି ପଛେ ପଛେ ସାଇଁକିନା ଅନ୍ଧାର ମଡ଼େଇ ହେଇ ପଡ଼ିଲା । ମାଲ ରେଳଟିଏ ବହୁ ଦୂରରୁ ଡାକିଲା ଷ୍ଟେସନ ଆରପାଖରୁ । ଅନ୍ଧାର ଆହୁରି ଜାକିଜୁକି ହେଇ ଶୋଇଗଲା, ରାସ୍ତା ଉପରେ, ଛାତମାନଙ୍କରେ, ଅଗଣାମାନଙ୍କରେ ।

ତିନିଦିନ ତଳେ ବତିଖୁଣ୍ଟ ସାମ୍ନା ସେ ଘର ଛାଡ଼ି ରୋହିଣୀ ବାହାରିଯାଇଥିଲା । ଠିକ୍ ବାହାରିଯାଇଥିଲା ନୁହେଁ, ପୁରୁଣା ମାଢ଼ଖିଆ ଡୋରଟିଏ ହଠାତ୍ ଛିଣ୍ଡିଯାଇଥିଲା । ସେ ସେମିତି ଛିଟିକିଯାଇ ନ ଥିଲେ ଆହୁରି କ'ଣ ବୋଇଲେ କ'ଣ ହେଇଯାଇଥାନ୍ତା । ଭଲ ହେଲା – ସେ ଚାଲିଗଲା ।

ରୋହିଣୀ ବନଫୁଲ । ପିତା ଆଇଜାକ୍ ବନଫୁଲ । ତିନିପୁରୁଷ ହେଲା ଖ୍ରୀଷ୍ଟିଆନ । ରୋହିଣୀର ଏକମାତ୍ର ଅସୁବିଧା ତା'ର ଚେହେରା । ସେ ଜମା ଏ ଦେଶର ପିଲା ପରି ଦିଶେ ନାହିଁ – ଗୋରା ଚମଡ଼ା । କହରା ଆଖି । ହଳଦିଆ ତମ୍ବାଳିଆ ବାଳ । ତା'ର ଢଙ୍ଗଢାଙ୍ଗ, ଚଳଣି, କଥାବାର୍ତ୍ତା ସବୁ ସାହିପିଲାଙ୍କ ପରି । ସେମାନଙ୍କ ପରି ଇଂରାଜୀରେ ଦୁର୍ବଳ; କିନ୍ତୁ ଦେଖିଲେ ମନେ ହେବ, ସତେବା ସାଇବ ପିଲାଟା – ଇଂରାଜୀ ନ କହିଲେ କିଛି ବୁଝିପାରିବ ନାହିଁ । ସେ ଖେଳେ ଚମତ୍କାର । ତା' ବ୍ୟବହାର ଚମତ୍କାର । କାହାକୁ କେବେ ପଦେ ହେଲେ ହୁଡ଼ି କହିଦିଏ ନାହିଁ ।

କିନ୍ତୁ ସବୁବେଳେ ସେ ଉଦାସ ଦିଶେ । ସ୍କୁଲକୁ ଗଲାଭଳି ସେ ଗିର୍ଜାକୁ ଯାଇଛି । ଭାଇଭଉଣୀକୁ ସ୍ନେହ... । ଗୋଟିଏ କଥା ସେ ଜମା ବୁଝିପାରିନାହିଁ । ସେଇଟା ତା' ଜୀବନର ସମସ୍ୟା, ସେଇଟାହିଁ ତା'ର ମୌଳିକ ଦୁଃଖ । ସେ ତା' ମା'ର ଦୁଃଖ ସହିପାରିନାହିଁ । ବାପାଙ୍କ କ୍ରୋଧ ବି ବୁଝିପାରିନାହିଁ । ପ୍ରତିଦିନ ଦୁହିଁଙ୍କ ଝଗଡ଼ା, ମା'ଉପରେ ଭୀଷଣ ମାଡ଼, ରାଗରେ ଫଁ-ଫଁ ହେଇ ବାପା ଘରୁ ବାହାରିଯିବା – ତାକୁ ହେତୁ ହେଲାଦିନୁ ସେ ଦେଖିଆସିଛି । ରାତିରେ ତା' ଭାତନିଦ ଭାଙ୍ଗିଗଲେ ସେ ଶୁଣିଚି ତା' ମା' ନୀରବରେ ଧକେଇ ଧକେଇ କାନ୍ଦିବା । ଏମିତି ଦୁଃଖିନୀ ମା'ଟିଏ ବୋଧେ କାହାରି ନାହିଁ ।

ସେ ବି ଅନେକ ମାଡ଼ ଖାଇଚି ବାପାଙ୍କଠୁ । ପ୍ରତିଥର ମା' ଉତ୍ୟକ୍ତ ହେଇ ବାପାଙ୍କୁ ଭିଡ଼ିଧରିଛି; ଫଳରେ ଲାତ ଗୋଇଠା ଖାଇ କାଛଦେହରେ ପିଟିହେବାର ସେ ଛଳ ଛଳ ଆଖିରେ ଦେଖିଆସିଛି ।

ତା'ର ବେଳେବେଳେ କେମିତି କେଜାଣି ସନ୍ଦେହ ହେଉଚି ଯେ, ବାପା ମା' ବୋଧେ ତାହାରି ପାଇଁ କଜିଆ କରୁଛନ୍ତି ! କିନ୍ତୁ କାହିଁକି ? ଦର୍ପଣକୁ ସେ ଅନେକ ସମୟ ଚାହିଁରହିଛି । ନିଜ ଉପରେ ରାଗିପାରିନାହିଁ । ସେ ତ ଦେଖିବାକୁ ଖୁବ୍ ଗୋରା; ଖୁବ୍ ସୁନ୍ଦର । ତାକୁ ତା'ହେଲେ ବାପା କାହିଁକି ଏତେ ଘୃଣା କରନ୍ତି ? କାହିଁକି ଦେଖିଲାମାତ୍ରେ ଚିଡ଼୍‌ଚିଡ଼୍ ହୁଅନ୍ତି ? ତା' ସାନ ଭାଇ ଭଉଣୀ ତ ତାକୁ ଖୁବ୍ ଭଲପାଆନ୍ତି । ତା' ମା' ତ ତାକୁ କୁଣ୍ଢେଇ ଧରି ପ୍ରାୟ ପ୍ରତିଦିନ ତୁହାଏ ଲେଖା କାନ୍ଦେ । ତେବେ କ'ଣ କେଉଁଠି କିଛି ଅସୁବିଧା ରହିଯାଇଛି । ସେ ବୁଝିପାରିନାହିଁ । ଏକୁଟିଆ ବସି କାନ୍ଦିଛି । ଅନେକ ଭାବିଛି । ବାପାଙ୍କୁ ଖୁସି କରିବାକୁ ଲୁଚି ଲୁଚି ତାଙ୍କ ଜୋତା ସଫା କରିଛି । ତାଙ୍କ ଟେବୁଲ ସଜାଡ଼ି ଦେଇଛି । ବାପା ଆସିବା ଆଗରୁ ବଜାର ସଉଦା କିଣି ଆଣି ଥୋଇଦେଇଛି । ସେ ଗସ୍ତରେ ବାହାରିଲେ ତାଙ୍କ ବାକ୍ସପତ୍ର ନିଜେ ମୁଣ୍ଡେଇ ଷ୍ଟେସନଯାଏଁ ପହଞ୍ଚାଇ ଆସିଛି । କିନ୍ତୁ ଦିନେ ହେଲେ ବାପା ତା' ମୁଣ୍ଡ ଉପରେ ହାତ ରଖିଦେଇନାହାନ୍ତି; ଦିନେ ହେଲେ ତାକୁ ଚାହିଁ ହସି ଦେଇନାହାନ୍ତି । ସେ ଭୟଙ୍କର ରାଗିଯାଇଛି – ଖାଇ ନାହିଁ, କେବଳ କାନ୍ଦିଛି ।

ସହି ନ ପାରି ସେ ମାମୁ ପାଖକୁ ଚାଲିଯାଇଛି । ମାମୁ ତାକୁ ଖୁବ୍ ସାହାଯ୍ୟ କରନ୍ତି; ବୋଧହୁଏ ଭଲ ବି ପାଆନ୍ତି । କିନ୍ତୁ କେଜାଣି କାହିଁକି ତାକୁ ଲାଗେ ଯେ ମାମୁ ତାକୁ କେବଳ ଦୟା କରିଛନ୍ତି । ତା' ଦୁଃଖ ସହି ନ ପାରି ସାହାଯ୍ୟ କରିଛନ୍ତି । ଉତ୍ତମ ଖ୍ରୀଷ୍ଟିଆନ ଭାବରେ ଧର୍ମ କରିଛନ୍ତି ।

ମାମୁଘରେ ଆଈଟି ଭାରି ଭଲ । ତାକୁ ଖୁବ୍ ସାହାଯ୍ୟ କରେ । ଥଟ୍ଟା କରେ । ଖୁବ୍ ଖୁଆଏ । ରୋହିଣୀ ସେଇଠି ତା'ଗୋସେଇଁମା'କୁ ବି ଦେଖେ । ଗୋସେଇଁମା' ତାଙ୍କ ପାଖେ ନ ରହି କାହିଁକି ତା' ଭଉଣୀ ଘରେ ରହେ, ଏ କଥା ରୋହିଣୀ ବୁଝିପାରେ ନାହିଁ । ବାପା ବୋଧେ ନିଜ ମା'କୁ ବି ଭଲପାଆନ୍ତି ନାହିଁ । ଗୋସେଇଁମା'ଟି ଭଲ; କିନ୍ତୁ ଆଈ ଭଳି ନୁହେଁ । ସେ ରୋହିଣୀକୁ ପାଖରେ ବସାନ୍ତି, ଖୁଆନ୍ତି, ପିଆନ୍ତି । କିନ୍ତୁ କଥା ନକହି ବେଶୀ ସମୟ ଖାଲି ତାକୁ ଅନେଇରହନ୍ତି । ରୋହିଣୀ ହସି ଦେଇ ବୁଢ଼ୀର ଗାଲକୁ ଟିପିଦିଏ । ଭଲ ବୁଢ଼ୀଟିଏ; ତା ପୁଅଭଳି କେମିତି ଟିକିଏ ଚୁପ୍‌ଚାପ୍ । ଗମ୍ଭୀର । ହୁଏତ ବଦ୍‌ରାଗୀ ।

ସେ ଛୋଟ ଜାମା, ଚିରା ଜାମା ବର୍ଷ-ବର୍ଷ ଧରି ପିନ୍ଧିଆସିଛି; ତଥାପି ସେ ସମସ୍ତଙ୍କଠୁ ସୁନ୍ଦର ଦିଶିଛି । ସମସ୍ତଙ୍କଠୁ ଭଲ ପଢୁଛି; ତାକୁ ସ୍କୁଲରେ ସାର୍ ଭଲପାଇଛନ୍ତି । ଗିର୍ଜାରେ ଫାଦର ଖୁବ୍ ଭଲପାଇଛନ୍ତି; କୋରସ୍ ଗାଇବାକୁ ଡାକିଥାନ୍ତି ।

ହେଲେ, ରୋହିଣୀ ଯେମିତି ଲୋଚ଼ାକୋଚ଼ା ଫୁଲଟିଏ; ସବୁ ପାଖୁଡ଼ା ମେଲି ଫୁଟିପାରୁନାହିଁ । ବହୁଦିନଧରି ବାପା ମା'ଙ୍କର କଥାବାର୍ତ୍ତା ନାହିଁ । ତା'. ସାନଭଉଣୀ ଘରକଥା ସମ୍ଭାଳେ । ବାପା ତାକୁ କଟମଟ ଅନାନ୍ତି । ମା' ଦେଖିଲେ କାନ୍ଦିପକାଏ, ଏଇଟା ରୋହିଣୀର ଦେହସୁହା କଥା । ଏଇଟା ବି ତା'ର ଅସହ୍ୟ ବେଦନା ।

ସେ ଯେଉଁ ଦିନ ମାମୁଙ୍କଠାରୁ ପଇସାପତ୍ର ଡ୍ରେସ ବାକ୍ସ ଆଦି ଆଣି ଘରେ ପହଞ୍ଚିଲା, ଇଞ୍ଜିନିଅରିଂ ପଢ଼ିଯିବ କାନପୁର, ସେ ଦିନ ମା'ର ଲୁହ ଅବିରଳ ଝରୁଥିବାର ସେ ଦେଖିଛି । ତା' ପାଇଁ ତା'ର ବ୍ୟସ୍ତ ହୋଇ ଛୋଟ ଛୋଟ ଅନେକ କଥା କରିବାର ଦେଖିଛି । କେଜାଣି କେମିତି ବାପାଙ୍କର ସେଦିନ ଗସ୍ତ ପଡ଼ିଥାଏ । ମା' ଭଲ ଶାଢ଼ିଟିଏ ପିନ୍ଧିଥାଏ । ଭଲ ଦିଶୁଥାଏ । କିନ୍ତୁ ଖୁବ୍ ଦୁର୍ବଳ, ଶୀର୍ଣ୍ଣ ଆଉ ଅସମ୍ଭବ ଦୁଃଖିନୀ ଦିଶୁଥାଏ । ତା' ପାଇଁ ଗୋଟାଏ ଶିଶିରେ ଖସାଲଡୁ, ଆଉ ଶିଶିଟିରେ ଆଚ଼ାର, ପୁଣି ଗୋଟିକରେ ଘିଅ – ଯେତେ ମନାକଲେ ସୁଦ୍ଧା ସଜାଡ଼ି ରଖିଦେଉଥାଏ । –

ରୋହିଣୀ ପିନ୍ଧାପିନ୍ଧି କରି ପ୍ରସ୍ତୁତ ହେଇଗଲା । ଧଳା ଲମ୍ବା ପେଣ୍ଟ । ଚେକ୍ କନାର ହାଫ୍ ସାର୍ଟଟିଏ । ହଳେ ଶସ୍ତା ନୂଆ ଜୋତା । ସେତିକିରେ ସେ ଦିଶୁଥିଲା ଏଇମାତ୍ର ଜାହାଜରୁ ଓହ୍ଲେଇଆସିଥିବା ସାଇବଟିଏ ପରି । ଭାଇଭଉଣୀମାନଙ୍କୁ ଧରି ଖୁବ୍ ଚେଷ୍ଟା କଲା କୋହ ସମ୍ଭାଳିବାକୁ । ବେଳ ହେଇଆସୁଥାଏ । କ'ଣ ମନ ହେଲା, ବାପାଙ୍କ ଜୋତାକୁ ପଲିସ୍ ମାରି ଚକ୍‌ଚକ୍ କରି ଥୋଇଦେଲା । ମା' ତା'ହାତରୁ ଛଡ଼େଇବାକୁ, ଦେଲା ନାହିଁ । ଉଦାସ ଢଙ୍ଗରେ ମା' ମୁହଁକୁ ନ ଚାହିଁ କହିଲା – ''ବାପା ଆଜି ଦିନଟା ଗସ୍ତ ନଯାଇଥିଲେ କ'ଣ ଚଳିନଥାନ୍ତା ?''

ଟିକିଏ ରହି କହିଲା, ''ମୋ ପାଇଁ ଜୀବନସାରା କଷ୍ଟ ପାଇଚୁ ମା' ! ମୁଁ ଜାଣିପାରୁଚି ମୋ ପାଇଁ ବାପା ତତେ ଏମିତି ଦୁର୍ବ୍ୟବହାର କରନ୍ତି; ମୁଁ ହିଁ ଏ ଘରେ ଅଶାନ୍ତିର ମୂଳ କାରଣ ! ମୁଁ ଘରୁ ଗଲେ ତୁମେ ଦୁହେଁ ଏଣିକି ଭଲରେ ଚଳିବ ମା' ! ମୁଁ ହିଁ ଦୋଷୀ ।''

ତା' ଓଠ ଥରିଗଲା । ଆଖିପତା ଛକେଇଗଲା । ତା' ମା' ତାକୁ ଜାକିଧରି ତା' କାନ୍ଧ ଉପରେ ମୁହଁ ରଖି କାନ୍ଦିଲା – ''ନାଇଁ ବାପା ! ସବୁ ମିଛ, ତୁ ନିର୍ଦ୍ଦୋଷ; ନିଷ୍ପାପ । ତୋର କିଛି ଦୋଷ ନାହିଁ ।''

ତା'ପରେ ଖୁବ୍ ଓଦା ଓଦା ଭାରି ମୋଲାଏମ୍ ତନ୍ତୁଗୁଡ଼ିଏ ଛିଣ୍ଡେଇଦେଲା ଭଳି ତା'ର ବିଦାୟର ମୁହୂର୍ତ୍ତ ।

X X X X

କାନପୁରରେ ଖଣ୍ଡିଏ ଚିଠି ସେ ପାଇଥିଲା । ମା' ଦେହ ଖରାପ । ସେ ବ୍ୟସ୍ତ ହୋଇ ଟେଲିଗ୍ରାମ କରିଥିଲା । ଖୁବ୍ ଲମ୍ବା ଚିଠିଟାଏ ବି ଲେଖିଥିଲା । କୌଣସି ଉତ୍ତର ନପାଇ ଛଟପଟ ହେଇଥିଲା । ମା'କୁ ବାରମ୍ବାର ସ୍ୱପ୍ନ ଦେଖିଥିଲା । ତା'ପରେ ଦିନେ

ମାମୁଙ୍କଠାରୁ ଟେଲିଗ୍ରାମ ପାଇ ସେ ସ୍ତବ୍ଧ ହେଇଯାଇଥିଲା । ମା' ନିଶ୍ଚେ ଏମିତି ଦିନେ ମରିଯିବ ବୋଲି ସେ ସତେବା ଆଶଙ୍କା କରିଆସିଥିଲା ଚିରକାଳ । ଝିମି ଖାଇଲା ପରି ସେ ନିସ୍ତେଜ ହେଇଗଲା ।

ତା' ଆଖିରୁ ଲୁହ ଝରିପାରିଲା ନାହିଁ । ସେ ମୁହଁ ଖୋଲି କଥା କହିପାରିଲା ନାହିଁ । ଅତିକାୟ ଦୁଃଖଟିକୁ ଥୋଇବାକୁ ତା' ଭିତରେ ଥାନ ନଥିଲା ।

ଦୁଇଦିନ ପରେ ପ୍ରଥମ ପୂଜାଛୁଟି । ସମସ୍ତେ ସଜବାଜ ହେଲେ ଘରକୁ ଯିବାପାଇଁ । ରୋହିଣୀ ଖଣ୍ଡିଏ ଝୁଲାମୁଣା ଭିତରେ ମା' ବୁଣିଥିବା ସ୍ୱେଟର, ମଫଲର୍‌ଟିକୁ ଧୀରେ ଧୀରେ ସଜାଡ଼ି ରଖିଲା । ଠାଏ ଠାଏ ଓଦା ହେଇଯାଉଥିଲା ଝୁଲାମୁଣା । ସେ ବି ଘରକୁ ଫେରିବ; କିନ୍ତୁ କାହା ପାଖକୁ ଫେରିବ ?

ରୋହିଣୀ ରିକ୍‌ସାରୁ ଓହ୍ଲେଇ ଖୁବ୍ ଧୀରେ ପାହାଚ ଚଢ଼ିଥିଲା । ବାରଣ୍ଡାରେ ବାପା ଲୁଙ୍ଗି ପିନ୍ଧି ମେଲାଦେହରେ ସିଗାରେଟ୍ ଟାଣୁଥିଲେ । ସେ ସେଇଠି ଠପ୍‌କିନା ଠିଆ ହେଇ ତାଙ୍କ ମୁହଁକୁ ଅନେଇଲା । ତାକୁ ଦିଶିଲା ବାପାଙ୍କ ଆଖି ବିରାଡ଼ି ଆଖି ପରି କହରା, ଖୁବ୍ ସ୍ଥିର; ସେଥିରେ ବୋଧହୁଏ ପତା ପଡୁ ନାହିଁ । ତାଙ୍କର ଗୋଟାଳିଆ ଦେହ ଖୁବ୍ କଳା, ଗୋସେଇଁମା' ଦେହଭଳି । ତାଙ୍କୁ ଦେଖି ତା'ର କୌଣସି ବିକ୍ରିୟା ହେଲା ନାହିଁ । ସେ ତଳକୁ ଚାହିଁ ଭିତରକୁ ଗୋଡ଼ ବଢ଼େଇଲା ।

– ''ଶୁଣ !''

ରୋହିଣୀର କଲିଜା ଧପ୍‌କରି ବନ୍ଦ ହେଇଗଲା ମୁହୂର୍ତ୍ତକ ପାଇଁ । ସେ ସେମିତି ଗୋଡ଼ଟିଏ ବଢ଼େଇ କାନ୍ଧରେ ଝୁଲାମୁଣାଟି ଓହଳେଇ ସ୍ତବ୍ଧ ହେଇଗଲା ।

''ତୋର ଆଉ ଭିତରକୁ ଯିବା ପ୍ରୟୋଜନ ନାହିଁ । ତୋର ସେଠି ଆଉ କେହି ନାହାନ୍ତି ।'' ...ବଢ଼େଇଥିବା ଗୋଡ଼ଟିକୁ ରୋହିଣୀ ଫେରେଇଆଣିଲା । ଆସ୍ତେ ମୁହଁ ବୁଲେଇ ବାପକୁ ଚାହିଁଲା । ସେ ସିଗାରେଟ୍‌ଟାକୁ ଫିଙ୍ଗିଦେଇ ଅଣ୍ଟାରେ ହାତ ରଖି ରୋହିଣୀକୁ ପଛ କରି ଠିଆହୋଇଥାନ୍ତି । ରୋହିଣୀର ପାଦତଳିପା ଶିରଶିର କଲା । ମୁଣ୍ଡବାଳ କଣ୍ଟା ପରି ଠିଆହେଇଗଲା । ବାପା, କ'ଣ ଏମିତି କହୁଛନ୍ତି ? ସେ ବୋଧେ ମା' ଚାଲିଗଲାପରେ ଖୁବ୍ ବିଚଳିତ ହୋଇପଡ଼ିଛନ୍ତି । ଦୁଃଖରେ ନିଜକୁ ସମ୍ଭାଳି ପାରୁନାହାନ୍ତି । ସେ ଦୁଇପାଦ ପଛେଇ ଯାଇ ତାଙ୍କ ମୁହଁକୁ ଚାହିଁଲା ।

ସେ ସେମିତି ଶୂନ୍ୟଦୃଷ୍ଟିରେ କହିଲେ, ''ତୁ ଏ ପରିବାରର କେହି ନୁହେଁ; କେବେ ବି ନଥିଲୁ ।'' ରୋହିଣୀର ମୁଣ୍ଡ ତାତିଗଲା । ଓଠ ଶୁଖିଗଲା । କାନମୁଣ୍ଡା ଧାଉଁଧାଉଁ ପିଟିହେଲା । ସେ ପାଟି ପାକୁ ପାକୁ କରି ଆସ୍ତେ ପଚାରିଲା – ''ମାନେ ?''

''ମାନେ ଅତି ପରିଷ୍କାର । ତୋ' ମା' ମରିଗଲା ପରେ ପରେ ତୋର ଏଠି ଆଉ କେହି ନାହାନ୍ତି ।'' ରୋହିଣୀ ଆଖିରେ ପଲକ ନଥାଏ । ସମଗ୍ର ମୁହଁ ତାତି

ଲାଲ୍ ପଡ଼ିଯାଇଥାଏ । ସେ କୌଣସି ପ୍ରକାରେ ବାପ ଆଡ଼କୁ ଆଙ୍ଗୁଠି ଦେଖେଇ କହିଲା – ''ମାନେ... ତମେ... ବାପା... ଏ... ।'' ତା ବାକ୍ୟଟିକୁ ହାଣି ଦେଇ ବଜ୍ରପାତ ହେଲା ।

– ''ନା, ମୁଁ ତୋର ବାପ ନୁହେଁ । ତୋର ବାପ କିଏ, ମୁଁ ଜାଣେନା । ତୁ ବର୍ତ୍ତମାନ ଏଇଠୁ ଚାଲିଯାଇପାରୁ ।''

ରୋହିଣୀର ଗୋଡ଼ ଟଳମଳ ହୋଇ ସେ କୁଢ଼େଇ ହୋଇ ପଡ଼ିଥାନ୍ତା । ତାକୁ ହୁଏତ ଅନ୍ଧାର ଦିଶୁଥିଲା । ସେ ହୁଏତ କିଛି ଜାଣିପାରୁନଥିଲା । ଏକ ଅଜ୍ଞାତ ଭରସା ଆଶାରେ ତା' ହାତ ଦୁଇଟି ଉଠିଗଲା ବାପ ଆଡ଼କୁ !

ସେ ମୋଟାରୋଟା କାଳିଆ ପ୍ରୌଢ଼ ମଣିଷଟା ରୋହିଣୀ ବୁକୁ ଉପରେ ଲେଡ଼ା ମାରି ତାକୁ ପେଲିଦେଲା ! ରୋହିଣୀ ପାହାଚ୍ ଉପରେ ପଡ଼ିଗଲା ଓ ଗଡ଼ିଗଲା ତଳକୁ । ଗଡ଼ିଗଲା ରାସ୍ତା ଉପରକୁ । ଘରେ ତିନୋଟି ପିଲା ଚିତ୍କାର କରିଉଠିଲେ । ପିଣ୍ଡାରୁ ବାଘ ଗର୍ଜନ ଶୁଣି ଦୁନିପଡ଼ିଗଲେ । ବଡ଼ଭାଇକୁ ବାପା ଏମିତି ଅନେକ ଦିନ ମାରନ୍ତି; ଏବେ ବି ବୋଧେ ସେମିତି ମାରୁଛନ୍ତି । ବାପା ଭାରି ରାଗୀ ଲୋକ !

ରୋହିଣୀ ଟଳମଳ ଗୋଡ଼ରେ ବାହାର ପାଚେରି ଉପରେ ଆଉଜି ରହି ଧକେଇଲା । ତା'ପରେ କ'ଣ ଗୋଟାଏ ଆବେଗରେ ତଳ ରାସ୍ତାରେ କାନ୍ଦି କାନ୍ଦି ଚାଲିଗଲା ।

ବାଁ ମୋଡ଼ରେ ଗିର୍ଜା । ଗିର୍ଜା ପଛକୁ ନିଛାଟିଆ କବରଖାନା । ରୋହିଣୀ ଦିନବେଳେ ସୁଦ୍ଧା ସେଠିକି ପଶିବାକୁ ଭୟ କରୁଥିଲା । କିନ୍ତୁ ନିଛାଟିଆ ଅନ୍ଧାର ଭିତରେ ସେ ଧାଇଁ ଧାଇଁ କ'ଣଟାଏ ଖୋଜୁଥିଲା । ଦୂର ରାସ୍ତା-ଆଲୁଅ ପଡୁଥିବା ସେ ନୂଆ କବରଟି । ଛୋଟ ନାଁ'ଟିଏ ସୁସାନ୍ ବନଫୁଲ । ସେଇଠି ଆଣ୍ଠୁମାଡ଼ି ସେ ଢେର୍ ସମୟ କାନ୍ଦିଲା । ମା'ର କବର ଉପରେ ଅଜ୍ଞାତ ବାପର ପରିଚୟ ପାଇଁ ବ୍ୟାକୁଳ ହେଉଥିଲା; ମଣିଷଛୁଆ ଭାଙ୍ଗିପଡୁଥିଲା ଅବ୍ୟକ୍ତ ଯନ୍ତ୍ରଣାରେ, ଅଭିମାନରେ, କ୍ରୋଧ ହତାଶାରେ !

ତା' ଭିତରର ଅନେକ ବିସ୍ଫୋରଣ ସଂଧାରେ ଶୁଣିବାକୁ ପାଉଥିଲା – 'ନା, ନା, ସେସବୁ ମିଛ । ତୁ ନିର୍ଦ୍ଦୋଷ ! ତୁ ନିଷ୍ପାପ !' ରୋହିଣୀ ତାକୁ ଦୋହରେଇ ଲାଗିଥାଏ – ନା, ତୁ ନିର୍ଦ୍ଦୋଷ, ତୁ ନିଷ୍ପାପ । ସେ ସଚେତନ ହୋଇ ଅନୁଭବ କଲା ଯେ ତା' ମା'କୁ ହିଁ ସେ ନିଜେ କହୁଛି । 'ନା, ନା, ସେ ସବୁ ମିଛ । ତୁ ନିର୍ଦ୍ଦୋଷ । ତୁ ନିଷ୍ପାପ, ତୁ ପବିତ୍ର ।'

ତୋ ମା'କୁ ନିଷ୍ପାପ ବୋଲି ପ୍ରମାଣ କରିପାରିବୁ ରୋହିଣୀ ? ଯେତେ ଦେଖିଲେଇ ତ, ଯେ କେହି କହିବ ଯେ, ତୁ ଆଇଜାକ୍ ବନଫୁଲର ସନ୍ତାନ ନୋହୁ । ତୋ ମା'କୁ ଜୀବନସାରା ବେଜ୍ଜିତ୍ ସହିବାକୁ ପଡୁଥିଲା । ଗାଳିମାଡ଼ ଖାଇ ଖାଇ ଶେଷକୁ ସେ ମରିଗଲା । କଳଙ୍କ ଲିଭିଲା ନାହିଁ । ତୁ'ହି ନା ତୋ ମା'ର କଳଙ୍କ !!...

ରୋହିଣୀ ଗିର୍ଜାରୁ ବାହାରି ପୁରୁଣା ଅଭ୍ୟାସରେ ଘରମୁହାଁ ଚାଲିଯାଉଥିଲା । ଅନ୍ଧାରରେ ହାତ ଧରାଧରି ହୋଇ କଳାକଳା ଫୁଙ୍କୁଳା ଲୁଙ୍ଗିପିନ୍ଧା ମଣିଷମାନେ ତା ବାଟରୋଧି ଠିଆହୋଇଗଲେ । ସେ ଆଖିରେ ମଟିକା ନ ପକାଇ ଶୂନ୍ୟ ଗଡ଼ାଣି ରାସ୍ତାଟିକୁ ଚାହିଁଲା । ରାସ୍ତାଠାରୁ ଆହୁରି ଲମ୍ବା ଦୀର୍ଘ ଶ୍ୱାସଟିଏ ବାହାରିଗଲା ତା' ବୁକୁ ଭିତରୁ ।

ସେ ମୁହଁ ଫେରେଇ ସହର ଆଡ଼େ ପାଦ ବଢ଼େଇଦେଲା । ଏମିତି କୌଣସି ଲକ୍ଷ୍ୟ ନଥାଇ ଉଦ୍ଦେଶ୍ୟ ନଥାଇ, ସେ ଚାଲିଥାଏ । ମଝିରେ ଠିଆହେଇ କ'ଣ ଗୁଡ଼ାଏ ଭାବିଯାଉଥାଏ । ପୁଣି ନିଦରୁ ଉଠିଲା ପରି ଡଗଡଗ ହୋଇ ଚାଲିଯାଉଥାଏ – ତା'ହେଲେ ନିଜର ବୋଲି କହିବାକୁ କେହି ନାହିଁ ? ତା'ର ମା' ମରିଯାଇଛି । ବାପ ହୁଏତ କେହି ଜଣେ ଅଜ୍ଞାତ ସାହେବ । ତା ନାଁ କେବଳ ରୋହିଣୀ – ଏଣିକି ସେ ରୋହିଣୀ ବନଫୁଲ ବି ନୁହେଁ ।...

ରାତି ପ୍ରାୟ ନଅଟା ପାଖାପାଖି । ତା' ପୁରୁଣା ହଷ୍ଟେଲ ପାଖ ଦେଇ ପାରିହେଉଥାଏ । ସାମ୍ନାରୁ କେହି ଜଣେ ଆସି ତାକୁ କୁଣ୍ଢେଇପକେଇଲା – ''ଆରେ ରୋହିଣୀ, ତୁ କେବେ କାନପୁରରୁ ଆସିଲୁ ?''

ସୁଶୀଳ ମିଶ୍ର । ଏକାସାଙ୍ଗରେ ପାଠ ପଢ଼ିଛନ୍ତି । ଫୁଟବଲ ଖେଳିଛନ୍ତି, ରୋହିଣୀର ଘନିଷ୍ଠ ସାଙ୍ଗ ।

''ତୁ କଣ କୁଆଡ଼େ ଯିବାକୁ ଝୁଲା ଧରି ବାହାରିଛୁ ? ଗୋପାଳପୁର ? ଏଇନା ତ କୌଣସି ବସ୍ ଆଉ ପାଇବୁ ନାହିଁ ।''

''...ନା, ମୋର କୁଆଡ଼େ ଯିବାର ନାହିଁ... ମାନେ, ଏମିତି ଏଇ ଆଡ଼େ ଟିକେ...''

ତା ସ୍ୱର ଅସ୍ୱାଭାବିକ ଉଦାସ । ରାସ୍ତା-ଆଲୁଅରେ ତା ଚେହେରା ବି ଦିଶୁଥାଏ ଖୁବ୍ କ୍ଲାନ୍ତ ! ସୁଶୀଳ ତା ହାତଧରି ଟାଣିନେଲା ରୁମ ଭିତରକୁ । ରୋହିଣୀ ପ୍ରତିବାଦ କଲା ନାହିଁ ।

ସୁଶୀଳ ଜାଣେ, ରୋହିଣୀର ମା' ମରିଯାଇଛନ୍ତି । ସେ ଜାଣେ, ତା ବାପା ତାକୁ ଭଲପାଆନ୍ତି ନାହିଁ । ତାଙ୍କ ଘରେ ତାକୁ ନେଇ ସବୁଦିନ ଝଗଡ଼ା ହୁଏ । ରୋହିଣୀ ଅନେକ ଦିନ ଭୋକରେ ଚାଲିଆସେ କଲେଜକୁ । ତା ଗୋରା ମୁହଁ ନାଲିନେଳି ହୋଇଯାଉଥିଲା ଅଳ୍ପ କଥାରେ । ସେ ଅସମ୍ଭବ ଭଦ୍ର, ପଚାରିଲେ କାହାକୁ କିଛି କହେ ନାହିଁ; ଅଳ୍ପ ହସିଦିଏ । ଏ ସେହି ରୋହିଣୀ । କ'ଣ ହେଇଚି ତା'ର ?

ସୁଶୀଳ ପ୍ରଥମେ ତା' ପାଇଁ ଖାଇବା ମଗେଇନେଲା ମେସ୍‌ରୁ । ପାଲଟିବା ପାଇଁ ଲୁଗା ଦେଲା । ମୁହଁ କାନ ଧୋଇ ରୋହିଣୀ କିଛି ସମୟ ଆଖିବୁଜି ବସିରହିଲା କାଠ ଚୌକିଟି ଉପରେ ।

ଗଡ଼ାଣି ପାଇ ବ୍ୟଥାର ବନ୍ୟା ମାଡ଼ିଗଲା କିଛିକାଳ। ସୁଶୀଳ ଅନେକ ଚେଷ୍ଟାକରି ତାକୁ ସମ୍ଭାଳି ବସିଥାଏ । ରୋହିଣୀ ହଠାତ୍ ମଝିରେ କାଠେଇଗଲା । "ଏ ପୃଥିବୀରେ ମୋର ଆଉ କିଛି କରିବାର ନାହିଁ ସୁଶୀଳ ! ମୁଁ..."

ସୁଶୀଳ ଖୁବ୍ ଟେଢା ଗଳାରେ ଶୂନ୍ୟକୁ ଚାହିଁ କହିଲା, "ନନସେନ୍‌ସ, ତୋର ହଜାରେ କଥା କରିବାକୁ ଅଛି । ପ୍ରଥମେ ତ ଆଇଜାକ୍ ବନଫୁଲକୁ ଜବାବ ଦବାକୁ ଅଛି । ଦେଖ୍ ରୋହିଣୀ, ମୁଁ ଯା ଭିତରେ ସବୁ ଶୁଣିଲାବେଳେ ସ୍ଥିର କରିସାରିଛି । ଏମିତି ହାର ମାନିବାର କୌଣସି ଅର୍ଥ ନାହିଁ । କିଏ କ'ଣ ତତେ କହିଦେଲା ବୋଲି ତୁ ମାନିଯିବୁ ନା କଣ ? ତୋତେ ଲଢ଼ିବାକୁ ହେବ । ମୋ ମାମୁ ପୁରୁଣା ନାମଜାଦା ଓକିଲ । ମୁଁ ବି ହେବି ଓକିଲ । ସକାଳେ ତାଙ୍କୁ ଦେଖାକରିବା । ସେ ନିଶ୍ଚୟ ଗୋଟାଏ କ'ଣ ବାଟ ବାହାର କରିବେ ।"

ସୁଶୀଳ ବାଙ୍ଗୁରା ଟୋକା । ଭାରି ଟେଢା । ନାଟ-ତାମସା କରେ । ଭଲ ବି ପଢ଼େ । ସେ ଟାଣି ହେଇ କହୁଥାଏ – "ଆଜ ରଖିବି ଗୋପପୁର । କିସ କରିବ ଇନ୍ଦ୍ର ଛାର !" – ଦେଖାଯାଏଗା ! ହୁଁ, କ'ଣ ନା ରୋହିଣୀ ହେଲା ବାଷ୍ଟାର୍ଡ଼ ! – ନାଇଁ, ତୁ ଶୋଇଯା ରୋହିଣୀ, କାଲି ସକାଳେ ଯାର ମୁକାବିଲା ହବ ।" ରାତିସାରା କେହି ଶୋଇପାରିଲେ ନାହିଁ ।

ରାତିସାରା ଆଇଜାକ୍ ବନଫୁଲ କିମ୍ବା ତା'ଭଳି ଦିଶୁଥିବା ଅସଂଖ୍ୟ ପ୍ରେତମାନଙ୍କୁ ବିଭିନ୍ନ ଢଙ୍ଗରେ ହତ୍ୟା କରାହେଲା । ବହୁ ପ୍ରକାର ସଭା-ସମିତି ଖବରକାଗଜରେ ତା'ର ବେଜ୍ଜିତ୍ କରାଗଲା । କୌଣସି ବଜାର ଛକ ଉପରେ ତାକୁ ଉଲଗ୍ନ କରି ବେତ୍ରାଘାତ କରାଗଲା; କ୍ଷମା ମାଗିଲେ ଦିଆଗଲା ନାହିଁ, ପାଣି ମାଗିଲେ ଦିଆଗଲା ନାହିଁ। ସୁସାନ ବନଫୁଲର ହତ୍ୟାପରାଧରେ ସେ ବାରମ୍ବାର ଫାଶୀକାଠରେ ଝୁଲିରହିଲା । କୌଣସି ଜଣେ ହେଲେ ଓକିଲ ତା' ସପକ୍ଷରେ ପାଟି ଫିଟାଇଲା ନାହିଁ । ସୁଶୀଳ ଜଗିରହିଲା ପ୍ରହରୀ ପରି ।...

ସୁସାନ ବନଫୁଲ ବାରମ୍ବାର ଜିଇଁଉଠିଲା । ରୋହିଣୀ ପାଇଁ ଲୁଚେଇ ରଖିଥିବା କେକ୍ ହାତରେ ଭାଙ୍ଗି ଖୁଆଇଦେଲା । ବିହ୍ୱଳ ହେଲାପରି ଚାହିଁରହିଲା ରୋହିଣୀର ଆଖି, ମୁହଁ, ଦେହକୁ । ସବୁଥର ଶେଷକୁ ସେଇମାତ୍ର ପଦେ କଥା ଦୋହରାଉଥିଲା – "ନା ନା, ସେ ସବୁ ମିଛ, ତୁ ନିର୍ଦ୍ଦୋଷ । ତୁ ନିଷ୍ପାପ !"... ଯଦି ସେ ନିଷ୍ପାପ, ତେବେ ରୋହିଣୀ କେମିତି ସାଇବପିଲା ପରି ହେଲା ? ତୁ ନିଜେ ଗୋଟାଏ ସାହେବ ସାଙ୍ଗେ ଗୋପନରେ ନ ମିଶିଥିଲେ କେମିତି ଏ ପୁଅକୁ ପାଇଲୁ ? – ଏ କ'ଣ ଆଇଜାକ୍‌ର ପୁଅ ? ଆଇଜାକ୍‌ର ସତେଇଶ ପୁରୁଷ, ତୋ'ର ସତେଇଶ ପୁରୁଷ ସମସ୍ତେ କଳା । ଏ କେମିତି ବିଲାଆଖିଆ, କହରାମୁଣ୍ଡିଆ, ଧୋବ ଫରଫର ସାଇବ ହେଲା, କହ ! କହ ! କହ !! ତଥାପି ଅତି କ୍ଷୀଣ ସ୍ୱରଟିଏ ଶୁଭୁଥାଏ "ନା – ସେ ନିଷ୍ପାପ ! ସେ ନିର୍ଦ୍ଦୋଷ !"... ରୋହିଣୀ ରାତିସାରା କଣ୍ଟା ଉପରେ ଗଡୁଥାଏ ।

ସୁଶୀଳ ପହରାବାଲା ପରି ବାରମ୍ବାର ଚମକି ଚାହୁଁଥାଏ – ରୋହିଣୀ ଉଠି କୁଆଡ଼େ ଚାଲିଗଲା କି ? ରେଳତଳେ ଶୋଇଗଲା କି ? ପଙ୍ଖାରୁ ଝୁଲିଗଲା କି ?... ସେ ଛାଇନିଦରୁ ଚେଇଁଉଠି ମଟମଟ ଅନେଇଲା ନିଜ ହାତଗୋଡ଼କୁ । ତା' ଚମଡ଼ା ତା'ହେଲେ ଧଳା ହୋଇନାହିଁ । ତାକୁ କେହି ବାଷ୍ଟାର୍ଡ କହିନାହିଁ । ସେଇଟା ତା'ହେଲେ ସ୍ୱପ୍ନ !!

ସକାଳ ପାହିଲା ବେଳକୁ ଯୁଦ୍ଧ ଘୋଷଣା ହୋଇସାରିଥିଲା ।

ରୋହିଣୀ ସାମାନ୍ୟ ଇତସ୍ତତଃ କଲା । ନିଜ ଆଚରଣରେ ନିଜେ ବିସ୍ମିତ ହେଲା । କିନ୍ତୁ ସୁଶୀଳ ତା ଆଖିକୁ ଚାହିଁ ଯେତେବେଳେ ତାହାରି କଥା ଉଦ୍ଧାର କରି କହିଲା, ''ସେ ନିର୍ଦ୍ଦୋଷ, ସେ ନିଷ୍ପାପ;'' ସବୁ ସ୍ଥିର ହୋଇଗଲା ।

ମାମୁଙ୍କ ପାଖରେ ସୁଶୀଳ ଗୋଟାଏ ଆବେଗରେ ସମସ୍ତ ଘଟଣା ଗାଇଗଲା । ହରିଦାସ ମହାପାତ୍ର ନିଶ୍ଚଳ ହୋଇ ଶୁଣୁଥାନ୍ତି । ରୋହିଣୀ ନିଶ୍ଚଳ ବସିଥାଏ । ଶୁଣିସାରି ସେ ଅନେକ ସମୟ ରୋହିଣୀକୁ ପାଦଠାରୁ ମୁଣ୍ଡଯାଏଁ ଚାହିଁଗଲେ । ରୋହିଣୀ ଲାଲ ପଡ଼ିଗଲା ପାଦଠାରୁ ମୁଣ୍ଡଯାଏଁ । ପଚାରିଲେ –

– ''ତୁମର ବୟସ କେତେ ?''

– ''କୋଡ଼ିଏ ।''

– ''ତୁମ ବାପାଙ୍କର ତୁମେ ବଡ଼ପୁଅ ?''

ନାଲି ନାଲି ରଡ଼ନିଆଁ ରୋହିଣୀର ମୁହଁଯାକ ବୁଣିହୋଇଗଲା ।

– ''ଆଚ୍ଛା ତୁମ ବାପାଙ୍କର ବୟସ କେତେ ?''

ଓକିଲ ତାକୁ ଥଟ୍ଟା କରୁନାହାନ୍ତି ତ ! ଅଣବାପୁଆକୁ ବାପର ବୟସ ପଚାରିବାଠାରୁ ବଳି ଆଉ କ'ଣ ଅପମାନ ଥାଇପାରେ ? ନା ତ ! ସେ ଖୁବ୍ ସାଧାରଣ ଭାବରେ ପଚାରୁଛନ୍ତି । ସେ ରୋହିଣୀ ବନଫୁଲକୁ ପଚାରୁଛନ୍ତି ପିତା ଆଇଜାକ୍ ବନଫୁଲଙ୍କ ବୟସ କେତେ ?...

– ''ବୟାଳିଶ ।''

– ''ତା ହେଲେ ତାଙ୍କର ଉଣେଇଶ ଶହ ବୟାଳିଶରେ ଜନ୍ମ ?''

– ''ହଁ ।''

– ''ତୁମ ନିଜ ଘର କ'ଣ ଏଇଠି ?''

– ''ହଁ ।''

ସୁଶୀଳ ମଝିରେ ପଡ଼ି କହିପକେଇଲା, ''ତୁ କହୁଥିଲୁ ପରା ତୁମ ମୂଳ ଘର ଗୋପାଳପୁର ବୋଲି ।''

– ''ହଁ, ସେଇଠି ବାପା ଜନ୍ମ ହେଇଥିଲେ ।''

– ''ଆଇ ସି ! ତା'ହେଲେ ତୁମ ଗୋସେଇଁବାପ ମା' ସେଇଠି ଥିବେ ।''

– ''ନା, ମୋର କେବଳ ଗୋସେଇଁ ମା' ଅଛନ୍ତି । ସେ ତାଙ୍କ ଭଉଣୀଙ୍କ ପାଖେ ଥାନ୍ତି ।''

– "କାହିଁକି ?"

– "ବାପାଙ୍କ ସାଙ୍ଗରେ ତାଙ୍କର ଝଗଡ଼ା ହୁଏ । ସେ ଅନେକ ଦିନରୁ ସେଇଠି ଅଛନ୍ତି । ତା ବାହାରେ ତାଙ୍କ ଭଉଣୀ ହେଉଛନ୍ତି ମୋ ମା'ଙ୍କ ମା' ।"

– "ଆଚ୍ଛା ଆଚ୍ଛା, ଭାରି ଇଣ୍ଟେରେଷ୍ଟିଂ । ଆମେ ଚାଲ ଯା ଭିତରେ ଥରେ ଗୋପାଳପୁର ଯିବା । ତମ ଆଈମାନଙ୍କ ସାଙ୍ଗେ ଟିକିଏ ଆଳାପ-ପରିଚୟ ହବ । ସେମାନଙ୍କଠୁ ପୁରୁଣାକାଳ କଥା ଶୁଣିବାକୁ ମୋତେ ଭାରି ଭଲ ଲାଗେ । ଆଚ୍ଛା, ମୁଁ ତୁମ କେଶ୍‌ଟାକୁ ହାତକୁ ନେଲି । ମୋର ମନେହୁଏ, ଏଇଟା ଖୁବ୍ ଗୋଟାଏ ନାମଜାଦା କେଶ୍ ହେବ । ଭେରି ଇଣ୍ଟେରେଷ୍ଟିଂ ।... ତୁମେ ଏଇନା କୋଉଠି ରହୁଛ ?"

ସୁଶୀଳ ତା' ପାଇଁ ଉତ୍ତର ଦେଲା – "ସେ ମୋ ପାଖରେ ଛୁଟି କଟାଇବ ବୋଲି ସ୍ଥିର ହେଇଚି । ମୁଁ ପୂଜାରେ ଘରକୁ ଯିବିନାହିଁ । ମୋର ବି ପଢ଼ାପଢ଼ି ଅଛି ।"

– "ଆଚ୍ଛା, ଆଜି ରାତିରେ ତୁମେ ଦୁହେଁ ଆମ ଘରେ ଖାଇବ । ଏଇନା ଯାଅ ।"

ସେମାନେ ବଜାର ଆଡ଼େ ଚାଲିଗଲେ । ଅନେକ ପୁରୁଣା ପରିଚୟର ପ୍ରସ୍ତ ପ୍ରସ୍ତ ପ୍ରଲେପ ରୋହିଣୀକୁ ଖୁବ୍ ଶୀତଳ ବୋଧ ହେଲା । ସେ ଚାହିଁଲା ରାସ୍ତାର ଗୋଡ଼ିଟାକୁ ପୁରୁଣା ଅଭ୍ୟାସରେ ଜୋତା ଅଗରେ ଖୁରେଇବାକୁ । ଚାହିଁଲା, ସୁଶୀଳ କାନ୍ଧରେ ହାତ ପକେଇ ଗପିବାକୁ, ହସିବାକୁ । ଡାହାଣ ପାଖ ଚା' କଫି ଦୋକାନ ଖୁବ୍ ଚିହ୍ନା । ସେଇଠି ଫେଣ-ଗଜ୍‌ଗଜ୍ କଫି ଖାଇବାକୁ ସୁଶୀଳ ରୋହିଣୀକୁ ହାତ ଧରି ସେଠିକି ନେଇଗଲା । ବେଞ୍ଚରେ ବସି ସୁଶୀଳ ରୋହିଣୀର ହାତ ଚିପିଦେଇ ପଚାରିଲା "କାଡ଼୍‌ବରୀ ଚକଲେଟ୍ ଖାଇବୁ ?" ରୋହିଣୀର ଆଖିରେ ମୁହଁରେ ଅଜସ୍ର ଫୁଲ ଫୁଟିଗଲା । ସେ କାଡ଼୍‌ବରୀ ଖୁବ୍ ଭଲପାଏ । ସେ ସୁଶୀଳକୁ ଚାହିଁ ଆଖି ଛଳଛଳ କରିପକେଇଲା । ତା'ର ମନେ ହେଲା, ତା ମା' ସେଇଠି ଅଦୃଶ୍ୟ ଠିଆରହିଛି । ସେ ହିଁ ତାକୁ ଚକଲେଟ୍ ଦେବାକୁ ଚାହୁଁଛି ।...

ଦିନସାରା ଏମିତି ରୋହିଣୀର ମନେହେଲା ଯେ, ସୁଶୀଳ ତା'ର ସବୁ । ସେ ତା'ର ବନ୍ଧୁ, ଭାଇ, ବାପ, ମା' । ସେ ତା'ର ଈଶ୍ୱର । ଈଶ୍ୱର କୁଆଡ଼େ ଏମିତି ଆସନ୍ତି ବୋଲି ମା' ତାକୁ ଅନେକ ଥର କହିଛି । ଯେତେବେଳେ କେହି ପାଖରେ ନ ଥିବେ, ମେଘ ଘୋଟିରହିଥିବ ଦଶଦିଗ, ସେ ଆସି ଅସହାୟ ମୁହୂର୍ତ୍ତରେ ଏମିତି ତୋଳିନିଅନ୍ତି ।

ରୋହିଣୀ ଖୁବ୍ ଅନ୍ୟମନସ୍କ ଭାବେ କଫି ପିଉଥିଲା । ତା' ଆଖିରୁ ଦୃଷ୍ଟି ଅପସରିଯାଇଥିଲା । ସେ ବୁଡ଼ିଯାଇଥିଲା ଆଉ ଏକ ଗହୀର ରାଜ୍ୟରେ – ତାକୁ ଭୟଙ୍କର ଜର ହେଉଥାଏ । ରାତିରେ ଆଖି ଫିଟେଇଲା ବେଳକୁ କାନ୍ଥରେ ଟଙ୍ଗା ହୋଇଥାଏ ଗୋଟିଏ ମାଟିତେଲର ବତି । ମା' ତା ପାଖରେ ବସି କପାଳରେ ହାତ

ରଖିଥାଏ । ତଳକୁ ମୁହଁ କରି ପ୍ରାର୍ଥନା କରୁଥାଏ – "ହେ ଈଶ୍ୱର । ତୁମେ ଅସହାୟର ସହାୟ । ତୁମେ ବିପଦର ବନ୍ଧୁ । ଯାହାର କେହି ନାହିଁ, ତୁମେ ତା'ର ସବୁ । ତୁମେ ତାକୁ ଟେକି ଧର । ତୁମେ ତାକୁ ସବୁ ବିପଦରୁ ରକ୍ଷାକର ।"...

ରୋହିଣୀ ଚମକିଲା ପରି ଆଖିମିଟିକା ପକେଇଲା । କଫି ପିଇଲା । ଚାହିଁଲା ସୁଶୀଳକୁ । ତା'ର ମନେହେଲା ସୁଶୀଳ ବୋଧେ ତା' ପାଇଁ ସେଇଭଳି କ'ଣ ପ୍ରାର୍ଥନା କରୁଥିଲା । ତା'ର ଇଚ୍ଛା ହେଲା, ସୁଶୀଳକୁ ସାଙ୍ଗରେ ନେଇ ସେ ଗିର୍ଜା ଯିବ । କିନ୍ତୁ ...ଅସମ୍ଭବ । ସୁଶୀଳ ମିଶ୍ର କ'ଣ ଗିର୍ଜା ଯାଇପାରିବ ? ହେ ଈଶ୍ୱର, ତୁମେ ପରା ସମସ୍ତଙ୍କର ଏକମାତ୍ର ପିତା; ତେବେ ଏମିତି କାହିଁକି ହୁଏ ?

ସୁଶୀଳ ପଇସା ଦେଇ ବାହାରକୁ ଚାଲିଆସିଥାଏ । ରୋହିଣୀ ଚାହୁଁଥାଏ ତାକୁ ଧରି କାନ୍ଦିବାକୁ । ସେ ହିଁ ତ ରୋହିଣୀର ଈଶ୍ୱର । ସେ ତାକୁ ସବୁ ସ୍ନେହ ଦେଇ ଟେକିଧରିଛନ୍ତି । ସୁଶୀଳ ରୋହିଣୀ କାନ୍ଧରେ ହାତ ରଖି କହିଲା, "ଦେଖ୍ ରୋହିଣୀ, ମୁଁ ତୋ ପାଇଁ ସବୁ କରିପାରେ । ତତେ ମୁଁ ଏତେ ଭଲପାଏ ବୋଲି ମୁଁ ଜାଣି ନ ଥିଲି । ତୁ କ'ଣ ମୋ ପୂର୍ବଜନ୍ମର ଭାଇ ? ତୋ ବେଇଜ୍ଜତି ମୁଁ ଆଦୌ ସହିପାରୁନାହିଁ ।" ରୋହିଣୀ ଖୁବ୍ କଷ୍ଟରେ ଲୁହ ସମ୍ଭାଳି ନେଲା ।

ହରିଦାସ ମହାପାତ୍ର ବେଶ୍ ନାମଜାଦା ଓକିଲ । ତାଙ୍କ କୋଠା ସାମ୍ନାରେ ସବୁଦିନ ସଂଧ୍ୟାରେ ପ୍ରାୟ ଲୋକଭିଡ଼ ହୁଏ । କିନ୍ତୁ ସେ ତାଙ୍କ ଚେମ୍ବରରେ ଜଣ ଜଣ କରି ଦେଖାକରନ୍ତି । ସମସ୍ତଙ୍କର ନିଜ ନିଜର କଥା ସ୍ୱତନ୍ତ୍ର ଭାବରେ ଶୁଣିବାକୁ ସେ ପସନ୍ଦ କରନ୍ତି । ଏ ଦୁହିଁଙ୍କୁ ଦେଖି ସେ ତାଙ୍କ ବୈଠକଘରକୁ ନେଇଗଲେ । ସେଇଠି ବସିବାକୁ କହି ଅନ୍ୟମାନଙ୍କୁ ବିଦାୟ କରିବାକୁ ଚାଲିଗଲେ କିଛି ସମୟ ପାଇଁ । ବୈଠକଘରେ କେହି ବୋଧେ ବହିପତ୍ର ଖେଳେଇ ପାଠ ପଢୁଥିଲା । କୌତୂହଳ ହେବାରୁ ସୁଶୀଳ ବହିଟିଏ ଉଠେଇ ଦେଖିଲା । ସେଥିରେ ଗିନି ପିଗ୍‌ମାନଙ୍କର ଚମତ୍କାର ରଙ୍ଗିନ ଚିତ୍ରସବୁ ଥାଏ । ଆର ବହି ମଧ୍ୟ ସେଇଆ । ଦୁଇ-ତିନି ଖଣ୍ଡ ମେଗାଜିନ୍‌ରେ ମଧ୍ୟ ସେଇ ବିଷୟ ଉପରେ କ'ଣ ସବୁ ଆଲୋଚନା ବାହାରିଥାଏ । ସେ ରୋହିଣୀକୁ ଚାହିଁ କହିଲା – "ଆମ ମାମୁ ବଡ଼ ବିଚିତ୍ର ମଣିଷ । ଏଇନେ ବୋଧେ ଗିନି ପିଗ୍ ତାଙ୍କ ମୁଣ୍ଡକୁ ଘାରିଛି । ସେଥିରୁ କିଛି ବୋଧେ ପାଇବାକୁ ତାଙ୍କ ଇଚ୍ଛା ହେଲାଣି । ସେଥିପାଇଁ ଏ ଗବେଷଣା ଚାଲିଛି ।

ଯା ଭିତରେ ହରିଦାସବାବୁ ଆସି ତାଙ୍କ ପାଖରେ ବସିଗଲେ । ବହିଗୁଡ଼ିକ ଖେଳାହୋଇଥିବା ଦେଖି ଅଳ୍ପ ହସି କହିଲେ – "ଏ ଗିନି ପିଗ୍ ଗୋଟିଏ ଭାରି ଇଣ୍ଟେରେଷ୍ଟିଂ ଜନ୍ତୁ । ଚାଲ ଖାଇବା ପାଖରେ କଥା ହେବା । ମୁଁ କେତେଗୁଡ଼ିଏ ଚମତ୍କାର ତଥ୍ୟ ପାଇଛି; ତମକୁ କହିବି ।"

ଟେବୁଲ ଉପରେ ମହମହ ବାସୁଥିବା କୁକୁଡ଼ା ତର୍କାରି । ଖାସ୍ତା ପରଟା । କୋବି କୋଫ୍ତା । ରୋହିଣୀକୁ ଖୁବ୍ ଚିହ୍ନା-ଚିହ୍ନା ମନେହେଲା ସେ ବାସ୍ନା, ସେ ପରିବେଶ ।

ସେ ଲାଜ କରିପାରେ ଭାବି ହରିଦାସବାବୁ ତା ପ୍ଲେଟ୍ ଉପରେ ଦୁଇଟି ମୋଟା ମୋଟା କୁକୁଡ଼ା ଫଡ଼ିଆ ଥୋଇଦେଲେ । ରୋହିଣୀ ଅଭିଭୂତ ହୋଇ ଚାହିଁ-ରହିଲା । କୁକୁଡ଼ା ରନ୍ଧା ହେଲେ ତା' ମା' ତା' ପାଇଁ ଅବଶ୍ୟ ଦୁଇଟିଯାକ ଗୋଡ଼ ରଖିଦେଇଥାଏ, ଜାଣିଲାବେଳେ ତା ମୁହଁକୁ ଚାହିଁ ହସିପକାଏ । ବୁଝିଯାଏ ରୋହିଣୀ ଗୋଡ଼ ଚୋବେଇବାକୁ କେତେ ଭଲପାଏ ।

— "ବୁଝିଲୁ ସୁଶୀଳ, ମୁଁ କହୁଥିଲି ଏଇ ଗିନି ପିଗ୍‌ମାନଙ୍କର କଥା । ଜେନେଟିକ୍‌ସ କଥା । ଧର, ଧଳା ସାଙ୍ଗରେ କଳାଟିଏ ମିଶିଲା । ଆମେ କହିବା, ପିଲାଟା ହବ କସରା କିମ୍ବା ଛଉଛଉଆ; କିନ୍ତୁ ତା ନହୋଇ ସେଇଟା ସଂପୂର୍ଣ୍ଣ କଳା ହୋଇପାରେ । କିନ୍ତୁ ସେଇଟା ଯଦି ଆଉ ଗୋଟେ ଶୁଦ୍ଧ କଳା ସାଙ୍ଗେ ମିଶିଲା, ତେବେ ବିଚିତ୍ର ଭାବେ ତାଙ୍କ ଛୁଆଟା ଧଳା ବାହାରିଯିବ । ଗୋଟାଏ ପୁରୁଷଧରି ସେ ଧଳା ଚେହେରାଟା ସଂପୂର୍ଣ୍ଣ ଲୁଚିରହିଯାଇପାରେ ।

ସୁଶୀଳ ଜମା ମନେଦେଇ ଶୁଣୁ ନଥାଏ; ଖାଲି ହୁଁ-ହାଁ ମାରୁଥାଏ । ଏତେ ବଢ଼ିଆ ଖାଇବା ଛାଡ଼ିଦେଇ ସେଥିରୁ ଗୁଡ଼ାଏ ଗବେଷଣା କଥା କିଏ କାହିଁକି ଶୁଣନ୍ତା ?

ରୋହିଣୀ କିନ୍ତୁ ମଝିରେ ଖାଇବା ବନ୍ଦ କରି ଚାହିଁଥାଏ; ମନଦେଇ ଶୁଣୁଥାଏ । ତା ଭ୍ରୂରୁ କୁଞ୍ଚେଇଯାଇଥାଏ । ସେ ପଚାରିଲା, "ଆଚ୍ଛା, ଅଙ୍କଲ୍ ! ଗିନି ପିଗ୍‌ରେ ଯାହା ସମ୍ଭବ, ସେଇଟା କ'ଣ ମଣିଷରେ ସମ୍ଭବ ନୁହେଁ ?"

— "ଏକ୍‌ଜେକ୍‌ଟ୍‌ଲି ! ମୁଁ ତ ସେଇ ଉଦ୍ଦେଶ୍ୟରେ ଏଇ କଥାଟାକୁ କହୁଛି ନା !" ଏତକ କହି ସେ ଟେବୁଲ ଉପରେ ଡାଇକିନା ଗୋଟାଏ ଚାପୁଡ଼ା ଥୋଇଦେଲେ । ସୁଶୀଳ ଚମକିପଡ଼ି ଉଭୟଙ୍କୁ ଚାହିଁଲା । ବୁଝିବାକୁ ଚେଷ୍ଟାକଲା କଥାଟାର ତାତ୍ପର୍ଯ୍ୟ ।

ମାମୁ କହିଚାଲିଥାନ୍ତି — "ଦେଖ୍ ସୁଶୀଳ, ତୁମେ ସବୁ ଏବକା ପିଲା । ଆମେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ବେଶ୍ ବଡ଼ ହେଇସାରିଥିଲୁ । ସେ ସମୟର କଥା ସ୍ପଷ୍ଟ ମନେ ଅଛି । ତୁମେ କେହି ଜାଣନାହିଁ ଯେ ସେଇ ଚାଳିଶ ଏକଚାଳିଶ ମସିହା ବେଳକୁ ଏ ଅଞ୍ଚଳରେ ଅନେକ ଗୋରା ସିପାହି ସବୁ ଆସି ରହିଥିଲେ । ଗୋପାଳପୁରରେ ସେମାନଙ୍କର ଗୋଟାଏ ଛାଉଣି ପଡ଼ିଥିଲା । ସଞ୍ଜ ହେଲେ ସେମାନେ ମେଳା ଦେହରେ ଦଳ ଦଳ ହୋଇ ଗୀତ ଗାଇ ସମୁଦ୍ରକୂଳରେ ବୁଲୁଥିଲେ । ତାଙ୍କୁ ଦେଖିବାକୁ ଆମ ଲୋକେ ସବୁ ଧାଡ଼ି ବାନ୍ଧି ଠିଆରହୁଥିଲେ । ସେ ସାଇବମାନଙ୍କ ଭିତରେ ସେତେବେଳେ ଗୋଟାଏ ଠାର-ଭାଷା ଥିଲା । ଭଲ ମାଇକିନିଆଟିଏ ଦେଖିଦେଲେ ସେମାନେ କହୁଥିଲେ 'ଜିଗ୍ ଜିଗ୍' ! ସେଇଟା ଗୋଟାଏ ଅଶ୍ଳୀଳ ଠାର । ସେଥିରେ କେହି କେହି ଜାଣି ନଜାଣି ଗୋରାମାନଙ୍କର ଉପଭୋଗର ସାମଗ୍ରୀ ହୋଇଯାଉଥିଲେ । ସେମାନଙ୍କୁ ବେଶୀ ସୁବିଧା ହେଉଥିଲା ଗରିବ ମାଛଧରାଳି ବସ୍ତିରେ କିମ୍ବା ଗିର୍ଜାକୁ ଆସୁଥିବା ଖ୍ରୀଷ୍ଟାନ ପରିବାର ଭିତରେ । ଏମାନଙ୍କ ଅର୍ଦ୍ଧସାହେବୀ ଢଙ୍ଗ ଢ଼ାଙ୍ଗ, ଭଙ୍ଗା ଇଂରାଜୀ ଏବଂ ଖୋଲାଖୋଲି ମିଳାମିଶା ସେ ଦେହରଙ୍କ ସଇତାନମାନଙ୍କୁ ଆକର୍ଷଣ

କରୁଥିଲା । ଯିଶୁଙ୍କ ନାମ ଉଚ୍ଚାରଣ ହେଲେ ଉଭୟେ ସମାନ୍ ପରିମାଣରେ ଭକ୍ତି ପ୍ରକାଶ କରୁଥିଲେ । ଏଇଠାରେ ବି ସୁଯୋଗ ସେମାନେ ବେଶ୍ ଉଠାଉଥିଲେ; ପରିବାର ଭିତରେ ଘନିଷ୍ଠ ହେଉଥିଲେ, ବିବାହ କରି ବିଦେଶକୁ ନେବାର ପ୍ରତିଶ୍ରୁତି ମଧ୍ୟ ଦେଉଥିଲେ; ଫଳରେ ସେ ଅନେକ ପରିବାରରେ ଏବେ ମଧ୍ୟ ସାହେବ ସାହେବ ହବା ଲୋକଙ୍କୁ ଦେଖିବାକୁ ମିଳେ । ସମସ୍ତଙ୍କ ବୟସ ସେଇ ଚାଳିଶ ଉପରକୁ ।''

କଣ୍ଟାରୁ ମାଛ ଛଡ଼େଇ ଖାଇଲା ପରି ରୋହିଣୀ ସେ କୁକୁଡ଼ା ଫଡ଼ିଟିକୁ ଖୁଣ୍ଟୁଥାଏ । ତା ମୁହଁ ଉପରେ ହୁଡ଼ା ହୁଡ଼ା ନାଲି ମେଘ ପାରିହୋଇଯାଉଥାଏ । ତା' ଓଠ ସାମ୍ନା ଥରୁଥାଏ । ଆଖି ନଇଁଯାଉଥାଏ ଟେବୁଲ ଉପରେ ।

ସୁଶୀଳ କଥାର ବାଗ ବୁଝିଆସୁଥାଏ; ତା'ର ଆଗ୍ରହ ବଢ଼ିଚାଲିଥାଏ । ସେ ମାମୁଙ୍କ ମୁହଁକୁ ଚାହିଁ ପଚାରିଲା – ''ତାହେଲେ ତ' ଆଇଜାକ୍ ବନଫୁଲକୁ ସେହିଭଳି ଜଣେ ବୋଲି ସନ୍ଦେହ କରାଯାଇପାରେ । ସେହି ଗିନି ପିଗ୍ ଭଳି ଗୋଟାଏ ପୁରୁଷ ସେ ଚେହେରା ରକ୍ତ ଭିତରେ ଲୁଚିରହିଯାଇଥାଇପାରେ ।''

ରୋହିଣୀର ନିଶ୍ୱାସ ତୋଳିହେଉଥିଲା । ତା' କାନରେ ବାଟୁଳି ବାଜିଲା ପରି ଏ ବାକ୍ୟସବୁ ଶୁଭୁଥିଲା – ''ସେହି ଗିନି ପିଗ୍ ନିୟମରେ ରୋହିଣୀକୁ ଏବଂ ତାର ମା'କୁ ସମ୍ପୂର୍ଣ୍ଣ ନିଷ୍ପାପ ବୋଲି ପ୍ରମାଣ କରାଯାଇପାରେ । ଗୋପାଳପୁରରେ ତା' ଗୋସେଇଁମା'କୁ ଜେରା କରାଯାଇପାରେ ।''

ରୋହିଣୀ ଜାଣିପାରୁନଥିଲା କିଏ ସେସବୁ କହୁଥିଲା । ତାକୁ ହୁଏତ ସେମିତି ଶୁଭିଥିଲା, ''ଆଇଜାକ୍ ବନଫୁଲହିଁ ନିଜେ ଅବୈଧ ସନ୍ତାନ । ରୋହିଣୀ ନିର୍ଦ୍ଦୋଷ । ରୋହିଣୀ ନିଷ୍ପାପ । ତା ମା' ସତୀ, ପତିବ୍ରତା । କିନ୍ତୁ ଗୋସେଇଁ ମା'...''

ସେ ଭୁସ୍‌କିନା ଖାଇବା ପାଖରୁ ଉଠିପଡ଼ିଲା । ବେସିନ୍ ପାଖକୁ ଟଳମଳ ହେଇ ଚାଲିଗଲାବେଳେ ସୁଶୀଳ ତାକୁ ଯାଇ ଧରିପକେଇଲା – ''ଆରେ, ଆରେ ଏମିତି କ'ଣ ଉଠି ଆସିଲୁ ?'' ରୋହିଣୀ ବୁଲିପଡ଼ି ପାଣିଭରା ଗଳାରେ ନିଷ୍ପତ୍ତି ନେଲା ଭଳି କହିଲା ''ମୋର କିଛି ଦାବି କରିବାର ନାହିଁ । କୋର୍ଟ କଚେରିରେ କିଛି ପ୍ରମାଣ କରିବାର ନାହିଁ, ମୁଁ ବରଂ... ବରଂ ମୋ ମା'ର କବର ପାଖରେ କ୍ଷମା ମାଗିନେବି;... କିନ୍ତୁ... କିନ୍ତୁ... କୋର୍ଟ ଉପରେ ମୋ ଗୋସେଇଁମା'କୁ ମୁଁ ବେ ଇଜ୍ଜତି କରିପାରିବି ନାହିଁ ।''

ସୁଶୀଳ ଉତ୍ତେଜିତ ହୋଇ କହିଲା ''ଆରେ, ତୁ ଗୋଟେ ବେକୁବ୍ ନା କ'ଣ ? ତୋତେ ଯେ ବିନା କାରଣରେ ଜୀବନସାରା ଅପମାନ ଦେଇଆସିଛି, ତୋ ମା'କୁ ବେଇଜ୍ଜତି କରି କରି ଶେଷକୁ ସେ ସହି ନପାରି ମରିଯାଇଛନ୍ତି, ତୋତେ ସେ ଧକ୍କା ମାରି ଘରୁ ବାହାର କରିଦେଇଛି; ତାକୁ ସମସ୍ତଙ୍କ ଆଗରେ ବାଷ୍ଟାର୍ଡ୍ ବୋଲି ପ୍ରମାଣ କରିବୁ ନାହିଁ... ଆଇଜାକ୍ ବନଫୁଲ...''

– ''ଚୁପ୍ କର ।''

ସୁଶୀଳ ଚମକି ଘୁଞ୍ଚିଗଲା । ରୋହିଣୀ ଏମିତି ଫଣା ତୋଳିପାରେ ବୋଲି ସେ ଭାବିପାରିନଥିଲା ।

– ''ଆଇଜାକ୍ ବନଫୁଲ ମୋ ବାପା । ତାଙ୍କୁ ବେଇଜ୍ଜତି କରିବାର ଅଧିକାର ତୁମର ନାହିଁ ।''

ଅସ୍ପଷ୍ଟ ଶୁଭୁଥିଲା – ''ଏ ଅଭିଶପ୍ତ ପରିବାରର ସବୁ ଲଜ୍ଜା, ଅପମାନ, କଳଙ୍କ ମୁଁ ମୁଣ୍ଡପାତି ସହିବାକୁ ଜନ୍ମିଛି । ମୋତେ ଯାହା ଲାଞ୍ଛନା ଦେବାର ଦିଅ । ସବୁ କଳଙ୍କ ମୋ କପାଳରେ ବୋଳିଦିଅ । ମୁଁ ସମସ୍ତଙ୍କର ପାପ ପାଇଁ ଏକାକୀ ପ୍ରାୟଶ୍ଚିତ୍ତ କରିବି । ମୋତେ କେହି ଦୟା କର ନା... ଦୟା କର ନା । ମୋତେ ଶକ୍ତି ଦିଅ... ସହିବାକୁ ଶକ୍ତି ଦିଅ ।''

□□□

# ମୁଁ ସିନା ଚିର ଅପରାଧୀ

ଗଛର ଶିଖଟାକୁ ହାଣିଦେଲେ ସେ ଯଦି ମରିଯାଉଥାନ୍ତା, ତେବେ ବୁଝିବାକୁ ଅସୁବିଧା ନଥିଲା । ମଣିଷଟାର ମଥା ହାଣିଦେଲେ ସେ ପୁଣି ମରୁଛି ନା ନାହିଁ; କିନ୍ତୁ ଗଛର ବଞ୍ଚିବା ମରିବା ଢଙ୍ଗ ଅଲଗା । ତା ପ୍ରାଣ ଡାଳପତ୍ରରେ ନଥାଏ, ଥାଏ କାହିଁ କଉଁ ଗହୀରରେ, ମାଟି ଭିତରେ । ଏଣୁ ହଣାହଣିରେ କିଛି କଥା ନାହିଁ । ପାତାଳରୁ ତା'ର ସେ ଚେର ଉପୁଡ଼ିବ, ତେବେ ଯାଇ ସେ ମରିବ; ନ ହେଲେ ନାହିଁ ।

ସେଥିପାଇଁ ଆପନ୍ନା ଶାସ୍ତ୍ରୀକୁ ମଣିଷ ନ କହି ଗଛ କହିବାକୁ ଇଚ୍ଛାହୁଏ ।

ଯା ପୂର୍ବରୁ ଅନ୍ତତଃ ଦଶ-ବାର ଥର ସେ ମରିପାରିଥାନ୍ତା ଖୁବ୍ ସ୍ୱାଭାବିକ ଭାବରେ । କୌଣସି ଥର କେହିହେଲେ ବିସ୍ମିତ ହୋଇ ନଥାନ୍ତେ; ବରଂ କହିଥାନ୍ତେ; ଭଲ ହେଲା, ମରିଗଲା ଆପନ୍ନା ଶାସ୍ତ୍ରୀ... ଏଥିରେ ଯେ କେହି ହେଲେ ତ ମରିଥାଆନ୍ତା । ସେଥିରୁ ଗୋଟାଏ ହେଲା ଯେ ତାକୁ ଯେତେବେଳେ ପାଞ୍ଚବର୍ଷ, ସାବତ ମା'ର ଅଣହେଳାରେ ତା'ର ଆଖିଟାଏ ଫୁଟିଗଲା । ଭୟଙ୍କର ବସନ୍ତରେ ତାକୁ କଦଳୀ ପତ୍ରରେ ଶୁଆଇଦେଇଥାନ୍ତି । ସର୍ବାଙ୍ଗରୁ ଗୋଟାଏ ପୁର ଚମ ଓହଳିରହିଥାଏ । ବୁକୁ ପଞ୍ଜୁରି ଦୁକ୍‌ଦୁକ୍ ହଉଥାଏ ବୋଲି ବଞ୍ଚିଛି ବୋଲି ଜାଣୁଥାନ୍ତି – ନହେଲେ ସବୁ ସରିଆସିଥାଏ । ଏମିତି ବାଘମୁହଁରୁ ଉବୁରି ଆସିଛି ଆପନ୍ନା – ଦେହରେ ଏବେ ବି ଗହୀର ବସନ୍ତ-ଦାଗ ପୂରିରହିଛି । ଆପନ୍ନା – ସତେ ବା କାହା ପାଟିରୁ ଖସିପଡ଼ିଥିବା ଉଚ୍ଛିଷ୍ଟଟାଏ । ତା' ଦେହସାରା ସେଥିପାଇଁ ଅସଂଖ୍ୟ ଦାନ୍ତ ଚିହ୍ନ ।

ଏବେ ଦିନେ ମତେ ଆସି କିଏ କହିଲା ଯେ, ଆପନ୍ନାର କ'ଣ ମୁଣ୍ଡ ଗୋଳମାଳ ହେଇଯାଇଛି; ସେ ଛୁଟି ନେଇ ଘରେ ଅଛି । ଲୋକେ କହୁଛନ୍ତି ଯେ, ପନ୍ଦର ଦିନ ତଳେ ତା' ଘରେ ଯେଉଁ ଚୋରି ହେଇଗଲା, ସେଥିରେ ସେ ଭାଙ୍ଗିପଡ଼ିଛି । ରାତିରେ ଅନେକ ବେଳଯାଏ ଆପନ୍ନା ଚେତା ଥିଲା । ତାକୁ କାଳନିଦଟା ଘାରିଗଲା କେମିତି । ସେମାନେ ତିନିଜଣ ହେଇ ଆସିଲେ । ବାହାରେ ଜଣେ ପହରା ଦେଲା; ବାକି ଦି'ଜଣ ଘର ଭିତରୁ ସବୁ ବୋହିନେଲେ । ସେଥିରେ ବାକ୍‌ସପତ୍ର, ଶାଢ଼ି, ସୁନା, ସବୁ ଚାଲିଗଲା । ଆପନ୍ନା ତା ସରକାରୀ ଜମାରୁ ଋଣ ନେଇ ସେସବୁ କିଣିଥିଲା ଝିଅ ବିଭା ଦବ ବୋଲି । ବେକୁବ୍ କାହାଁକା ! ଜୀବନସାରା ଯେ ତାକୁ ଶତ୍ରୁ ସାଧିଆସୁଛି, ସେ କ'ଣ ଏମିତି ସବୁ ସହଜରେ ଗଢ଼ିଯିବାକୁ ଦେଇଥାନ୍ତା ! ଆପନ୍ନାକୁ ଆଉ ଥରେ ଖଣ୍ଡିଆ ନ କଲେ ସେ ରହିପାରିବ ? ଏଥର କିନ୍ତୁ ସେ ଆପନ୍ନାର ମଞ୍ଜ ଦୋହଲେଇ ଦେଲା । ଅତି ଉଞ୍ଚ ପୁରୁଣା ଥୁଣ୍ଟା ଗଛ ଉପରେ ଗୋଟାଏ ଚଡ଼କ ପଡ଼ି ତା'ର

ଫାଳେ ଢଳିଯାଇଥିଲା, ଅନ୍ୟ ଫାଳକରେ ତା'ର ଅନମନୀୟ ଦୃପ୍ତଭାବ ବୋଧେ ବଜ୍ରଧାରୀକୁ ସୁହାଇଲା ନାହିଁ । ସେ ଭାବିଲା ଯେ, ଗଛ ତାକୁ ରେରେକାର କରୁଛି; ତେଣୁ କାଟିଲା ବିଜୁଳି ସେଇ ଗଛଟା ଉପରେ ! ତଥାପି ସକାଳ ପାହିଲାବେଳକୁ ଗଛସାରା କୁହୁଳୁଥାଏ ସିନା, ଗୋଟିଏ ଛୋଟିଆ ଡାଳରେ ତଥାପି ବଞ୍ଚିଥାଏ ସେ ମହାଦ୍ରୁମ ।

ଆପନ୍ନା ପାଇଁ, ତା'କଥା ଶୁଣି ମତେ ଭାରି ଅସୁସ୍ଥ ଲାଗିଲା । ଭୟଙ୍କର କ୍ରୋଧ ହେଲା । ଅଭିମାନରେ ଆଖିରେ ଭର୍ତ୍ତିହେଇଗଲା ବାମ୍ପ । ମୁଁ ସେଇ ଦିନ ଛୁଟି ନେଇ ଦି'ପହରବେଳେ ତା ଘରକୁ ଯାଇଥିଲି ।

ଆପନ୍ନାକୁ ମୁଁ ଅନେକ ଦିନରୁ ଜାଣେ । ଯେତେବେଳେ ସେ ଖାଲିପାଦରେ ଧୋତି ହାଫ୍‌ସାର୍ଟ ପିନ୍ଧି ସ୍କୁଲକୁ ଯାଉଥିଲା, ଜଳଖିଆ-ଛୁଟିରେ ସମସ୍ତେ ଖାଇଲାବେଳେ ଲିମ୍ବଗଛ ଛାଇରେ ବସି ଦକ୍ଷିଣମୁହାଁ ଗୋଡ଼ି ପକାଉଥିଲା ଏବଂ କଥା-କଥାକେ ହସିଦଉଥିଲା, ମୁଁ ସେତେବେଳେ ତାକୁ ଭଲ ପାଇଯାଇଥିଲି । ସେ ମୋ ବହିଯାକ ମଲାଟ ବାନ୍ଧିଛି । ସେହି ବହି ପଢ଼ି ପରୀକ୍ଷା ଦେଇଛି । ବି. ଏ. ପରୀକ୍ଷା ଦେଇସାରିଲା ପରେ ଗୁମ୍ ମାରି ଠିଆହେଇଥିଲାବେଳେ ମତେ ଦେଖି ତଳକୁ ମୁହଁକରି କହିଛି, ''ଆଜି ସକାଳେ ବାପା ମରିଗଲେ ।'' – ଆପନ୍ନା ତେଣିକି ଶୀତ ଋତୁର ଟେଲିଫୋନ୍ ତାର ଉପରେ ବସିଥିବା ଏକାକୀ ପକ୍ଷୀଟିଏ । ସେ ଆମ ଘରକୁ ଆସି ମା'ଙ୍କ ହୁକୁମ୍‌ରେ ପ୍ରତିଦିନ ବଜାର-ସଉଦା କରିଛି; କିନ୍ତୁ ଦିନେ ଆମ ନୌକର ଟୋକାର କଥାରେ ବାପା ତାକୁ ଘରୁ ବାହାର କରିଦେଇଛନ୍ତି । ମୁଁ ସଞ୍ଜବେଳେ ଖେଳରୁ ଫେରୁଥିବାବେଳେ ତାକୁ ଚାଲିଯିବାର ଦେଖିଛି । ସେ ମୋ ହାତ ଧରି ଅତି ସହଜ ଭାବରେ କହିଛି, ''ତୁ ଜାଣୁ, ମୁଁ ବାପାଙ୍କ ମୁଣାରୁ ପାଞ୍ଚଟଙ୍କା କଦାପି ନେଇନାହିଁ ।'' ମୁଁ ଅତି ଉତ୍ୟକ୍ତ ହୋଇ ସେଦିନ କଳିକଜିଆ ଲଗେଇଛି । ନୌକର ଟୋକା ଚୋରି କରିଛି ବୋଲି ପ୍ରମାଣ ମିଳିଛି; କିନ୍ତୁ ଆପନ୍ନା ଆଉ ଫେରିନାହିଁ ।

ଆପନ୍ନା ଘରକୁ ଦି'ପହରେ ଯିବା ସେଇ ବୋଧେ ପ୍ରଥମ । ଆଉ ଥରେ ଦି'ଥର ରବିବାର ଦିନ ସେଇଠି ବିତେଇଛି । ଅନେକ କଥା ଗପିଛୁ; କିନ୍ତୁ ସବୁବେଳେ ତା'ର ସେଇ ଗୋଟାଏ ଆଖିରେ ସେ ଅଜସ୍ର ଆତ୍ମବିଶ୍ୱାସର ଢେଉ ଡୋଳୁଥାଏ । ଆପନ୍ନାର ନିଜ ଝିଅ ସେ ନୁହେଁ । ଆପନ୍ନା ତ ବିଭା ହୋଇନାହିଁ । ତାର ଝିଅ ଆସିବ କେଉଁଠୁ ?

''କିରେ ଆପନ୍ନା – ଝିଅ କେମିତି ପଢୁଛି ?''

''ଛାଡ଼ ଭାଇ, ମାଇକିନିଆ ଝିଅ, ପାଠ ପଢ଼ିଲେ କ'ଣ ହବ ? – ଟୁଲି ! ଗଲୁ, ବୋଉକୁ କହିବୁ ମଉସା ପାଇଁ ଚା' କରିବ । ମୁଁ ୟା ପାଇଁ ବରଘର ଖୋଜୁଛି । ତା' ମା' ମତେ ଆଉ ରଖେଇଦଉନାହିଁ !''

''ଆହ୍ବେ, ଝିଅ ବାହା କରିବୁ, ତୋ ବଳ କାଇଁ – ଏ ତ ତୋ' ସାବତ ଭଉଣୀର ଝିଅ । କହୁନୁ, ତୋ' ସାବତ ମା' ଭାଇ ସାହାଯ୍ୟ କରିବେ ।''

"ସେମାନେ ସାହାଯ୍ୟ କଲାବେଳେ ତ କରିନାହାନ୍ତି – ଏଇନେ ଆଉ କ'ଣ କରିବେ ?"

ସେଇ ଟୁଲିର ବାହାଘରକୁ ତା'ର ସବୁତକ ସଞ୍ଚୟ ସେ ରଣ ଉଠେଇ ଆଣିଥିଲା । ବାହାଘର ଆସନ୍ତା ଛବିଶ ତାରିଖରେ ହବ ବୋଲି ସ୍ଥିର କରିଛି... ଓଃ, କ'ଣ କରୁଥିବ ଆପନ୍ନା !!

ମୁଁ ଯାଇ ତା'ଘର ସାମ୍ନାରେ ପହଞ୍ଚିଲାବେଳକୁ ଶୂନ୍‌ଶାନ୍ ଦି'ପହର ସମୟ । କବାଟ ଝରକା ଆଉଜା ହୋଇ ରହିଥାଏ । ଏ ବସାରୁ ପକ୍ଷୀ ଉଡ଼ିଯାଇଛନ୍ତି ସତେ ବା । ସବୁ ସେମିତି ସ୍ତବ୍ଧ, କାଉଁକାଉଁଆ !

କବାଟ ଆଡ଼େଇ ପଶିବା ମୋ ପାଇଁ ନୂଆ ନୁହେଁ । ସରକାରୀ ତିନିବଖୁରି ଘର । ବାଟଘରେ ଆପନ୍ନା ଚିରକାଳ ରହିଆସିଛି । ତା'ପାଇଁ ବୋଧେ ଏ ଜୀବନରେ ଅନ୍ୟ ବ୍ୟବସ୍ଥା ନାହିଁ ବୋଲି କୋଉଠି ସ୍ଥିର ହୋଇସାରିଛି ! ଆମେ ଉନ୍ମତ୍ତିଆ ହୋଇ ତାକୁ ଅନେକ ପରିହାସ କରିଚୁ – କଞ୍ଚା ମାଉଁସରେ କଣ୍ଟା ଗେଞ୍ଜିଲା ଭଳି ସେ ସବୁ କଥା । ଆପନ୍ନା ନୀରବ ରହି ଆମକୁ ସହିଚି; ଆମ ଥଟ୍ଟା ତାଚ୍ଛଲ୍ୟ ସହିଚି । ମୁଁ ମାନୁଚି, ଆମେ ଅନ୍ୟାୟ କରିଚୁ; ଅପରାଧ କରିଚୁ; କିନ୍ତୁ ଯେ ତା' ଡାହାଣ ଆଖିଟାକୁ ସବୁଦିନ ପାଇଁ ଚୁଚିଦେଲା, ଦେହଯାକ ଅଚଳନ୍ତି ମୋହର ମାରି ଆପନ୍ନା ଶାସ୍ତ୍ରୀକୁ ଏମିତି ନାକଚ କରି ଦାଣ୍ଡରେ ଠିଆକରେଇଦେଲା ସେ ଆମଠଉଁ କୋଉ ଗୁଣରେ ଭଲ ! – ତାକୁ ଶାଳା ହାତଗୋଡ଼ ପାଉନାହିଁ ବୋଲି ସିନା !

ତା'ର ସେ ଖଟିଆ, ସେଇ କାଠଚୌକି ଆଉ ଫୁଙ୍କୁଲା ଟେବୁଲ୍ ! ଆପନ୍ନା ଚିଙ୍କୁଡ଼ି ମୁଦାଟିଏ ପରି ଚାଦର ଘୋଡ଼ି ହୋଇ ଶୋଇଯାଇଥିଲା ବୋଲି ଭାବିଲି । ଠିଆ ହେଲି । ମୋ ପାଦଶବ୍ଦ ଆଉ ବଖରାକୁ ହୁଏତ ଶୁଭିଥିବ । କେହି କିଛି ହଲ୍‌ଚଲ୍ ହେଉ ନ ଥାନ୍ତି । ମୋ ଉପରେ ଚୁପ୍‌କିନା କଳା ଭୂତ ଭଳି ଚିନ୍ତାଟାଏ ମଡ଼େଇ ହେଇ ପଡ଼ିଲା । ତେବେ କ'ଣ ଏ ତିନିହେଁ ଏକାଠି ସ୍ଥିର କରି ବିଷ ଖାଇଦେଇଛନ୍ତି । ମୁଁ ମୋ ଅଜାଣତରେ ଚିତ୍କାର କରିପକେଇଲି ବୋଧହୁଏ ।

ଆପନ୍ନା ଝାଡ଼ିଝୁଡ଼ି ହେଇ ଖଟ ଉପରେ ବସି ମୋତେ ଚାହିଁଲା । ମୁଁ କିନ୍ତୁ କବାଟରେ ବାଡ଼େଇ ହେଇ ଯାଇ ତା ସାମ୍ନା ଚୌକିଟାରେ କୁଡ଼େଇହେଇଗଲି । ମୋତେ ସମୟ ଲାଗିଲା ସମ୍ଭାଳିବାକୁ ।

ଆପନ୍ନାର ମୁହଁରେ ସହଜରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରିହୁଏ ନାହିଁ । ସେଇ ଗୋଟିଏ ଆଖିକୁ ଦେଖି, ଯାହା ହେଲେ ଅନୁମାନ କରିବା କଥା । ଆଖିଟି ରଙ୍ଗିଲା ଆଉ ଖୁବ୍ ଗଭୀର ଦିଶିଲା ।

"କିରେ, କାଇଁ ଛୁଟିନେଇ ଘରେ ବସିଲୁ ? ବାହାରିଲେ ସିନା କ'ଣ ବ୍ୟବସ୍ଥା କରିବା । ଛବିଶ ତାରିଖରେ ଝିଅର ବିଭାଘର ସ୍ଥିର ହେଇଚି ପରା !"

ସେ ମୋତେ ବଲବଲ ଚାହିଁ ରହିଲା । ତା' ପରେ ସେ ଗୋଟାଏ ଆଖିକୁ ଏପଟ ସେପଟ କରି ବୁଲେଇଲା । ତାକୁ ସେମିତି ଚାହିଁବାର ମୁଁ କେବେ ଦେଖି ନ ଥିଲି । ତା' ନାକପୁଡ଼ା ଫୁଲିଲା, ତା' ଓଠ ଥରିଲା । ସେ ଖୁବ୍ କଷ୍ଟରେ କ'ଣଟାଏ ତା' ଭିତରେ ସମ୍ଭାଳି ରଖିଥିଲା ।

ମୁଁ ତା' ଖଟ ଉପରକୁ ଘୁଞ୍ଚିଯାଇ ତା' ପିଠିରେ ହାତ ରଖିଲି; ସେ ପ୍ରତିବାଦ କଲା ନାହିଁ । ତାକୁ ଚାହିଁ କହିଲି, ''କିରେ, ଏମିତି କ'ଣ ହଉଚୁ ? ଯଦି ତୁ ନିଜକୁ ନିଜେ ସମ୍ଭାଳିବୁ ନାହିଁ, ବିଭାଘର ତୁଲେଇବୁ କେମିତି !''

''ଆବ୍‌ବେ ଯା, ଗୁଡ଼ାଏ ଆଉ ସାକୁଲେଇ ହ' ନା ।'' ମୁଁ ଚମକି ଘୁଞ୍ଚିଗଲି । ଏମିତି ରୁକ୍ଷ ତ ନୁହଁ ଆପନ୍ନା । ମୁଁ ଘୁଞ୍ଚିଯାଇ ତାକୁ ଚାହିଁଲି । ସେ ମୋତେ ନ ଦେଖି କହିଲା – ''ମୁଁ ଆଉ କିଛି ଶୁଣିବି ନାହିଁ; କିଛି ମାନିବି ନାହିଁ । ମୁଁ ଯାହା କରିବା କଥା କରିବି । ତେଣିକି ଯାହା ହବାର ହବ ।''

ମୋତେ ଲାଗିଲା ଯେ, ସେ ସ୍ଥିର କରିନେଇଛି ଦାଣ୍ଡଘର ପଙ୍ଖାରୁ ରାତି ଅଧରେ ଝୁଲିଯିବା ପାଇଁ । ଯେକୌଣସି ଲୋକ ଏମିତି ଅଚାନକ ବିପତ୍ତିରେ ଏଇଆ ହିଁ ହୁଏତ କରନ୍ତା । ଆପନ୍ନା ଶାସ୍ତ୍ରୀକୁ ପଂଖାରୁ ଝୁଲୁଥିବାର ଦେଖି ତା' ଆରଦିନ ସକାଳୁ କେହି ବୋଧହୁଏ ବିସ୍ମିତ ହୁଅନ୍ତେ ନାହିଁ; ହୁଏତ କହନ୍ତେ, 'ଆଉ କ'ଣ କରିଥାନ୍ତା ବିଚାରା ?''

ସତେବା ଏମିତି ମରିବା ପାଇଁ ଆପନ୍ନା ଶାସ୍ତ୍ରୀ ଜନ୍ମ ହୋଇଥିଲା ।

''ଆଜିଠୁ ସାତ ଦିନ ଭିତରେ ଫଇସଲା ହେଇଯିବ । ମୁଁ ଚୁକ୍ତି କରିସାରିଛି । ସେ ସବୁଦିନେ ମୋ ପାଖରେ ପ୍ରସ୍ତାବ ଦଉଥିଲା; ମୁଁ ଶୁଣୁ ନଥିଲି ! ମୁଁ ଶାଲା ବେକୁବ୍ !''

ମୁଁ ସତର୍କ ହୋଇ ଶୁଣିଲି । ଏମିତି କ'ଣ କହୁଛି ଆପନ୍ନା ? କାହା ସାଙ୍ଗରେ ସେ ଚୁକ୍ତି କରିଛି ? କି ଚୁକ୍ତି ? – ସେ କ'ଣ ସଂପୂର୍ଣ୍ଣ ପାଗଳ ହୋଇଯାଇଛି । ଭାବୁଛି ଯେ, ନିଜେ ଗୋଟାଏ ବିରାଟ ଶିଳ୍ପପତି ? ମନେ ମନେ ବଡ଼ ଗୋଟାଏ ଦାଉଁ ମାରିବାକୁ ସେ କଳ୍ପନା କରୁଛି ? ଆଉ ଜଣକ ସାଙ୍ଗରେ ମିଶି ପ୍ରଚୁର ଲାଭ ଉଠେଇବାର ସ୍ୱପ୍ନ ଦେଖୁଛି ? ଅଜସ୍ର ଟଙ୍କା ସୁନା ଅଳଙ୍କାର ବାଜା ବଇରଖ – ତା' ଝିଅର ବାହାଘର ?

ତା' ଆଖିରୁ ନିଆଁ ଫାଟିପଡୁଥାଏ । ଆପନ୍ନା ବୋଧେ କିଛିଦିନ ହେଲା ଶୋଇ ନାହିଁ କି ଖାଇ ନାହିଁ । ତା' ଭଳିଆ ମୁହଁରେ ହଠାତ୍ କିଛି ବାରିପାରିବା ସହଜ ନୁହେଁ । ମୁଁ କେବଳ ପରିଚିତ ତା'ର ସେ ଅଦ୍ଭୁତ ଉଦାର ହସଟି ସାଙ୍ଗରେ । ସେ ହସର ଚିହ୍ନ ନ ଥିଲା କେଉଁଠି; ବରଂ ତା' ଶୁଖିଲା ଓଠକୋଣରେ ଜାବ ଲାଗି ସେ ଭୟଙ୍କର ଦିଶୁଥିଲା । ଖୁବ୍ ଅସହାୟ କରୁଣ ଦିଶୁଥିଲା ।

ମୁଁ ତାକୁ କିଛି କହିବାକୁ ସାହସ କଲି ନାହିଁ ।

''ମୁଁ ତାକୁ ଆଡ଼େଇଆସିଛି । ଭାବିଛି ଯେ, ତାକୁ ମୁଁ ଜିଣିଯାଇଛି, ପୁଣ୍ୟ ଅର୍ଜିଛି ।'' – ଆପଣା ଶୂନ୍ୟକୁ ଚାହିଁ କହୁଥାଏ । ତା ଆଖିରେ ସେମିତି ନିଆଁ ଆଉ ଲୁହ ଏକାଠି ଟଳମଳ ହଉଥାଏ – ''ବେକୁବ୍ ବେକୁବ୍ ବେକୁବ୍'' । ସେ ତା' ବାଁ ପାପୁଲିଟା ଉପରେ ଡାହାଣ ବିଧା ମାରିଲାଗିଥାଏ ।

ମୁଁ ସାହସ କରି ତା' ପିଠିରେ ହାତ ରଖିଲି ।

ସେ କିଛି ସମୟ-ନାଗସାପ ପରି ଫଁ-ଫଁ ହେଲା; ତା'ପରେ ସାଙ୍କୁଡ଼ିଗଲା । ଛୋଟ ମଣିଷଟି ବିଚାରା ଆପଣା ଶାସ୍ତ୍ରୀ । ପଟା ଖଟ ଉପରେ ପାତଳ ପୁରୁଣା ଶେଯ । ତା' ଉପରେ ମସିଣା, ତକିଆ । ମଇଳା ଚାଦର ଖଣ୍ଡିଏ ଆଡ଼େଇ ଦେଇଥାଏ ଗୋଟାଏ ପାଖକୁ; ତା'ର ଠାଏ ଚିରିଯାଇଥାଏ । ଶୁଖିଲା ବାସି ରୁଟିକୁ ଲୁଣ ମଢ଼େଇ ଖାଇଲା ପରି ଆପଣା ଶାସ୍ତ୍ରୀ ତା' ଦରମାଗଣ୍ଡାକ ଚୋବେଇ ଚୋବେଇ ବାଇଶି ବର୍ଷ ସରକାରୀ ଚାକିରି କରିଚି । ତା' ଝରକାରେ ପରଦା ନାହିଁ, ଦୁଆରେ ପା'ପୋଛ ନାହିଁ । ସେ କାନ୍ଥକୁ ହାଲିଆ ହୋଇ ଆଉଜିଗଲା । ତା ଡଙ୍କଶିର ଟାଣି ହୋଇ ଦିଶିଲା । ଭାରି ଶୁଖିଯାଇଥିଲା ଆପଣା ସେଇ କେଇଟା ଦିନ ଭିତରେ । ମୁଁ ଲମ୍ବିଥିବା ଗୋଡ଼ ଉପରେ ହାତ ରଖି ତାକୁ ଚାହିଁଲି; କିଛି କହିପାରିଲି ନାହିଁ ।

ସେ ଚଟ୍‌କିନା ସଳଖି ଯାଇ ପୁଣି କହିଲା ''ମୋତେ ସେ ସେଇଦିନୁ କହିଥିଲା, ମୋ ସାବତମା'କୁ ମହୁରା ଦେଇ ମାରିଦବା ପାଇଁ; ମୁଁ ନାହିଁ କରିଥିଲି । ତା' ପରଦିନ ମୋ ଭାତକୁ ବିରାଡ଼ି ଅଇଁଠା କରି ମରିଯାଇନଥିଲେ ମୁଁ ମରିଯାଇଥାନ୍ତି । – ମୋ ବାପା ମଲାଶେଯରେ ତକିଆତଳୁ ମୋ ହାତକୁ ମୁଠେଇ ଖଣ୍ଡେ ଚେକ୍ ବଢ଼େଇଦେଇଥିଲେ । ମୁଁ ତାକୁ ଜାଣିଶୁଣି ମା' ହାତକୁ ବଢ଼େଇ ଦେଇଥିଲି । ଦଶ ହଜାର ଟଙ୍କାର ଚେକ୍ ! – ଚାକିରି ପାଇବା ପାଇଁ ରାଉ ପଟ୍ଟନାଏକ ଡାକିଥିଲା ସେ ବେହିଆ ଅଫିସରକୁ ଲାଞ୍ଚ ଦେଇଆସିବା ପାଇଁ । ମୁଁ ନାହିଁ କରିଥିଲି । ରାଉ ପଟ୍ଟନାଏକ ବର୍ଷେ ଆଗରୁ ଚାକିରି ପାଇଗଲା – ଏବେ ସେ ମୋ ହାକିମ ହୋଇ ବସିଛି । ମୁଁ ସେ ଅଫିସରକୁ ସବୁ ରାତିରେ କେତେ ପ୍ରକାର ହତ୍ୟା କରିବାକୁ, ରାଉ ପଟ୍ଟନାଏକକୁ ଅଣ୍ଟାଠଉ ଦୁଇଗଡ଼ କରି ହାଣି ନଇରେ ବୁଡ଼େଇଦେବାକୁ ସେ କହିଛି । ମୁଁ ଶୁଣିନାହିଁ ।''

ମୁଁ ଭୂରୁ କୁଞ୍ଚେଇ ଚାହିଁଥାଏ ତା ମୁହଁକୁ । କଣ କହୁଛି ଆପଣା ଶାସ୍ତ୍ରୀ ? ସେ ତା' ଜୀବନର ସବୁ ଅବଶୋଷ, ସବୁ ଗହନ ଦୁଃଖ ଅଭିମାନ ହିଂସା ପ୍ରତିହିଂସା ଖୋଲି ଦଉଛି ! ତା'ର ଯେତକ ଗୋପନ ଅପରାଧର ସମ୍ଭାବନା – ଯାହା କରିଥିଲେ ହୁଏତ ଏମିତି ସେ ଆପଣା ଶାସ୍ତ୍ରୀ ହେଇ ମୋ ଆଖିରେ ଠିଆ ହେଇ ପାରି ନଥାନ୍ତା; କିନ୍ତୁ ତା ଝିଅ ବାହା ହେଇପାରିଥାନ୍ତା, ସେ ଭଲ ଶେଯରେ ଶୋଇପାରିଥାନ୍ତା – ବିଭା ହେବାକୁ ଢେର୍ କନ୍ୟା ମିଳିଥାନ୍ତେ । ସେ ଏମିତି କୁହୁଳି କୁହୁଳି ପୋଡ଼ଖୁଣ୍ଟା ହୋଇଯାଇ ନଥାନ୍ତା – ସେ ଚାହିଁଥିଲେ ଦିନା ସାହୁ କଣ୍ଟ୍ରାକ୍ଟରଠୁ ତିନିଲକ୍ଷ ଟଙ୍କା

ହାତସଫେଇ କରିପାରିଥାନ୍ତା । ମୁଁ ଜାଣେ ଏ କଥା – ମତେ ଦିନା ନିଜେ କହିଚି । ''ଏମିତି ବେକୁବ୍ ଅଫିସର ମୁଁ ଜୀବନରେ ଦେଖିନାହିଁ । ଏ ଓଲା ଚାଲୁଣିମୁହାଁ କଣା ଶଳା ହାତରେ ଖଡ଼ା ସିଝିବ ନାହିଁ। ଡାହାଣ ହାତରେ ଦସ୍ତଖତ ମାରିଥିଲେ ବାଁ ହାତରେ ତିନିଲାଖ୍ ଗୋଟେଇଥାନ୍ତା ! ଶଳାର ଭାଗ୍ୟରେ ନାହିଁ – ପାଇଲା ଲକ୍ଷ୍ମୀ ଆଡ଼େଇଦେଲା ।''

ସାରା ଜୀବନର ବିକଳ୍ପ ରାସ୍ତାଟା ହଠାତ୍ ଆପନା ଶାସ୍ତ୍ରୀ ଆଗରେ ଝଟଝଟ ଦିଶିଯାଉଥିଲା ହୁଏତ । ସେ ସେଥିପାଇଁ ନିଜକୁ କ୍ଷମା ଦେଇ ପାରୁ ନଥିଲା – କିନ୍ତୁ ସତେ କଣ ଆପନା ସେ ବାଟେ ଯାଇପାରିଥାନ୍ତା । ତା'ପାଇଁ କଣ୍ଟାବଣିଆ ରାସ୍ତା, ଲହୁଲୁହାଣ ହୋଇ ଶୂନ୍ୟକୁ ଚାହିଁ ଚାହିଁ, ଓଠ ଚାଟି ଚାଟି ଯିବାର ରାସ୍ତା ନିର୍ଦ୍ଧାରିତ ହୋଇ ରହିଛି । ସେ କାହୁଁ ସେ ଚିକ୍କଣ ଗଡ଼ାଣିରେ ହୁ' ହୁ' ପବନମୁହାଁ ଗଡ଼ିଯାଇପାରିବ !

''ମୁଁ ଯଦି ଜୀବନସାରା ତୋ' ବୋଲ ମାନିଆସିଲି, ତୋତେ ମାନିନେଲି ମାଲିକ ବୋଲି ! ତୁ ମତେ ସାହାପକ୍ଷ ହେଇ ଥରେ ହେଲେ ଠିଆହବୁ ନାଇଁ ? ଯଦି ନହେଲୁ, ମୁଁ ଆଉ କାହିଁକି ତୋ' ପାଦତଳିପା ଚାଟୁଥିବି ? ଶୁଣିଥା – ତତେ ଆଜି ଅପନା ଶାସ୍ତ୍ରୀ କହୁଚି, ଏଠି ସତ୍ୟ ନାହିଁ, ଧର୍ମ ନାହିଁ – ବିପତ୍ତି ପଡ଼ିଗଲେ କେହି ତୋ ପିଠିରେ ପଡ଼ିବେ ନାହିଁ । ସେ ସବୁ ନିଜକୁ ନିଜେ ଭଣ୍ଡିବା ପାଇଁ ତୁଚ୍ଛା ଗାଲୁ ଗଳ୍ପ ।''

ଆପନାର ଆତ୍ମା ତା'ହେଲେ ଏତେ କାଳ ପରେ ବିଦ୍ରୋହ କରୁଛି । ତା ପ୍ରାଣକୁ ବାଧୁଛି; ନହେଲେ ଆପନା ଶାସ୍ତ୍ରୀ ଏମିତି କହିପାରନ୍ତା ନାହିଁ । ମୁଁ ତାକୁ ପ୍ରାୟ ସମର୍ଥନ କଲାପରି କହିଲି – ''ଠିକ୍ କହିଛୁ । ଏଠି ଚିହ୍ନଟ କରିପାରିଲାଭଳି ସତ୍ୟ, ଧର୍ମ ବୋଲି କିଛି ନାହିଁ। କିନ୍ତୁ ଯେ ମାଲିକ, ସେ କ'ଣ ଦେଖୁନାହିଁ ନା ଶୁଣୁନାହିଁ ।''

''ଆବେ, ରଖିଥା ତୋ ଗପ । ସେଥିରୁ ଗୁଡ଼ାଏ ଭୂତ କାହିଁକି ପୋଷିଛୁ ଅକାରଣ ? ଗୋଟାଏ କଥା ମୁଁ ମାନୁଚି । ମଣିଷହିଁ ମଣିଷ ପାଇଁ ସବୁ କରିଦେଇ ପାରିବ; ଭଲମନ୍ଦ ସବୁ କରିଦେଇ ପାରିବ । କିନ୍ତୁ ସେମିତି ମଣିଷ କାହାନ୍ତି ?''

ଟିକିଏ ଅଟକି ସେ ବୋଧହୁଏ ମୋତେ ଚାହିଁଦେଲା । ମୁଁ ବୋଧେ ତା'ର ସେ ଚାହାଣିରୁ ମୁହଁ ଆଡ଼େଇନେଲି ।

''ସେଥିପାଇଁ ମୁଁ ସ୍ଥିର କରିଛି, ଯାହା କରିନାହିଁ, ଯାହା କରିବାକୁ ସେ ମୋତେ ପ୍ରବର୍ତ୍ତାଇ ଆସିଛି, ମୁଁ ମନେ ମନେ ହୁଏତ କରିଛି ତାହାହିଁ ସାଧାରଣ ଆଉ ଶହେ ଲୋକଙ୍କ ପରି କରିବି ।''

ଖଟରୁ ଉଠିପଡ଼ି ସେ ଘୋଷଣା କଲା, ''ମୋର ଆଉ ଲାଜ ନାହିଁ କି ସଙ୍କୋଚ ନାହିଁ ।'' – ସେ ବାହାରିଗଲା ଗାଧୁଆଘର ଆଡ଼େ ।

ମୁଁ ବସିଥାଏ ଖଟ-ଦଣ୍ଡା ଉପରେ ।

ଦୁଆର ପାଖରେ ଛାଇଟିଏ ପରି କିଏ ଆସି ଠିଆହେଲା ବୋଲି ଚାହିଁଦେଲାବେଳକୁ ଟୁଲିର ମା'। ସୁନ୍ଥାର ଡାହାଣ ପାଖରୁ କେରାଏ ବାଳ କେବେ ପାଚିଗଲା ସୁମିର ? ତା' ଆଖିଗୁଡ଼ିକ ଟୁମାଟୁମା; ବୋଧେ କାନ୍ଦୁଛି କିଛିଦିନଧରି !

"ଭାଇନାକୁ କୋଉ ମୁହଁରେ ଆଉ କହିବି ଚିଠି ଆସିଛି ବୋଲି। ମୋର ନିଅଣ୍ଟିଆ କର୍ମକୁ ଗଢ଼ିଲା ଜିନିଷ ଉଜୁଡ଼ିଯାଉଛି। ବରପକ୍ଷରୁ ଚିଠି ଆସିଛି ଯେ ସେମାନେ ପଚାଶ ଜଣ ଆସିବେ ପଚିଶି ତାରିଖ ସନ୍ଧ୍ୟାରେ। ବରଯାତ୍ରୀଙ୍କ ପାଇଁ ରହିବା, ଖାଇବା ଚର୍ଚ୍ଚା ଆଦି କଥା ତାଗିଦା କରି ଲେଖିଛନ୍ତି। କେମିତି କ'ଣ ହେବ ? ତାଙ୍କୁ କ'ଣ ମାସେ ସତାରିଯିବାକୁ କହିହବ ? ସେମାନେ କ'ଣ ଶୁଣିବେ ? ପଦେ କଥାରେ ବିଭାଘର ଭାଙ୍ଗିଯିବ; ଥରେ ଭାଙ୍ଗିଗଲେ ଆଉ ହେବ ନାହିଁ।"

ସେ କାନ୍ଥକୁ ଆଉଜି ମୁହଁ ଘୋଡ଼େଇ ପକାଇଲା। ବୟସ ଚାଳିଶିଟା ହବ କି ନାହିଁ, କେତେ ଦୁଃଖ ସେ ନ ସହିଲାଣି ଭଲା !

ଆପନ୍ନା ଆସି ସୁମିକୁ ନଚାହିଁ କହିଲା, "ମୁଁ ପରା ଥରେ କହିଲି, ତୋ ଭାଇନା ବଞ୍ଚିଥିବାଯାକେ ତୁ ଚିନ୍ତା କରିବୁ ନାହିଁ ବୋଲି... ଠିକ୍ ହେଇଯିବ, ମୁଁ ତା'ର ବନ୍ଦୋବସ୍ତ କରୁଛି। ତୁ ଗଲୁ, ଦି'କପ୍ ଚା କରିବୁ।"

ନୀରବରେ ଛାଇଟିଏ ଅପସରିଗଲା ଆଡୁଆଳକୁ। ଆପନ୍ନା ପୁଣି ମନକୁମନ ବିଡ଼ବିଡ଼ ହେଲା, "ଅଶୀ ହଜାର ଟଙ୍କା ତ ! – କି ଛାର କଥା ! – ଶାଳା, ଦେଖାଯାଏଗା !"

ଆପନ୍ନା ତା'ହେଲେ କ'ଣ ଚୋରି କରିବାକୁ ମନସ୍ଥ କରିଛି ? ସେ କ'ଣ ସରକାରୀ ତହବିଲରୁ ଟଙ୍କା ଉଠେଇଆଣି ବିଭାଘର କରିଦବ – ତା'ପରେ ଜେଲ୍ ଯିବା ଆଗରୁ ବିଷ ଖାଇଦବ ? ସେ କ'ଣ ଚୋରା ସୁନା ପାରିକରିଦେଇ ପାରିବ ? – ବମ୍ବେରୁ ଚାଲାନ୍ ହେଉଥିବା ଗୋଟାଏ ଥାକ ଚୋରା ହିରୋଇନ୍ କଲିକତାରେ ପହଞ୍ଚେଇ ଦେଇ ପାରିବ ?

କେମିତି ସେ ଏତେ ସହଜରେ ଅଶୀ ହଜାର ଟଙ୍କା ନେଇଆସିବ ବୋଲି କହିପାରୁଛି ? କିଛିଦିନ ତଳେ ଦିନା ସାହୁ ଆସିଥିଲା କୋରାପୁଟରୁ। ସେଇ ବୋଧେ କ'ଣ ଚୁକ୍ତି କରିଦେଇଛି। ମିଛ ବିଲ୍ ପାସ୍ କରିଦେଲେ ସେ ନିଜେ ହୁଏତ ଆଠଲକ୍ଷ ଟଙ୍କା ପାଇଯିବ। ସେଥିରୁ ଆପନ୍ନାକୁ ଅଶୀ ହଜାର ଦେଇଦେଲେ ତା'ର କିଛି ଯାଏଆସେ ନାହିଁ। ଆଉ ଏଠିସେଠି ଛକଜାଗାରେ ଦି'ତିନି ଜଣଙ୍କୁ ଦୁଇ ଲକ୍ଷ ଦେଇଦେଲେ ଶୂନ୍ୟେ ଶୂନ୍ୟେ ପାଞ୍ଚଲକ୍ଷ ଲାଭ ହେଇଗଲା। ଲକ୍ଷ୍ମୀ ଏମିତି ଆସନ୍ତି। ଏକଥା ଆପନ୍ନା ଦେଖିଆସିଛି, ତାକୁ ଅସ୍ୱୀକାର କରିଆସିଛି। କିନ୍ତୁ ଆଜି...

ଆମେ ଏକାଠି ଚା' ପିଇଲୁ ନୀରବରେ। ଆପନ୍ନା ଗୋଟାଏ ଆଖିରେ ସମଗ୍ର ସଂସାରକୁ ମୁକାବିଲା କରିବା ଭଙ୍ଗୀରେ ଚାହିଁଥାଏ।

ଯଦି ଆପଣା ସତକୁ ସତ ଏ ବୟସରେ ଚୋରି କରେ, ନିରୁପାୟ ହୋଇ ବାଧ୍ୟ ହୋଇ ଅପରାଧ କରେ...

ମୁଁ ତା' ମୁହଁକୁ ଚାହିଁଥାଏ । ଅକୁଳାଣ ସମୁଦ୍ରରେ ବୁଡ଼ି ଯାଉଥିବା ଖତରା କାଠର ଡଙ୍ଗାଟିଏ । ଧର୍ମନାବ କ'ଣ ଏମିତି ବୁଡ଼ିଯାଏ ? ଆପଣା ଶାସ୍ତ୍ରୀର ସରୁ ସରୁ ଡେଣାକୁ ଜାବୁଡ଼ିଧରି ଓହଳିଛନ୍ତି ଭଗବାନ୍ ନିରାଶ୍ରୟ ଶିଶୁଟିଏ ପରି । ଆପଣା ନ ବୁଡ଼ି ବଞ୍ଚିଥିବାଯାଏ ସେ ବଞ୍ଚିରହିବେ । ତାଙ୍କ ପିନ୍ଧିଥିବା ଅମଳାନ ଓଦା ହବ ନାହିଁ । ତାଙ୍କ ଚୂଳମାଳ ସୁନ୍ଦର ଦିଶୁଥିବ । ସେଥିପାଇଁ ତ ଆପଣା ଜୀବନସାରା ଖଣ୍ଡିଆଖାବରା ହୋଇ ସେ କାଠଡଙ୍ଗାକୁ ବାହିଆଣିଛି ଏଯାଏ । ଯଦି ଏବେ ବୁଡ଼ିଯିବ – ଯିବ । ଆପଣାର ସେଥିରେ କ'ଣ ଯାଏ-ଆସେ ?

ଆପଣାର ସ୍ୱର ଶୁଭିଲା; ସେ କହୁଛି, ''ଅପରାଧ ମୋ ପାଇଁ ନୂଆ କଥା ନୁହେଁ । ମୁଁ ତା' ଭିତରେ ବୁଡ଼ିରହିଛି; ସେଥିରେ ସାହାଯ୍ୟ କରୁଛି । ମୋ ଚାରିଆଡ଼େ ଅସଂଖ୍ୟ ଅପରାଧ – ମୋ ନିଶ୍ୱାସ-ପ୍ରଶ୍ୱାସରେ, ଭିତରେ ବାହାରେ, ମୁଁ ଜାଣିବାରେ, ମୋ ଅଣାୟତରେ ଯାହା ହେଇଯାଉଛି, ସେଥିରେ ମୋ ନିଜ ହାତର ପାଞ୍ଚ ଆଙ୍ଗୁଳି ବୁଡ଼ିବା କେବଳ ବାକି । ମୁଁ ସେତକ୍ କରିନାହିଁ । ଭାବିଛି, ମୁଁ ପାପମୁକ୍ତ – ବେକୁବ୍ !''

ସେ ବିଡ଼ବିଡ଼୍ ହେଉଥାଏ । ମୁଁ ସଜ ଉଣ୍ଡୁଥାଏ କେମିତି ତାକୁ ଚିଠି କଥା କହିବି । ତିଥ୍ ଘୁଞ୍ଚେଇଦେଲେ, ବାହାଘର ବୋଝ ଟିକିଏ ମୁଣ୍ଡଉପରୁ ଅପସରିଗଲେ ହୁଏତ ବୁଦ୍ଧି କାମ କରିପାରେ; ଏ ସଙ୍କଟ ପାରିହେବାକୁ ବାଟ ଦିଶିପାରେ ।

ମୁଁ ନିଜେ ଘୋର ଅସହାୟ ବୋଧକରୁଥିଲି । ମୁଁ ଆପଣାକୁ ଶ୍ରଦ୍ଧା କରେ ନିଶ୍ଚୟ, ତା' ଧୈର୍ଯ୍ୟକୁ ସମ୍ମାନ କରେ; କିନ୍ତୁ କ'ଣ ଭଲା ମୁଁ ଏତେବେଳେ କରିପାରିବି ? ଧନବଳ, ଜନବଳ, ଭାଗ୍ୟବଳ – କ'ଣ ଅଛି ଆମର ?

ଆପଣା ବୋଧହୁଏ ମୋ ଅବସ୍ଥା ବୁଝିପାରିଥିଲା । ସେଥିପାଇଁ ମୁଁ ଉଠିଆସିଲାବେଳେ ସେ ବାଟ ବଳେଇବାକୁ ଆସିଲା ନାହିଁ । ସୁମି ମଧ୍ୟ ଆସିପାରିଲା ନାହିଁ ତା' ବଢ଼ିପାଣି ଭିତରୁ ।

ମୁଁ ତଳକୁ ମୁଣ୍ଡ ପୋତି ପାହାଚ ଓହ୍ଲେଇଗଲାବେଳେ ପଛରେ ଉଶ୍ୱାସ ପାଦଶବ୍ଦ ଶୁଣି ଫେରି ଚାହିଁଲି ।

ଟୁଲି ଠିଆ ହୋଇଚି । ମୋ ଆଖିକୁ ପରିଷ୍କାର ଚାହିଁ କହୁଛି, ''ମଉସା, ଏ ଚିଠିଟା ଖୋଲା, ଯାକୁ ପଢ଼ିବ ଆଉ ପୋଷ୍ଟ ଅଫିସ୍‌ରେ ପକେଇଦବ ।'' ଲିଫାପା ଉପରେ ବରଘର ଠିକଣା ଦେଖି ମୁଁ ପ୍ରାୟ କଥାଟା ବୁଝିଗଲି ।

ଖୁବ୍ ଉଦାସ ଦିଶୁଥାଏ ଟୁଲି, କିନ୍ତୁ ଖୁବ୍ ସ୍ଥିର । ମୁହଁଟି ଶୁଖିଯାଇଥାଏ । ମୁଣ୍ଡବାଳ ଫୁର୍‌ଫୁର୍, କଲେଜ ଯିବା ଧଳା ଶାଢ଼ିଟି ସାଦା ଢଙ୍ଗରେ ପିନ୍ଧି ଠିଆହୋଇଥାଏ ।

ମୁଁ ନୀରବରେ ମୁହଁ ଫେରେଇ ଚାଲିଯିବାକୁ ଉଦ୍ୟମ କଲି । ଟୁଲି ପୁଣି କହିଲା, ''ଆଉ ଗୋଟେ କଥା ଅଛି ମଉସା ! ହୋମ୍ ଡିପାର୍ଟମେଣ୍ଟରେ ଚାଟର୍ଜୀ ସାହେବଙ୍କ ସଙ୍ଗେ ତୁମର ଜଣାଶୁଣା ଅଛି ?''

ମୁଁ ପାଟି ଫିଟାଇ କହିବାର ସୁଯୋଗ ମିଳିବାରୁ ଖୁସି ହେଲି – ''ହଁ, କ'ଣ ହେଲା କି ?''

''ସାତଦିନ ପରେ ଆସନ୍ତା ମଙ୍ଗଳବାର ଦିନ ତାଙ୍କ ପାଖରେ ମୁଁ ଇଣ୍ଟରଭ୍ୟୁ ଦେବାକୁ ଯିବି । ଷ୍ଟେନୋ-ଟାଇପିଷ୍ଟ ପାଇଁ ଦରଖାସ୍ତ ଦେଇଥିଲି; ଡକରା ଆସିଛି ।''

ମୋ ମୁହଁକୁ ସେ ଖୁବ୍ ଆଶାୟୀ ହେଇ ଚାହିଁଲା ।

ମୁଁ ବ୍ୟସ୍ତ ହୋଇ କହିଲି, ''ଆରେ, ଇଏ ଗୋଟାଏ କଥା । ମୁଁ ଆଜି ଯାଇ ତାଙ୍କ ସାଙ୍ଗେ କଥାବାର୍ତ୍ତା କରୁଛି ।''

ଟୁଲି ଧୀରେ ନମସ୍କାର କରି ଫେରିଗଲା । ମୁଁ ତାକୁ ଚାହିଁରହିଲି କିଛି ସମୟ । ମତେ ଜଳାର୍ଣ୍ଣବ ଦେଖାଗଲା ସେ ଢଳଢଳ ପାହାଚ ଆଉ ଘର । ମୁଁ ଫେରିଲାବେଳକୁ ସନ୍ଧ୍ୟା ନଇଁଆସୁଥିଲା । ବାଟରେ ଚାଟର୍ଜୀଙ୍କ ସହ କଥା ହେଲି । ଚିଠି ପକେଇଲି । ମୋ ଭିତରୁ ବାରମ୍ବାର କୋହ ଉଠିଆସୁଥିଲା ।...

ମୁଁ ଛବିଶ ତାରିଖଯାଏ ଆପନାକୁ ଦେଖିଯିବା ପାଇଁ ସାହସ କରି ପାରିଲିନାହିଁ । ମାସ ସରିଗଲା ।

ରବିବାର ସକାଳୁ ତା' ଘରେ ପହଞ୍ଚିଲାବେଳକୁ ଆପନା ଫୁଲଚାରା ଲଗଉଥିଲା । ମତେ ଦେଖି ତା'ର ସେ ପୁରୁଣା ଉଦାସ ହସ ଭିତରେ ଚାହିଁରହିଲା । ମୋ ଆଖିର ପ୍ରଶ୍ନକୁ ବୁଝିଗଲା ବୋଧହୁଏ । କହିଲା –

''ବିଭାଘର ଭାଙ୍ଗିଗଲା । – ଚାକିରି ହେଲା ନାହିଁ । ଚାଟାର୍ଜୀ ସାହେବ ନିର୍ମଳା ବାଗ୍‌ଚୀକୁ ବାଛିଲେ । – ଟୁଲି କହୁଚି ଏମ୍.ଏ.ରେ ନାଁ ଲେଖେଇବ ।''

ହାତରୁ ମାଟି ଝାଡ଼ି ଉଠି ଠିଆହେଲା ଆପନା ଶାସ୍ତ୍ରୀ ।

ପୁଣି ଚଡ଼କ ପଡ଼ି ବିଦୀର୍ଣ୍ଣ ହେଇଯାଇଥିଲା ପୁରୁଣା ବଜ୍ରାହତ ଗଛ । ଦୁକ୍‌ଦୁକ୍ କରୁଥିବା ଗୋଟିଏ ମାତ୍ର ସରୁ ଡାଳରେ ସବୁ ପତ୍ର ଝାଉଁଳିଯାଇଥିଲା । ତଥାପି ସେ ରେରେକାର କରୁଥିଲା ବଜ୍ରଧାରୀକୁ ।

ଆପନା ଶାସ୍ତ୍ରୀ ମୋତେ ଚାହିଁ ହସୁଥିଲା । ତା' ସରୁ ଡେଣାକୁ ଜାବୁଡ଼ି ଧରି ଭଗବାନ୍ ଓହଳିରହିଥିଲେ ଅସହାୟ ଶିଶୁଟିଏ ପରି ।

□□□

# ଯା'... ତତେ ମାଫ୍ କଲି

ମୋ ଜୀବନରେ ସବୁଯାକ ଭୟ ବୋଧେ ବାପାଙ୍କୁ କେନ୍ଦ୍ର କରି । ତାଙ୍କ ନାଁ ହୁଏତ ଏମିତି ଦଶ-ପଚିଶଟା ଜାଗାରେ ଡ଼ୁଣ୍ଡେଇଥିବି – ଦରଖାସ୍ତ ଦେଲାବେଳେ, ଭୋଟ ଦେଲାବେଳେ, କେହି ଗୁରୁଜନ ଚିହ୍ନି ନ ପାରି କାହା ପୁଅ ବୋଲି ପଚାରିଲାବେଳେ । – ନହେଲେ ବାପା ତ ବାପା – ସେ ଏକ ନାମବାଚକ ବିଶେଷ୍ୟ, ଖୁବ୍ ଆପଣାର ଅଥଚ ମାନନୀୟ; ଅଂଶେକ ଭିଡ଼ିଧରୁଥିବା ଅଂଶେକ ତଡ଼ିନେଉଥିବା ସେ ଶବ୍ଦ ! 'ବାପା' ମୋ ପାଇଁ ଏକ ବୋଧ – ସ୍ନେହର ଓ ଘୃଣାର, ପ୍ରେମ ଏବଂ ମୃତ୍ୟୁର । ସେ ମୋ'ଠଉଁ ସବୁମନ୍ତେ ବଡ଼ । ମୁଁ ଜନ୍ମ ହେବା ଆଗରୁ ସେ ମୋର ସମସ୍ତ ଆକାଶଠଉଁ ବଡ଼ । ସେଥିପାଇଁ ସେ ମୋର ସମ୍ଭ୍ରମବୋଧ ଓ ବିସ୍ମୟ, ବିନୟ ଓ ନ୍ୟୂନଭାବ, ଭୟ ଏବଂ ଘୃଣାର ମୂଳ ଉତ୍ସ ।

''ମୋ ମା' ମୋତେ ଚିହ୍ନେଇଦେଲାଦିନୁ ମୁଁ ତାଙ୍କୁ ହୁଏତ ଅଚିହ୍ନା ପାଇ ଡରିଛି । ତାଙ୍କ ଲୋମଶ ବୁକୁ, ଟାଣୁଆ ହାତ ମୋତେ ଅସୁସ୍ଥ ଲାଗିଛି । ତାଙ୍କ ଗେଲକୁ ମୁଁ ସୁଖ ପାଇପାରିନାହିଁ । ତାଙ୍କ ଟାଆଁସା ରୁଢ଼ ମୋ ଗାଲରେ, ପେଟରେ, କୋଡ଼ ସଂଧାରେ କଣ୍ଟା ଭଳି ଗଳିଯାଇଛି । ମୁଁ ବୋଧେ ସେଥିପାଇଁ ରଡ଼ି ଛାଡ଼ି କାନ୍ଦିଚି । ତାଙ୍କ ଜାମାପଟା ବହୁବାର ଓଦା କରିପକେଇଛି । ତଥାପି ସେ ମୋତେ ଖୁବ୍ ଭଲ ପାଆନ୍ତି; ପାଇଆସିଛନ୍ତି । ସେଥିପାଇଁ ପ୍ରମାଣ ଦେବା ଅନାବଶ୍ୟକ । ତଥାପି ମୁଁ ତାଙ୍କୁ ଡରିଛି ଏବଂ ଡରିଆସିଛି ଆଜିଯାଏଁ ।'' – ତା'ର ବି ପ୍ରମାଣ ଦେବା ଅନାବଶ୍ୟକ ।

ସେ ଏଇନେ ମୋ ପୁଅକୁ କାଖେଇ ବାଡ଼ିପଟେ ବାହାରିଗଲେ !

ମୋର ପର୍ବତ ପରି ଆଶଙ୍କାକୁ ଆଡ଼େଇ ଦେଇ, ମୋତେ ଚମତ୍କୃତ, ଅଭିଭୂତ, ଅବିନ୍ୟସ୍ତ କରିଦେଇ ନୀରବ ଚାଲିଗଲେ । ମୁଁ ବର୍ତ୍ତମାନ ମୋ ଆଖି, ମନ, ସ୍ମୃତି, ବୁଦ୍ଧି କାହାକୁ ବିଶ୍ୱାସ କରିପାରୁନାହିଁ ! ମୁଁ ମୋତେ ସୁଦ୍ଧା ବିଶ୍ୱାସ କରିପାରୁନାହିଁ !

ଏଇ ଯେ ଘରସାରା ଭାଙ୍ଗିରୁଜି ଛିନ୍ନଛତ୍ର ହୋଇ ପଡ଼ିଛି – ଏଇ କ'ଣ ସେଇ ନୀଳଦାଢ଼ି ଗଳ୍ପର କଥା କହୁଥିବା କଟା ମୁଣ୍ଡ ? ଏଇ କ'ଣ ସେଇ ନିଷିଦ୍ଧ ବସ୍ତୁ, ଯାହାକୁ ପଚିଶ ବର୍ଷ ତଳେ ମୁଁ ମୋ ବସ୍ତାନି ଭିତରେ ସ୍କୁଲକୁ ନେଇଯାଇଥିଲି ବୋଲି ବାପା ମୋତେ ଛାତ ପାଖରେ ଟେକିଧରିଥିଲେ ତଳେ ଛେଚିଦେବେ ବୋଲି ? ତାଙ୍କ ନିର୍ଘାତ ରଡ଼ି ମୋ ମର୍ମ ଦୁଲୁକେଇ ଦେଇଥିଲା ଏବଂ ମୁଁ ଠିଆରେ ମୁତି ପକେଇଥିଲି ? ସେଇ ରଡ଼ି ଏବେ ସୁଦ୍ଧା ମୋ ଦିଗ୍‌ବଳୟରେ ରାହୁମୁଣ୍ଡ ପରି କୁହାଟି ବୁଲୁଛି ! – ଏଇ କ'ଣ ସେଇ ଧେଡ଼ତେରି-ଆଉ-ଛୁଇଁବି ନାହିଁ ବସ୍ତୁ ?

ଘଟଣାଟା ବେଶୀ କିଛି ନୁହେଁ । 'ବାପି' ଏବେ ଭାରି ହିଜ୍‌ହିଜିଆ ଘାଣ୍ଟରା ହୋଇଛି । ତା' ହାତପାଆନ୍ତି ଯାହା ପଡ଼ିଲା, ଓଟାରି ଆଣୁଚି । ସେଦିନ ତା ମା'ର ସ୍ନୋ ଶିଶିଟାକୁ ସେମିତି ତଳେ ପକେଇଦେବାରୁ ଭାଂଗିଗଲା । ତା'ର ପାପୁଲିଯାକ ସାଲୁବାଲୁ ହେଇଯାଇଥିଲା ମେଞ୍ଚା ମେଞ୍ଚା ସ୍ନୋ ଏବଂ ରକ୍ତରେ ! ଖେଳନା ଦେଲେ, ସେ ଟୋକା ସେସବୁକୁ ଖାତିର୍ କରୁନାହିଁ । ସେ ବାରିଦଉଛି ଆମେ ତା'ଠଉଁ କ'ଣ ଲୁଚେଇ ରଖୁଛୁ । ସେ ତାକୁହିଁ ହଟୁଣୁ ଯାଇ ଭାଂଗୁଚି !

କିନ୍ତୁ ଏ ଜିନିଷ ସେ ପାଇଲା କେମିତି ? ଦିଅଁଘର – ତା' ଭିତରେ ଖଟୁଲି – ତା' ତଳେ ଖୋପ – ସେ ଭିତରେ କୋଥଳି – ତା' ଭିତରେ ବାପାଙ୍କର ଏଇ ଅମୂଲ୍ୟ ନିଧି ! ଏତେ ସଂଧିରୁ ସେ କେମିତି ପାଇଲା ! କେମିତି ଏ ବାଟଘରଯାଏଁ ଗୁରୁଣ୍ଡି ଗୁରୁଣ୍ଡି ତାକୁ ନେଇ ଆସିଲା ଏବଂ କେମିତି ତାକୁ ଛେଚି ଏଭଳି ଗୁଣ୍ଡ କଲା ? ତେବେ ବି, କାହିଁ କୁଆଡ଼େ କିଛି ବ୍ୟୁତ୍ପାତ ହେଲା ନାହିଁ ତ ! ବାପା ତ ଚିତ୍‌ମାଡ୍ ତଳେ ପଡ଼ି ମୂର୍ଚ୍ଛା ଗଲେନାହିଁ ! ନିର୍ଘାତ ରଡ଼ିରେ ଛାତ ଛିଣ୍ଡିପଡ଼ିଲା ନାହିଁ ! ମୋତେ ଛେଚିଦେବାକୁ ଛାତ ପର୍ଯ୍ୟନ୍ତ ଟେକିଧରିଲେ ନାହିଁ !! –

ମୁଁ କିନ୍ତୁ ଆଜିଯାଏଁ ଏଇଭଳି ଭାବିଆସିଥିଲି; ଅଥଚ ଏହା ଏତେ ସହଜରେ ଭାଂଗିଯାଇପାରେ, ଏତେ ସହଜରେ ସେ ପ୍ରଳୟ ପରି ମୁହୂର୍ତ୍ତଟି କାହାକୁ ଓଦା ନ କରି ନିଃଶବ୍ଦ ପାରିହୋଇଯାଇପାରେ – ଏ ଧାରଣା ମୋର ନଥିଲା !

– ଆଉ ସେ ଜିନିଷଟା ବି ଏଡ଼େ ଛୋଟ, ଶସ୍ତା ସାଧାରଣ ବସ୍ତୁଟାଏ ? ଇସ୍, ଏଇଟାକୁ ମୁଁ ଏମିତି ଡରି ଡରି ଦିହକ ବିତିଯାଇଥିଲା । ବାପି କେଡ଼େ ବଢ଼ିଆ କାମ ନ କଲା ସତେ ! ଶତ୍ରୁର ମୁଣ୍ଡ ହାଣି ଥୋଇଦେଲା ! ପାହାଡ଼ ପରି ପୁରୁଣା ଭୟଟାକୁ ଅନାୟାସରେ ଗୁରୁଣ୍ଡି ଗୁରୁଣ୍ଡି ଚୂର୍ଣ୍ଣୀଭୂତ କରିଦେଲା । ମୋତେ ଖୁବ୍ ଉଶ୍ୱାସ ଲାଗୁଛି; ଉଲ୍ଲସିତ ଲାଗୁଛି; ମୁକୁଳିଗଲା ପରି, ଗଡ଼ ଜିଣିଲା ପରି ଲାଗୁଛି !!

ଅଥଚ ଏମିତି କାନ୍ଦ ମାଡୁଚି କାହିଁକି ? – ଏ ଜିନିଷଟା ଭାଂଗିଗଲା ବୋଲି ? ଏଇଟା କ'ଣ ଏମିତି ଜିନିଷଟାଏ କି ? ୟା' ସହିତ ମୋର କିଛିହେଲେ ସମ୍ପର୍କ ନାହିଁ । ଖାଲି ଏତିକି ଯେ, ବାପା ୟାକୁ ଖୁବ୍ ଖାତିର କରୁଥିଲେ । ମନେହେଉଥିଲା ଯେ, ସେଇଟା ତାଙ୍କର ଏକମାତ୍ର ପୈତୃକ ସମ୍ପତ୍ତି । ତାକୁ କ'ଣ ସେ ସାଂଗରେ ଆରପୁରକୁ ନେଇଥାନ୍ତେ ? – ହୁଏତ ମୋତେ ହିଁ ଦେଇଥାନ୍ତେ ଯତ୍ନରେ ରଖିବାକୁ; ମୁଁ ପୁଣି ବାପିକୁ କେବେ ଦେଇଥାନ୍ତି ସେଇଭଳି ! ସେଇଟା ଏବେ ଭାଂଗିଯିବାଦ୍ୱାରା ତାଙ୍କ ଭିତରେ କ'ଣ ସବୁ ଭାଂଗିରୁଜି ଯାଇଥିବ । ବାପା ହୁଏତ ଏ ଦୁର୍ଘଟଣାରେ ମରିଗଲେ ନା' କ'ଣ । ନ ହେଲେ ସେ କ'ଣ ଏମିତି ଡୁନିପଡ଼ି ରହିଥାନ୍ତେ ? ସେ କାହିଁକି ଏବଂ କେମିତି ସହିଗଲେ ? ଏଡ଼େ ହୀନିମାନିଆ କାହିଁକି ହେଇଗଲେ ବାପା ? – ମୋତେ ଖୁସିରେ କାନ୍ଦ ମାଡୁଛି ନା ଦୁଃଖରେ କାନ୍ଦ ମାଡୁଛି, କହିପାରିବି ନାହିଁ; କିନ୍ତୁ ଭିତରଟା କେମିତି ଗୋଳିଘାଣ୍ଟି ହେଇ କାନ୍ଦ ମାଡୁଛି ।

ମୀରା ମୋ ସ୍ତ୍ରୀ । ସେ ଯାଇଛି ଛାଞ୍ଚୁଣି ଆଣିବାକୁ ଆଉ ଟିକେ ପରେ ସେ ଏସବୁ ଓଳେଇ ଫୋପାଡ଼ିଦେବ । ଖୁବ୍ ବୁଝାମଣା ଥିବା ମାଇକିନିଆ; ହେଲେ ବାପାଙ୍କ ବିଷୟରେ ତା'ର ଅନେକ ଅଭିଯୋଗ । ବାପାଙ୍କ ନିଦ ରାତି ଚାରିଟାକୁ ଭାଂଗିଯାଏ । ସେ ତାଙ୍କ ବଖରାରେ ଭଜନ ବୋଲନ୍ତି । ମୀରାକୁ ଚିଡ଼ି ମାଡ଼େ । ସେ କାନ ଉପରେ ତକିଆ ମଡ଼େଇ ଶୋଇବାକୁ ଚେଷ୍ଟାକରେ – ପାରେ ନାହିଁ; ଚିଡ୍‌ଚିଡ୍ ହୁଏ । ସକାଳୁ କପେ ଚା' ପାଇଁ ବାପା କଟାଳ କରନ୍ତି । ମୀରା ରାଗରେ କାନ୍ଦିପକାଏ; କିନ୍ତୁ କେବେହେଲେ ବାପାଙ୍କୁ ପଦେ ହୁଡ଼ି କରି କହିଦେଇ ନାହିଁ । ବାପା କ'ଣ କିଛି ଜାଣିପାରୁନାହାନ୍ତି ? ଜାଣୁଛନ୍ତି; ହେଲେ କରିବେ କ'ଣ ? ଦିନେ ଏବେ କହୁଥିଲେ, "ବୁଝିଲୁ ଦିନୁ, ଏ ଚା'ଟା ଦେହ ପାଇଁ ଖୁବ୍ ହାନିକାରକ । ମୋତେ ତ ସହଜେ ଭଲ ନିଦ ହଉନାହିଁ । ଏଣେ ଚା' ଟିକିଏ ପିଇଦେଲେ ଆଖିରେ ଆଉ କଷା ପଡୁନାହିଁ; ରାତି ପାହିଯାଉଛି । ଭାବିଛି, ଆଜିଠୁ ଚା' ଛାଡ଼ିଦେବି ।"

ମୀରା ଶୁଣି ଖୁସି ହୋଇଥିଲା । ମୁଁ କିନ୍ତୁ ସମ୍ଭାଳି ପାରି ନ ଥିଲି । ବୁଝିଗଲି ଯେ ଏଇ ଚା' ସାଂଗରେ ବାପା ଏ ସଂସାରକୁ ଛାଡ଼ିବା ଆରମ୍ଭ କଲେ । ଏଣିକି ସବୁ ଆସ୍ତେ ଆସ୍ତେ ଛାଡ଼ିଦେବେ ଶେଷ ନିଶ୍ୱାସଟି ପର୍ଯ୍ୟନ୍ତ । ଏଇ ବୋଧେ ସେଇ ଆଶଙ୍କିତ ପର୍ବ ଆରମ୍ଭ ହୋଇଗଲା । ମୀରା ତାଙ୍କୁ କଦାପି ଆପଣାର କରି ପାରିବ ନାହିଁ; ଅଥଚ ସେ ଖୁବ୍ ଦୟନୀୟ ଭାବରେ ଆପଣାର ହେବାକୁ ଚାହୁଁଥିବେ । ମୋତେ ବି ଶେଷକୁ ବାଛିବାକୁ ପଡ଼ିବ – ମାଇପରେ ଦାୟ ନା ବାପରେ ଦାୟ । ମାଇପ ରୁଷିବ, ହସିବ; ସେତିକିରେ ଅନ୍ଧାର ଆଲୁଅ ଓହ୍ଲାଇଆସିବ । ବାପର ରୁଷିବା ଯାହା, ହସିବା ତାହା; କିଏ ପଚାରେ । ଇସ୍, ମୋ ଭିତରେ କ'ଣ ତାଙ୍କ ପାଇଁ ଏମିତି ଗୋଟାଏ ବୈରଭାବ ଚିରକାଳ ଲୁଚିରହିଥିଲା । ମୁଁ ପରା ତାଙ୍କ ରକ୍ତରୁ ଜନ୍ମିଛି ।

ମୀରା ଆସି ଓଳେଇନେଇଗଲା । କେତେ କାଳ ଆମ ଘରେ ସାଇତି ରଖାହୋଇଥିବା ସେ ଛୋଟ ଜିନିଷଟି ବର୍ତ୍ତମାନ ଲେମ୍ବୁଚୋପା, କୋବିଡାଂଗ, ମାଛକଣ୍ଟାର ଅସ୍ପରାଗଦାକୁ ଚାଲିଗଲା । ମଶାଣି ବାଲିରେ ବୁଢ଼ା ମଣିଷର ହାଡ଼ ପରି ଏଣିକି ସେଗୁଡ଼ିକ ଖଣ୍ଡ ଖଣ୍ଡ ବସ୍ତୁ । କିଏ ସେଥିରୁ କୁଆଡ଼େ ଗଲା, ତା'ର ହିସାବ ରଖିବା ସମ୍ଭବ ନୁହେଁ । ମୀରାକୁ ଲୁଚେଇ ମୁଁ ଖଣ୍ଡେ ସେଥିରୁ ରଖିନେଇଛି । ସେଥିରେ ଇଂରାଜୀ ବର୍ଣ୍ଣମାଳାର ଚତୁର୍ଥ ଅକ୍ଷରଟି ରହିଯାଇଛି; ହୁଏତ ମୋ ନାଁର ଆଦ୍ୟ ଅକ୍ଷର ।

ମୋ ମୁଣାରେ ମୁଠାଏ ପଇସା ଝମ୍‌ଝମ୍ ହଉଚି । ସେ ସବୁ ମୋ ନିଜର ଉପାର୍ଜନ । ଏ ଚୌକି ଗାଲିଚା ମୋ ଉପାର୍ଜନ । ଯାହା ଏଠି ଆଖିକୁ ଦିଶୁଛି, ସବୁ ମୁଁ କିଣିଛି ମୋ ଉପାର୍ଜନରୁ । ସେଇ ଅର୍ଥରେ ଏ ଅକ୍ଷରଟି ମୋର ଜଣା ପଡୁନାହିଁ । ସେ ମୋ'ଠୁଁ ଢେର ବଡ଼; ମୋର ଅନେକ ଆଗରୁ ଆସି ଅପେକ୍ଷା କରି ରହିଥିଲା – ମୋ ଗୋସେଇଁବାପ ସମୟରୁ । ମୋର ଭାରି ଇଚ୍ଛା ହେଉଛି, ତାକୁ ସାଇତି

ରଖିବାକୁ । ଏମିତି କିଛିବର୍ଷ ପରେ, ଧର, ଯଦି ବାପି ଦିନେ ତା ବସ୍ତାନିରେ ସ୍କୁଲକୁ ନେଇଯିବ ସେ ଅକ୍ଷରଟିକୁ – ମୁଁ ନିଶ୍ଚୟ ରାଗିଯିବି, ମନା କରିବି, ଛଡ଼େଇ ଆଣିବି । ଯଦି ସେ ପୁଣି ଅମାନିଆ ହୁଏ, ମୁଁ କ'ଣ ତାକୁ ଛାତ ପାଖକୁ ଟେକିଧରିବି ତଳେ ଛେଚିଦେବି ବୋଲି । କେଜାଣି !

X X X X

ଶେଷକୁ ସେଇଟା ଭାଙ୍ଗିଗଲା ନାତି ଟୋକା ହାତରେ । ଭଲ ହେଲା ! ମୁଁ ଅଯଥା ତାକୁ ଛୋଟ ପିଲାଙ୍କ ପରି ଏମିତି କାହିଁକି ଏଯାଏଁ ସାଇତି ରଖିଥିଲି, ବୁଝିପାରୁନାହିଁ ।... ନନା ସେଇଟାକୁ ରେଙ୍ଗୁନରୁ ଆଣିଥିଲେ । କାହିଁ, କୋଉ କାଳ କଥା । ବୋଉ କହୁଥିଲା, କୁଆଡ଼େ ରେଙ୍ଗୁନ ରାଜ୍ୟର ଗୋଟେ ଡକ୍କଣୀ ମାଇକିନିଆ ନନାଙ୍କୁ ମେଣ୍ଢା କରି ରଖିବାକୁ ଗୁଣିଗାରେଡ଼ି କରିଥିଲା । ଆଉ ସେ ନେଳି ରଙ୍ଗର ଶିଶି ଭିତରେ ଜହର ରଖିଥିଲା, ବେଳ ପଡ଼ିଲେ ପିଆଇଦେବ ବୋଲି । ନନା କହୁଥିଲେ ଯେ, ସେ ନେଳି ଶିଶି ଭିତରେ ଗୋଟିଏ ଅପୂର୍ବ ବାସ୍ନା ଜିନିଷ ଥିଲା । ସେଇଟା ତାଙ୍କ ପାଇଁ ସାରା ବର୍ମା ଦେଶର ବାସ୍ନା । – ସେଠିକାର ସବୁ ପ୍ରକାର ସ୍ୱପ୍ନର ବାସ୍ନା...

ଏ ସବୁ କହିଲାବେଳେ ନନା ବିଭୋର ହୋଇଯାଉଥିଲେ; ବୋଉ କିନ୍ତୁ ଚିଡ଼ିଯାଉଥିଲା । ସବୁବେଳେ ଚାହୁଁଥିଲା ସେ ନେଳିଆ ଶିଶିଟିକୁ ଛେଚି ଗୁଣ୍ଡ କରିଦେବାକୁ । ତା'ର ସବୁବେଳେ ସନ୍ଦେହ ହେଉଥିଲା ଯେ, ହୁଏତ ବୁଢ଼ାକାଳେ ନନାଙ୍କୁ ସେ ଦେଶର ଡକ୍କଣୀ ମାଇକିନିଆ ଗାରେଡ଼ି ଲଗେଇ ଆକର୍ଷୁଚି । ନନା ହୁଏତ ଦିନେ ପୁଣି ରେଙ୍ଗୁନ ପଳେଇବେ । ...ଦୁହିଁଙ୍କ ଭିତରେ ଏମିତି ଛକା-ପଞ୍ଝା ମୁଁ ମୋ-ଦିହକଯାକ ଦେଖିଆସିଚି ।...

ଶେଷକୁ କିନ୍ତୁ ବୋଉର କାଳ ହେଇଗଲା । ନନା ତେଣିକି ଶୀତଦିନେ ଖରାପିଠିଆ ବସି କୋଥଳି ଫିଟେଇ ଗଙ୍ଗାତିଳକ ତୁଳସୀମାଳି କାଢ଼ିଲାବେଳେ ସେଇ ନେଳି ଶିଶିଟିକୁ ହାତରେ ଧରି ଅନେଇରହୁଥିଲେ; ଚାରିଆଡ଼କୁ ଟିକିଏ ଚାହାଁ-ଚାହାଁ ହୋଇ ଶୁଙ୍ଘିଦେଉଥିଲେ ।... କ'ଣ ବାସ୍ନା ସେ ବାରୁଥିଲେ କେଜାଣି ? ତା'ପରେ ଯେତେବେଳେ ରୋଗରେ ପଡ଼ିଲେ, ଜାଣିଗଲେ ଯେ ଆଉ ଉଠିବେ ନାହିଁ; ମୋତେ ପାଖକୁ ଡାକିଲେ । ନେଳି ଶିଶିଟି ତାଙ୍କ ତକିଆପାଖେ ପଡ଼ିଥାଏ । ମୁଁ ତାକୁ ଚାହିଁରହିବା ସେ ଲକ୍ଷ୍ୟ କଲେ । କହିଲେ, ''ଯତ୍ନରେ ରଖିଥିବୁ । ୟାକୁ ନେଇ ମୋ ଆତ୍ମାପକ୍ଷୀ କେତେ କାଳ ଖେଳା କରିଛି । ଏଥିରେ ଗୋଟାଏ ମହକ ଅଛି । ବେଳା ଜାଣି ବାହାରେ । ଶୁଙ୍ଘିଦେଲେ ରକ୍ତରେ ତାତି ଚାଲିଆସିବ । ବୁଢ଼ାଟାକୁ ଭେଣ୍ଡିଆ କରିଦେବ ସେ କୁହୁକ ବାସ୍ନା ।'' କହିଦେଇ ରୁଢ଼ ସାଲୁବାଲୁ ମୁହଁରେ ଅଳ୍ପ ହସିଦେଇଥିଲେ ।

ମୁଁ ବି ତାକୁ ବଡ଼ ସଂଭ୍ରମରେ ରଖିଲି । ଯେତେ ଶୁଙ୍ଘିଲେ କୌଣସି ବାସ୍ନା ପାଇଲି ନାହିଁ । କୋଉକାଳେ ସେଇଟା ଗୋଟାଏ ବିଦେଶୀ ଅତର ଶିଶି ହୁଏତ ଥିଲା । ଭାରି ସୁନ୍ଦରିଆ ଶିଶିଟିଏ । ମୁଁ ତାକୁ ରଖିଲି ଖାଲି ନନାଙ୍କ ଖାତିରରେ, ବାସ୍ନା ପାଇଁ ନୁହେଁ;

ମଝିରେ ମଝିରେ ତା ଠିପି ଫିଟେଇ କିଛୁ ଶୁଙ୍ଘୁଥିଲି । ଆଶା କରୁଥିଲି ଯେ, ହୁଏତ କୁହୁକ ବାସ୍ନା ରକ୍ତରେ ସଂଚରିଯିବ; ଭେଣ୍ଡିଆ ହେଇଯିବ ଦରବୁଢ଼ା; ଦେହ ଆଉ ମନ ଚେଙ୍ଗା ଲାଗିବ । ଥରେ ଦି'ଥର ଏମିତି ଶୁଙ୍ଘିଲାବେଳେ ଗୋଟାଏ ଝାଇଁମାରିନେବାର ଅନୁଭବ କରିଛି ।

...ଦିନେ ଏ ଟୋକାର ବୋଉ ନ ଥାଏ, ଦୀନୁକୁ ନେଇ ବାପଘର ଯାଇଥାଏ । ନୂଆ ଶୀତ ପଡ଼ିଆସୁଥାଏ । ରାତି ଅଧବେଳକୁ ନିଛାଟିଆ ଘରଟାରେ ମୋ ନିଦ ଭାଙ୍ଗିଯାଇଥିଲା । କେମିତି ଛଟପଟ ଲାଗିଲା । ମୁଁ ଘରସାରା ବଖରାରୁ ବଖରାକୁ ବୁଲିଲି । ପାଣି ପିଇଲି । ଆଲମାରି ଫିଟେଇ କିଛି ନ ଭାବି ଜିନିଷ ସବୁ ଏପାଖ ସେପାଖ କଲି । ହାତରେ ଏଇ ଶିଶିଟାକୁ ନେଇ ପୁରୁଣା ଅଭ୍ୟାସରେ ଠିପି ଫିଟେଇ ଶୁଙ୍ଘିଦେଲି ।... ତା'ପରେ ଅଦ୍ଭୁତ କଥା ସବୁ ଘଟିଥିଲା । ନିଶା ଲାଗି ଯାଇଥିଲା ମତେ । ମୁଁ ଉନ୍ମତ୍ତ ହୋଇଗଲି । ସେତେବେଳେ ହୁଏତ ମୁଁ ଯାହା ମନ ତାହା କରିପକେଇଥାନ୍ତି । ମୋ ଭିତରେ ହୁତ୍‌ହୁତ୍ ହେଇ କ'ଣଟାଏ ଜଳୁଥାଏ । ମୁଁ ବାରମ୍ବାର ଶୁଙ୍ଘିଦେଉଥାଏ ସେ ବାସ୍ନାଟାକୁ... ଓଃ, ମୁଁ ବୋଧେ ଫାଟିପଡ଼ିଥାନ୍ତି; ତରଳିଯାଇଥାନ୍ତି ଜଉପରି । ମୋତେ ଲାଗୁଥାଏ ଯେ, ମୁଁ ମୋର ନିଶ ଗଜୁରି ନଥିବା ଦିନଗୁଡ଼ିକୁ ଫେରିଗଲି । ମୋ ଦେହମୁଣ୍ଡ ଗବ୍‌ଗବ୍ ହେଲା । ମୁଁ ଦର୍ପଣ ଆଗରେ ବୟସର ସଂଯମକୁ ଆଡ଼େଇ ଥୋଇଦେଲି । ସେ ନେଳି ଶିଶିଟାକୁ ମୁଁ ଚାହୁଁଥିଲି ଚୋବେଇ ଦେବାପାଇଁ; ମୋ ଦେହସାରା ତାକୁ ଜଡ଼େଇଦେବା ପାଇଁ... ମୋର ମନେହେଉଥିଲା ସେଇ ବୋଧହୁଏ ସବୁ କାଳର ନାରୀ... ମୁଁ ବୋଧେ ସବୁକାଳର ପୁରୁଷ... ମୁଁ ଚାହୁଁଥିଲି ତାକୁ ବିଦାରିଦେବାକୁ; ମୋତେ ବିଦାରିଦେବାକୁ ।... କ'ଣ ସବୁ ହୋଇଗଲା ମୋ ଅଣାୟତ୍ତରେ, ମୁଁ ହିସାବ ରଖି ପାରିଲି ନାହିଁ । ପାହାନ୍ତା ପହରକୁ ମୁଁ ଚାଦର ଘୋଡ଼େଇ ହୋଇ ଶୋଇଲାବେଳେ ବାରିପାରୁନଥିଲି କେଉଁଟା ମୈଥୁନ, କେଉଁଟା ମୃତ୍ୟୁ ।...

ସେଇ ଦିନଠୁଁ ମୁଁ ସେ ନେଳି ଶିଶିଟିକୁ ଖୁବ୍ ଡରି ଡରି ଚଳୁଥିଲି, ଲୁଚି ଲୁଚି ଶୁଙ୍ଘୁଥିଲି; ଉନ୍ମତ୍ତ ହେଉଥିଲି । ମୁଁ ଚାହୁଁ ନଥିଲି ଆଉ କେହି ସେଇ ବର୍ମା ଅରଣ୍ୟର ବାସ୍ନା ଶୁଙ୍ଘିଦେଉ । ମୁଁ ସେଥିପାଇଁ ଦୀନୁ ଉପରେ ଚିଡ଼ିଯାଇଥିଲି ।... ଏଡ଼ିକି ବକଟେ ପିଲା; ସେ ଦୈବାତ୍ ସେ ବାସ୍ନା ଶୁଙ୍ଘିଦେଲେ ତା' ଭିତରେ ନିଆଁ ଗବଗବ ହବ; ତା'ର ନାଡ଼ି ଶିରା ଧମନୀ ସବୁ ଫୁଲିଉଠିବେ । ଝିଙ୍କକାଠି ପରି ଦେହସାରା ରୁମ ଟାଙ୍କୁରିଯିବ । ସେ କ'ଣ ସମ୍ଭାଳିପାରିବ ପ୍ରବଳ ଯୌବନର ଅରଣା ବାଘକୁ !... ସେଥିପାଇଁ ମୁଁ ତାକୁ ଟେକିଧରିଥିଲି ଛେଚିଦେବି ବୋଲି... ସେଇ ଦିନୁ କିନ୍ତୁ ସେ ତାକୁ ଆଉ ଛୁଇଁଲା ନାହିଁ; ତା' ମନରେ ଭୟ ପଶିଗଲା । ମୁଁ ବି ଅନେକ ଥର ଶୁଙ୍ଘିଲା ପରେ ଆଉ କିଛି ମହକ ପାଇଲି ନାହିଁ । ଦୀନୁ ବଡ଼ ହେଲା; ବାହା ହେଲା । ମୁଁ କେତେ ଥର ଭାବିଛି, ସେ ଶିଶିଟାକୁ ନାସଦାନି କରିଦେବାକୁ; ହେଲା ନାହିଁ । ଭାବିଛି,

ଇନ୍ଦ୍ରପକ୍ଷ ରାତିରେ ଦିନେ ସେ ଶିଶିଟାର ଇତିହାସ ଦୀନୁକୁ ବୁଝେଇଦେଇ ତାକୁ ସମର୍ପିଦେବି । ବେଳ ଜାଣି କେମିତି ସେଥିରୁ କୁହୁକ ବାସ୍ନା ବାହାରେ, କେମିତି ମତୁଆଲା କରିଦିଏ ଦେହକୁ ମନକୁ, ସବୁ ତାକୁ ସେତିକିବେଳେ ବୁଝେଇଦେଇଥାନ୍ତି; କିନ୍ତୁ ହେଲା ନାହିଁ । କେଜାଣି କାହିଁକି ମୁଁ ସେତିକି କରିପାରିଲି ନାହିଁ । ବୋଧହୁଏ ଲାଜ ମାଡ଼ିଲା... ଡର ମାଡ଼ିଲା ।... ଲୋଭ ଗ୍ରାସିଲା ।... ଏମିତି କ'ଣ ଗୋଟାଏ ନିଶ୍ଚୟ ହେଲା; ନ ହେଲେ କାହିଁକି ମୁଁ ତାକୁ କୋଥଳିରେ ପୂରେଇ ରଖିଥିଲି... ଭଲ ହେଲା, ନାତି ଟୋକା ଆଜି ତାକୁ ଭାଙ୍ଗିଦେଲା । ତା' ଭିତରୁ ସେ ଭୂତ ବାହାରିଗଲା । କଥା ସରିଗଲା ।... ଯାଃ... ଭଲ କଲା ଦୀନୁ ପୁଅ; ଭାଙ୍ଗି ଗୁଣ୍ଡ କରିଦେଲା ସେ ବେକୁବ୍ ଶିଶିଟାକୁ । ସେଥିରେ ଯେଉଁ କିମିଆଁ ଥିଲା, ତାକୁ ନିକାଶ କରିଦେଲା । ମୋତେ କେମିତି ଗୋଟାଏ ନିଃସ୍ୱ କରିଦେଲା, ଦୀନହୀନ କରିଦେଲା; କିନ୍ତୁ ତ୍ରାଣ କରିଦେଲା ଗୋଟାଏ ଦୁର୍ବାର ଫାଶରୁ । ମୋର ଏତେ ଉଲ୍ଲାସ, ଏତେ ତାତି କ'ଣ ହବ ଏ ଧୋକଡ଼ା ଦେହରେ ?... ଭଲ ହେଲା, ପାପ ଗଲା !!

ଦୀନୁ ଅପେକ୍ଷା ଦୀନୁପୁଅ କାହିଁକି ମୋତେ ବେଶି ଆପଣାର ଲାଗୁଛି, ମୁଁ କହିପାରିବି ନାହିଁ । ଦୀନୁ ଏକଦା ଏହାରି ଭଳି ମୋ କାଖରେ ବସି ମୋତେ ଅଧିକାର କରିଥିଲା; କିନ୍ତୁ ସେ କାଖରୁ ଓହ୍ଲେଇ ଆସ୍ତେ ଦୂରେଇଗଲା । ଆଉ ଜଣେ କିଏ ହୋଇ ମୋ ସାମ୍ନାରେ ଆସି ଠିଆହେଲା । ମୁଁ ତା' ଆଗରେ ଭରସି ପାରିଲି ନାହିଁ ଯାହା ମନ ତା' କହିବାକୁ, ତା' ଗାଲ ଉପରୁ ତା' ସ୍ତ୍ରୀର ସିନ୍ଦୂର ପୋଛିଦେବାକୁ; ତା' ଆଗରେ ନିଃସଙ୍କୋଚ ଲୁଗା ପାଲଟିଦେବାକୁ । ବାହାର ଅଚିହ୍ନା ଲୋକ ପଚାରିଲେ "ଘରେ ଦୀନବନ୍ଧୁ ବାବୁ ନାହାନ୍ତି" ବୋଲି ମୋତେ କହିବାକୁ ହେଲା । ମୁଁ ଖୁବ୍ ଏକୁଟିଆ ହୋଇଯାଇଥିଲି । ଏଇ ଟୋକା ଆସି ମୋର ସାହାପକ୍ଷ ହେଲା !

ପାଟି ଫିଟିବାରୁ ମୋତେ ଡାକିଲା "ଜେଜେ !" ମୁଁ ସ୍ଥିରକଲି ସବୁ ତାକୁ ଦେଇଦେବାକୁ । ମୋର ଇଚ୍ଛା, ସେ ମୋତେ ସ୍ପଷ୍ଟ 'ଜେଜେ' ଡାକିବାପୂର୍ବରୁ ମୁଁ କେମିତି ସବୁ ଦେଇସାରିଥାଆନ୍ତି କି !... ସେ ମୋ ଦୋସ୍ତ ! ମୁଁ ଯେତେବେଳେ ଦୀନୁକୁ ତା' ସାଇବି ପୋଷାକରେ ଦେଖି ଶଙ୍କିଯାଇଛି, ଏଇ ନାତି ଟୋକା ନିଃସଙ୍କୋଚରେ ତା' ଉପରେ ଚଢ଼ିଯାଇ ତାକୁ ଦେଇଛି ଦଳିଚକଟି ମଇଳା କରି । ମୁଁ ହିଁ ତାକୁ ସେମିତି କରିବାକୁ ଇଚ୍ଛା କରିଆସିଛି । ଭାରି ଖୁସି ଲାଗିଛି ମତେ; ଉପରକୁ କିନ୍ତୁ କହିଚି "ଆରେ ରେ, ବଣୁଆ କାହାଁକା, ହେମ୍ତି କାଇଁ ତା ଜାମାପଟା ଧୂଳି କରିପକଉଛୁ ?" ଦୀନୁ ଆଶ୍ୱସ୍ତ ହେଲା ପରି ମୋତେ ଚାହିଁଚି; ରକ୍ଷାପାଇବାକୁ ମୋର ଆଶ୍ରୟ ନେଇଛି । ମୁଁ ତା' ବୁକୁ ଉପରୁ ଘୋର ଅତ୍ୟାଚାରୀ ମୋର ଦୁର୍ଦ୍ଦାନ୍ତ ମିତ୍ରକୁ ଭିଡ଼ିଆଣି ବୋକ ଦେଇଛି ।

...ବୋଉ ମା' ପାଖରେ ତ ଆଉରି ମଜା ! ପୃଥିବୀରେ ଏମିତି କଥା ନାହିଁ, ଯାହା ଏ ଦୁର୍ଦ୍ଦଣ୍ଡ ପୁଅ ପାଖରୁ ତା' ମା' ଲୁଚେଇରଖିପାରେ । ତାକୁ ସକାଳ ଓଳି

ସମ୍ଭାଳିବା ପାଇଁ ମୋତେ ଅଧିକା କପେ ଚା’ ଲାଞ୍ଚ ମିଳିଛି । ତା’ ମୂତ ଧୋଇବା ଆଳରେ ମୋର ଜାମାଧୋତି ପ୍ରତିଦିନ ଧୂଆହେଇଯାଉଛି; ଧୂଆ ନ ହେଲେ ବି ମୁଁ ବାରିପାରୁନାହିଁ । ସେ ଟୋକାର ସବୁକଥା ମୋତେ ଅପୂର୍ବ ବାସିଲାଣି । ମୋର ଅଭ୍ୟାସ ବଦଳିଗଲାଣି । ମୁଁ କେବେ ଆଇସ୍‌କ୍ରିମ୍ ଖାଇ ନଥିଲି । ସେଥିରୁ ଗୋଟାଏ ଧରି ମୋ ବୁକୁ ଉପରେ ବସି ସେ ପାଟିରୁ ନାଳ ଗଡ଼ାଇଲାବେଳେ ମୋ ପାଟି ସୁଆଦ ସୁଆଦ ହେଇଯାଉଛି । ସେ ବି ଅଇଁଠା ଆଇସ୍‌କ୍ରିମ୍ ମୋ ପାଟିରେ ମାଡ଼ିଦଉଛି । ମୁଁ ଉହୁଁ ଉହୁଁ ହେଇ ଦି’ଥର ଚାପିଦଉଛି; ଭଲ ବି ଲାଗୁଛି । ତା’ପରେ କିନ୍ତୁ ମୋ ପାଟିରୁ ତା’ ପାଟିକୁ ସେ ଜିନିଷ ଯିବା ବିପଦ ! ମୋ ପାଟିରେ କଡ଼ା ପାନର ଗନ୍ଧ; ତା’ ପାଟିରେ ନିରୁତା କ୍ଷୀର ! ଏଣେ ପୁଣି ତା’ ମା’କୁ ମୁଁ ପ୍ରାଣେ ଭୟ କରେ । କେତେବେଳେ କୋଉ କଥା । ସେ କିନ୍ତୁ ମୋତେ ସବୁବେଳେ ତ୍ରାଣ କରିନିଏ । ଏ ନାତିଟୋକା ମୋ କବଚ । ସେ ମୋତେ ଢେର୍ କଥା ଶିଖାଇଲାଣି । କାହିଁ କେତେ ଯୁଗ ପରେ ମୁଁ ପୁଣି ତା’ ସଙ୍ଗେ ମିଶି ଗୁରୁଣ୍ଡୁଚି – କେତେବେଳେ କୁକୁର, କେତେବେଳେ ବିରାଡ଼ି, ଆଉ କେତେବେଳେ ଘୋଡ଼ା । ମୋର ଶିରା-ପ୍ରଶିରା ସ୍ନାୟୁକୁ ସେ ଟଙ୍କାରୁଚି । ମୁଁ ମାତିଯାଉଛି ତା’ ସାଙ୍ଗରେ । ମୋତେ ଏବେ ଦିନେ ହଠାତ୍ ଅନୁଭବ ହେଲା ଯେ, ସେ ନେଳିଆ ଶିଶିର କୁହୁକ ବାସ୍ନା ନାତିଟୋକା ଦେହରୁ ବାହାରୁଚି । ମୁଁ ତାକୁ ସେତେବେଳେ ଭିଡ଼ି ଧରିପକେଇଥିଲି । ସେ ଚିପି ହୋଇ ପାଟି କରି ପକେଇଲା । ମୁଁ ଖୁବ୍ ଡରିଯାଇଥିଲି । ତା’ ପରେ ମୋ ଜାବ ହୁଗୁଳିଗଲା । ମୋ ଦାନ୍ତପାଟି ଫିଟିଗଲା । ଓଃ, ସେ ଗୋଟାଏ ଅଦ୍ଭୁତ ଅନୁଭବ ।...

ଯାଃ, ଭଲ ହେଲା ! ଦୀନୁପୁଅ ସେ କୁହୁକ ବାସ୍ନାର ଶିଶିଟାକୁ ଭାଙ୍ଗିଦେଲା । ଯାଉ ଶଳା, ଅଲାଜୁକପଣିଆର, ଅନ୍ଧ ମତୁଆଲାପଣିଆର ସେ କିମିଆଁ ସବୁଦିନ ପାଇଁ ଶେଷ ହୋଇଗଲା । ମୋ ନାତି ଟୋକାର ବେକପାଖେ ଅଛ ଆମ୍ବିଳିଆ ଆଇଁଷିଆ ମଧୁରିଆ ବାସ୍ନା ତା’ଠଉଁ ଢେର୍ ଭଲ ।

X　　　　X　　　　X　　　　X

ଏ ଦୁର୍ଦ୍ଦଣ୍ଡ ଘାଣ୍ଟୁରା ଟୋକାଟାକୁ ପାରିହେଲାନାହିଁ ଜମା । ବୁଢ଼ାଙ୍କ କୋଥଳି କାଢ଼ି ବହୁ ପୁରୁଣା କାଳର ନେଳି ଶିଶିଟାକୁ କେମିତି ଆଣି ସେ ଛେଚି ଭାଙ୍ଗିଦେଲା ? ମୁଁ ଏବେ ସେଥିପାଇଁ କ’ଣ କରିପାରିବି ଯେ ! ଘରର ସହସ୍ରେ ଜଞ୍ଜାଳ କରିବି ନା ଏ ଟୋକାକୁ ସମ୍ଭାଳିବି । ତା’ ବାହାରେ କୋଉ ଏବେ ଅପୂର୍ବ ଜିନିଷଟାଏ ଭାଙ୍ଗିଗଲା ଯେ, ଭାସିଗଲା ସେଇଠୁ ।...

ସେ କୋଥଳିଟାରେ କ’ଣ ସବୁ ଆଳୁମାଳୁ ରଖିଚନ୍ତି କେଜାଣି ! ବୋଉ କିନ୍ତୁ ଦିନେ ଏ ଶିଶିଟା କଥା କହୁଥିଲେ । ଏଇଟାକୁ କୁଆଡ଼େ ତାଙ୍କ ଶଶୁର ରେଙ୍ଗୁନରୁ ଆଣିଥିଲେ । କୃଷ୍ଣପକ୍ଷ ରାତିରେ କୁଆଡ଼େ ତା’ ଭିତରୁ ଅପୂର୍ବ ବାସ୍ନାଟାଏ ବାହାରେ । ହଅଅ ! – ଯେତେ ସବୁ ପୁରୁଣାକାଳିଆ ଗାଲୁ ଗପ । ବାପାଙ୍କୁ ଦେଖିଲେ ମତେ

କାହିଁକି ଏତେ ଅସୁଖ ଲାଗେ, ମୁଁ କହିପାରିବି ନାହିଁ । ସେ ମୋତେ କେମିତି ଗୋଟାଏ ଶତ୍ରୁ ପରି ଦିଶନ୍ତି । – ଓଃ, ସେ ବୁଢ଼ାଟାର ଉଠିବା ବସିବା ଖାଇବା ଚାଲିବା, କଥା କହିବା ସବୁ ମତେ ବିଷ ପରି ଲାଗେ । ଖାଲି ଯାଙ୍କ ଖାତିରରେ ଯାଙ୍କ ବାପ ବୋଲି ସହିବାକୁ ହୁଏ । ଧର୍ମଶାସ୍ତ୍ର କହୁଛନ୍ତି ବୋଲି, ନ ହେଲେ ଲୋକନିନ୍ଦା ହବ ବୋଲି ମୁଁ ବୁଢ଼ାର ସେବା କରେ । ନହେଲେ ସେଇଟା କିଏ, ମୁଁ ବା’ କିଏ ? ଆମ ଯାଙ୍କର ତ ଭକ୍ତି କହିଲେ ନ ସରେ । କୁଆଡ଼େ ଗଲେ ଆସିଲେ ବାପର ପାଦ ଛୁଇଁ ଏମିତି ଦେଖେଇ ହେବାର କ’ଣ ଦରକାର ? ସେ ଅଲାଜୁକ ବୁଢ଼ା ବି ପାଦଯୋଡ଼ିକ କାଢ଼ି ଦେଖେଇ ଦେଇଥାଏ । ଇଏ କ’ଣ ବାପକୁ ସତରେ ଏତେ ଭକ୍ତି କରନ୍ତି ! ମୁଁ ତାଙ୍କୁ ଚିହ୍ନିନାହିଁ ! – ସେଥିରେ ଅଧେ ଭୟ, ଆଉ ଅଧେ ଲୋକଦେଖାଣିଆ ଆଡ଼ମ୍ବର ।

ଶୁଣେଇଲା ପରି କହନ୍ତି, “ଆହେ ଦେଖ, ବାପାଙ୍କ କଥା ଲାଗିଲା ।” – ନିଆଁରଡ଼ !

ନ ହେଲେ କହନ୍ତି “କିଛି ଅସୁବିଧା ହବ ନାଇଁ ବାପା, ମୀରା ସବୁ କଥା ବୁଝିବ । ନୌକର ଟୋକା ତ ଅଛି । ମୁଁ ଦି’ଦିନ ପରେ ଫେରିଆସିବି ।”

ମୁଁ ସବୁ ଶୁଣି ଉଁ କି ଚୁଁ କରେ ନାହିଁ; ବରଂ ନୌକର ଟୋକାକୁ ବଡ଼ପାଟିରେ ଡାକ ପକାଏ, “ଆରେ ବଟିଆ ! ବାବୁଙ୍କ ବାକ୍ସପତ୍ର ଗାଡ଼ିରେ ଚଢ଼େଇଲୁ ?”...

...ସେଦିନ ନିରୋଳା ଦି’ପହର ବେଳା । ଭାତ ଖାଇସାରି ମୁଁ ଶୋଇପଡ଼ିଥିଲି; ହଠାତ୍ ମୋ ନିଦ ଭାଙ୍ଗିଗଲା । ମୁଁ କାନେଇଲି । ଖୁବ୍ ଆସ୍ତେ ଖୁଡ୍ ଖାଡ୍ ଟୁଣ୍ଟାଣ ଶୁଭିଲା ଭିତର ଘରେ । ମୁଁ ନିଃଶବ୍ଦ ପାଦ ଚିପି ଯାଇ କବାଟପାଖେ ଅନେଇଲି । ବୁଢ଼ାର ମେଲା ପିଠିଟା ଦିଶୁଥିଲା । ସେ ବୋଧେ ଏଇ ଶିଶିଟାକୁ ଶୁଙ୍ଘୁଥିଲା; ସାମ୍ନାରେ କୋଥଳି ମୁଣା ଫିଟି ପଡ଼ିଥିଲା । କୁଲା ପରି ଏଡ଼େ ଓସାର ପିଠି ତୋଫା ଗୋରା ଦିଶୁଥିଲା; ଝାଳରେ ଚିକ୍‌ଚିକ୍ କରୁଥିଲା । ପବନ ଖାଇ ସାପ ଫୁଲିଲା ପରି ସେ ନିଶ୍ୱାସ ଭିଡ଼ିଲାବେଳେ ପିଠିଟା ଆବୁ ଆବୁ ହେଇ ଫଳିଯାଉଥିଲା । ମୁଁ ଡରିଯାଇଥିଲି । ମୋ ତଣ୍ଟି ଶୁଖିଗଲା, ...ମୋତେ ଲାଗିଲା, ବୁଢ଼ା କ’ଣ ଗୁଣିଗାରେଡ଼ି କରୁଥିଲା !... ତନ୍ତ୍ର ସାଧୁଥିଲା !... ସେଇଠୁ ବୋଧେ ସେ ହୁଂକାରି ଉଠିବ !... ଚୋବେଇ ଖାଇଯିବ ଯେ ଆଗରେ ପଡ଼ିଗଲା !... ମୁଁ ପାଇଖାନା କବାଟଟାକୁ ଡାଇକିନା ବନ୍ଦକରି ଦେଇ ସେଇ ଭିତରେ ଘଣ୍ଟାଏ କାଳ ଥରିଥିଲି !...

ଆଉ ଦିନେ ସେମିତି ମୋ ନିଦ ଭାଙ୍ଗିଯାଇଥିଲା । ରାତିଅଧ ହବ ନା’ କ’ଣ ! ବାହାରେ ରଣି ଫୁଲ ପରି ଜହ୍ନ ! ଚାରିଆଡ଼ ନିଃଶବ୍ଦ । ମୋ ଆଖିରୁ ନିଦ ଓହ୍ଲେଇଯାଇଥିଲା । ମୁଁ ଛଟପଟ ହେଲି ଶେଯ ଉପରେ । ଉଠି ଆସି ଝରକା ପାଖରୁ ଚାହିଁଲି ବାହାରକୁ; କାକର ଉହ୍ଲ ଥମ୍‌ଥମ୍ ଜହ୍ନ ଆଲୁଅକୁ । ମୋ ନାକରେ ବଉଳ ବାସ୍ନା ବାଜିଲା । ମୁଁ ଶୀତେଇଗଲି । ମୋ ଭିତର ବାହାର କେମିତି ହାଉ-ହାଉ ହେଇ ପବନ ବୋହିଲା... ଯେମିତି ବୋହିଥିଲା ସଞ୍ଜବେଳେ ଆମ ଘର ଛାତ ଉପରେ

ମୋର ନୂଆ ପିନ୍ଧାଶାଢ଼ି ଉଡ଼େଇ ନେଉଥିଲାବେଳେ, ଯେତେ ସମ୍ଭାଳିଲେ ମୁଣ୍ଡର ବାଳକୁ କେରା କେରା କରି ଦେଉଥିଲା ! ଏତିକିବେଳେ ମୁକ୍ତାପରି ଦାନ୍ତ କାଢ଼ି କଅଁଳ ନିଶ ତଳୁ କିଏ ଜଣେ ଛାତ ଉପରକୁ ଚାହିଁ ହସିଦେଇଥିଲା... ଠିକ୍ ସେମିତି ! ମୁଁ ଝରକା ବାଡ଼ଟାକୁ ଜାବୁଡ଼ି ଧରିଥିଲି । ଡୋରିଆ ପାଇଜାମା ପିନ୍ଧି ମେଲାଦେହରେ ମୁଦା ହୋଇ ଶୋଇଥିବା ସେ ନିଶ୍ଚଳ ପୁରୁଷଟିକୁ ଅପରିଚିତ ଢଙ୍ଗରେ ଚାହିଁଲି... ଏତେ କ'ଣ ମଣିଷ ଶୋଇବ ମ' ! – କହି ଚିଡ଼୍‌ଚିଡ଼୍ ହେଲି ।... ବୁଲିପଡ଼ି ତାଙ୍କ ପିଠିରେ ଜହ୍ନ ଆଲୁଅ ପଡ଼ିଥିବାର ଦେଖିଲି । ସରୁ ହେଇ ପିଠିଟିଏ । ତୋଫା ଗୋରା ନୁହେଁ । ଝାଳ ଚିକ୍‌ଚିକ୍ ନୁହେଁ । ନିଶ୍ୱାସ ନେଲେ ଆବୁ ଆବୁ ହେଇ ଫୁଲୁନାହିଁ ।... ମୋର ହଠାତ୍ ଇଚ୍ଛା ହେଇଥିଲା ନିଃଶବ୍ଦରେ ସେ କୋଥଳିରୁ ନେଳି ଶିଶିଟିକୁ ଚୋରେଇ ଆଣିବି ।... ଯାଙ୍କ ନାକ ପାଖରେ ଖୋଲିଧରିବି । ସେ ବାସ୍ନା ସାଙ୍ଗରେ ଜହ୍ନ ଆଲୁଅ ସେ ନିଶ୍ଚୟ ଶୋଷିନେବେ । – ତା'ପରେ କ'ଣ ହବଟି !...

ସେ ନେଳିଆ ଶିଶିଟାକୁ ମୁଁ ଥରେ ହାତରେ ଧରିଥିଲି । କିଏ ଆସୁଚି ଭାବି ଥୋଇଦେଇଥିଲି ଭୟରେ । ସତେ କ'ଣ ସେ ପୁରୁଣା ବାସ୍ନା ଶିଶିରେ ଥିଲା ! ଯାହା ଥାଉ, ନ ଥାଉ, ଗଲା ଏକାଥରକେ, ପାପ ଗଲା ! ଗୁଣିଗାରେଡ଼ି ତନ୍ତ୍ରମନ୍ତ୍ର ଲୋପ ହେଲା । ଭଲ ହେଲା । ନ ହେଲେ ଆମର ପିତୃଭକ୍ତ ପୁଅ ତାକୁ ଗଳାହାର କରି ବୁଲିଥାନ୍ତେ ! କିଏ ସମ୍ଭାଳିଥାନ୍ତା ଉତ୍ପାତ ।

X　　　　X　　　　X　　　　X

''ହଇ ରେ ସଇତାନ ଟୋକା, ତୁ କାହିଁକି ଜେଜେଙ୍କ ନେଳିଆ ଶିଶି ଭାଙ୍ଗିଲୁ ?''

''ହୋଇଏ ଜେଜେ ! ସେ କାଚଟାକୁ କାଇଁକି ବାଙ୍ଗିଲ ?''

''ରଇଥା, ତତେ ହାତଗୋଡ଼ ଛନ୍ଦି ଅଗଣାର ଯାଆଁଳା ଗଛରେ ବାନ୍ଧିଲେ ତୁ ଠିକଣାକୁ ଆସିବୁ ! ତୁ'ଟା କେଡ଼େ ଦୁର୍ଦ୍ଦଣ୍ଡ ହେଲୁ ସତେ ! କାଇଁ, ତୁ ସେ କେତେ କାଳର ଶିଶିଟିକୁ ଭାଙ୍ଗିଦେଲୁ ?''

ଫୁଟିଲା ପଦ୍ମପରି ମୁହଁରେ ପ୍ରଚଣ୍ଡ ଦୁଷ୍ଟାମିର ହସଟିଏ ଥିଲା ଏ ସମସ୍ତ ପ୍ରଶ୍ନର ଏକମାତ୍ର ଉତ୍ତର !

□□□

# ମହାତ୍ମା

କେଉଁ କାଳେ ମଣି ନାହାକ କ'ଣଟାଏ କହିଦେଇଥିଲା ବୋଲି ତାକୁ ଏବେ ଏମିତି ଫେଣେଇବାର କିଛି ଅର୍ଥ ନ ଥିଲା । ଆଉ କେତେ କଥା ଅବା କେତେ ଲୋକଙ୍କୁ ସେ ନାହାକପୁଅ କହି ନଥିଲା । ବାରଟା ରାଶି, ସତେଇଶଟା ନକ୍ଷତ୍ରକୁ ନେଇ କି ଖେଳ ସେ ଖେଳିଥିଲା ତା ଦିହକଯାକ ? ଅଦୃଷ୍ଟ ଫଳକୁ ଶୂନ୍ୟରୁ ତୋଳି ଆଣି ଏମିତି ଆଗରେ ଥୋଇଦେଉଥିଲା । ସେଥିରୁ ଭାଗେ ସତ, ଆଉ ଭାଗେ ମିଛ ବୋଲି ବୁଢ଼ାମାନେ କହୁଛନ୍ତି । ମଣି ନାହାକକୁ ପ୍ରଚଣ୍ଡ ଡହରା କହିଦବାକୁ ସେମାନଙ୍କର ଇଚ୍ଛା କେବେ ହୁଏନାହିଁ । ଯୁଗ ଜାଣି ଅନାଚାର ହେବାରୁ ଶାସ୍ତ୍ରସବୁ ସତ୍ୟ ଫଳୁନାହାନ୍ତି । ସେଥିରେ ମଣି ନାହାକର ଦୋଷ କ'ଣ ? – ତା'ର କେତେ କଥା ପାଶୋର ହୋଇଗଲାଣି; ହେଲେ କିଶୋର ମିଶ୍ରକୁ ଏଗାର ବର୍ଷବେଳେ ଯାହା କହିଥିଲା, ଏବେ ଭାରି ଜୋର ସେକଥା ଉଠିଛି । ତାଳୁକା ରୋଗ ହୋଇଥିବାରୁ ମଣି ନାହାକର ସବୁକଥା ନାକବାଟେ ବାହାରିଯାଉଥିଲା । ଲୋକେ ଅଭ୍ୟାସରେ ତାକୁ ବୁଝିଯାଉଥିଲେ । ସେଦିନ ଜାତକ କୋଷ୍ଠୀ ଲେଖିଦେଇ ସଳଖିହେଇ ବସିଲା ମଣି ନାହାକ । ଦଶଦିଗପାଳଙ୍କୁ ଚାହିଁ ଧତ୍ୟପାଠ କଲାପରି କହିଥିଲା – ''ଏଁଇଟାଁ ମାହାଁତ୍ମାଁ କୋଁଷ୍ଠାଁ । ବୃଷଁ ଲଁଗ୍ନଁକୁଁ ଲଁଗ୍ନେଁ ଗୁଁରୁଁଚନ୍ଦ୍ରଁ ଯୋଗଁ, ନାହିଁ ନଥିବାଁ ଯୋଗଁ – ଯେଁ କେଁଶ୍ୱରଁ ମିଶ୍ରେଁ ମାହାଁତ୍ମା ହେଁବେଁ ।''

ସରୁ ମୁହଁଟିଏ କାଢ଼ି, ମାଇଅଁଶିଆ ଡେଙ୍ଗା ଡାହାଳିଆ ଟୋକା କିଶୋର ମିଶ୍ର ସେତେବେଳେ କିଛି ବୁଝି ନଥିଲା । ତା' ଡାକ-ନାଁ ନେଉଳି । ମଣି ନାହାକକୁ ଭୋଜନୀ-ଦକ୍ଷିଣା ଦେଇ ତା' ପାଖଆଖ ଲୋକେ ନେଉଳିକୁ ଅଧିକ ଟିକିଏ ଆଦର ଗୌରବ କରିବାର ତା'ର ମନେଅଛି । କଥା ଆସ୍ତେ ଆସ୍ତେ ମଉଳିଗଲା । ଯା ଭିତରେ କୋଡ଼ିଏ ବର୍ଷ ମଧ ପାରିହେଇଗଲା । ନେଉଳି ମିଶ୍ର ସପ୍ତମ ପାରିକରି ଚାଟଶାଳୀ କଲା; ବାହା ହେଲାନାହିଁ; କେହି ଝିଅ ଦେଲେନାହିଁ । ଖାଇବାକୁ ଅଣ୍ଟିଲା ନାହିଁ ବୋଲି ଶୁଖୁଆ ବେପାର କଲା । ଚମ୍ପୀ ଧୋବଣୀକୁ ସାଙ୍ଗରେ ନେଇ ସହରକୁ ହପ୍ତାରେ ଥରେ ଶୁଖୁଆ ବିକିବାକୁ ଗଲା । ଚମ୍ପୀ ନେଉଳି ମାଷ୍ଟର ବେପାରରୁ ଦି'ପଇସା ପାଇବାରୁ ଆଉ ଲୁଗା କାଚିଲା ନାହିଁ । ମିଶ୍ରଘର ବଡ଼ ବିସ୍ତାର ଡିହ; ସେଇଠି ଆସି ଚାଳିଘର କରି ରହିଗଲା । ଲୋକେ ହାଉହାଉ ହେଲେ । ନେଉଳି ମିଶ୍ରେ ଗାଁ ଜଯେଶ୍ୱରଙ୍କ ମନ୍ଦିରକୁ ଶୁଖୁଆ ବେପାର ପଇସାରୁ କିଛି ଦେଇଦେଲେ । ଏମିତି ଏମିତି କାଳ ବିତିଗଲା ।

ଏବେ କିଏ କଥା ଉଖୁରେଇଦେଲା ଯେ, ମଣି ନାହାକ କହିଥିଲା କିଶୋର ମିଶ୍ର ମହାତ୍ମା ହେବ ବୋଲି । ପଞ୍ଚାଏ ଟୋକା ତାସଖେଳ ପାଖରେ କଥା ଶୁଣି ହସି ହସି ଲୋଟିଗଲେ । ଶୁଖୁଆ ବେପାରୀ ନେଉଳି ମିଶ୍ର, ନାହାକ ମାଇଗୁଲିଆ ଚାଟଶାଳୀ ମାଷ୍ଟ, କୁଆଡ଼େ ମହାତ୍ମା । ଚାରିଦଉଡ଼ିକଟା ଏ ଟୋକାଗଣ୍ଡାକ ଯାହା ମନ ତାହା କଲେ । କେହି ତାଙ୍କୁ ବାରଣ କରିବାକୁ ନାହିଁ । ଏମାନଙ୍କୁ ଶୂନ୍ୟରୁ କେମିତି ଟଙ୍କା ମିଳିଯାଏ । ଏମାନେ ଅଧେ ଦିନ ରାଜଧାନୀରେ ବୁଲିଆସିଲେ ତେଣିକି ଅଧେ ଦିନ ଭୋଜିଭାତ କରି, ନିଶାପାଣି କରି ଉତ୍ପାତ ହେଉଥାନ୍ତି । ନିଶଦାଢ଼ି ରଖି ଚୌରସ ବାଘା ଭେଣ୍ଡା ସବୁ; ତେବେ କୌଣସି କାମକୁ ଯୋଗ୍ୟ ନୁହଁନ୍ତି । ମଉଜ କରିବା ତାଙ୍କ ପେଶା । ସେମାନେ ଯେମିତି ଶୁଣିଲେ ନେଉଳି ମିଶ୍ର କଥା, ତାଙ୍କର ଭାରି ମନ ଟେକିଲା । ଚାନ୍ଦା ପାଇଁ ପୂଜାପର୍ବ କିଛି ନଥିଲା ସେତେବେଳେ । ସେମାନେ ଜମ୍ଭେଶ୍ୱର ବେଢ଼ା ବେଦୀ ଉପରେ ବସି ରାତି ଘଡ଼ିଏ ଯାଏଁ କ'ଣ ସବୁ କଥା ହେଲେ, ମଝିରେ ମଝିରେ ଖାଲି ହୋ-ହୋ ହସ ଶୁଭୁଥାଏ । ଗଛରୁ ଫଡ୍‌ଫଡ୍ ବାଦୁଡ଼ି ଉଡ଼ିଯାଉଥାନ୍ତି ! ତା' ଉତ୍ତାରୁ ସେମାନେ ଗୋଛା ହେଇ ଦି'ଘଡ଼ି ଅନ୍ଧାର ଭିତରକୁ ନୀରବ ପଶିଗଲେ ।

ମିଶ୍ର ଘର ଏମିତି ଟିକିଏ ନିଛାଟିଆ । ତା' ବାହାରେ ନେଉଳି ମିଶ୍ର ନିଜେ ଭାରି ନିଧୋଡିଆ ଅଣପୁରୁଷିଆ ମିର୍ମିଆ ମଣିଷଟିଏ । ରାତିରେ ସେ ଅଞ୍ଚଳ ମଡ଼େଇ ହେଇପଡ଼ିଲା ପରି ଲାଗେ । ମଝିରେ ଖଣ୍ଡେ ଗୋହିରି ଘୁମଉଥାଏ । ଗୋହିରି ଆର ପାଖେ ଜମ୍ଭେଶ୍ୱର । ତେଣିକି ମଶାଣି । ପଞ୍ଚାକଯାକ ଟୋକା ଦୁଆରେ ପହଞ୍ଚିବା ଆଗରୁ ନେଉଳି ମିଶ୍ର ହାତରେ ଲଣ୍ଠନଟିଏ ଧରି ଠିଆହେଇଯାଇଥାଏ । ଅଣଓସାରିଆ ଧୋତିଟିଏ ଆଣ୍ଠୁ ତଳକୁ ଅଣ୍ଟୁନଥାଏ । ମେଲା ଦେହ । ଥୋଡ଼ି ଉପରେ ନରମା ନରମା ଭରୁଭୁରିଆ ଦାଢ଼ି । କାନ୍ଧ ଉପରକୁ ଲମ୍ବା କହରା ବାଳ । ଗୋଟାଏ ଟୋକା ଫିସ୍‌ଫିସ୍ ତା' ପାଖ ଟୋକାକୁ କହିଲା, "ଦେଖିଲୁ ତ ଚେହେରା ? — ଶଳା ଜମିଯିବ ।" ଅନ୍ଧାରରେ ସେ ଦୁହେଁ ଚୁମୁଟାଚୁମୁଟି ହେଇ ବୁଝିଗଲେ । ତୁନି ପଡ଼ିଗଲେ ।

"ନମସ୍କାର ସାରେ" !...

"ନମସ୍କାର ! ନମସ୍କାର" — ଅବିଶ୍ୱାସରେ, ଭୟରେ, ଶିଷ୍ଟାଚାରରେ ଲଣ୍ଠନଟିଏ ଉପରକୁ ଉଠାଇ ପ୍ରତିନମସ୍କାର ଜଣାଇଲା !

ସେ ପାତଳ ମୁହଁ ଆଉ ନୁଆଁଣିଆ ଆଖିରେ ନୀରବ ପ୍ରଶ୍ନଟିଏ !

"କଥା କ'ଣ କି ସାରେ" — ନେତା-ଟୋକା ଆରମ୍ଭ କଲା, "ଆମେ ଗୋଟେ ଜରୁରୀ କାମରେ ଆସିଛୁ । ଘର ଭିତରକୁ ଚାଲନ୍ତୁ ସାରେ ! ସେଇଠି ବସି କଥା ହେବା ।"

ନିରୁପାୟ ଲଣ୍ଠନଟିକୁ ଆଡ଼ଘଷା ଦେଇ ଗୁଡ଼ିଏ ନିଧଡ଼କ ଦୃପ୍ତ ପାଦ ଘର ଭିତରକୁ ଏରୁଣ୍ଡିବନ୍ଧ ଡେଇଁ ପଶିଗଲେ । ଖୁବ୍ ଗୋଟାଏ ଘରୋଇ ଘରୋଇ ଅଭିନୟ କାମରେ, କଥାରେ, ଆଚରଣରେ । — "ଆପଣଙ୍କୁ କେତେ କ'ଣ କହିଥିଲେ ମଣି

ନାହାକ, ଆଜି ତାହା ପ୍ରଘଟ କରିଦେଲା ହାଇଦର୍ । ଆପଣ ସାରେ, ଏମିତି ଗୁପ୍ତରେ ଅଛନ୍ତି ବୋଲି ଆମକୁ ଜଣାନାହିଁ ।''

''ସେଇ ହେଲା ବଡ଼ଲୋକର ଲକ୍ଷଣ । ସେ କ'ଣ କହିବୁଲୁଥାନ୍ତେ ନା କଣ !'' କଥାର ମୋଡ଼ ବୁଝି ନପାରି ନେଉଳି ମିଶ୍ର ଭୂରୁ କୁଞ୍ଚେଇ ଉଠି ଠିଆହେଲା ! ହାତରେ ଲଣ୍ଠନ । ଜଣେ ତା'ଭିତରୁ ହାମୁଡ଼ି ପଡ଼ି ନେଉଳି ମିଶ୍ର ପାଦ ଉପରେ ମୁଣ୍ଡ ରଖି କହିଲା, ''ଆପଣ ହେଉଛନ୍ତି ଗୁପ୍ତ ମହାତ୍ମା: ଆମକୁ କପଟ କରି ଲୁଚିଛନ୍ତି ।'' ଲଣ୍ଠନ ତଳର ଚକା ଅନ୍ଧାର ଭିତରେ ଛ'ଜଣ ତାଙ୍କୁ ଘେରି ତଳେ ପଡ଼ିଗଲେ । ସମସ୍ତେ ସମସ୍ୱରରେ କହୁଥାନ୍ତି 'ଆପଣ ମହାପୁରୁଷ, ଆପଣ ମହାତ୍ମା, ଆପଣ ଜ୍ଞାନୀ... ।' ପେଣ୍ଡାଯାଏଁ ସାଲୁବାଲୁ ଅଣ୍ଡିରା ହାତ ବାଜି ଦେହସାରା ଶୀତେଇଗଲା । କେତେ ଉଷୁମ ସେ ହାତଗୁଡ଼ାକ । ନେଉଳି ଲଣ୍ଠନ ଆଲୁଅରେ ସାମ୍ନା କାନ୍ଥକୁ ଚାହିଁରହିଲା । ମଣି ନାହାକ କଥା ତା'ର ସବୁବେଳେ ମନେଥିଲା । ସେ କେବଳ ମଝିରେ ମଝିରେ ହସି ଦେଇ କଥାଟାକୁ ଆଡ଼େଇଦେଉଥାଏ ।

ନେତା ଟୋକାଟା ଭୁସ୍‌କିନା ଉଠି ବସିଲା । ତା' ଦେଖାଦେଖି ବାକି ସମସ୍ତେ ଉଠି ବସିଲେ । ନେଉଳି ମିଶ୍ର ଲଣ୍ଠନଟିକୁ ମଝିରେ ଥୋଇଦେଇ ହାତ ମକଚି ଠିଆ ହେଇଥାଏ; ଜାଣିପାରୁନଥାଏ କ'ଣ କରିବ । ତା' ତୁଣ୍ଡକୁ କଥା ମଧ୍ୟ ପଇଟୁ ନଥାଏ । ''ସାରେ, ଶୁଣନ୍ତୁ ! ଆମର ଏଇଠି ଗୋଟେ ମଠ କରିବା । ଆପଣଙ୍କ ପାଇଁ ଗେରୁ ବସ୍ତ୍ର ଆଣିବା ! ଧୁନିକାଠ ଆଣିବା । ଆପଣ ଗେରୁଆ ପିନ୍ଧି ବସିଥିବେ, ବାକି ଆମେ ଯେତେ ଆପଣଙ୍କ ସେବକ ସବୁକଥା ବୁଝିବୁ । କାଲିଠୁ ଚାନ୍ଦା ଆଦାୟ କରାଯିବ । ଅନାଦାୟେ ଧାନଚାଉଳ, ଡାଲି ଯେ ଯାହା ପ୍ରସାଦ ପାଇଁ ଦେଲା । ଏଠି ପ୍ରତିଦିନ ପ୍ରସାଦ ଉଠିବ । ଆପଣ ଖାଲି ମୃଦୁ ମୃଦୁ ହସିବେ; ଯେ ମୁଣ୍ଡିଆ ମାରିଲା, ତାକୁ ହାତ ଟେକି ଆଶୀର୍ବାଦ କରିବେ । ଆପଣଙ୍କ ଚେହେରା ଦେଖିଲେ, ଯେ ହେଲେ ବିଶ୍ୱାସ କରିଯିବ ଯେ, ଆପଣ ମହାତ୍ମା । ଖାଲି ଗାଁ'ବାଲାଙ୍କୁ, କାଲି ଦି' ଚାରି କଥା କହି ଆମେ ବୁଝେଇଦେବୁ । ମହାତ୍ମାମାନଙ୍କ ପାଇଁ ଦି'ଚାରିଟା ଅଦ୍‌ଭୁତ କଥା ନ କହିଲେ ନ ଚଳେ । ଆମେ ଭାବିଛୁ କହିବାକୁ ଯେ ଆଜି ରାତିରେ ଆପଣଙ୍କୁ ସ୍ୱୟଂ ଶିବ ଆସି ପ୍ରସନ୍ନ ହୋଇ ବର ଯାଚିଦେଲେ । ଘର ଆପଣଙ୍କର ଆଲୋକମୟ ହେବାର ଆମେ ଦେଖିଲୁ । ଆପଣଙ୍କ ଦୁଆରେ ପାଞ୍ଚହାତ ଫଣା ଥିବା ଦୁଇଟା ନାଗ ରାତିରେ ଖେଳା କରୁଥିବାର ଆମେ ଦେଖିଲୁ ! ସବୁଦିନର ଶୁଖୁଆ ଗନ୍ଧ କୁଆଡ଼େ ଉଭେଇଗଲା; ଖାଲି ଚନ୍ଦନ କର୍ପୂର ମହମହ ବାସିଲା । ଏମିତି ଏମିତି ଦି' ଚାରି କଥା କୁହାଯିବ । ଏସବୁ ମିଛ ବୋଲି ଆପଣ ଭାବନ୍ତୁ ନାହିଁ । ଆପଣ ନିଜେ ଏସବୁ ବିଶ୍ୱାସ କରିଯାଆନ୍ତୁ । ଇଏ କ'ଣ ଘଟିପାରନ୍ତା ନାହିଁ କି ? – ଆପଣ ମହାତ୍ମା ବୋଲି ନିଜକୁ ଜାଣିପାରୁନାହାନ୍ତି ବୋଲି ସିନା ।''

ଆଉ ପାଞ୍ଚଜଣ ମଟମଟ ଅନେଇଥାନ୍ତି !

ନେଉଳି ମିଶ୍ର ବିହ୍ୱଳ ହୋଇ ମିଟିମିଟି ଅନେଇ ଥାଏ । କ'ଣ ଏସବୁ ଏମାନେ କହୁଛନ୍ତି ? – ସେ କଥାକୁ କୌତୁକ ମଣି ହସିପକେଇଲା । ତା ପାଟିକୁ କଥା ଆସିଗଲା ।

''ଜାଇଁଲ ଭାଇ ! ତମେ ସବୁ ଅଭିଲା କଥା କହୁଛ । ମୁଁ ପୁଣି କି ଛାର ମଣିଷ; ସେଥିରେ ତମେ ବସିଛ ମତେ ମହାତ୍ମା କରି ଲୋକହସା କରେଇବ । ଲୋକେ କ'ଣ ଏମିତି ଓଲା ହେଇଛନ୍ତି ଯେ, ଏଥିରେ ଭଳେଇଯିବେ; ରାଗରେ ଆସି ଘରେ ନିଆଁ ଲଗେଇଦେବେ । ଏସବୁ ମାଡ଼ ମୁଲେଇବା କଥା । ମୋ ଦୁଃଖରେ ମୁଁ ଅଛି । ମତେ ଆଉ ଏ ଜଞ୍ଜାଳ ଭିତରକୁ ଭିଡ଼ ନାଇଁ । ଏ ସିନା ତମ ପାଇଁ ଖେଳ; ମୋ ପାଇଁ କାଳ !''

''ଯାଉନ ସାରେ ! – ଏ ଗୋଟେ କଥା; ଏମିତି କ'ଣ ଆପଣ ଲାଜେଇଲେ ଆମେ ଛାଡ଼ିଦେବୁ ? – ଆମେ ପରା ସାରେ, ସବୁ ଠିକ୍ କରି ଆସିଚୁ । ଆପଣ ରାଜି ହେବେନା ! ନହେଲେ''... ହଠାତ୍ ଗମ୍ଭୀର, ହଠାତ୍ ଦରହସାରେ... ''ଭାରି ଅଡୁଆ ହେଇଯିବଟି ।''

ସେଇ ମୁହୂର୍ତ୍ତକର ଭ୍ରୂକୁଟୀକୁ ନେଉଳି ମିଶ୍ର ଲଣ୍ଠନ ଆଲୁଅରେ ଦେଖିଲା ଏବଂ ବୁଝିଗଲା । ଏ ଜିନିଷ କିଛି ସରଳ ବ୍ୟାପାର ନୁହେଁ ।

ନେତା ଟୋକା ବାଆଁରେଇଲା ପରି କହିଲା, ''ବହୁତ ଭକ୍ତ ଆପଣଙ୍କ ପାଖେ ଯାହା ଦାନ-ଦକ୍ଷିଣା ଦେବେ, ସେଥିପାଇଁ କିଛି ଚିନ୍ତା ନାହିଁ । ମୁଁ ନିଜେ ତା ଦାୟିତ୍ୱରେ ରହିବି ! ଆମେ ଛ'ଜଣ ଆପଣଙ୍କୁ ଛାଇପରି ଘେରିଥିବୁ । ନା' କ'ଣ କହୁଛ ଭାଇ ?''

''ସେଥିରେ ସନ୍ଦେହ ଅଛି ନା କ'ଣ ? – ଆମେ ଏଠୁ ଲାଗିଲୁଣି ବୋଲି ଜାଣ ।'' – କହିଲା ଜଣେ । ବାକି ସବୁ 'ହଇହଇ' ହେଲେ ।

''ଆପଣ ଜାଣି ମହାତ୍ମା ଲୋକ । ଆପଣ ଜାଣି ଆମଭଳି ଗରିବ ଭକ୍ତଙ୍କୁ ଉଦ୍ଧାର କରିବ । ଧନ୍ଦା ନପାଇ ଏବେ ଆମେ ଢୋକେ ପାଣି ପିଇବାକୁ ଯାହା ହିନସ୍ତା ହଉଚୁ, ଆମେ ଜାଣୁ । ଆମକୁ ଦି'ପଇସା ରୋଜଗାର ମିଳିବ; ଆଉ ଆପଣ ତ ସହଜେ ମହାତ୍ମା ହେଇ ପୂଜା ପାଇବେ । – ଖାଲି ଜମେଇକି କାମଟା କରିଦେଲେନା'' – ସେ ଟାକରା ଫୁଟେଇ ବିଭୋର ହେଇଗଲା । ପୁଣି ମନେ ପକେଇ ଚମକିଲା ପରି କହିଲା, ''ଆପଣଙ୍କୁ ଦିନଯାକ ସମସ୍ତଙ୍କ ଆଗରେ ତୁଳସୀପାଣି ଟିକିଏ ପିଇ ରହିବାକୁ ପଡ଼ିବ ! ରାତିରେ ଗମ୍ଭୀରାବିଜେ ହୋଇଗଲେ ଆମେ ସବୁ ସଜାଡ଼ି ରଖିଥିବୁ । ମାଛ କହିଲେ ମାଛ, କୁକୁଡ଼ା କହିଲେ କୁକୁଡ଼ା । ଆଉ, ଯଦି ସାରେ, କିଛି ମାଲପାଣି ଚାହିଁବେ, ତା'ବି ଆମ ପାଖରେ ସଦାସର୍ବଦା ଅଛି ବୋଲି ଜାଣିବେ !''

''ବେ, ଆମ ପାଇଁ କ'ଣ ସେଇ ରାତିରେ ବକଟେ ମିଳିବ ନା କ'ଣ ? ଛାନିଆ ହୋଇ ପଚାରିଲା ହାଇଦର ।

"ଉହୁଁ । ଦିନବେଳେ ଚଉରସ୍ ଡାଲମା ଅନ୍ନ ପେଟୁଟିଏ ଖାଇ ବେଳାଏ ଯାଏଁ ଟିକିଏ ଗଡ଼ପଡ଼ ହେବା ପାଳି ମୁତାବକ । ରାତି ଦଶଟା ପରେ ବାକି !... 'ହେ ହେ ହେ...'

ହାଇଦର୍ ଖୁସିରେ କୁରୁଳି କହିଲା, "ମାର୍ ବେ ତାଳି" – ଦୁଲୁଦୁଲୁ ତାଳିମାଡ଼ ହେଲା । "ତା'ହେଲେ ସାରେ, ସବୁ ପକ୍କା ହେଲା ! ଆମେ ଚାଲିଲୁ । ଏତେ ଟିକିଏ କଥା ପଦାରେ ପଡ଼ିବ ନାଇଁ କି ବାଳପ୍ରମାଣେ ଏଣେତେଣେ ଘୁଞ୍ଚିବ ନାହିଁ ।" – ନେତା ଟୋକାର ସ୍ୱରରେ ଆଦେଶ; ଆଖିରେ ନିଆଁ । ସଟ୍‌କିନା ଅଣ୍ଟାତଳୁ କୋଉଠୁ ହାତେ ଡେଙ୍ଗା ଛୁରୀଟାଏ କାଢ଼ିଆଣି, ତା' ଝଲମଲ ଦାଢ଼କୁ ଚାହିଁ ଦାନ୍ତସନ୍ଧାରୁ କହିଲା "ମୋ କଥା ନ ରଖିଲେ ମୋ ବୋପା ଶଳାକୁ ବି ଚିରିଦେବି ।" ଖଟ୍‌କିନା ଛୁରୀ ଲୁଚିଗଲା ।

ଚୁପ୍‌ଚାପ୍ ସମସ୍ତେ ଉଠିଲେ । ଶେଷ କଥା ଶୁଣାଣି ସରିଲା ପରେ ଆଉ କାହାରି କିଛି କହିବାର ନଥିଲା – ଗୁଡ଼ିଏ ପାଦଶବ୍ଦ, ଗୁଡ଼ିଏ ଧୋବଧାଉଳିଆ ଛାଇ ରାତିରେ ଅନ୍ଧାର ଭିତରକୁ ବୁଲିଗଲେ । ଲଣ୍ଠନଟି ଭୀତତ୍ରସ୍ତ ହରିଣଛୁଆ ପରି ଆଣ୍ଠୁଏ ଉଚ୍ଚରୁ ଚାହିଁରହିଲା ନିଛାଟିଆ ଅରଣ୍ୟକୁ !

ନେଉଳି ମିଶ୍ର ଲଥ୍‌କିନା ସେଇ ପିଣ୍ଡାରେ ବସିପଡ଼ିଲା । ତା'ର ଆଣ୍ଠୁଠଉଁ ହୁଗୁଳିଗଲା ନା କ'ଣ । ସେଇଠି ଖୁଣ୍ଟକୁ ଆଉଜି ଭକୁଆଙ୍କ ଭଳି ମଟମଟ ଚାହିଁରହିଲା । ଜାଣିପାରିଲା ନାହିଁ କେତେବେଳେ ଚମ୍ପୀ ଧୋବଣୀ ଛାଇ ଭଳି ନିଃଶବ୍ଦରେ ଆସି ତା ପାଖେ ଠିଆହେଇଯାଇଥିଲା ।

"ସେ ଗାତପଶା, ହାଣମଙ୍ଗଳ, ଅଂଳପେଇଷା, ମୁଣ୍ଡା କାଇଁ ଆଇଥିଲେ କି ?"

କୌଣସି ଉତ୍ତର ମିଳିଲା ନାହିଁ । ନେଉଳି ମିଶ୍ର ନିଶ୍ଚଳ ଚିତ୍ର-ପ୍ରତିମାଟିଏ ।

"ମୁଁ ସବୁ ଦେଖିଚି, ସବୁ ଶୁଣିଚି – ସେ ଚୁଲିପଶା ଜାରଜା ଟୋକାଙ୍କ କଥାରେ ପଡ଼ି ଆମେ କାଇଁ ଆମ ବେଉସା ବୁଡ଼େଇବୁ ବା ? ଯାଉନ ! ଛୁରୀ କାଢ଼ି ଡରାଣ ଦେଖଉଚି ଡହରା; କେଢ଼େ ବହପ । କାଇଁ ଦେଖି, କେମିତି ଛୁରୀ ଚଳେଇବୁ । ଶାବଳା ଶୁଖୁଆପରି ତତେ ଠିଆ ପନିକିରେ ଦି'ଗଡ଼ କରିଦେବି ନାଇଁ ଯଦି, ମୁଁ କି ଚମ୍ପୀ ? – ଚାଲିବଟି, ଉଠ । ମହାତ୍ମା, ନା ତା ମୁହଁରେ ନିଆଁ – ପାରିକୁଦ ଥାକରୁ ଚିକ୍‌କଣ ଖଇଙ୍ଗାର ପେଟି କାଢ଼ି ଭାଜିଚି । ଖାଇଦେଇ ଶୋଇବ ଚାଲ । ରଇଚଳେ କାଲିକି ଆସିଲେ ମୁଁ ତାକୁ ଦଉଚି ଭଲକରି ପାନେ ।"

ନେଉଳି ମିଶ୍ର ଠକ୍ କିନା ଉଠି ଠିଆହେଲା । ତା' ହାତଗୋଡ଼ ଶିରା-ପ୍ରଶିରାରେ ଟିକିଏ ତାତି ଚଢ଼ିଲା । ସେ ବୋଲ ମାନି ଆଗେ ଆଗେ ଘର ଭିତରକୁ ପଶିଗଲା । ପଛରେ ଚମ୍ପୀ ରାଉରାଉ ହେଉଥାଏ । ତା' ହାତରେ ଦୋହଲୁଥାଏ ଲଣ୍ଠନ । ନେଉଳି ଆଗରେ କାନ୍ଥସାରା ଦୋହଲୁଥାଏ ତାର ଅସୁର ପରି ଛାଇ ।

ଠାଆ ପାଖରେ ବସିବାକୁ ନେଉଳିର ଅମଙ୍ଗ ଅମଙ୍ଗ ଭାବ । ଚମ୍ପୀ ମୁହଁକୁ ନ ଚାହିଁ ମୁହଁକୁ ଥମଥମ କରିବା ଢଙ୍ଗ ଦେଖି ଚମ୍ପୀ ଯାଇ ଖପ୍‌କିନା ତା' ବାଁ ଡେଣାଟାକୁ ଧରି ଆଗରେ ଠିଆହେଲା । ନିଦରୁ ଉଠେଇଲା ପରି ନେଉଳିକୁ ଥରେ ଝୁଙ୍କିଦେଇ କହିଲା, "ହେଇଟି, ମତେ ଚାହିଁବଟି, ଚାହଁ ।" ନେଉଳିର ଆଖି ତଳକୁ ।

ବାଁ ହାତରେ ତା' ଛେଳିଦାଢ଼ିଆ ଥୋଡ଼ି ଧରି ଟେକି ରଖିଦେଲା । ପହରିଲା ପହରିଲା ଆଖି । ଖୁବ୍ ଗହୀର ନେଳି ଢରଢର ଆଉ କହରିଆ, ଶୁଖୁଆ ବେପାରୀ ପାଇଁ ସତେ ଏମିତି ଆଖିର କ'ଣ ପ୍ରୟୋଜନ ? ଚମ୍ପୀ ହସିଲା – "ତମକୁ ସେ ଟୋକାଗଣ୍ଡାକ ବିଗାଡ଼ି ଦେଇଛନ୍ତି । ତାଙ୍କରି ବୋଲରେ ପଡ଼ି ତମେ ସତକୁ ସତ ମହାତ୍ମା ସାଜିବ ନା କ'ଣ ? ମୁଁ ଆଗରୁ କହିଚି କେତେଥର, ଶୁଣିଲ ନାଇଁ । ବାଆଜି ପରି ଏ ଲମ୍ୱା ବାଳ ଆଉ ଦାଢ଼ି ନ କାଟି ଆଜି ଏ ଅବସ୍ଥା । କାଲି ସକାଳୁ ଯଦି ମୁଁ ତମକୁ ଚିକ୍‌କଣ ନଣ୍ଡା ନକରିଚି ମୋ ନାଁ ଚମ୍ପୀ ନୁହେଁ । ନବରଙ୍ଗ ଲାଗିଚି ।"

ଗେଲବସରିଆ ମନ ଧରାଧରି ଭିତରେ ଖିଆପିଆ ସରିଲା । ନେଉଳିର ମୁହଁ ସେମିତି ଥମଥମ । ଚମ୍ପୀ ସେମିତି ମନକୁ ମନ ଗାଳୁର ଗାଳୁର । କେମିତି କଣଟା, ଅଚିହ୍ନା ବେଖାପିଆ କଥା ପଶିଆସିଛି ତାଙ୍କ ଥିରପାଣି ପୋଖରୀକୁ । ସେମାନେ ତାକୁ ବୁଝିପାରୁନାହାନ୍ତି, ସମ୍ଭାଳି ପାରୁନାହାନ୍ତି । ସକାଳ ପାହିଲେ ଦିନ ଆଲୁଅରେ ସେ ଟୋକାପଞ୍ଝାଙ୍କୁ ଦି'ଜଣ ମିଶି ନାହିଁ କରିଦେଲେ ତ' କଥା ଛିଡ଼ିଯାନ୍ତା; କିନ୍ତୁ କାହିଁକି କଥାଟା ସେଡ଼େ ସହଜ ଜଣାଯାଉନଥାଏ ।

ଦରଲିଭା ଲଣ୍ଠନ ଆଲୁଅରେ ଦୁହେଁ ଚାହିଁ ଶୋଇଥାନ୍ତି । ଚମ୍ପୀ ତା ପାଖକୁ ଲାଗିଆସି କହିଲା, "ମହାତ୍ମା କହିଲେ. ଏଇ ବାଆଜିଟି ! ତେମେ ବାଇଆ ବାଆଜି ହବ ? – ତେମେ କ'ଣ ଅସୁଖରେ ଅଛ କି ? – ସେ ରଇଜଲେ ଯାଆନ୍ତୁ ବାଆଜି ବଇଷ୍ଣବ ହେଇ !... ତେମେ ଯଦି ସତକୁ ସତ ସେମିତି କ'ଣ କରିବ, ଜାଣିଥ, ମୁଁ ଜୀବନ ହାରିଦେବି !" – ସୁକୁସୁକୁ ହୋଇ ଚମ୍ପୀ କାନ୍ଦିଲା ଆଖିବୁଜି ।

ତା ବେକ ପାଖରେ ନେଉଳି ମୁହଁ ରଖି କହିଲା "ମୁଁ କ'ଣ ଚାହୁଁଛି ମହାତ୍ମା ହେବାକୁ ? ମୁଁ କ'ଣ ବୁଝିନାହିଁ, ମୁଁ ସେଥିକୁ କେଡ଼ିକି ଅଯୋଗ୍ୟ ! ସେମାନେ ବି ମତେ ମହାତ୍ମା ହେବାକୁ କହୁନାହାନ୍ତି । ସେ କହୁଛନ୍ତି, ମହାତ୍ମା ରୂପ ବେଶ ପକେଇ ମୁଁ ଲୋକଙ୍କୁ ଠକି ତାଙ୍କ ପାଇଁ ପଇସା ରୋଜଗାର କରିବି ! ଏଡ଼ିକି ଅପ୍ରାଧ ତ ମୁଁ କରିପାରିବି ନାହିଁ ।"

"ନାଇଁ ନାଇଁ, ଆମେ କାଇଁ ତାଙ୍କ ପାଇଁ ଅପ୍ରାଧ କରିବା ! ଆମେ କାଲି ତାଙ୍କୁ ନାହିଁ କରି ଫେରେଇଦେବା ।"

"ଫେରେଇଦେବା ଯେ, ସେମାନେ କ'ଣ ତାଙ୍କ ମନକୁ ଏକଥା କହୁଛନ୍ତି । ସେମାନେ ପରା ମଣି ନାହାକ ଯାହୀ କହୁଥିଲା, ତାକୁ କେମିତି ଜାଣିଯାଇଛନ୍ତି ।...

ମଣି ନାହାକଙ୍କୁ ସବୁ ଦୃଶ୍ୟ ହେଉଥିଲା । ସେ ଦେବୀ-ସାଧିଥିଲା ତ ! ଗଛରୁ ତୋଳିଲା ପରି ଆଗତ କଥାମାନ କହିଦେଉଥିଲା ।''

''ହଅଅ ! କୋଉ କାଳେ କ'ଣଟାଏ ସେ କହିଥିଲା ବୋଲି''... ଚମ୍ପୀ ବାହୁ ବଢ଼େଇ ଆହୁରି ଜୋର୍‌ରେ ଭିଡ଼ିଧରିଲା – ନେଉଳି କିନ୍ତୁ ମଲା ଧଣ୍ଡଟିଏ ପରି ନିସ୍ତେଜ, ତା'ର ପୁରୁଷପଣିଆ କୁଆଡ଼େ କେମିତି ଲୋପ ପାଇଗଲା । ସେ ବୋଧେ ଖୁବ୍ ଡରିଯାଇଥିଲା ।

''ଚମ୍ପୀ !'' ଖୁବ୍ ଆସ୍ତେ କହିଲା ନେଉଳି, ''ମତେ ଜାକି ଧ' ! ମତେ ପୁଣି ସେମିତି ଲାଗୁଛି – ଶୂନ୍ୟକୁ ଗଳିଗଲା ପରି ।... ଚମ୍ପୀ... ''

ଶାଗପରି ନିସ୍ତେଜ ମେଞ୍ଚାଟିଏ ହୋଇଗଲା ନେଉଳି । ଚମ୍ପୀ ଧଡ଼ପଡ଼ ଉଠିପଡ଼ି ବାଉଳିହେଲା । ତା' ବୁକୁ ମୁଣ୍ଡ ଆଉଁସି ଦେଇଗଲା । ଚଳ ଚଳ ପାଣି ଆଣି ମୁହଁକୁ ମାରିଲା । ସରୁ ଶୁଆ ପଞ୍ଜୁରିଟିଏ ପରି ସେ ମଣିଷଟି ଚିତ୍ ହେଇ ନିଶ୍ଚଳ ପଡ଼ିଥାଏ । କେଡ଼େ ଟିକି ମଣିଷଟିଏ, କେଡ଼େ ନିର୍ମଳ ମଣିଷଟିଏ । ଚମ୍ପୀ ତାକୁ ଜାକିଲାଗିଥାଏ; ବୁକୁରେ ହାତ ରଖି ହଲେଇଲାଗିଥାଏ ।

କିଛି ସମୟ ଉତ୍ତାରୁ ନେଉଳି ଆଖି ଫିଟେଇ ଚାହିଁଲା । ଚମ୍ପୀକୁ ଲାଗିଲା ଯେ, ସେ ଅଳ୍ପ ହସି ତାକୁ ଚାହୁଁଛି । ସେ ବିହ୍ୱଳ ହୋଇ ତା' ଉପରେ ଲୋଟିପଡ଼ି ମୁହଁ ପାଖରେ କହିଲା ଅଧେ କାନ୍ଦ, ଅଧେ ଅଭିଯୋଗ ଭିତରେ – ''ଏମିତି କ'ଣ ହେଇଗଲା ତମର ! ମୁଁ କ'ଣ କରିବିଟି ! ପାଣି ଦେବି, ପିଇବ ?''

ସେ ପାଣି ଆଣିଲା ବେଳକୁ ନେଉଳି ଉଠି ବସିଲା, ଦେହରେ ଲୁଗାଟା ଗୁଡ଼େଇ ଦେଲା । ଏକାନିଶ୍ୱାସକେ ପାଣିତକ ପିଇଦେଇ ଚାହିଁଲା ! ଆସ୍ତେ କହିଲା – ''ମୋର ଏମିତି ହୁଏ ! ମୋତେ ଶୋଷିନିଏ କୁଆଡ଼େ !... ଏବେ କେତେଦିନ ନଥିଲା । ମୁଁ ଜାଣିଶୁଣି ଶୁଖୁଆ ବ୍ୟବସାୟ କଲି ତାକୁ ଘଉଡ଼ିବାକୁ । ତତେ ଜାଣିଶୁଣି ଆଣି ଅନାଚାର କଲି ତା'ଠୁ ମୁକୁଳିବାକୁ ।''

''କାହାଠଉଁ ? – କିଏ ସେ ? କ'ଣ ଏମିତି ଗପୁଚ ?'' ଚମ୍ପୀ ସ୍ୱରରେ ଅଜଣା ଭୟ ଥରୁଥିଲା ।

''ମୋ କର୍ମକୁ ! ମୁଁ କିନ୍ତୁ ମୁକୁଳିପାରିବି ନାହିଁ । ସେ ମୋତେ ଛାଡ଼ିପାରିବ ନାହିଁ । ପିଲାବେଳୁ ମୁଁ ସ୍ଥିର ହେଇ [illegible]ଏ ବସିଗଲେ ମୋତେ ଏମିତି ଝାଇଁମାରିଯାଏ । ମୋତେ ଖୋଳପରି ଲାଗେ; ଭଲ ବି [illegible] – ଆକାଶ ଭିତରକୁ ପଶିଗଲା ପରି ଲାଗେ । ମୋ ହାତରେ ପାଠଶାଠ [illegible] ହେଲା ନାହିଁ । ନନା ନେଇ ମୋ ଜାତକ ମଣି ନାହାକଙ୍କୁ ଦେଖେଇଲେ । ସେ କହିଲେ ଯେ ସେଇଟା ମହାତ୍ମା କୋଷ୍ଠୀ । ମୋତେ ଶୁଣି ଚିଡ଼ିମାଡ଼ିଲା । ସମସ୍ତେ ମତେ ଆଡ଼ ଆଡ଼ ହେଲେ । ମୁଁ ଜାଣିଶୁଣି ଛୋଟ ଛୋଟ ପାପକାର୍ଯ୍ୟ କଲି । ପକ୍ଷୀବସାରେ ନିଆଁ ଲଗେଇଲି । ପାଣିରେ ପଶି ବେଙ୍ଗକୁ କଣ୍ଟା ଫୋଡ଼ି ମାରିଲି । କଅଁଳ ଗଛକୁ ଦେଖିଲେ ହାଣିଲି । ବିଲ କଙ୍କଡ଼ା ଆଣି ପୋଡ଼ି

ଖାଉଲି । ଜମା ଆଉ ସ୍ଥିର ହେଇ ବସିଲି ନାହିଁ ଦିନସାରା । ସମସ୍ତେ ହୁଡ଼ିଲେ ! କହିଲେ, ଯା ଏଇଟା କୁଆଡ଼େ ମହାତ୍ମା ହବ ? ଛଉତିଷ ନା ଫଉତିଷ । ମୋତେ ଶୁଣି ଭଲ ଲାଗିଲା ।''

ଚମ୍ପୀ କଥାମଝିରେ ପଶି କହିଲା, ''ତମେ କାହିଁ ମହାତମା ହୁଅନ୍ତ ବା ! ଛଉତିଷ ନା ଫଉତିଷ ।'' ସେ ବୋଧହୁଏ ଶୁଣିଲା ନାହିଁ । ସେମିତି କୋଉ ଭିତରୁ କଥା କାଢ଼ି କହିଲା – ''ଦିନେ ଜଣେ ବାବାଜି ଆସିଥାଏ । ସମସ୍ତେ ତାକୁ ମହାତ୍ମା କହିବାରୁ ମୁଁ ଜମା ତାଙ୍କ ପାଖକୁ ଗଲିନାହିଁ । ମତେ ସେ ନାଁ ଶୁଣିଲେ ଚିଡ଼ି ମାଡ଼ିଲା । ଦୁଇଦିନ ଉତାରୁ ପାହାନ୍ତିଆରେ ଯାଇ ତା' ଚାଳିଘରେ ନିଆଁ ଲଗେଇଦେଲି । କୁଟାଘର, ହୁଦ୍‌ହୁଦ୍ ଜଳିଗଲା । ଗାଁ ଲୋକେ ଦୌଡ଼ିଲେ । ବାଆଜି ଲଙ୍ଗଳା ହୋଇ ଠିଆହୋଇଥା'ନ୍ତି । ତାଙ୍କ ଦାଢ଼ି ଜଟା କିଛି ଜଳିଯାଇଥାଏ । ମୁଁ ସବା ପଛରେ ଥାଇ ମନ ଭିତରେ ଶୋଧୁଥାଏ – ''ମହାତ୍ମା ଦେଖେଉଚି ।'' ଲୋକେ ତା' ପାଦତଳେ ପଡ଼ି କାନ୍ଦୁଥାନ୍ତି । କେମିତି ନିଆଁ ଲାଗିଲା, କିଏ ଲଗେଇଲା ବୋଲି ପଚାରୁଥାନ୍ତି; ରାଗରେ କାନ୍ଦୁଥାନ୍ତି – ପାଇଲେ ଅପ୍ରାଧୀକୁ ହାଣିପକେଇଥାନ୍ତେ ।''

''ଆଲୁଅ ତେଜିଆସିଲା । ସେ ଲଙ୍ଗଳା ମଣିଷଟା ଠିଆହୋଇଥାଏ; କାହାକୁ କିଛି କହୁ ନଥାଏ । ହଠାତ୍ ତା' ମୁହଁଟା ମତେ ଉଜ୍ଜ୍ୱଳ ଦିଶିଲା । ମୁଁ ଭାବିଲି, ଖରା ପଡ଼ିଥିବ । ସେ ମୋତେ ଚାହିଁ ହସିଦେଲା । ମୋ ବାପ ଲୋ ! କି ସେ ହସ !!

ନେଉଳି ଗୋଟାପଣେ ଶୀତେଇଗଲା ।

''ମତେ ଲାଗିଲା, ସେ କହୁଚି, 'ମୁଁ ସବୁ ଜାଣେ; ହଉ, ତୁ ଆଉ କେତେ ଦିନ ଲୁଚିବୁ' – ମତେ ସେ ଧରେଇ ଦେଇ ମାଡ଼ ମରେଇ ଥିଲେ ମୁଁ ଖୁସି ହେଇଥାନ୍ତି । ମତେ ଚାହିଁ ସେ ହସିଲା, ମୋ ଅପ୍ରାଧକୁ ଅପ୍ରାଧ ବୋଲି ଜ୍ଞାନ କଲା ନାହିଁ । ସେଇଠୁ ସେ ମୁହଁ ଫେରେଇ ସେମିତି ହସି ହସି ଚାଲିଗଲା ।... ମତେ ଲାଗିଲା, ମୁଁ ପୁଣି ଆକାଶରୁ ଗଳିପଡୁଛି । – ମୁଁ ସେଇଠି କାଠପିତୁଳି ପରି ଠିଆହୋଇ ରହିଗଲି । ମୋତେ ସେମାନେ ଚେତା କରେଇଥିଲେ । ତା ସାତ ଦିନକୁ ଅଚାନକ ଆମ ଏ ଘରେ ନିଆଁ ଲାଗିଗଲା; ନଡ଼ା ଛପର କରିବାର ଦି' ମାସକୁ ପୁଣି ଥରେ । – ଲୋକେ କହିଲେ, ଆମ ଘରେ କେହି ମହାତ୍ମାଙ୍କ ପାଖରେ ଅପ୍ରାଧ କରିଛି । ନନା କିଛି କହିଲେ ନାଇଁ । ତାଙ୍କ କାଳ ହେଇଗଲା । ଭାଇନା ଭିନେ ହେଇଗଲେ । ମୁଁ ଏକୁଟିଆ ହେଇଗଲି । ମତେ ପୁଣି ସେ ବେମାରି ଧଇଲା । ସେ ବାଆଜି ମୁହଁ ଦିଶିଲା । ଜଳିଯାଉଥିବା ପକ୍ଷୀବସାମାନ ଦିଶିଲା । ମୁଁ ବସିଲା ଠେଇଁ, ଭାତ ରାନ୍ଧିଲା ଠେଇଁ ଆକାଶରୁ ଗଳିପଡ଼ିଲି ! – ମୋତେ ଗାଧେଇ-ପାଧୋଇ ନିର୍ମଳ ହବାକୁ ଡର ମାଡ଼ିଲା । ଚନ୍ଦନଫୁଲ ବାସ୍ନାକୁ ଡରମାଡ଼ିଲା । ମୁଁ ଦିଅଁଘରେ ଆଣି ଶୁଖୁଆ ରଖିଲି । ପଇତା-ଫଇତା କେବେଠୁ ଫିଙ୍ଗିଦେଲି । ଏଥର ମତେ ଆଉ ପୁରେ ଚମ ଗୁଡ଼େଇ ହେଲାପରି ଲାଗିଲା । କେହି ଦେଖି ନ ପାରିଲା ପରି ଅନ୍ଧାର କୋରଡ଼ରେ ଲୁଚିଗଲା

ପରି ନିର୍ଭୟ ଲାଗିଲା । ମତେ ଆଉ ସେ ଦାଉଦାଉ ମୁହଁ ଦିଶିଲା ନାହିଁ । ମୁଁ ଭାବିଥିଲି, ଖସିଗଲି । ମଣି ନାହାକଟା ଭଣ୍ଡ, ସେ ଅନେକ ମିଛ କହିଛି; ସେଥିରୁ ମୋ ପାଇଁ ଗୋଟାଏ ! – ମତେ କେମିତି ବୁଝାପଡ଼ିଯାଉଚି ଯେ, ଏ ଶୂନ୍ ବେମାରି ମତେ ଏ ସଂସାରରୁ ଶୋଷିନେବ । ସେମିତି ଦରଛଲା ନଙ୍ଗଲା ଉଦ୍‌ବାସ୍ତୁ ବାଆଛି କରି ଠିଆକରେଇଦବ । ଏ ସବୁ ମୋ ପାଇଁ ଛଳିଯିବ ! ମୋର ହେଇ ଆଉ କିଛି ରହିବ ନାଇଁ – ସେଇଟା ମୋ କପାଳଲିଖନ । ମୋ କୋଷ୍ଠୀରେ ସେଇଆ ରହିଯାଇଛି ! –''

ଚମ୍ପୀର ସ୍ୱର କ୍ଷୀଣ । ତା'ର ଛିଭ ଓଠ ଶୁଖି କାଠ ହୋଇଯାଇଥିଲା କି ? – ''ହଅଅ, ସେଗୁଡ଼ାକ ସବୁ ମିଛ ! – ଆମ ଶୁଖୁଆ ବେଉସା ଭଲ କି ଆମେ ଭଲ ! କାଲି ପାହାନ୍ତିଆରୁ ଚାଲ ଆହୁରି ଶୁଖୁଆ ଆଣି ଗଦାକରିଦବା ।''

ନେଉଳି ମିଶ୍ର କପାଳରେ ଚିକ୍‌ଚିକ୍ ଝାଳ । ମୁହଁରେ ଆଖିରେ ସ୍ୱପ୍ନ ଭରିଯାଇଥିବା ପରି ଭାବ । ସେ କହିଲା, ''ଆଉ ଲାଭ ନାହିଁ ଚମ୍ପୀ ! ଏ ଓଷୁଅ ଆଉ କାଟୁ କରିବ ନାଇଁ । ମୁଁ ଭାବିଥିଲି, ଥରାଏ ନିଆଁ ଉପରେ ଶଗଡ଼େ ଟଷ୍ଟୁ କୁଢ଼େଇଦେଲେ, ଲିଭିଯିବ । ସେ ତାକୁ ଭେଦି ଚହଟିଆସିଲା । ମୋତେ ଆଉ ଶୁଖୁଆ ଗନ୍ଧୋଉ ନାହିଁ; ଅଶୁଚି ଲାଗୁନାଇଁ । ତୋତେ ଦେଖିଲେ ଅଶୁଚି ଲାଗୁନାଇଁ । ଏ ଅସନା ମଳିଝଳି ସଅପ କତରା ଦେଖିଲେ ଏମାନେ ମତେ ବେଢ଼େଇ ରଖିପାରିବେ ବୋଲି ବିଶ୍ୱାସ ହେଉନାହିଁ । ଆଜି ସେ ଟୋକାଗଣ୍ଡାକ ଯେଉଁ ଅପ୍ରାଧ କରିବାକୁ କହିଛନ୍ତି, ତାକୁଇ କଲେ, ଛାଣିଶୁଣି ଭଣ୍ଡ ହେଲେ କେଜାଣି ମୁକୁଳିହେବ । ଆଜି ମୋତେ ତେତେବେଳୁ ଶୂନ୍ୟ ଶୂନ୍ୟ ଲାଗିଲାଣି । ମୁଁ ଭାବୁଥିଲି 'ହଅଅ, ସେ ବାଆଛି କ'ଣ ଏ ଶୁଖୁଆ ଗନ୍ଧରେ ପଶିପାରିବ ! – ସେ ଆଜି ଚିକ୍‌ଚିକ୍ ଦିଶିଲା । ତୋ ଆଇଁଷିଆ ଦେହରେ ଲେସି ହେଇ ପଡ଼ିଥିଲେ ମଧ ସେ ପଶିଆସିଲା !''

ଚମ୍ପୀ କହିଲା, ''ଏଇଟା ତ ଭୂତ ପ୍ରେତ ପାପକର୍ମ । ଆଇଁଷ କାତି, ପିତା ଶୁଖୁଆ, ଅତୁଆ ବାଳ ପୋଡ଼ି ଧୂଆଁ ଦେଇଦେଲେ କୁଆଡ଼େ ଛାଡ଼ିପଳେଇବେ ।''

ନେଉଳି ଆସ୍ତେ ମୁଣ୍ଡ ହଲେଇ ନାହିଁ କଲା – ''ମୋ ବୋଲ ମାନ । ଚାଲ, ସାଙ୍ଗ ହେଇ ଅପ୍ରାଧ କରିବା । ଏ ଶୁଖୁଆ ସବୁ ଆଡ଼େଇ ଢେଙ୍କିଶାଳେ ରଖିବା । ଏ ଘରଟାକୁ ଧୋଇବା । ଶୁଖୁଆ ଗନ୍ଧ ମୋତେ ସିନା ଆଉ ଜଣାଯାଉନାହିଁ କି ଆତୁଆଳ କରୁନାହିଁ... ହେଲେ ମହାତ୍ମା ସାଜିବାକୁ ସେ ଲୋକଙ୍କୁ ସୁହାଇବ ନାହିଁ । ତୁ ମାତାଜୀ ସାଜିଯା ! ତତେ ଦେଖିଲେ ବି ମୋର ଆଉ ଲୋଭ ହେଉନାହିଁ । ମତେ ପୁଣି ଭଣ୍ଡିବାକୁ ହବ ।''...

''ତେମେ କାଇଁ ବାୟା ହଉଚ । – ଏ ବେପାର ଆମର ଭଲ । ଶୁଖୁଆଗନ୍ଧ ପୁଣି ତମେ ବାରିପାରିବ । ଏଇନେ କ'ଣ ଟିକିଏ ରୋଗର ପ୍ରକୋପ ବଢ଼ିଚି ସିନା । ତମେ ଥରେ ଗେରୁଆ ପିନ୍ଧି ଥିର ହେଇ ବସିଗଲେ ସେ ଆଉ ତମକୁ ଛାଡ଼ିବ ନାଇଁ ! ତମେ ଜାଣ ତେଣିକି ସେଥିରେ ବୁଡ଼ିଯିବ; ଆଉ ଫେରିପାରିବ ନାହିଁ !''

''ଏମିତି ବି ଆଉ ଏଠି ରହିପାରିବି ନାହିଁ । ମତେ ଏଇନେ ସୁଦ୍ଧା ଏ ଘରଦ୍ୱାର ସବୁ ପାଣିପରି ଢଳଢଳ ଦିଶୁଚି । ଏଇନେ ଏ ଘରେ ନିଆଁ ଲାଗି ଜଳିଗଲେ ମୁଁ ଚାହିଁଥିବି । ମତେ କିଛି ଜଣାଯିବ ନାହିଁ । ମୁଁ ଏଇନେ ଆଉରି ଗହୀର ପଙ୍କରେ ନ ବୁଡ଼ିଲେ ଚଳାନାହିଁ । ଯଦି ସେ ତାକୁ ସୁଦ୍ଧା ପାଣି କରିଦେବ, ତାକୁ ସୁଦ୍ଧା ଏକାକାର କରିଦେବ, ତେବେ ସରିଲା ଖେଳ । ଆଉ ଲୁଚି ରହିହବ ନାହିଁ । ସଂସାରକୁ ହାରିଦେଇ, ସାରା ସଂସାରକୁ ନିଜର କରିନବାକୁ ହବ । ନିରୁପାୟ ମହାତ୍ମାଟିଏ ହବାକୁ ହବ !''

ଚମ୍ପୀ କିଛି ନକହି ତଳକୁ ମୁହଁ ପୋତି ଠିଆହୋଇ ରହିଲା ।

ନେଉଳି ଆସି ଲଣ୍ଠନଟିକୁ ତେଜିଦେଲା । ଛାଇସବୁ କାନ୍ଥରେ ଫଡ଼କିଲେ । – ଶୁଖୁଆ ବୋଝ ବୁହାହେଲା ବାଡ଼ିପଟ ଢିଙ୍କିଶାଳକୁ ! କତରା ଲୁଗାସବୁ ମୋଟ ବନ୍ଧାହୋଇ ଚାଲିଗଲା । ରାତି ଘନେଇଆସିଲା । ଛାଇପରି ଦୁଇଜଣଯାକ ନୀରବରେ କାମ କରି ଲାଗିଥାନ୍ତି । ଘରଟିକୁ ନିରାମିଷ ନିର୍ମଳ କରୁଥାନ୍ତି, ଝଡ଼ାଝଡ଼ି ଧୁଆଧୋଇ ହେଲାପରେ ନେଉଳି ମିଶ୍ର ସେଇ ରାତିରେ ପୋଖରୀରେ ଯାଇ ଗାଧୋଇପଡ଼ିଲା । ଲୁଗା ଗାମୁଛାକୁ ବାରମ୍ବାର ଧୋଇ ଶୁଙ୍ଘିଲା । ପୁଣି ଧୋଇଲା । ଶେଷକୁ ପାଣିରୁ ଟେକି ନେଇ ଶୁଙ୍ଘିଲା । ଅଳ୍ପ ହସିଦେଇ ଲୁଗା ଚିପୁଡ଼ି ପାଲଟି ଚାଲିଆସିଲା । ଚମ୍ପୀ ଚମତ୍କାର ଲୁଗା କାଚେ । ଆଗରୁ ଯେଉଁ ଲୁଗା କାଚି ଚଉତି ରଖିଥିଲା, ତାକୁ ପାଲଟି ଓଦା ଦୁଇଖଣ୍ଡ ଢେଙ୍କିଶାଳେ ପକେଇଦବାକୁ କହିଲା । ରାତି ସେତେବେଳକୁ ଅନେକ ବାକି । ନେଉଳି ପିଢ଼ା ଉପରେ ବସି ଅପେକ୍ଷା କରି ଚମ୍ପୀ ନ ଆସିବାରୁ ଲଣ୍ଠନଟି ନେଇ ଦେଖିଲା । ଚମ୍ପୀ ଢେଙ୍କି ଲାଞ୍ଜ ଉପରେ ଗାଲରେ ହାତ ଦେଇ ବସିଚି; ତା' ଚାରିଆଡ଼େ କତରା ଗଣ୍ଠିଲି, ଶୁଖୁଆ ବୋଝ, ହାଣ୍ଡି ଆଟିକା ।

''ଆଲୋ, ଏମିତି ଝାଳନାଳ ହେଇ କାହିଁ ବସିଚୁ । ଯାଇ ମୁନ୍ଦେ ଗାଧେଇ ପକଉନୁ !''

''ନା, ମୋର ଗାଧେଇ କ'ଣ ହେବ !'' କହି ଉଠି ଠିଆହେଲା ଚମ୍ପୀ । – ନେଉଳି ଅଳ୍ପ ହସି କହିଲା, ''ଆସୁନୁ, ଆ, ତତେ ଛାଡ଼ିଦେଲେ ମୁଁ ଗଲି ହୁଗୁଳି; ଅନାଚାରରେ ମୋତେ ବୁଡ଼େଇରଖ !''

ଚମ୍ପୀ ଆଡ଼ଆଡ଼ ହେଇ ଯାଇ ତଳେ ବସିଲା । ନେଉଳି ପରିହାସରେ କହିଲା, ''ଦେଖିଲୁ, ମୁଁ ପିଢ଼ାରେ ବସି କେମିତି ଦିଶୁଚି ! ଲୋକେ ଆସି ମୁଣ୍ଡିଆ ମାରିବେଟି ! ଆସି ରୁଣ୍ଡ ହେଇ ପାଖରେ ବସିବେ – ଆଶୀର୍ବାଦ ନେବେ; କେତେ କଥା ସବୁ ପଚାରିବେ ! – ମୁଁ ସଜ ହେଇ ବସୁଚି, ତୁ ଆଇଲୁ ଭକ୍ତ ଢଙ୍ଗରେ !''

ଚମ୍ପୀ ସତକୁ ସତ ଉଠି ଖୁବ୍ ଗମ୍ଭୀର ହେଇ ଆସି ମୁଣ୍ଡିଆଟିଏ ମାଇଲା; ପାଦଧୂଳି ମୁଣ୍ଡରେ ଲଗାଇଲା । ସମ୍ଭ୍ରମରେ ବସି ତଳକୁ ଚାହିଁଲା । ନେଉଳି ଖଲଖଲ ହସିପକେଇଲା ''ଆରେ ହେ, ତୁ ତ ବଢ଼ିଆ ଦେଖଉଚୁ; ସୁଆଙ୍ଗ ପରି ହଉଚି !''

ଚମ୍ପୀ କିଛି ନଶୁଣି ସେମିତି ତଳକୁ ଚାହିଁ ପଚାରିଲା, ''ମହାପ୍ରୁ ! ତମେ ମହାତ୍ମା ଆଇଚ ! ମୁଁ ମହାପାତକୀ ! ମୋ ଆତ୍ମାକୁ କାରଣ କରିବାକୁ ବାଟ କ'ଣ ?''

ନେଉଳି ଅଭିନୟରେ ଗମ୍ଭୀର ହେଇ କହିଲା, ''ତୋର ଅମାପ ପାପ ଦିଶୁଚି ! ତତେ ଆଗ ତୀର୍ଥାଟନ କରିବାକୁ ହବ । ଗଙ୍ଗାରେ ମୁଣ୍ଡ ବୁଡ଼େଇ ଚାରିଧାମ ବୁଲି ଆସିଲେ ଦୀକ୍ଷା ମନ୍ତ୍ର ନବୁ, ଗୁରୁସେବା କରିବୁ; ତେବେ ତୋ ପିଣ୍ଡର କାରଣ ହେବ !''

ଚମ୍ପୀ ପୁଣି ମୁଣ୍ଡିଆଟିଏ ମାରିଲା । ନେଉଳି ଗଦ୍‌ଗଦ ହେଇ ତାକୁ କୁଣ୍ଢେଇ ପକେଇଲା । କୁରୁଳିଲା । ଯା' ଶାଲା ଶହେ ମହାତ୍ମାକୁ ଚିତା କାଟିଦେବି । ଆଉ ମହାତ୍ମା ହେଇ କ'ଣ ହୁଅନ୍ତା କି ? ସେ ପିଲାଙ୍କ ପରି ଚମ୍ପୀକୁ ଧରି ଝୁଲୁଥାଏ । ଚମ୍ପୀର ତିଳେହେଲେ ପ୍ରତିବାଦ ନାହିଁ । ନେଉଳି ଚମ୍ପୀ ଆଗରେ ପ୍ରଥମ ଥର ତାର ସମସ୍ତ ପୌରୁଷ ପ୍ରକାଶ କଲା – ଚମ୍ପୀର ପ୍ରତିବାଦ ନାହିଁ । ନେଉଳି ଆଡ଼ ହେଲା ପରେ ଚମ୍ପୀ ନୂଆବୋହୂଟିଏ ପରି ଉଠି ଠିଆହେଲା । ପାଦ କାଢ଼ିଲା ବାଡ଼ିଆଡ଼କୁ ! ନେଉଳି ସେତେବେଳକୁ ପ୍ରକୃତିସ୍ଥ । ଖୁବ୍ ଆପଣାପଣରେ କହିଲା, ''କ'ଣ ଗାଧୋଇବାକୁ ବାହାରିଲୁ ?''

ଚମ୍ପୀ ପଛକୁ ନ ଚାହିଁ କେବଳ ପଦଟିଏ ଉତ୍ତର ଦେଲା – ''ହଁ'' ।

ନେଉଳିକୁ ହୁଗୁଳିଲା ପରି ଲାଗିଲା । ଭାରି ଭଲଲାଗିଲା । ସେ ଚାହିଁରହିଲା ଚମ୍ପୀ ଅନ୍ଧାରରେ ଲୁଚିଗଲାଯାଏଁ । ସକାଳ ହେଲା । ଚମ୍ପୀ ଆସିଲା ନାହିଁ ।

ଚମ୍ପୀ ଆଉ ଫେରିଲା ନାହିଁ ।

ନେଉଳି ଖୁବ୍ ଖୋଜିଲା । କୁଅ ପୋଖରୀ ଖୋଜେଇଲା । ବୁଝାବୁଝି କଲା, କିଛି ପାଇଲା ନାହିଁ । କିଏ ଜଣେ କହିଲା ଯେ ସେମିତି ମାଇକିନିଆଟିଏ ପାହାନ୍ତିଆ ପାହାନ୍ତିଆ ଡାକଗାଡ଼ିରେ ଷ୍ଟେସନରେ ଚଢ଼ିଲା... ।

ନେଉଳି ବାତୁଳ ପରି ଘୁରିବୁଲିଲା ।

ନେତା ଟୋକା, ତା ସାଙ୍ଗମାନେ ଆସି ଶୁଣିଲେ । ଚିଡ଼ିଲେ । ହସିଲେ । ଥଟ୍ଟା କଲେ । ନେଉଳିର ଦାଢ଼ି ଓଟାରି ମନଇଚ୍ଛା ବାଡ଼େଇଲେ । ସେ ପ୍ରତିବାଦ କଲା ନାହିଁ । ସେମାନେ ବାହାରିଗଲେ ।

କିଛିଦିନ ରାତିସାରା ଲଣ୍ଠନ ଧରି ନେଉଳି ମିଶ୍ର ବଖରାରୁ ବଖରାକୁ ବୁଲିବାର ଲୋକେ ଦେଖିଲେ । ଆଉ ଦିନେ ପାହାନ୍ତାରୁ ସେ ଘରେ ନିଆଁ ଲାଗିଲା ।

ଆସି ଦେଖିଲାବେଳକୁ ଦରଜଳା ହେଇ ନେଉଳି ଠିଆହେଇଚି । ଟିକି ମଣିଷଟିଏ, ଲଂଗଳା ମଣିଷ । ସେ କାହାକୁ କିଛି ନକହି ମାଛିଅନ୍ଧାର ଭିତରକୁ ବାହାରିଗଲା ।

ଲୋକେ କହିଲେ, ''ମଣି ନାହାକ କୋଷ୍ଠୀ ଦେଖି ଯାହା କହିଥିଲା, ତାହା ହେଲା । ହବ ତ ନେଉଳି ମହାତ୍ମା ହେଇଯିବ; ନହେଲେ କୋଷ୍ଠୀ ସମ୍ଭାଳି ପାରିବ ନାହିଁ, ବାୟା ହୋଇ ପ୍ରାଣ ହାରିଦବ ।''

□□□

# କୁଟୁମ୍ବ

ମୁଁ ସ୍ଥିର କରିପାରୁନାହିଁ କେମିତି ତାଙ୍କ ଘରେ ଆଉ ଥରେ ଯାଇ ଠିଆହେବି । ମୋର ସାହସ କୁଳୋଉ ନାହିଁ ।

ଏଇ ମାତ୍ର ମାସକ ତଳର ଘଟଣା । ମୁଁ ତାଙ୍କୁ ଅନେକ ଈର୍ଷା କରୁଥିଲି ତାଙ୍କର ସୁନ୍ଦର ହାତବୁଣା ସ୍ୱେଟର ସବୁ ଦେଖି । ମୁଲାୟମ୍ ଉଲ୍, ନରମ ରଙ୍ଗ, ମୁବ୍‌ମୁବ୍ ଡିଜାଇନ୍‌ର ସ୍ୱେଟର ! ଅଶିଣ ମାସର ଫୁଲବଗିଚାରେ ଜାତି ଜାତି ରଙ୍ଗ ଫୁଟିଲା ପରି ଅସଂଖ୍ୟ ସ୍ୱେଟର ! ମୁଁ ଭାବୁଥିଲି, ଭଦ୍ରଲୋକ କେଡ଼େ ଭାଗ୍ୟବାନ୍ ସତେ ! ତାଙ୍କୁ ଏ ଶୀତ ଋତୁଟା ସାରା ଦୁଇଟି ମୁଲାୟମ୍ ପାପୁଲିର ଉଷୁମ ସ୍ପର୍ଶ ଢାଙ୍କିରଖିଛି । କେତେ ସ୍ନେହଶୀଳା, କଳାକୁଶଳା ସେ ନାରୀ, ଯେ ଯାଙ୍କ ପାଇଁ ଏତେ ଶ୍ରମ କରନ୍ତି । କେତେ ଚମତ୍କାର ସେ ପରିବାର, ଯେଉଁଠି ସ୍ନେହ ଏମିତି ଲହଡ଼ି ମାରୁଥାଏ ଦୁଆରବନ୍ଧ ପର୍ଯ୍ୟନ୍ତ ! ଆଃ ! ପ୍ରତିଟି ସ୍ୱେଟର୍‌ର ପ୍ରତିଟି ଫାନ୍ଦ ସ୍ନେହରେ ଜୁଡ଼ୁବୁଡ଼ୁ ।

କିନ୍ତୁ ସେ ଦେଖିବାକୁ ସେମିତି କିଛି ସୁପୁରୁଷ ନୁହଁନ୍ତି । କପାଳରେ ଭାରି ଭାରି ତିନୋଟି ସମାନ୍ତରାଳ ରେଖା । ଆଖିକୋଣରେ ଅସଂଖ୍ୟ ସରୁ ଜାଲ । ବର୍ଣ୍ଣ କିଞ୍ଚିତ୍ ଶ୍ୟାମଳ । ସେମ୍‌ତି ବେଶି କିଛି ଉଚ୍ଚ ବି ନୁହଁନ୍ତି; ମଧ୍ୟମ ଧରଣର; ଅବିଶିଷ୍ଟ ଚେହେରାଟିଏ ଯାହାକୁ ରାସ୍ତାଘାଟରେ ଦେଖିଲେ ଲେଉଟି ଚାହିଁବାକୁ ଇଚ୍ଛା ହେବ ନାହିଁ; କାରଣ ସେଥିରେ ଅସାଧାରଣ କିଛି ନାହିଁ । କିନ୍ତୁ ତାଙ୍କୁ ସହଜରେ ଭୁଲି ମଧ୍ୟ ହେବ ନାହିଁ । ତାଙ୍କ ଆଖିକୁ ଚାହିଁଲେ କେମିତି ଗୋଟାଏ ବୁଡ଼ିଗଲା ପରି ଲାଗେ । ତାଙ୍କ ହସଟି ଲାଗେ ଖୁବ୍ ଆପଣାର ।

ଦିନେ ତାଙ୍କର ଗୋଟେ ସ୍ୱେଟର୍ ଦେଖି ମୁଁ ଥ' ହୋଇ ରହିଗଲି । ସେଦିନ ଖୁବ୍ କଟ୍‌କଟିଆ ଶୀତ ପଡ଼ିଥାଏ । ସେ ପିନ୍ଧିଥା'ନ୍ତି ଖୁବ୍ ନରମ ଏବଂ ମୋଟା ବୁଣେଇର ଗୋଟିଏ ସ୍ୱେଟର୍ । ଦେଖିଲେହିଁ ଉଷୁମ ଲାଗୁଥାଏ । ଲହୁଣି ରଙ୍ଗରେ ଫିକା ବାଇଗଣି ଓ ଖଇରିଆର ମିଶ୍ରିତ ଡିଜାଇନ୍... କ'ଣ ହୋଇନଥିଲା ସତେ । ମତେ ଜଣାଗଲା ତୂଳୀରେ ଚିତ୍ର ହେଲାଭଳି । ସେ ଯଦି କହିଥାନ୍ତେ ଯେ, ତାକୁ ସେ ଆମେରିକାରୁ ବା ଜାପାନ୍‌ରୁ ମଗେଇଛନ୍ତି, ମୁଁ ଅତି ସହଜରେ ବିଶ୍ୱାସ କରିପକେଇଥାନ୍ତି । କିଛି ସମୟ ଅନେଇରହିଲା ପରେ ମୁଁ ଆଉ ନିଜକୁ ଆୟତ୍ତ କରି ପାରିଲି ନାହିଁ । ଯେ-ଯାହା-ଭାବୁ ଢଙ୍ଗରେ ମୁଁ ଅତି ଅଭଦ୍ର ଭାବରେ ତାଙ୍କ ପିନ୍ଧା ସ୍ୱେଟର୍‌ଟାକୁ ଅତି ନିକଟରୁ ଚାହିଁରହିଲି ଏବଂ ସମ୍ଭାଳି ନ ପାରି ବୁକୁ ପାଖରୁ ଅଣ୍ଟାଯାଏଁ ହାତମାରି ସାଉଁଳିପକାଇଲି ।

ନିଜ ବ୍ୟବହାରରେ ନିଜେ ଜଡ଼ସଡ଼ ଠିଆହେଇ ତାଙ୍କୁ ଚାହିଁଲାବେଳକୁ ତାଙ୍କ ମୁହଁରେ ସେ ଛୋଟ ହସଟି ନଥିଲା । ଆଖିଯୋଡ଼ିକ ନେଳି ସମୁଦ୍ର ପରି ସ୍ଥିର ।

ମୁଁ ଶଙ୍କିଗଲି; ନିଜ ଛୋଟଲୋକି ପାଇଁ ଲାଜେଇଗଲି । ଏଇ ବୋଧେ ସେ ମୋତେ ଚଟକଣାଟାଏ ବସେଇଦେବେ – ମୁହଁ ଫେରେଇ ଚାଲିଯିବେ । ଆଉ ଯେ କେହି ହେଲେ ସେପରି କରିଥାନ୍ତା, ମୁଁ ବି ସେପରି କରିଥାନ୍ତି; କାରଣ ସେପରି କରିବା ଉଚିତ ଥିଲା ।

କିନ୍ତୁ ସେ ଖୁବ୍ ଗମ୍ଭୀର ସ୍ୱରରେ କହିଲେ, ''ଆସନ୍ତୁ, 'ମାଳିନୀ'ରେ କଫି ଖାଇବା !''

ତାଙ୍କର ଅପ୍ରତ୍ୟାଶିତ ଭଦ୍ରତା ପାହାଡ଼ ପରି ମଡ଼େଇ ହେଇ ପଡ଼ିଲା ମୋ ଉପରେ । ମୁଁ ହତବମ୍ବ ହେଲାପରି ଠିଆରହିଲି । ସେ ମୋ ହାତ ଧରି ବାଟ କଢ଼େଇ ନେଇଗଲେ । କଫି ପିଆଇଲାବେଳେ ବାଆଁରେଇଲା ପରି ସେ ଅନେକ ଛୋଟ ଛୋଟ କଥା କହୁଥାନ୍ତି । ମୁଁ ଚେଷ୍ଟାକରୁଥାଏ ଅପ୍ରତିଭ ହସଟି ଭିତରେ ତାଙ୍କ ସହିତ ମିଶିଯିବା ପାଇଁ; ପାରୁନଥାଏ ।

''ଆପଣ ସୁବିଧା ହେଲେ ଆମ ଆଡ଼େ କେବେ ଆସନ୍ତୁ ।''

ଉତ୍ତରରେ ସେଇ ଛୋଟ ଟିକେ ହସ । ତା ମାନେ ହୁଏତ – 'ଆପଣ କାହିଁକି ଏତେ କଷ୍ଟ କରୁଛନ୍ତି' କିମ୍ବା 'ହଉ ଦେଖିବା, ସେଇଟା ଏତେ କିଛି ଜରୁରି ନୁହେଁ' କିମ୍ବା 'ଧନ୍ୟବାଦ, ମୁଁ କାହା ପାଖକୁ ଏମିତି ଯାଏ ନାହିଁ ।'

ଏମିତି ଏମିତି ମୁଁ ସବୁବେଳେ ପ୍ରସ୍ତୁତ ଥାଇ ସୁଦ୍ଧା କଫି କିମ୍ବା ଜଳଖିଆ ପଇସା ଏଯାଏଁ ଦେଇପାରିନାହିଁ । ତାଙ୍କୁ ମଧ୍ୟ ଆମ ଆଡ଼େ ଆଣିପାରିନାହିଁ । ମନେ ମନେ ତାଙ୍କୁ ଗର୍ବୀ, ଅହଙ୍କାରୀ, ବେଶି ଗୋଟାଏ ଦେଖେଇହେଲାବାଲା ବୋଲି ଶୋଧିଛି । ଜମା ତାଙ୍କୁ ଦେଖା ନ ଦେବାକୁ ସଙ୍କଳ୍ପ କରିଛି; କିନ୍ତୁ ପ୍ରାୟ ଅନିବାର୍ଯ୍ୟ ଭାବରେ ସନ୍ଧ୍ୟା ପାଞ୍ଚଟା ତିରିଶ ମିନିଟ୍‌ରେ ତାଙ୍କ ସହିତ ସାକ୍ଷାତ ହେଇଛି । ପ୍ରାୟ ପ୍ରତିଥର ନୂଆ ସ୍ୱେଟର୍ । ପ୍ରତିଥର ଜଳଖିଆ । ପ୍ରତିଥର ତାଙ୍କ ଭଦ୍ରତା ଏବଂ ବନ୍ଧୁ ସତ୍କାରର ପାହାଡ଼ ମୋ ଉପରେ ମଡ଼େଇ ହୋଇ ପଡ଼ିଛି ।

'ମାଳିନୀ'ଠଉଁ କିଛି ବାଟ ଗଲେ ଛୋଟ ପାର୍କଟିଏ । ତାଙ୍କଠାରୁ ବିଦାୟ ନେଇ ମୁଁ ଏକୁଟିଆ ଦିନେ ସେଇଠି ବସିଥିଲି । ମୋତେ ଅନେକ କାରଣରୁ ଖୁବ୍ ଉଦାସ ଲାଗୁଥିଲା । ସେଇ ପୁରୁଣା ଘଷରା କଥା – ତଥାପି ଭିତର ଗୋଳିଘାଣ୍ଟି ହୋଇଯାଉଥିଲା, ସ୍ମୃତି ମଡ଼େଇ ହୋଇପଡୁଥିଲା... ସାନ ଭାଇ ଲେଖିଦେଲା ଯେ, ଯଦି ଗାଆଁରେ ମୁଁ କେବେ ଗୋଡ଼ ଦେଇଛି, ସେ ମତେ ଗୁଳି କରି ମାରିଦେବ । ସେ ଟୋକା ମୂଳରୁ ଏକବୁଝା – ମୁଁ ତାକୁ କାଖ କରି ବିସ୍କୁଟ୍ ଖୁଆଇଲାଦିନୁଁ । ସେ ଚାହୁଁଛି, ସବୁ ଦଖଲ କରି ରହିବ । ବେଶ୍, ରହୁ । ମୁଁ ବି କେବେ ଚାହିଁ ନାହିଁ ଗାଆଁକୁ ଫେରିବାକୁ । ଯଦି ସତକୁ ସତ ସୁର ତା ଇଛାରେ ତାହା କହୁଥାନ୍ତା ଓ କରୁଥାନ୍ତା,

ମୁଁ ତାକୁ ଆଶୀର୍ବାଦ କରି ଆଡ଼ ହୋଇଯାନ୍ତି । ଆମର ଚଳିଯିବାକୁ ଢେର୍ ଅଛି; ନ ହେଲେ ଯେମିତି ହେଲେ ଚଳିଯାଆନ୍ତା । କିନ୍ତୁ ମୋର ଦୁଃଖ ଯେ, ମୋର ମା' ଏବେ ସୁର ପାଖରେ ରହି ତାକୁ ଏମିତି ତତୋଉଛି । ଆଶ୍ଚର୍ଯ୍ୟ ! – 'ତୁ କ'ଣ ବଡ଼ପୁଅଟାକୁ ଗୋଟେଇ ଆଣିଥିଲୁ କେଉଁଠୁ ?' ତା'ର ବୋଧେ ଆୟତ୍ତ ନାହିଁ; ତା ଭାଇନା ହେଉଛନ୍ତି ନାଟର ଗୋବର୍ଦ୍ଧନ । ସେ ଆମ କୁଟୁମ୍ବରେ ପଶିଆସିଛନ୍ତି ବାପା ଥିବା କାଳରୁ । ତାଙ୍କ ଝିଅଟିକୁ 'ସୁର' ହାତରେ ଛନ୍ଦିଦେଇଛନ୍ତି । ଏଣେ କଳ ମୋଡୁଛନ୍ତି, କେମିତି ଭାଇ-ଭାଇ ଭିତରେ ବାଡ଼ ପଡ଼ିଯାଉ । ବାପା ମରିବା ପରେ ଗାଆଁରେ ଏଇ ମାମୁହିଁ ସର୍ବେସର୍ବା । – ଛାଡ଼ ! କିନ୍ତୁ ଛାଡ଼ିବ କିଏ ? ମୁଁ ସିନା ଚାହୁଁ ନାହିଁ ଝଗଡ଼ା କରିବାକୁ – ବୁଲାବୋଉ କଣ ଛାଡ଼ିବା ଜନ୍ତୁ ? ସେ ଦୈନିକ କଳିଆ କରୁଛି – "ଏମିତି ଗୁଡ଼େ ଧର୍ମ-ଯୁଦ୍ଧେଷ୍ଠି ହେଇଯାଅ ନାଇଁ । ହକ୍ ଗୋସେଇଁବାପର ଅର୍ଜିଲା ସମ୍ପତ୍ତି । ସେ ଅଳପେଇଷ ନିଶରେ ହାତ ପକେଇ ଓଟାରି ନବ; ଆଉ ତମେ ଓଲା ଭକୁଆ ହେଇ ଚାହିଁରହିଥିବ ? ଏବେ କିଛି ଆସିଲେ ମୋ ପିଲାଙ୍କ ପାଇଁ ହେଲେ ଦି'କଥା କରିପାରନ୍ତି । ତମ ହାତ ଧରି ମୋ ଜୀବନଟା ସାରା ମାଟି ହେଇଗଲା ।"

– ସେ ସତକୁ ସତ ମତେ ଘୃଣା କରେ ନା କ'ଣ । ସେଦିନ ରୋକ୍‌ଠୋକ୍ କହିଦେଲା ମୋ ମୁହଁ ଉପରେ – "ଯାଉନ, ମୋର ଆଉ ବେପାର ନାଇଁ ? ମୁଁ ତମ ପେଇଁ ଏଇନା ସ୍ୱେଟର୍ ବୁଣିବି ? ମନ ହଉଚି ଯଦି ଶସ୍ତାଟାଏ ଦେଖି କିଣିପକାଅ । କଅଣ ନା, ଏ ବୁଢ଼ା ରସିକଙ୍କ ପାଇଁ ସବୁ କାମ ଛାଡ଼ି ଆହୁରି ସ୍ୱେଟର୍ ବୁଣାଯିବ ! ଉଠ୍‌ଠୁ !"

"ହଉ ଯଦି ବୁଣିବ ନାହିଁ, ବୁଣିବ ନାହିଁ – ଏମିତି କାଇଁ ଶୋଧୁଛ ? ଏତେ କଟୁକଥା କହିବା କଣ ଦରକାର ?" ମତେ ଲାଗିଲା, ମୋ ମୁହଁରେ କିଏ ଚଟକଣା ମାରିଦେଇଗଲା । ହାଉହାଉ ହେଇ ଜଳିଉଠିଲା ମୋ ମୁହଁ, ବୁକୁ ଭିତର, ବାହାର । ପାଖରେ ବାବୁଲି ଠିଆହୋଇଥିଲା; କୁନି ଠିଆହୋଇଥିଲା । ସେମାନେ ମାଆକୁ ଡରନ୍ତି ସତ, ହେଲେ ପଦେ କ'ଣ ମୁହଁ ଫିଟେଇ କହି ପାରିନଥାନ୍ତେ ? ତାକୁ କ'ଣ ଟିକିଏ ବାଧି ନ ଥାନ୍ତା ? ମୋତେ ବରଂ ବୋଧ ହେଲା, ତାଙ୍କ ଚାହାଣିରୁ ଯେ, ସେମାନଙ୍କୁ ବେଶ୍ କୌତୁକ ଲାଗୁଥିଲା ମୋର ଲାଞ୍ଛନା !

...ମୁଁ ପାର୍କ ବେଞ୍ଚ ଉପରେ ବସି ଶୂନ୍ୟକୁ ଚାହିଁ ଭାବୁଥାଏ ।

ମନେ ପଡ଼ିଯାଉଥାଏ ମନୁ ଗୋସ୍ୱାମୀଙ୍କ କଥା – ହଁ, ତାଙ୍କ ନାଁ ମନୁ ଗୋସ୍ୱାମୀ ! ସେ କଲିକତାରୁ ଆସିଛନ୍ତି; ତାଙ୍କ ଘର କିନ୍ତୁ ବହୁକାଳରୁ ଓଡ଼ିଶାରେ । ବ୍ୟାଙ୍କରେ ଚାକିରି କରନ୍ତି । ଅନେକ ପଇସା, ଅନେକ ସୁଖ, ଅନେକ ସ୍ନେହ ! ତାଙ୍କର ଭଳି ଭଳି ସ୍ୱେଟର୍, ଥାକ ଥାକ ମୁଲାୟମ ଆଦରରେ ସଜ୍ଜିତ ଘରଟିକୁ ଆମ ଶିଙ୍ଘୁବଣ ସହିତ ତୁଳନା କରୁଥାଏ – କେମିତି ସତେ ତାଙ୍କ ଘର ସଜଡ଼ା ହୋଇନଥିବ ! ମୋର ଦେଖିବାକୁ ଭାରି ଇଚ୍ଛା । ତାଙ୍କ ସ୍ତ୍ରୀ ନିଶ୍ଚୟ ସୁଶ୍ରୀ ବଙ୍ଗବଧୂ । କଥା, ହସ, ଚାଲିରେ

ମହୁ ଝରଉଥିବା ଅପରୂପା ନାରୀ ।... ତାଙ୍କ ପିଲାଏ ନିଶ୍ଚୟ ଦେବଶିଶୁ ପରି, ଫୁଲପରି ସୁନ୍ଦର ।

''ହେ... ବାଲୁଙ୍କି ଭାଇ କି ହେ, ଏଇଠି ବସି କଅଣ କରୁଛ ?''

ରାଉରାଉ ଘଣ୍ଟ ପରି ତା ସ୍ୱର । – ବଡ଼ପାଟିଆ, କୁହାକପିଲା ଶିବ ପଢ଼ିଆରୀ !

ମୋ ବ୍ରହ୍ମରେ ନିଆଁ ଚରିଗଲା । ଯାଃ ଶଳା ସଂସାରରେ ସମସ୍ତେ ମୋ ଶତ୍ରୁ ! – ତୋର କ'ଣ ଗଲା ବେ ନାଲାଏକ୍, ସୁଅର୍ ଜା ବଚ୍ଚା – ମୁଁ ବାଲୁଙ୍କି ମିଶ୍ର ଯୋଉଠି ବସିଲି, ମଲି, ଗଲି ଯାହା ହେଲି, ତୋର କ'ଣ ଗଲା ? କେବେ ମୁହଁ ନ ଦେଖେଇବା ଲୋକ କାହୁଁ ଆସି ଏଠି ପହଞ୍ଚିଗଲୁ ?

ମୁଁ କିଛି ନ କହି ଫଡ଼କିନା ମୁହଁ ବୁଲେଇ ବସିଲି ।

ତାକୁ ବୋଧେ ଦିଶିଲା ମୁଁ ରୁଷିଲା ପରି । କହିଲା, ''ହେଃ, ବାଲୁଙ୍କେଇ, ସତ କହୁଛି, ମୁଁ କୋଉ ଦିନୁ ତୁମକୁ ମନେ ମନେ ଖୋଜୁଛି । ତମେ ଯାହା ସଙ୍ଗେ ସଞ୍ଜବେଳେ କଫି ପିଇ ଯାଉନ...'' ମୋ କାନ ଠିଆ ଠିଆ ହୋଇଗଲା... ''ସେଇ କେରା ବଙ୍ଗାଳୀଟା କଥା ତୁମକୁ କହିଦବାକୁ ଆସିଛି ।''

ମୁଁ ଚମକିଲା ପରି ବୁଲିପଡ଼ିଲି – ''କ'ଣ କହିବାକୁ ଆସିଛୁ ? ତୋ ପାଖରୁ ମୋର କିଛି ଶୁଣିବାର ନାହିଁ । ତୁ ବାରଆଡୁ ଗୁଡ଼ାଏ ଉଡ଼ାଖବର ଆଣି ଭଡ଼ର ଭଡ଼ର ହବୁ । ମୋର ବେଳ ନାହିଁ ଶୁଣିବାକୁ । ମୁଁ ଚାଲିଲି ।''

''ଯିବାକୁ କ'ଣ ମୁଁ ନାହିଁ କରୁଛି ? ତମର ପରା ବେଳ ହେଇନାହିଁ । ବିର୍‌ଜୁ ଦୋକାନରୁ ପାନ ଖାଇ, ପାଉଁରୁଟି ଧରି ଘରକୁ ଯିବ ତ; ରଇଥ ! ତା ବେକରୀରୁ ତାଜା ରୁଟି ନ ଉଠିଲେ କ'ଣ ତମେ ନବ; ନ ନେଲେ ତମ ଚୁଟି ରହିବ ଘରେ ? ମହା ଜିଗ୍ରସେନୀ ଭାଉଜ ଆମର ରେକାର ତୁକାର କରି ମାଡ଼ିଆସିଲେ ବାସି ରୁଟି ହାତରେ ଧରି ଦଉଡ଼ିଆସିବାକୁ ତମକୁ ବାଟ ଦିଶିବ ନାହିଁ ।''

ମୁଁ ଫେଁକିନା ହସିପକେଇଲି । ମୋ ବିପର୍ଯ୍ୟୟର ଚିତ୍ର ଶିବ ବାଜୁରା ଏମିତି ବଖାଣିଗଲା ଯେ, ମତେ ଦିଶିଗଲା ମାଛି-ଅନ୍ଧାରରେ ଆମ ଦାଣ୍ଡଦୁଆରୁ କଛା-ମୁକୁଳା ଗୋଟାଏ ଅଧାଡ଼ିଆ ମଣିଷ ପ୍ରାଣମୂର୍ଚ୍ଛା ଧାଇଁପଳେଇବାର ଦୃଶ୍ୟ – ତା' ହାତରେ ଗୋଟାଏ କାକର ପାଉଁରୁଟି ।...

ଶିବ ପଢ଼ିଆରୀ ଖୁସି ହେଇଗଲା – ''ଜାଇଁଲ ବାଲୁଙ୍କେଇ, ଆଜି ସେଇ 'ମାଳିନୀ' ପାଖ ପଞ୍ଜାବି ଦୋକାନ ନାଇଁ, ସେଇଠି ଜାଣ ଗୋଟେ ତାମସା ଲାଗିଗଲା...''

ମୁଁ ଠିଆହେଇପଡ଼ି କହିଲି, ''ମୋର ସେ ସବୁ ବାଜେ ଗପ ଶୁଣିବାକୁ ବେଳ ନାଇଁ ।''

ସେ ମୋ ହାତ ଧରି ଝିଙ୍କି ବସେଇ ଦଉ ଦଉ କହିଲା, ''ବସୁନ ଭାଇନା, ମୁଁ ତମର ସେଇ ବଙ୍ଗାଳୀ କଥା କହୁଛି – ଟିକିଏ ଥୟ ଧରୁନ କାହିଁକି ? ତୁମେ ଜାଣ, ସେଇ ମନୁ ଗୋସ୍ୱାମୀ ହପ୍ତାରେ ଗୋଟେ ଲେଖା ନୂଆ ସ୍ୱେଟର୍ ପିନ୍ଧି ଆସେ ?

ତାକୁ ଖାପିଲା ପରି ବାକି ପୋଷାକ । ସେଇଟା ସବୁ ସେଇ ଚାଟାର୍ଜୀ ଷ୍ଟୋର୍‌ସ୍‌ର ଜିନିଷ ! ମନୁ ଗୋସ୍ୱାମୀ ତା'ର ଚଳନ୍ତି ମଡ଼େଇ ! ଏଠି ଚାଲବୁଲ କରି ରାତିରେ ଫେରିଲା ବେଳେ ସେ ତା' ନିଜ ପୋଷାକରେ ଥାଏ ।''

''ଚୋପ୍ କର । ଆବେ, କାହୁଁ ଆଣି ଏମିତି ଗୁଡ଼ାଏ କଥା ଶୁଣାଉଚୁ ସେ କ'ଣ ସ୍ୱେଟର୍ ପିନ୍ଧନ୍ତି ମୁଁ ଜାଣିନାହିଁ । ତାଙ୍କ ସ୍ତ୍ରୀ ଅତି ସୁନ୍ଦରୀ, ଚମତ୍କାର କଳା-କୁଶଳୀ – ସେ ତାଙ୍କ ପାଇଁ ଅସଂଖ୍ୟ ସ୍ୱେଟର୍ ବୁଣିଛନ୍ତି । ଆଠ-ଦଶ ଦିନରେ ପୁଣି ସେଇ ସ୍ୱେଟର୍ ପିନ୍ଧି ଆସିବାର ମୁଁ ଦେଖିନି ।

ଶିବା ଭୁଷୁଣ୍ଡା ଖେଁ-ଖେଁ ହସି ଲୋଟିପଡ଼ିଲା, ''ବୁଝିଲ ବାଲୁଙ୍କେଇ, ତମେ ଯୋଉ ମାଧିଆକୁ ସେଇ ମାଧିଆ ରହିଗଲ । ତମେ ତା' ଘରକୁ ଯାଇଚ ? ଦେଖିଚ ତା' ଘର ?''

ମୁଁ ଲାଜରେ ରଙ୍ଗା ପଡ଼ିଗଲି ।

ଶିବ ପଢ଼ିଆରୀ ପିଟିଚାଲିଲା ଅରଣା ଷଣ୍ଢ ପରି, ''ଆହେ, ମୁଁ ଯାଇ ଦେଖିଛି । ତମ ମନୁ ଗୋସେଇଁକୁ ମୁଁ ଜାଣିଚି କୋଉ କାଳୁ । ସେଇଟା ଉଦ୍‌ବାସ୍ତୁଟାଏ । ତା ମଦୁଆ ବାପ ତାକୁ ହାଣିଦବାକୁ କଟୁରି ଧରି ଗୋଡ଼େଇଥିଲା । ତା ଭଉଣୀଟାକୁ କିଏ ଟେକିନେଇ ପଳେଇଲା । ସେଇଟା ତିର୍‌କି ତିର୍‌କି ହେଇ ବୁଲିଲା କିଛିକାଳ... ତା' ଉତ୍ତାରୁ ପଳେଇଲା ଆମ ଗାଁ ଛାଡ଼ି କଲିକତା ନା କୁଆଡ଼େ । – ସେଇଟା ଆମ ଗାଁପିଲା । ମୁଁ ତାକୁ ଜାଣିନାଇଁ, ତମେ ଜାଣିଚ ବେଶି ?''

ମୁଁ ପେଷିହେଇ ଲାଖିଯାଇଥାଏ ସିମେଣ୍ଟ ବେଞ୍ଚ ଉପରେ; ମିଟିମିଟି ଅନେଇଥାଏ । ଜାଣିପାରୁନଥାଏ ମୋର ହାତଗୋଡ଼ ଅଛି, ନା ନାହିଁ ।

''ମନୁ ଗୋସ୍ୱାମୀଟା ଦୁଃଖ କ'ଣ, ଜାଣିଚି; ତାକୁ ଜୀବନସାରା ଭୋଗିଚି, ଲଢ଼ିଚି, ଚାଲିଚି – ସେମିତି ବଡ଼ ଚାକିରି କିଛି କରିନାଇଁ ମ । ସେଇଟା ତଳିଆଟାଏ, ହେଲେ ଭାଇନା, ତା ଦୁଃଖ ଆଉଠାଏ । ସେ ଶଳାଟି ଏଯାଏଁ ବିଭା ହେଇନାହିଁ – ସେ ମାଇକିନାଖଣ୍ଡକ ଯାହାକୁ ଘରେ ରଖିଚି, ତାକୁ ସେ ରାସ୍ତାରୁ ଗୋଟେଇ ଆଣିଚି... ଏକାଥରେ ଗାଈ ବାଛୁରୀ ହଳକଯାକ ନେଇଆସଚି – ହୋ... ହୋ... ହୋ... ଅଛବ ଦାଣ୍ଡୁଆ ମାଇକିନାଟାଏ । ଦେଖିବାକୁ ମନ୍ଦ ନୁହେଁ; ହେଲେ ସେ ବାରଗୋଟେଇ ତାକୁ ପଚାରୁନାଇଁ !

ଶିବାକୁ ମୁଁ ଠାଇକିନା ଚଟକଣାଟାଏ ବସେଇ ଦେଇଥାନ୍ତି – ଅସଭ୍ୟ ବର୍ବର ବଣୁଆ କାହାଁକା – ମୋ ତୋଟିକୁ କିଏ ଧରି ଚିପିଦେଲା ପରି ଲାଗିଲା । ମୋ ଦେହସାରା ଠକ୍‌ଠକ୍ ଥରିଲା । ଦାଣ୍ଡମଝିଟାରେ କିଏ ସତେବା ଜଣକ ଦିହରୁ ଲୁଗାପଟା ଉତାରିପକେଇ ଲଙ୍ଗଳା କରିଦେଲା । ଓଃ, ମୁଁ ସେଭଳି ଆକ୍ରମଣ ପାଇଁ ପ୍ରସ୍ତୁତ ନ ଥିଲି – ଦନ୍ତା ବାର୍‌ହାଟାଏ ଅକସ୍ମାତ୍ ଆସି ମତେ ଲହୁଲୁହାଣ କରିପକେଇଲା ।

''ତମ ପାଉଁରୁଟି ଦୋକାନଯାଏ ଚାଲ ଯିବା...''

ମୁଁ ପ୍ରସ୍ତୁତ ନଥିଲି ଆଉ ମୁହୂର୍ତ୍ତେ ତା ପାଖେ ରହିବାକୁ । ଏତିକିବେଳେ 'ମାଳିନୀ' ହୋଟେଲ ଆଡୁ ଗୋଳ ଉଠିଲା । ଶିବ ପଢ଼ିଆରୀ ପିଲାଙ୍କ ପରି ଦଉଡ଼ିଲା ସେଇଆଡ଼େ – ପଛକୁ ମୁହଁ କରି ରାଉରାଉ କହିଯାଉଥିଲା, ''ମୁଁ ଆଉ ଦିନେ ସବୁକଥା କହିବି... ଯାଉଚି –''

ମୁଁ ଶିବ ପଢ଼ିଆରୀକୁ ଚାହିଁରହିଲି କିଛି ସମୟ । ବଣଜନ୍ତୁଟାଏ ଘୁଞ୍ଚିଯାଉଥିଲା ଦୂରରୁ ଦୂରକୁ । ଝଡ଼ଟାଏ ଅପସରିଯାଉଥିଲା ମୋର ଫୁଲ ବଗିଚାଟିକୁ ମର୍ଦ୍ଦିଦେଲା ପରେ ।

ମୁଁ ହାଲିଆ ହେଇ ପୁଣି ଲଥିକିନା ବସିପଡ଼ିଲି ବେଞ୍ଚଟା ଉପରେ । ମୋ କାନ ଭାଁ-ଭାଁ ଡାକୁଥାଏ । ମୁଁ ଆଖି ବୁଜି ଚାରିକାତ ମେଲେଇ ପଡ଼ିଥାଏ କିଛିକାଳ !

ମୋ ଭିତରେ କୋଳାହଳ ଜମା ସମ୍ଭାଳି ହେଉନଥାଏ । ଚାରିଆଡୁ ଭେରଣ୍ଡା ପରି ଶିବ ପଢ଼ିଆରୀର ଟହଟହ ହସ ଶୁଭୁଥାଏ – ଅଶ୍ଳୀଳ, ଅରଣା, ବିକଟ !

ମନୁ ଗୋସ୍ୱାମୀ ଗୋଟାଏ ପୋଷାକ ଦୋକାନର ଚଳନ୍ତା ମଡ଼େଲ !... ସେ ହପ୍ତାକୁ ହପ୍ତା ଗୋଟାଏ ଲେଖା ସ୍ୱେଟର୍ ବଦଳ କରି ଆସୁଚି । ବଜାରରେ ବୁଲି ଲୋକଙ୍କ ଦୃଷ୍ଟିରେ ପକାଉଚି – ମତେ ବେକୁବ୍ ମାଧିଆ ପରି ବ୍ୟବହାର କରୁଚି – !

ତା ସ୍ତ୍ରୀ ନାହିଁ । ସେ ଗୋଟାଏ ଦାଣ୍ଡୁଆ ମାଇକିନା ରଖିଚି ପାଖରେ ! ସେ କୁଆଡ଼େ ତାକୁ ଖାତିର କରୁନାହିଁ ! ଓଃ !...

ମୋତେ ଅସୁଖ ଲାଗିଲା । ମୁଁ ଧଡ଼୍‌ଧାଡ଼୍ ଠିଆ ହେଇଗଲି । ମନୁ ଗୋସ୍ୱାମୀକୁ ମୁଁ ଭୁଲିପାରୁନଥାଏ, କ୍ଷମା କରିପାରୁନଥାଏ । ନିଜକୁ ନିଜେ କ୍ଷମା କରିପାରୁନଥାଏ – କେଡ଼େ ବେକୁବ୍ ସତେ ଏ ବାଲୁଙ୍କି ମିଶ୍ରଟା... !

ଛାଡ଼, ବିର୍‌ଚ୍ଚୁ ଦୋକାନରୁ ତାଜା ପାଉଁରୁଟି ବାହାରିବା ବେଳ ହେଇଗଲା । ଏଣିକି ଫେରିବା ବେଳ ହେଇଗଲା – ଆଉ ସେ ପାଖଣ୍ଡି ମନୁ ଗୋସ୍ୱାମୀ ପାଖ ପଶିବା କଥା ନୁହେଁ । ଏଇ ଗୁରୁକାନମୋଡ଼ା – ଆଉ ଦିନେ 'ମାଳିନୀ' ନାହିଁ କି ତା ସାଙ୍ଗରେ କଫିଖିଆ ନାହିଁ । ଯେ ମଣିଷଟାକୁ ଚିହ୍ନିପାରେ ନାହିଁ, ତା'ର ଦୋସ୍ତି କରିବାର ଅଧିକାର କୋଉଠୁ ଆସିଲା ?

ମୁଁ ଘରମୁହାଁ ଧୀରେ ଧୀରେ ଆଗେଇଗଲି ।

ଛକ ପାଖରେ ମନରେ ଦୋଦୋ-ପାଞ୍ଚ ଆସିଲା । ମନୁ ଗୋସ୍ୱାମୀର ଛୋଟ ହସଟି ଏବଂ ତା ଆଖିର ସେ ଗହୀର ସମୁଦ୍ର ମନେପଡ଼ିଲା । ତା'ର ଅସମ୍ଭବ ଭଦ୍ରତା, କଥା କହିବାର ଶାଳୀନତା ମନେପଡ଼ିଲା... ଯା' ମଃ, ସେ କଦାପି ସେପରି ନୁହେଁ ।

...ଆଚ୍ଛା ଏବେ ଚୁପ୍‌ଚାପ୍ ମନୁ ଗୋସ୍ୱାମୀ ଘରେ ପହଞ୍ଚିଗଲେ କେମିତି ହୁଏ ? ସେ ଛାନିଆ ହେଇଯାନ୍ତା – ଲୋଟିପଡ଼ନ୍ତା ମତେ ଦେଖି । ତା ସ୍ତ୍ରୀ ତ ବେଶ୍ ସୁନ୍ଦରୀ । ଶିବ ପଢ଼ିଆରୀ ମଧ ସ୍ୱୀକାର କରୁଛି, ମାନେ... ବେଶ୍ ସୁନ୍ଦରୀ ହେଇଥିବ ।

ଘର ଆଡ଼େ ନଯାଇ ମୁଁ ମୋଡ଼ିଗଲି ତଳ ସାହି ଆଡ଼େ । ଏକାଥରେ ମନୁ ଗୋସ୍ୱାମୀର ଦୁଆରମୁହଁରେ ମୋର ହୋସ୍ ଆସିଲା –

ଛୋଟ ଭଡ଼ାଘରଟିଏ । ସାମ୍ନାରେ ଗଙ୍ଗଶିଉଳି ଗଛ । ପାହାଚ ପାଖରେ ମଧୁମାଳତୀ ଲଇ – ଖୁବ୍ ପରିଷ୍କାର, ଗାଧୋଇପାଧୋଇ ଠିଆହୋଇଥିବା ନିରାଭରଣ କନ୍ୟାଟିଏ ପରି ।

ମୁଁ ଖୁସି ହୋଇଗଲି । ମୁଁ ଏମିତି ଅଳ୍ପକେ ଖୁସି ହେଇଯାଏ ।

ମନୁ ଗୋସ୍ୱାମୀଙ୍କ ଘର । ସଙ୍କୋଚ କରିବାର ପ୍ରଶ୍ନ ନାହିଁ । ପାହାଚ ଚଢ଼ି ଡାକିଲି – ''ଘରେ ଅଛନ୍ତି ?''

ଅଳ୍ପ ସମୟ ଅପେକ୍ଷା କରିବାକୁ ହେଲା । ଘରସାରା ଚୁପ୍‌ଚାପ୍ । ପ୍ରଥମେ ପିଣ୍ଡାର ଆଲୁଅ ଜାଳି କବାଟ ଫିଟେଇ ଯେ ମୋତେ ଚାହିଁରହିଲେ, ସେ ନିଶ୍ଚୟ ଶ୍ରୀମତୀ ଗୋସ୍ୱାମୀ । ଶିବ ପଢ଼ିଆରୀ ନାଲାଏକ । ସେ ଯାହା କହୁଛି, ସବୁ ମିଛ – ଡାହା ମିଛ ।

''ଆଜ୍ଞା ନମସ୍କାର, ମୁଁ ବାଲୁଙ୍କି ମିଶ୍ର... ଗୋସ୍ୱାମୀ ମହାଶୟ ଘରେ ଅଛନ୍ତି ?''

ତାଙ୍କ ମୁହଁରୁ ପ୍ରଶ୍ନବାଚୀ ଓହ୍ଲେଇଗଲା । ମୁହଁଟି ମହକୁଥିବା ଗୋଲାପ ଏବଂ ମଲ୍ଲୀର ପୁଷ୍ପଗୁଚ୍ଛ ।

''ଆପଣ ଭିତରକୁ ଆସନ୍ତୁ ।''

ବୈଠକଘରଟି ଖୁବ୍ ନିରାଡ଼ମ୍ବର, ନିର୍ମଳ । ମୋ ସାମ୍ନା ଚୌକିରେ ସେ ବସିବାରୁ ମୁଁ ଲକ୍ଷ୍ୟ କଲି ଯେ ଭଦ୍ରମହିଳାଙ୍କୁ ସୁନ୍ଦର କୁହାଯାଇପାରେ । ଖୁବ୍ ଭଦ୍ର ଏବଂ ସାମାନ୍ୟ ଲଜ୍ଜାଶୀଳା ।

''ମୁଁ ଆପଣଙ୍କ ବିଷୟରେ ଶୁଣିଛି ଅନେକ ଅନେକ ପ୍ରଶଂସା !''

''ମୋର ସେ ସମସ୍ତ ପ୍ରଶଂସା ପାଇଁ ଯୋଗ୍ୟତା ନାହିଁ ! ମୁଁ ମାତ୍ର ମନୁ ଗୋସ୍ୱାମୀଙ୍କର ଜଣେ ମୁଗ୍‌ଧ ବନ୍ଧୁ ଏବଂ... ଏବଂ ଆପଣଙ୍କୁ ଏଇ ପ୍ରଥମ ଥର ଦେଖୁଥିଲେ ସୁଦ୍ଧା ଆପଣଙ୍କର ଜଣେ ସ୍ତାବକ ।

''ବସନ୍ତୁ । ମୁଁ ଆପଣଙ୍କ ପାଇଁ ଚା' ନେଇଆସେ !''

''ନା, ନା, ମୋର ପ୍ରୟୋଜନ ନାହିଁ, ଗୋସ୍ୱାମୀ ମହାଶୟଙ୍କ ସଙ୍ଗେ କଫି ଖାଇସାରିଚି । ସେ କ'ଣ କରୁଛନ୍ତି ?''

''ସେ ବର୍ତ୍ତମାନ ସୁଦ୍ଧା ଫେରିନାହାନ୍ତି ।''

...ଚୁପ୍‌କର ଧୂର୍ତ୍ତ, ମୁଖର... ଶିବୁ ପଢ଼ିଆରୀ – ସେ କଦାପି ଚାଟାର୍ଜୀ ଷ୍ଟୋରସ୍‌ରୁ ଲୁଗା ବଦଳ କରି ଫେରୁନାହାନ୍ତି । ତୁ ଶାଲା ଅସହଣିକ, ଲଗା-ଯୋଡ଼ା କରି ମିଛ କହିବା ତୋର ପେସା – ଚୁପ୍... ଚୁପ୍... ଚୁପ୍... !

''ଆଜି ବୋଧେ ଡେରି ହେଇଗଲା ।''

ଅଳ୍ପ ତଳକୁ ଚାହିଁ ଅତି ସ୍ୱାଭାବିକ ଭଙ୍ଗୀରେ କହିଲେ, ''ସେ ଆସୁ ଆସୁ ପ୍ରାୟ ଦଶଟା ପାରିହେଇଯାଏ । ଦିନେ ଦିନେ... ରାତି ପାହିଯାଏ ।''

ଦୀର୍ଘଶ୍ୱାସ ଭରିଗଲା ମୋ ବୁକୁ ଭିତରେ ଏବଂ ଓହ୍ଲେଇଗଲା । ମୁଁ ଦବିଯାଉଥିଲି; ବିଚଳିତ ହୋଇ ଉଠୁଥିଲି । ମୁଁ ଅବା କ'ଣ କରିପାରେ ସେ ଭଳି ପରିସ୍ଥିତିରେ ! ମୋର ବୋଧହୁଏ ସ୍ୱାଭାବିକ ହୋଇଥାନ୍ତା ସେ ବିଷୟରେ ଆଉ କିଛି ପଚାରିବା; କିନ୍ତୁ ପଚାରି ପାରିଲିନାହିଁ । ଇଚ୍ଛା ହେଲା ନାହିଁ । ସାହସ ହେଲା ନାହିଁ ।

ଆମେ ନୀରବ କିଛି ସମୟ ତଳକୁ ଚାହିଁ ବସିରହିଲୁ ।

''ଆଚ୍ଛା ! ମୁଁ ତା'ହେଲେ ଆସୁଚି... ପୁଣି ଆଉ କେବେ ସୁବିଧା ଦେଖି ଆସିବି ।''

''ଆଉ ଟିକିଏ ଅପେକ୍ଷା କରନ୍ତୁ । ମୁଁ ଆପଣଙ୍କ ପାଇଁ ଚା' କପେ ନେଇଆସେ ।''

ସେ ସ୍ୱର ଏବଂ ସେ ଅନୁରୋଧକୁ ଉପେକ୍ଷା କରିବା ସମ୍ଭବ ନୁହେଁ – ଚା' ବୋଧହୁଏ ହେଇସାରିଥିଲା । ସେ ଛୋଟ ଟ୍ରେଟିରେ ଚା' ଆଣି ମୋ ସାମ୍ନାରେ ଥୋଇଦେଲେ ।

''ଆପଣଙ୍କ ପାଇଁ ଆଣିଲେ ନାହିଁ ଯେ !''

''ନା, ଆଉ ମୋର ଏଇନା ପ୍ରୟୋଜନ ନାହିଁ ।''

''ନା, ନା... ଚା' କେମିତି ହବ, ଆପଣ ଆଉ ଗୋଟିଏ ଖାଲି କପ୍ ଆଣନ୍ତୁ । ମୁଁ ଏତେ ପିଇବି ନାହିଁ । ଅଧେ ଅଧେ କରିଦେବା; ଆପଣଙ୍କ ପୁଅ କ'ଣ ଘର ଭିତରେ ପାଠ ପଢୁଚି ?''

''ନା, ସେ ଟିଉସନ ଯାଇଛି ।''

ମୋତେ ହଠାତ୍ ଅସୁସ୍ଥ ବୋଧ ହେଲା ! ଛପ୍‌କରି ବିରାଡ଼ିଟାଏ ଡେଇଁଗଲା ଝରକାବାଟେ... ଚୁପ୍‌କର... ଚୁପ୍‌କର... ଶିବୁ ପଢ଼ିଆରୀ... ତୋ ଅଲକ୍ଷଣିଆ ମୁହଁ ବନ୍ଦ କର !

ମୁଁ କିଛି ନ କହି ନୀରବରେ ଚା' ପିଇଲି ।

ସେ ଟେବୁଲରୁ ଚା' କପ୍‌ଟିକୁ ଉଠାଇଲେ ନାହିଁ ।

''ଆପଣଙ୍କ ସ୍ତ୍ରୀଙ୍କୁ ନେଇ ଦିନେ ବୁଲିଆସନ୍ତୁ ।''

ମୋ ହାତରୁ କପ୍ ଖସିପଡ଼ିଥାନ୍ତା । ଘାଉଁକିନା ଝଡ଼ଟାଏ ଧକ୍କା ମାରି ଚାଲିଗଲା । ଅଣ୍ଡା ପାଉଁରୁଟି, ରେ'କାର ତୁ'କାର, ଅମର୍ଯ୍ୟାଦାର ଚିତ୍ର ଦିଶିଗଲା; ମଞ୍ଚ ଦୁର୍ବଳ ହେଇଗଲା । ସବୁ ଶକ୍ତି ଖଟେଇ ମୁଁ ଯେଉଁ ଦୁର୍ମୂଲ୍ୟ ହସଟିକୁ ମୁହଁରେ ମଣ୍ଡିହେଲି, ବୋଧହୁଏ ସେଇଟା ଭାରି ଦରିଦ୍ର ଦେଖାଯାଉଥିଲା । ମୋର ଇଚ୍ଛା ହେଲା ସେ ଶତ୍ରୁବ୍ୟୂହରୁ ମୁକୁଳିବାକୁ । ଇଚ୍ଛା ହେଲା, ଶ୍ରୀମତୀ ଗୋସ୍ୱାମୀ ମୋତେହିଁ କେବଳ ଆସିବାକୁ ନିମନ୍ତ୍ରଣ କରନ୍ତେ କି ? ମୁଁ ହିଁ କେବଳ ଆସନ୍ତି ଏମିତି ଆଉ ଗୋଟିଏ

ନିରୋଳା ସନ୍ଧ୍ୟାରେ... ରହିଯା' ଶିବୁ ପଢ଼ିଆରୀ... ତୋର ଅସନା ମୁହଁରେ ସବୁବେଳେ ଅସନା କଥା – ମୁଁ କ'ଣ ସତେ ଚାହୁଁଚି ସଞ୍ଜବେଳେ ଏକୁଟିଆ ଆସିବାକୁ ?

"ଆପଣଙ୍କର ଏ ସ୍ୱେଟର୍‌ ନିଶ୍ଚୟ ମିସେସ୍‌ ମିଶ୍ର ବୁଣିଥିବେ । ଭାରି ସୁନ୍ଦର ଡିଜାଇନ୍‌ ହେଇଚି..."

ନେପାଳୀ ବୁଲାବିକାଳିଠଉ ଅଧେ ସୂତା ଅଧେ ଝୋଟ ମିଶା ଶସ୍ତା ସ୍ୱେଟର୍‌ ମୁଁ ଗଳେଇହୋଇଥାଏ ।

ହସ-କାନ୍ଦମିଶା ଗୋଟାଏ ଖେଁ-ଖେଁ ସ୍ୱର ମୋ ତୁଣ୍ଡରୁ ବାହାରିଆସିଲା, "ସତେ ନା, ଆପଣଙ୍କୁ ଏଇଟା ଭଲ ଦିଶିଲା... ଆପଣଙ୍କ ହାତରେ ତ କେତେ ବିଚିତ୍ର ବୁଣେଇହେବାର ନମୁନା ମୁଁ ଦେଖିସାରିଛି ! ମନୁ ଗୋସ୍ୱାମୀଙ୍କ ସ୍ୱେଟର୍‌ କହିଲେ ସହରରେ କିଏ ନ ଦେଖିଚି ? କିଏ ତାଜୁବ୍‌ ନ ହେଇଚି ? – ସମସ୍ତଙ୍କ ମୁହଁରେ ଆପଣଙ୍କ ପାଇଁ ପ୍ରଶଂସା... ସମସ୍ତେ ତୋବା ତୋବା ହଉଚନ୍ତି ।"

ସେ କିଛି ନ କହି ମୋ ମୁହଁକୁ ଚାହିଁ ନୀରବ ହସିଲେ ।

'ତେବେ ଶିବୁ ପଢ଼ିଆରୀ, ତୁ କଣ ଏବେ ବି କହୁଛୁ ମନୁ ଗୋସ୍ୱାମୀ ଚାଟାର୍ଜୀ ଷ୍ଟୋର୍‌ସର ମଡ଼େଲ – ତୁ ଚୁପ୍‌କର, ତୁ କିଛି ଜାଣିନୁ !'

"ସେ କ'ଣ ଆପଣଙ୍କୁ କହିଛନ୍ତି ମୁଁ ସ୍ୱେଟର୍‌ ବୁଣେ ବୋଲି ?"

"ମାନେ, କହିବାର ପ୍ରୟୋଜନ ବା କାହିଁ ? ଆପଣଙ୍କ ହାତତିଆରି ସ୍ୱେଟର୍‌ କ'ଣ ଏତେ ଦେଖିଲା ପରେ, ଆପଣଙ୍କୁ ଏବଂ ମନୁ ଗୋସ୍ୱାମୀଙ୍କୁ ଈର୍ଷା ନ କରି ଉପାୟ ଅଛି ?"

ତଳକୁ ଚାହିଁ ସେ କହିଲେ, "ହଁ, ବୁଣେ ଯେ, ସେ ହିଁ ମତେ ଶିଖାନ୍ତି । ଆମେ ତିନି ଦିନରେ ଖଣ୍ଡେ ସ୍ୱେଟର୍‌ ବୁଣିଦେଉ । ସେଥିପାଇଁ ସେ ବୁଣେଇ ମେସିନ୍‌ ଆଣିଦେଇଛନ୍ତି ।"

ମୋ ମୁହଁକୁ ଅମାୟିକ ଢଙ୍ଗରେ ଚାହିଁ ପଚାରିଲେ, "ଏଇ ଭିତର ଘରେ ଅଛି, ଦେଖିବେ ?

ମୋତେ ଚାଉଁକିନା ଲାଗିଲା ! 'ନା ନା, ମୁଁ କେମିତି ଯିବି – ମୁଁ ପରା ଆଜି ନୂଆ କରି ଆସିଚି – ଘରେ ପରା ମନୁ ଗୋସ୍ୱାମୀ ନାହାନ୍ତି... 'ଯାଉନ ବାଲୁଙ୍କେଇ, ଗଲେ ସିନା କ'ଣଟାଏ ପ୍ରମାଣ ହେବ ବା ନ ହେବ, ନ ହେଲେ ମୁଁ ଭାଣ୍ଡିଆ ହେଇଯିବି, – ତମେ ପୁରୁଣା ଚୋର ! ତମ ପେଟରେ ଭୋକ; ମୁହଁରେ ଲାଜ' – 'ଚୋପ୍‌ ବେ ଶିବା – ତୁ'ଟା ଗୋଟେ ସଇତାନ !...

ମୁଁ କିଛି କହିଲି ନାଇଁ କି ବସିବାଠୁ ଉଠିଲି ନାଇଁ ।

ସେ ସ୍ୱାଭାବିକ ଭାବରେ କହିଚାଲିଲେ, "ଭାରି ଭଲ ମେସିନ୍‌ଟିଏ । ଚଞ୍ଚଳ ବୁଣିହେଇଯାଏ । ବୁଣା ସରୁ ସରୁ ସେ ନେଇ ଗୋଟେ ଦୋକାନରେ ତାକୁ ଦେଇଦିଅନ୍ତି ।"

କିଛି ନ ଭାବି ମୁଁ କହିପକାଇଲି, "କ'ଣ ଚାଟାର୍ଜୀ ଷ୍ଟୋର୍‌ସ !"

ସେ ହସିଦେଲେ, କହିଲେ – ''ଆପଣ ତ ସବୁ ଜାଣିଛନ୍ତି ! ପାନ ଖାଇବେ ? ଆମ ଘରେ ପାନପେଡ଼ି ଅଛି । ରୁହନ୍ତୁ, ମୁଁ ନେଇଆସେ ।''

ତାଙ୍କ ଉଠିବା, ଚାଲିବା, କଥା କହିବା ଭଙ୍ଗୀ ମତେ ଆହୁରି ସୁନ୍ଦର ଦେଖାଗଲା ।

...'ହେ, ହେ, ହେ, ମୁଁ କଣ କହୁଥିଲି ବାଲୁଙ୍କେଇ ? ସତ ନା ମିଛ ?... ଆହେ, ତମେ ବିଡ଼ିବା କଥାରୁ ଦେଖୁନ ! କାହିଁ ଦେଖି ଆମ ଭାଉଜ ପାଖରେ କିଏ ଏମିତି ପହଞ୍ଚିଯାଉ କି ନା,... ତମେ ଘରେ ନଥିବ, ପିଲାଏ କେହି ନଥିବେ... ଏମିତି ସଞ୍ଜବେଳେ... ! ସେ ଦୁର୍ଦ୍ଦଣ୍ଡ ମାଇକିନା ତା ମୁହଁରେ ଡାଇକିନା କବାଟ କିଳିଦେବ ନା ନାଇଁ ?... ନା, ଏମିତି ଘରେ ବସେଇ ପାନ ଖୁଆଇବ ?'...

ମୋତେ ଡର ମାଡ଼ିଲା କାହିଁରେ କ'ଣ । ଘରେ ସତକୁ ସତ ସେ ଦୁର୍ଦ୍ଦଣ୍ଡ ମାଇକିନା ଜଗିବସିଥିବ । ମୁଁ ପାଉଁରୁଟି ନ ନେଇ ପହଞ୍ଚିବି, ଏତେ ରାତିରେ । ସେ ମତେ ଚୋବେଇ ଖାଇଯିବ ନା କ'ଣ । କେବେ ହେଲେ ମଣିଷ ଆଦରଟିକେ ପାଇଲା ନାହିଁ । ହାତ ଧରି ବିଭା ହେଲେ ସୁଦ୍ଧା ଖଣ୍ଡେ ପାନକୁ ଭାଜନ ହେଲା ନାହିଁ ! – ଯାକୁ ଏବେ ମନୁ ଗୋସ୍ୱାମୀ ବେଦୀ ଉପରେ ହାତଗଣ୍ଠି ପକେଇ ବାହା ହେଇଥିଲେ ଆଉ କଣ ଅଧିକ ହେଇଥାନ୍ତା ? – ଛାଡ଼, କାହା ଭାଗ୍ୟରେ କିଏ ଆସି ଜୁଟିଯାଏ ।

ପାନ ଭାଙ୍ଗିବା ଢଙ୍ଗଟି ସତେ କେଡ଼େ ଚମତ୍କାର ହେଇପାରେ, ସେଇ ଦିନ ହିଁ ମୁଁ ଦେଖିଲି ।

''ଅନେକ ଆଗରୁ ଆପଣ ଆସିବେ ବୋଲି ମୁଁ ଜାଣିଥିଲି । ତାଙ୍କ ଭଳି ତାଙ୍କ ସାଙ୍ଗମାନେ ମଧ୍ୟ ଭାରି ଲାଜକୁଳା ।'' – ଗୁଆ ଭାଙ୍ଗୁ ଭାଙ୍ଗୁ ମୋତେ ଚାହିଁ ସେ ଖୁବ୍ ଆପଣାପଣ ମିଶେଇ କଥାଟାକୁ କହିଲେ ।

ମୁଁ ସେ ପଦେ କଥାରେ ଝାଳେଇଗଲି । କଥାର ବ୍ୟଞ୍ଜନାରେ ଆହତ ହେଇଗଲି । ତାଙ୍କ ମୁହଁକୁ ଚାହିଁପାରିଲି ନାହିଁ । କ'ଣ ସତକୁ ସତ ସେ ବାରନାରୀ; ଜାଲ ବିସ୍ତାରୁଚି ମତେ ଫାନ୍ଦିବାପାଇଁ ? ମନୁ ଗୋସ୍ୱାମୀ ଭଦ୍ରଲୋକ, ଖୁବ୍ ନରମ ହସ, ନରମ ଆଚରଣର ମଣିଷ । ହୋଇପାରେ ସେଇ କାରଣରୁ କିଞ୍ଚିତ୍ ଲାଜକୁଳା; ଧର, ମୋ'ରି ଭଳି । ସେଇଟା କ'ଣ ଦୋଷ ? ସେ ଗୋଟାଏ ଅଲାଜୁକ, ହେରଷା; ହୁଡୁମ୍ବାଟାଏ ହେଇଥିଲେ କ'ଣ ଭଲ ହେଇଥାନ୍ତା ? ଗୋଟାଏ ଗାରଡ଼ ଭଳି ସଦା ପ୍ରସ୍ତୁତ ହମହମ ଅଣ୍ଡିରାଟାଏ ହେଲା ନାହିଁ ବୋଲି ସେ କଣ ଅଣପୁରୁଷା ଭାର୍ଦା ହେଇଗଲା ? – ତାକୁ ଏ ବାରଗୋଟେଇ ମାଇକିନା ସୁଖ ପାଉନାହିଁ ? – ଖାତିର କରୁନାହିଁ, ଜିଭ ଲମ୍ବଉଛି ଚାରିଆଡ଼େ ?

କଣ ଏତେ ଟିକିଏ ଶବ୍ଦରେ ମୁଁ ଚମକିପଡ଼ିଲି । ଷ୍ଟିଲ୍ ଥାଳିଆରେ ଦୁଇଖଣ୍ଡ ପାନ ଟେବୁଲ୍ ଉପରେ ଥୋଇବାର ଶବ୍ଦ । ପାଣିକାଚ ସହିତ ସୁନାଚୁଡ଼ି ବାଜିବାର ରୁଣୁଝୁଣୁ । ମୁଁ ପାନଟିଏ ପାଟିରେ ପୂରେଇ ଆଣ୍ଠୁରେ ହାତ ଥାପି କହିଲି, ''ତା ହେଲେ ମୁଁ ଆସେ ।''

ସେମିତି ଅମାୟିକ ନିର୍ମାୟା ହସ ଭିତରେ ସେ କହିଲେ, ''ଆଉ ପୁଣି କେବେ ଆସିବେ ?

''କହିପାରୁନାଇଁ, କିନ୍ତୁ ନିଶ୍ଚୟ ଆସିବି ।''

''ଏଥର ମିସେସ୍ ମିଶ୍ରଙ୍କୁ ନେଇ ଆସିବେ ।''

''ଆଚ୍ଛା । –''

''ଏଇ ପାନଟା ନେଇଯାଆନ୍ତୁ'' କହି ସେ ବି ଠିଆହେଇପଡ଼ି ମୋ ଆଡ଼କୁ ଥାଳିଆଟି ବଢ଼େଇ ଧରିଲେ । ଚିମୁଟାରେ ଧରିଲା ପରି ଅତି ସତର୍କତାର ସହିତ ମୁଁ କେବଳ ପାନଟିକୁ ଟେକିନେଲି । ମୋର ଆତଙ୍କ, କାଳେ ଥାଳିଆରେ କିମ୍ବା ହାତରେ ମୋ ହାତ ବାଜିଯିବ ।

ମୋର ମନେହେଲା, ସେ ବୋଧହୁଏ ଫିକ୍‌କିନା ହସିଦେଲେ । ମନେହେଲା, ବୋଧହୁଏ ସେ ତା'ପରେ ମୋତେ ଧରିନେବେ ! ତା'ପରେ... ତା'ପରେ... କେବଳ ଅନ୍ଧାର !!

ମୁଁ ଛଡ଼େଇହେଲାପରି ଭୁସ୍‌କିନା ଆଗକୁ ବାହାରିଗଲି ଏବଂ ଚିତ୍କାର କରିପକେଇଲି ଯେତେବେଳେ ମନୁ ଗୋସ୍ୱାମୀ ଉପରେ ସିଧା ପିଟିହେଇଗଲି !

ସେ ଆଦୌ ବିଚଳିତ କିମ୍ବା ବିସ୍ମିତ ଜଣାଗଲେ ନାହିଁ । ''ଆରେ ମିଶ୍ରବାବୁ ଯେ !'' କହି ସେଇ ପୁରୁଣା ଛୋଟ ହସଟିକୁ ବାଣ୍ଟିଦେଲେ ଚାରିଆଡ଼େ ।

ମୁଁ ଆଉ ଯିବି କ'ଣ ? – ପାଦେ ଭିତରକୁ ଆସି ତାଙ୍କୁ ଚାହିଁରହିଲି । ସତକୁ ସତ ତାଙ୍କ ଦେହରେ ସେ ମୂଲ୍ୟବାନ୍ ସ୍ୱେଟର୍‌ଟି ଆଉ ନଥିଲା ।

''କେତେବେଳେ ଆସିଲେ ? ଆସନ୍ତୁ, ବସନ୍ତୁ !''

''ମୁଁ ଅନେକ ବେଳ ହେଲା ବସିଗଲିଣି । ମିସେସ୍ ଗୋସ୍ୱାମୀଙ୍କଠୁଁ ତା' ପାନ ଆଦାୟ କରିସାରିଲିଣି । ମୁଁ ପରା ଆଜି ଏଯାଏ ଅଫିସରୁ ଘରକୁ ଫେରିନାହିଁ !''

''କ'ଣ ହେଲା ସେଉଠୁ ? ଆପଣ କ'ଣ ପିଲାଟିଏ ହେଇଛନ୍ତି, କୋଉଠି ହଜିଯିବେ ? – ନା, ଢୁଲଢୁଲିଆ ଟୋକା ହେଇଛନ୍ତି ଯେ କ'ଣ ଭୁଲ୍ କରିପକେଇବେ ? ଆପଣ ପାକଳ ମଣିଷ । ଏତେ ଭୟ କାହିଁକି କରୁଛନ୍ତି ?''

ମୋ ମୁହଁ ବାନ୍ଧିହେଇଗଲା ।

ସେମାନେ ଭିତର ବଖରାକୁ ପଶିଗଲେ ଜଣକ ପଛରେ ଜଣେ । ମୁଁ ଠିଆରହିଗଲି ।

ମନୁ ଗୋସ୍ୱାମୀ ସ୍ୱେଟର୍‌ଟାକୁ ଚାଟାର୍ଜୀ ଷ୍ଟୋର୍‌ସରେ ଦେଇଆସିଲେ କ'ଣ ହେଲା ? ...ସେ ଏ ମାଇକିନା-ହାତବୁଣା ଜିନିଷ ବିକ୍ରି କରେ । ତେବେ ବି କ'ଣ ହେଲା ?...

...'ଆହେ, ଯାଉନ ବାଲୁଙ୍କେଇ ! ତେମେ କ'ଣ ନାକବାଟେ ଭାତ ଖାଉଚ କି ? କଥାଟା ଜଳଜଳ ଦିଶୁଚି; ଅଥଚ ତମେ ଜାଣିପାରୁନାହଁ ? ଆହେ, ସେଇଟା ପରା ଯାକୁ ନେଇ ବେଉସା କରୁଚି... ତମ ଉପରେ ଆଖି – ଏତକ ଜାଣିପାରୁନ ?'

... ଚୋପ୍ ଶିବା ପଢ଼ିଆରୀ ।

ସେମାନେ ପୁଣି ଆଗପଛ ହେଇ ପଶିଆସିଲେ ।

ମନୁ ଗୋସ୍ୱାମୀ ବାଟିକ୍ ଲୁଙ୍ଗି ପିନ୍ଧି ମେଲା ଦେହରେ ଆସି ସୋଫାରେ ବସିଲେ ।

''ବସନ୍ତୁ ନା ମିଶ୍ରବାବୁ ! ଆପଣ ଯେମିତି ଠିଆହେଇଛନ୍ତି, ସେଥିରେ ତ ରାତି ପାହିଯିବ । ଆପଣ କାହିଁକି ଏତେ ଲାଜ ସଙ୍କୋଚ କରୁଛନ୍ତି ?''

ସ୍ତ୍ରୀକୁ ଚାହିଁ ସେ ଛୋଟ ହସ ଭିତରେ କହିଲେ, ''କିଓ, ଏତେ ସମୟ ପାଇଲ, ୟାଙ୍କ ଲାଜ ଛଡ଼େଇପାରିଲ ନାହିଁ ?''

''ତୁମର ସବୁଯାକ ସାଙ୍ଗ ତମରି ଭଳି ନିଦାବିଷ୍ଟୁ । ବୁଝିଲେ ସିନା ପାରିବି ?''

ଇସ୍ ! ମୋ ଗୋଡ଼ହାତ ଥରିଲା । ଆଉ କଣ ରହିଲା ବୁଝିବାକୁ ? ମୁଁ ହଠାତ୍ ମନୁ ଗୋସ୍ୱାମୀଙ୍କୁ ଭୟଙ୍କର ଘୃଣା କରିଉଠିଲି । ସେଇଟା ସତେ ଏତେ ଖୋଲାଖୋଲି ବ୍ୟବସାୟ କରିପାରେ ? –

ମୁଁ କଥାଟାକୁ ଶେଷ ପର୍ଯ୍ୟନ୍ତ ପରୀକ୍ଷା କରିନେବାକୁ ବସିଗଲି । ମୋ ଭିତରେ ଭୟ ଯେତିକି, ଆଗ୍ରହ ସେତିକି । କିନ୍ତୁ ମୁଁ ବୋଧହୁଏ ସେତେବେଳେ କ୍ରୋଧ ଏବଂ ଘୃଣାରେ ଥରୁଥିଲି ।

ନିଜକୁ ନିଜେ ବିସ୍ମିତ କରି ମୁଁ କହିଲି, ''ଏମିତି କଣ ଆପଣ ବୁଝେଇବାକୁ ଚାହିଁଛନ୍ତି, ଯାହା ବୁଝିପାରିନାହିଁ ବୋଲି ଆପଣଙ୍କ ଧାରଣା ହେଉଛି ?''

''ଆପଣ କିଛି ଖରାପ ଭାବିଲେ କି ? ପ୍ରକୃତରେ ସେ ଆପଣଙ୍କୁ ପ୍ରଶଂସା କରିବାକୁ ସେମିତି କହିଥିଲା ।''

ମୁଁ ମନୁ ଗୋସ୍ୱାମୀର କୈଫିୟତ୍‌କୁ ଖାତିର ନ କରି ସେ ମାଇକିନାକୁ କହିଲି, ''ଅନ୍ୟପକ୍ଷେ ମୁଁ ସବୁ ବୁଝିପାରିଛି ଏବଂ ସେଥିପାଇଁ ଆପଣଙ୍କୁ କ୍ଷମା କରିଛି !''

''ଆରେ ଆରେ, ଏ ତା'ହେଲେ କ'ଣ କିଛି ନୈତିକ ଅପରାଧ କରିପକେଇଛି ୟା ଭିତରେ ?'' –

ମନୁ ଗୋସ୍ୱାମୀ ଛଳ ଅନୁତାପ କରିବା ଭଙ୍ଗୀରେ କହିଲେ । ସେ ଦୁହେଁ ମୁହୂର୍ତ୍ତେ ଚାହାଁଚାହିଁ ହୋଇ ସାମାନ୍ୟ ଆମୋଦିତ ହେବାର ମୁଁ ଲକ୍ଷ୍ୟ କଲି । ମୋ ସର୍ବାଙ୍ଗରେ ନିଆଁ ଚରିଗଲା ।

''ଦେଖନ୍ତୁ ମିଷ୍ଟର ଗୋସ୍ୱାମୀ, ଯଦି ଆପଣ ମୋତେ ବୋକା ବୋଲି ଭାବୁଥାନ୍ତି, ମୁଁ ତାହା ନୁହେଁ । କ'ଣ ଅପରାଧ ଏବଂ କ'ଣ ଅପରାଧ ନୁହେଁ, ତାହା ମୁଁ ଜାଣିଛି ଏବଂ ଆପଣ ବି ଜାଣନ୍ତି ବୋଲି ଭାବୁଛି । ଆପଣ ପ୍ରକୃତରେ କ'ଣ ଚାହାଁନ୍ତି ?''

''ମିଶ୍ରବାବୁ ଖୁବ୍ ଉତ୍ତେଜିତ ଜଣାଯାଉଛନ୍ତି; ବରଂ ତୁମେ ତାଙ୍କ ପ୍ରଶ୍ନର ଉତ୍ତର ଦିଅ ।'' ମନୁ ଗୋସ୍ୱାମୀ ଅତି ସ୍ୱାଭାବିକ ଭାବରେ କହିଲେ ।

ମୁଁ ବୋଧହୁଏ ନିଶ୍ୱାସ ମାରିପାରୁନଥିଲି ।

ଧନ୍ୟ ସେ ମାଇକିନା ! କହିଲା, ''ଆମେ ଚାହୁଁ ଆପଣ ଆଜି ରାତିରେ ଆମ ଘରେ ଖାଆନ୍ତୁ ଏବଂ...''

ଏବଂ... ଏବଂ... ଏବଂ...

ଓଃ, କହିଦେ ବାକିତକ, ବେ ହାଟୋଇ ବେସରମ ମାଇକିନା ! – କହିଦେଇ ସବୁ ସାରିଦେ !...

ମୁଁ ଦାନ୍ତକୁ ଦାନ୍ତ ଚାବି ଧରି ରଖିଲି । ମୋର ସ୍ନାୟୁ ନାଡ଼ି ସବୁ ଟଣକି ରହିଥିଲେ । ବୁକୁ ଧାଉଁ ଧାଉଁ ପିଟିହେଉଥିଲା ।

ବାକ୍ୟଟି ସରିବା ପୂର୍ବରୁ ମୁଁ ଗୋଟାଏ ସଲାମ୍ ମାରି ଏକମୁହାଁ ଦୌଡ଼ି ଆସିଲି । କ'ଣ ସବୁ ଝୁଣ୍ଟିପଡ଼ିଲି, କ'ଣ ବୁଣି ବିଛିହୋଇଗଲା, କ'ଣ ଭାଙ୍ଗିରୁଜି ଗଲା, ମୋର ଖିଆଲ ରହିଲା ନାହିଁ । ମୁଁ ରାସ୍ତାକୁ ବାହାରିଗଲାବେଳେ ମୋର ଝାପ୍‌ସା ମନେ ପଡୁଛି ପିଲାଟିଏ ବସ୍ତାନି ଧରି ପାହାଚ ଉଠିଆସୁଥିଲା ।

X X X X

ଆଜି ସକାଳେ ଶିବୁ ପଡ଼ିଆରୀ ଆସିଥିଲା । ତା ଢଙ୍ଗରେ ସେ ଅସଂଖ୍ୟ କଥା ବଖାଣିଗଲା । କହିଲା, ''ଶୁଣିଲଣି ବାଲୁଙ୍କେଇ, ସେ ତମ ମନୁ ଗୋସ୍ୱାମୀ ମ ! ବଡ଼ ଅଜବ ଲୋକ । ମାଇକିନାଟାକୁ ତ ଗୋଟେଇଆଣିଥିଲା । ମୁଁ ଭାବିଥିଲି ଗାଈ-ବାଛୁରୀ ଓଡ଼େଇଆଣିଥିଲା ବୋଲି; ମାତ୍ର ତା ନୁହଁ । ସେ ଟୋକାଟାକୁ ଦାଣରୁ ଗୋଟେଇ ଆଣି ସେ ମାଇକିନା ଆଗରୁ ପାଳିଥିଲା । ସେଇଟା ବି ତାଙ୍କ ଦିହିଙ୍କ ଭଳି ଭଦ୍‌ବାସ୍ତୁଟାଏ !... ଆଉ ଶୁଣ, ମଜା କଥା । ଏବେ ଗୋଟେ ଭିଖାରୁଣୀ ବୁଢ଼ୀ ଆଉ ସେମ୍‌ତି ଗୋଟେ ବୁଢ଼ା କାହୁଁ ଆଣି ପାଖରେ ରଖିଲାଣି । ସେମାନଙ୍କୁ ବାପ-ମା' କରିଛି ଦିନରାତି ସେମାନଙ୍କ ସେବାରେ ଲାଗିଛି; – ମନୁ ଗୋସ୍ୱାମୀ କହୁଛି, ତା'ର ପରିବାର ଏଇନା ପରିପୂର୍ଣ୍ଣ ହେଇଗଲା । – ଶଳା ଅଲାଜୁକ... ହାଃ... ହାଃ... ହାଃ । ... ଆଉ ଶୁଣ, ସେ କହୁଥିଲା ଯେ, ତୁମେ ଯେଉଁଦିନ ଚାଲିଆସିଲ, ସେ ତୁମ ପାଇଁ ଖଣ୍ଡେ ହାତବୁଣା ସ୍ୱେଟର୍ ଦବାକୁ ଚାହୁଁଥିଲେ । ସେଇଟା ସେମାନେ ତମରି ପାଇଁ କୁଆଡ଼େ ସାଇତି ରଖିଛନ୍ତି ।''

ଇସ୍, ମନୁ ଗୋସ୍ୱାମୀ । ତୋ ପାଖରେ ଏତେ ଆପଣାପଣ ଅଛି ? ତୁ ଏତେ ଆପଣାପଣ ବାଣ୍ଟିପାରୁ ?

ଏକଥା ଶୁଣିଲାବେଳୁ ମୋ ଭିତର ଗୁରାଣ୍ଡି ହେଉଛି । ମୁଁ କ'ଣ ଯାଇ ସେମାନଙ୍କୁ ହାତ ଯୋଡ଼ି କ୍ଷମା ମାଗିପାରିବି ? – କଣ ବୋଲି ମାଗିବି ?

ମୁଁ ଜମା ସ୍ଥିର କରିପାରୁନାହିଁ କେମିତି ତାଙ୍କ ଘରେ ଆଉ ଥରେ ଯାଇ ଠିଆହେବି ।

□□□

# ସମର

ପ୍ରଥମେ ମୁଁ ସେକଥାକୁ ଜମା ବିଶ୍ୱାସ କଲି ନାହିଁ । ଭାବିଲି, ସେ ଦରବୁଢ଼ା ଟେଲିଫୋନ ସଜାଡ଼ି ମୋତେ ମିଛ ଗପ କହି ତାଜ୍ଜୁବ କରିବାକୁ ଚେଷ୍ଟାକରୁଛି; ଟିକିଏ ନରମ ଧରିଗଲେ, ମୋ'ଠୁ ବକ୍‌ସିସ୍ ଖସେଇନେବ । ମୁଁ ମୋ କିଲା ପାଚେରିର ପଥରଖୋପ ଭିତରୁ ଖୁବ୍ ସତର୍କ ରହି ପଚାରିଲି –

''ଏଇଟା କ'ଣ ଆଖିରେ ଦେଖିଛ, ନା, କାହାଠୁ ଶୁଣି କହୁଛ ?''

ଲୋକଟି ତା ସାମଗ୍ରୀ ସବୁ ଏକାଠି କରୁ କରୁ ମୋତେ ଖାଲି ଥରୁଟେ ଅନେଇଲା; କିଛି କହିଲା ନାହିଁ । ଅବିଶ୍ୱାସୀକୁ ବୃଥାରେ ପରିଶ୍ରମ କରି ମନେଇବାର କିଛି ଅର୍ଥ ନାହିଁ । ନାସ୍ତିକ ତ ସଦାନାସ୍ତିକ । ସେଥିରୁ ଗୋଟାଏ ବିଶ୍ୱାସ କଲେ କେତେ; ନକଲେ କେତେ । ଯାଉନୁ, ମୋର କି ଗରଜ ପଡ଼ିଛି ଏଇଟାକୁ ବୁଝେଇବାକୁ ! – ପ୍ରାୟ ଏହିପରି ସେ ଚାହାଣିର ଅର୍ଥ ।

ମୁଁ ତଥାପି ଦୁଇପାଦ ଆଗେଇ ଆସି ପଚାରିଲି – ''ଅତି ବିଚିତ୍ର ଲାଗୁଛି ତ; ସେଥିପାଇଁ ବିଶ୍ୱାସ କରି ହେଉନାହିଁ ।''

ସେ ସେହିଭଳି ନିସ୍ପୃହ ଭାବରେ ସାମଗ୍ରୀ ସଜାଡୁଥାଏ । କହିଲା, ''ଆପଣ ତ ବିଶ୍ୱାସ କରିବେ ନାହିଁ; ଆପଣଙ୍କୁ ଯେତେ କହିଲେ ଲାଭ କ'ଣ ? ଓଲଟି ପଚାରିବେ 'କ'ଣ ଆଖିରେ ଦେଖିଛ ।' – ଆଜ୍ଞା, ନ ଦେଖି ନ ଜାଣି କ'ଣ ଆପଣଙ୍କୁ ମୁଁ ମିଛ କହୁଛି ?''

ତା ସ୍ୱର ସାମାନ୍ୟ ଆହତ ।

ମୁଁ ଆଉ ଦୁଇପାଦ ଆଗେଇ ଆସି କହିଲି, ''ଆରେ, ମୁଁ କ'ଣ ତମକୁ ଅବିଶ୍ୱାସ କରୁଛି ବୋଲି ଭାବୁଛ କି ? ତମଠୁ ଆହୁରି ଶୁଣିବାକୁ ପଚାରୁଛି ନା !''

''କୁଆମାନେ ଟେଲିଫୋନ ତାର ଛିଣ୍ଡାଇ ନେଉଛନ୍ତି, ଆଜ୍ଞା ! ମୁଁ ଦେଖିଛି, ମୋ ସାଙ୍ଗମାନେ ଦେଖିଛନ୍ତି । କେମିତି ନେଉଛନ୍ତି ଆପଣ ଦେଖିଲେ ସିନା ଜାଣିବେ; ନଦେଖିଲେ କ'ଣ ଜାଣିବେ ? ଠିକ୍ ଏହି ସମୟରେ, ଚତୁର୍ମାସ୍ୟା ଆଗକୁ ଥିବ, ରଜ ପାଖେଇ ଆସୁଥିବ, କୁଆ ଖୁଣ୍ଟ ଉପରେ ବସି ବଳକା ତାରକୁ ଥଣ୍ଟରେ ଟାଣେ । ଆମେ ଯେମିତି ତାରକୁ ମୋଡୁ, ଛିଣ୍ଡେଇବା ପାଇଁ ଆଗପଛ କରୁ, ସେ ସେଇଆ କରେ । ଏମିତି ଓଳିଏ କାଳ ଲାଗିଲା ପରେ ଖଣ୍ଡିଏ ତାର ସଂଗ୍ରହ କରି କୁଆ ଉଡ଼ିଯାଏ ।''

''କାହିଁକି ସେ ସେମିତି କରେ ? କ'ଣ କରେ ତାକୁ ନେଇ ? ଏଇଟା ବୋଧେ କୁଆମାନଙ୍କର ଗୋଟାଏ ଖୋଇ । ଯେମିତି ଧର, ଘରଚଟିଆ ଦର୍ପଣ ଭିତରେ ଆଉ

ଗୋଟିଏ ଚଢ଼େଇକୁ ଦେଖି ତା ସାଙ୍ଗରେ ଲଢ଼େଇ କରେ । ସେହିଭଳି ବୋଧେ ଟେଲିଫୋନର ନରମା ତାର ଛିଣ୍ଡେଇବାରେ କୁଆମାନଙ୍କର ଗୋଟିଏ କ'ଣ ଅରମାନ ମେଣ୍ଟୁଥିବ; ବଳ ପରାକ୍ରମ ପ୍ରମାଣିତ ହେଉଥିବ ।

''ନାଇଁ ଆଜ୍ଞା, ସେ ସବୁ କିଛି ନୁହେଁ । ସେ ସେହି ତାରକୁ ନେଇ ତା ବସା ବାନ୍ଧେ । କୁଆ ଶୁଖିଲା ଡାଙ୍ଗରେ ଘର କରେ । ଏ ସହର ଅଞ୍ଚଳରେ ତ ପଂଝା ପଂଝା ମଣିଷଛୁଆ ଖଣ୍ଡିଆ ଅଖାରେ ଅସ୍ପରା ଗଦାରୁ, ଗଛମୂଳରୁ ସବୁ ଗୋଟେଇ ନେଉଛନ୍ତି; ଡାଙ୍ଗଟିଏ କାହିଁ କୁଆ ପାଇଁ ? ସହରୀ ଗାଈ କାଗଜ ଚୋବେଇ ପେଟ ଭର୍ତ୍ତି କରେ । କୁଆ ଟେଲିଫୋନ ତାର ଛିଣ୍ଡେଇ ତେନ୍ତୁଳି ଗଛରେ ବସା ବାନ୍ଧେ ।''

ସେ ଚାଲିଗଲା । ବକ୍‌ସିସ୍ ମାଗିଲା ନାହିଁ । ସେ ନିଶ୍ଚୟ ସତ କହୁଥିଲା ।

କୁଆଗୁଡ଼ାଙ୍କୁ ମୁଁ ଭୟଙ୍କର ଘୃଣା କରେ । ସେମାନେ ରାଉ ରାଉ ବୋବାନ୍ତି । ବଙ୍କେଇ ଚାହାନ୍ତି । କଳା କଟକଟ ଅସୁନ୍ଦରିଆ ପକ୍ଷୀ । ଏଡ଼େ ବଡ଼ ଥଣ୍ଟ । ଆମ୍ଭମାନଙ୍କ ଭିତରେ ଖଳପୁରୁଷଙ୍କ ପରି ପକ୍ଷୀଙ୍କ ଭିତରେ ସେ ସବୁଠୁ ନିକୃଷ୍ଟ ବୋଲି ମୋର ଧାରଣା । ବାଜ ପକ୍ଷୀର ବୀରତ୍ୱ ନାହିଁ । କୋଇଲିର ସ୍ୱର ନାହିଁ । ହଳଦୀବସନ୍ତର ଚେହେରା ନାହିଁ; ଏପରିକି ଟେଣ୍ଟେଇ, ବଣି, କାଣ୍ଡିଆ ବଗ ବି ତା'ଠୁ ଶହେ ଗୁଣ ଭଲ । କ'ଣଟାଏ ସତେ ଏଇଟା; ପକ୍ଷୀକୁଳର କଳଙ୍କ ! – ଯାପ ଭୁଷଣ୍ଡକାକ !

କୁଆ ଦେଖିଲେ ମୁଁ ଚିଡ଼ିଯିବାର ଅନେକ କାରଣ ଥାଇପାରେ । ଖୁବ୍ ପିଲାବେଳେ ମୋ ଜନ୍ମଦିନ ଜାମା ଉପରେ କୁଆଟିଏ ହଗି ଦେଇଥିଲା । ସମସ୍ତେ ମୋତେ ବୁଝେଇବାକୁ ଚେଷ୍ଟା କରିଥିଲେ । କହିଥିଲେ, ସେଇଟା ଶୁଭ ଲକ୍ଷଣ । ମୁଁ ରାଗରେ ସେ ଜାମାଟିକୁ ସୋରା ସୋରା ଚିରିପକେଇଥିଲି । ଆଉ ଦିନେ ସେମିତି ଉଚ୍ଚା କରେଇରୁ ହାଡ ବାହାରୁଥିବା କୁକୁଡ଼ା ଗୋଡ଼ଟିଏ ନେଇ ଛାତ ଉପରେ ନିରୋଳାରେ ଚୋବେଇବାକୁ ଯାଉଥାଏ । ଫୁଙ୍କି ଫୁଙ୍କି ବୋଧହୁଏ ପୁଳାଏ ଚୋବେଇ ରଖିଦେଇଥାଏ । କାହିଁ ଥିଲା କଣା କୁଆ, ତାକୁ ଝାମ୍ପି ନେଇଗଲା । ମୋର ସେଇଦିନ ପ୍ରଥମ ଇଚ୍ଛା ହେଲା କୁଆମାଂସ ଖାଇବାକୁ । ସମସ୍ତଙ୍କୁ ପ୍ରବର୍ତ୍ତେଇବାକୁ ଯେ କୁକୁଡ଼ାଠୁ କୁଆ ଭଲ । ସେଗୁଡ଼ାଙ୍କୁ ମାରି ଖାଇଯାଅ; ନିପାତ କରିଦିଅ ସେମାନଙ୍କ ବଂଶ । ଏବେ ବି ମୁଁ ଭାବେ ଯେ ଗଧ, ଗଣ୍ଡାର ପାଇଁ ଈଶ୍ୱରଙ୍କୁ କ୍ଷମା ଦିଆଯାଇପାରେ; କିନ୍ତୁ କୁଆ ପାଇଁ କଦାପି ନୁହେଁ । ଈଶ୍ୱର ଏତେଦୂର ରୁଚିହୀନ ହେବାର କିଛି ଅର୍ଥ ନଥିଲା । ଧେତ୍ତେରି, ଦୁଷ୍ଟ ବ୍ରଣ ପରି ଏ ଅସୁନ୍ଦର ପକ୍ଷୀଟା ଧ୍ୱଂସ ନହେଲେ ଏ ସୃଷ୍ଟିର ମଙ୍ଗଳ ନାହିଁ ।

ଶେଷକୁ କ'ଣ ନା, ତା'ର ବସା ବାନ୍ଧିବ ବୋଲି ମୋ ଟେଲିଫୋନ ତିନିଦିନ ହେବ ଅଚଳ । ସେ ଦରବୁଢ଼ା ଲାଇନ୍‌ମେନ୍‌ଟି କହିଦେଇ ଚାଲିଗଲା ପରେ, ମୁଁ ଖୁବ୍ ଉତ୍ୟକ୍ତ ଅବସ୍ଥାରେ ଥାଏ । କଥା ହେବାମାତ୍ରେ କଳି ହୋଇଯିବାର ଆଶଙ୍କା ଥାଏ ବୋଲି ମୁଁ ସବୁ କ୍ରୋଧକୁ ଭିତରେ ରଖି ଗୁମ୍‌ମାରି ବସିଥାଏ ।

"କ'ଣ ଟେଲିଫୋନ ସଜଡ଼ା ହେଲା ? ଆଜି ପରା ସୁମିକୁ ଫୋନ୍ କଲେ ସେ ଆସିବ । ନ ହେଲେ ତା ଜାଗାଖଣ୍ଡକ ଆଉ କିଏ ନେଇଯିବ ନାହିଁ ? ବେଗି ଲଗାଅ । କ'ଣ କରୁଛ ସେଇଠି ବସି !"

ସୁମି ଆମ ପତ୍ନୀଙ୍କ ସାନଭଉଣୀ । ଉଗ୍ରଚଣ୍ଡା ପ୍ରଚଣ୍ଡା, ଦୁଇ ଭଉଣୀ ମିଶି ରାଜଧାନୀରୁ ଅଧେ ଅଧିକାର କଲେଣି । ଏ ଯେଉଁ ଡିହଖଣ୍ଡିକ କଥା ପଡ଼ିଥିଲା, ସେଇଟା ହେଲା ତେର ନମ୍ବର; ବାକି ଯା'ଙ୍କର ଛ'ଖଣ୍ଡ ତାଙ୍କର ଛ'ଖଣ୍ଡ ଡିହ ସାରା ସହରରେ ବିଛେଇ ହୋଇ ପଡ଼ିଛି । ଗଛ ପାଳିଲା ପରି ସେ ସେମାନଙ୍କୁ ପାଳୁଛନ୍ତି । ପାଞ୍ଚବର୍ଷରେ ବିକିଦେଲେ ଦଶଗୁଣ ପଇସା ମିଳୁଛି । ପିଲା ନଅଣ୍ଡିବାରୁ ଶେଷକୁ କୁକୁର ଟିମି ନାଁରେ ଏ ଡିହଟା କିଣିବାକୁ ଯୋଜନା ଚାଲିଛି ।

ମୁଁ ଜମା କିଛି କହିଲି ନାହିଁ କି ବସିଲାଠୁ ଘୁଞ୍ଚିଲି ନାହିଁ । ମୋତେ ତାଙ୍କ ସ୍ୱର କୁଆ ରାବିଲା ପରି ରାଉ-ରାଉ ଶୁଭିଲା । ମୁଁ ଭିତରେ ଭିତରେ ଆହୁରି ଚିଡ଼ିଗଲି ।

ଭୁସ୍‌କିନା ଉଠି କାହାକୁ କିଛି ନକହି ଚାଲିଗଲି ଛାତକୁ ।

ସବୁ ପ୍ରକାର ବିପତ୍ତିରେ ଏଇ ଛାତଟି ମୋର ପରମାଶ୍ରୟ । ଏଇଠି ଠିଆହେଲେ ଆକାଶ ଆଉ ଏଗାରଫୁଟ ପାଖେଇଆସେ । ମାଟି ଉପରେ ଲଟେଇଥିବା ସେ ଭେଜିବାଇଗଣ ଗଛ ଆଉ ସେ କାଉମୁହାଁ ଟାଉଟର ଧନି ସ୍ୱାଇଁକୁ ଷୋଳ ଫୁଟ୍ ପାଞ୍ଚ ଇଞ୍ଚର ନିରାପଦ ଉଚ୍ଚତାରୁ ଦେଖିହୁଏ । ମଣିଷଙ୍କ ଅପେକ୍ଷା ଗଛଙ୍କ ସାଙ୍ଗେ ଦୋସ୍ତି କରିବାକୁ ଇଚ୍ଛା ହୁଏ । ପକ୍ଷୀମାନେ ଅନେକ ବେଶି ଆପଣାର ମନେ ହୁଅନ୍ତି ।

ମୁଁ ଅନ୍ୟମନସ୍କ, ଛାତ ଉପରକୁ ଚାଲିଗଲି । ସେଇଠୁ ଚାହିଁଲି ଦୂରକୁ । ସାମ୍ନା ବଡ଼ ହତା ଭିତରେ ଗୋଟାଏ ଅଚିହ୍ନା ଗଛରେ ପାତଳ ବାଇଗଣି ରଙ୍ଗର ପେନ୍ଥା ପେନ୍ଥା ଫୁଲ ମଣ୍ଡିହେଇଥିଲା ।

ଏତିକିବେଳେ ମୁଁ ଚମକିପଡ଼ିଲି । ଛାତର ଅଧାବାଡ଼ ଉପରେ ମୋ ସାମ୍ନାରେ ଖପ୍‌କିନା ଗୋଟାଏ ଧୂସର କାକ ବସି ମୋତେ ଚାହିଁ ରାବିଲା । ଅତି ବିକଟାଳ ସ୍ୱର; ଅତି କୁତ୍ସିତ ରୂପ ।

ମୁଁ ମୁହଁ ବୁଲେଇଆଣି ଅନ୍ୟ ଦିଗକୁ ଚାଲିଲି । ମୋର ମନେହେଲା, ମୋ କାନ୍ଧ ଉପର ଦେଇ ଡେଣା ଝାଡ଼ି ଉଡ଼ିଗଲା ସେ କୁଆ; ପୁଣି ଆଗରେ ବସି ରାଉ-ରାଉ ରାବିଲା ।

ତା ବେକରେ ଶଟା ପରି ପରସବୁ ଠିଆ ହୋଇ ରହିଥାଏ । ତା' ଡେଣା ସାମାନ୍ୟ ଦୋହଲୁଥାଏ । ସେ ବୋଧହୁଏ ଯୁଦ୍ଧ ଘୋଷଣା କରୁଥାଏ । ମୋତେ ମୁକାବିଲା କରି ମୋ ନିଜ ଛାତ ଉପରୁ ତଡ଼ିବାକୁ ସେ ଚାହୁଁଥାଏ ।

ମୋର ଆହତ ପୌରୁଷ କ୍ରୋଧରେ କମ୍ପିଲା । ମୋର ରୁମ ଟାଙ୍କୁରିଗଲା । ଛାର ପକ୍ଷୀ, ତୋର ଏଡ଼େ ସାହସ ! ମୋ ମୁହଁକୁ ଚାହିଁ ତୁ ଏମିତି ଡାକିବୁ ? ତୁ ପୁଣି କୁଆଟାଏ !

ମୁଁ ହାତ ଉଞ୍ଚାଇ କ୍ଷେପିଗଲି । ସେ ମୋ ମୁଣ୍ଡର ମାତ୍ର ହାତେ ଉପରକୁ ଉଠିଗଲା । କିଛି ଦୂରରେ ସେଇ ଅଧାକାନ୍ଥ ଉପରେ ବସି ରାବିଲା । ମୁଁ ଦଉଡ଼ିଗଲି – ସେ ମାତ୍ର ମୋର ଅପହଞ୍ଚ ଗାରଯାଏ ଘୁଞ୍ଚିଗଲା ।

ଗୋଟାଏ ଛାର କୁଆ ହେଇ ସେ ମୋତେ ଏମିତି ଅବଜ୍ଞା କରିପାରେ, ଏମିତି ବେଖାତିର ଢଙ୍ଗରେ କୁତ୍ସିତ ଭାବରେ ରାଉ-ରାଉ ରାବିପାରେ ?

ସେ ବୋଧହୁଏ କାକ ଭାଷାରେ ମୋତେ ଗାଳିଦେଉଥିଲା – ଅଜସ୍ର ଅଶ୍ରାବ୍ୟ ଗାଳି । ସେ ମୋତେ ରେ-ରେ'କାର କରୁଥିଲା । ମୋତେ ତାଚ୍ଛଲ୍ୟ କରି ଗାରଡ଼େଇ ଚାହୁଁଥିଲା । ଆରେ ଯା, ରଖିଥା ତୋ ଗଉରବ, ତୁ'ଟା ଗୋଟାଏ ମାଉଁସମୁଦା ! ଗୋଟାଏ ବଡ଼ ପୋକ । ତୋର ଡେଣା କାହିଁ ? ଥଣ୍ଟ କାହିଁ ? ତୁ ମୋର କ'ଣ କରିପାରିବୁ ଯେ ?

ମୁଁ ତଳୁ ଗୋଟେଇ ତା' ଆଡ଼କୁ ଫିଙ୍ଗିବା ଅଭିନୟ କଲି । ସେ ଚତୁର କାକ କେଉଁ ବାଗେ ଜାଣିଗଲା ଯେ, ମୋ ହାତ ଖାଲି । ସେ ବୋଧହୁଏ ଆହୁରି ଅନେକ କିଛି ଜାଣିପାରୁଥିଲା ମୋର କ୍ରୋଧ, ମୋର ଅସହାୟତା, ମୋର ନିପାରିଲାପଣ ! ସେ ଜମା ଘୁଞ୍ଚିଲା ନାହିଁ ।

ମୁଁ ଦାନ୍ତ କାମୁଡ଼ି ଏ ଆଡ଼କୁ ସେଆଡ଼ ଅନେଇ କରି, ମନେ ମନେ ଗୋଟାଏ ତଲଓ୍ୱାର କିମ୍ୱା ଗୋଟାଏ ବନ୍ଧୁକ ଚାହୁଁଥିଲି । ଗୋଟାଏ ପାଞ୍ଚହାତ ଠେଙ୍ଗା କିମ୍ୱା କିଛି ନହେଲେ ପୁଞ୍ଜାଏ ବୋଲୁଅ ହେଲେ, ମୁଁ ଏ ହାରାମି ସୁଅର୍‌କା ବଚ୍ଚାକୁ ଶିଖେଇ ଦିଅନ୍ତି । ମୁଁ କେବଳ ଜୋରରେ ଭୁଇଁକୁ ଲାତ ମାରିଲି ।

କୁଆ ଖତେଇ ହେଲାପରି ରାବୁଥିଲା । ଆଦେଶ ଦେଉଥିଲା "ନିକଲ ଯା ଏଇଠୁ, ନ ହେଲେ ତୋ ଆଖି ଖୁମ୍ପିଦେବି । ତୋ ମୁଣ୍ଡରୁ ଚୁଟି ଉପାଡ଼ିଦେବି ।"

ମୁଁ ଇତସ୍ତତଃ ଧାଇଁଲି ଏବଂ ସେ କୁଆ ତଳକୁ ପକ୍ଷ ମେଲେଇ ଝାମ୍ପିବା ଭଙ୍ଗୀରେ ମୋ ଚାରିଆଡ଼େ ଚକ୍‌କର କାଟିବାରେ ଲାଗିଲା ।

ତା'ପରେ... ତା'ପରେ ମୁଁ ସତକୁ ସତ ଡାକୁ ଡରିବାକୁ ଆରମ୍ଭ କଲି । ସେ କେତେବେଳେ ପଛରୁ ଆସି ପୁଳାଏ ବାଳ ଟାଣିନେବ, ସେଥିପାଇଁ ମୋ ପିଠିସାରା ଶୀତେଇଯାଉଥିଲା । ଏଣେ କୁଆଭୟରେ ଛାତ ଛାଡ଼ି ଚାଲିଯିବାକୁ ମଧ୍ୟ ଉପାୟ ନ ଥିଲା । ଏଠି ବରଂ ଯାହା ହେବାର ହେଇଯାଉ । ଏ ଛାର ଭୁଷଣ୍ଡାଭୟରେ ମୁଁ କଦାପି ତଳକୁ ଓହ୍ଲାଇବି ନାହିଁ... କୌଣସି ଉପାୟ ନ ଦେଖି ମୋ ଜାମାଟିକୁ ଖୋଲି ତାକୁ ମୁଣ୍ଡ ଉପରେ ବୁଲେଇଲି । ସେ ଉଡ଼ନ୍ତା ଜନ୍ତୁ ପୁଣି ଅପହଞ୍ଚ ଗାର ସେପାରି ଉଡ଼ିବୁଲିଲା – ଏକା ରାହାରେ ରାବିଲାଗିଲା ।

ସେତେବେଳକୁ ଅନ୍ଧାର ମାଡ଼ିଆସୁଥାଏ; ମେଘ ବି ଟେକିଥାଏ ଗୋଟାଏ କୋଣରୁ । ଆଉ ଗୋଟାଏ କୁଆ ଆସି ତା' ସାଙ୍ଗରେ ମିଶିଲା । ଦୁହେଁ ବୁଲି ବୁଲି ଖୁବ୍ ରାବିଲେ । ଥରେ ଦୁଇଥର ସେମାନେ ମୋର ଅସତର୍କ ଅବସ୍ଥାରେ ମୋତେ

ଖୁମ୍ପିଦେଲେ । ମୋ ଦେହମୁଣ୍ଡ ଶୀତେଇଗଲା । ମୁଁ ତଥାପି ଲଢ଼ିଚାଲିଥାଏ । ମୁଁ ତେଣିକି ବୋଧହୁଏ ଖୁବ୍ ପାଟିକରିଦେଲି ।

ଛାତ ଉପରେ ଛୋଟ ବଡ଼ ମଣିଷଙ୍କ ଭିଡ଼ ଦେଖି ମୋର ଆକ୍ରମଣକାରୀମାନେ ପଡ଼ିଶା ଛାତକୁ ଉଡ଼ିଗଲେ । ସେଇଠି ବସି ଆଗଭଳି ଭର୍ତ୍ସନା କଲେ । ମୁଁ ସାହସ ପାଇ ସେଇ ଆଡ଼କୁ କ୍ଷେପିଗଲି । ଛାତଉପରୁ ପଡ଼ିଯାଇଥାନ୍ତି; ଖୁବ୍ କଷ୍ଟରେ ସମ୍ଭାଳିଗଲି । ସେ ପକ୍ଷୀ ନା ଯମ, ତିଳେ ବି ଘୁଞ୍ଚିଲେ ନାହିଁ ।

ମୁଁ କ୍ରୋଧରେ ଜ୍ଞାନ ହାରିଦେଇଥିଲି । ମୁଁ ଖିଙ୍କାରିଲା ପରି ଯେତେ ଜୋର୍ ସମ୍ଭବ 'କା', 'କା' ରାବିଲି, ସେଭଳି ଗର୍ଜିଲି ।

ମୋତେ ସେ ଅବସ୍ଥାରେ ଦେଖି ମୋ ସ୍ତ୍ରୀ ହସିଉଠିଲେ । ତାଙ୍କ ଦେଖାଦେଖି ପିଲାଏ । କେବଳ ଜଣେ ଖୁବ୍ ଉଦ୍‌ବିଗ୍ନ ଜଣାଗଲେ । ସେ ମୋ ବାପା ।

"ଆରେ କ'ଣ ହେଲା ତୋର ! ଆ, ଏଠି ବସ । ତୋର କ'ଣ ମୁଣ୍ଡ ଖରାପ ହୋଇଗଲା !"

ମୋତେ ଭିଡ଼ିଆଣି ଅଧାକାନ୍ଥ ଉପରେ ବସେଇଲେ । ପାଖରେ ତାଙ୍କ ବଙ୍କା ବାଡ଼ିଟି ଧରି ବସିଲେ । ଅନ୍ୟମାନେ ତଥାପି ହସି ହସି ଗଡୁଥାନ୍ତି । ମୁଁ ହାଲିଆ ହୋଇ ଧକଉଥାଏ ।

ବାପା ଜାଣିବାକୁ ଚାହୁଁଥାନ୍ତି ଘଟଣାଟା କ'ଣ ।

ମୋ ସ୍ତ୍ରୀ ପ୍ରଥମେ ସଂଯତ ହୋଇ କହିଲେ, "ଆପଣଙ୍କ ବାହାଦୁର ପୁଅ କୁଆଙ୍କ ସଙ୍ଗେ ଲଢୁଥିଲେ ।"

ବାପା ହଠାତ୍ ଠିଆହୋଇପଡ଼ିଲେ । ବଙ୍କା ବାଡ଼ି ଧରି ଶୂନ୍ୟକୁ କାଟିଲା ପରି କହିଲେ – "ହୁଆ'ସ୍ ।"

ମୁଁ ଦେଖି ଆଶ୍ୱସ୍ତ ହେଲି ଯେ, ଏଥର ସେ ଦୁର୍ଦାନ୍ତ ପକ୍ଷୀ ଉଡ଼ିଗଲେ । ବୋଧହୁଏ ଅନ୍ଧାରରେ ତାଙ୍କୁ ଆଉ ବିଶେଷ ଦେଖାଯାଉ ନଥିଲା । ବୋଧହୁଏ ସେ ଆମ ପକ୍ଷର ଥାଟ ଦେଖି ଯୁଦ୍ଧ ସ୍ଥଗିତ ରଖିଲେ ।

ମୁଁ ସାମାନ୍ୟ ସ୍ୱାଭାବିକ ଢଙ୍ଗରେ କହିଲି, "ଏ ଶଳା କୁଆଙ୍କ ଜ୍ୱାଳାରେ ମଣିଷ ଆଉ ବଞ୍ଚିପାରିବ ନାହିଁ ! ମୁଁ କାଲି ଚୌଧୁରୀ ପାଖରୁ ବନ୍ଧୁକ ଆଣି ଏଗୁଡ଼ାକୁ ଗୁଳି ନ କଲାଯାଏଁ ପାଣି ଛୁଇଁବି ନାହିଁ ! ଶାଳା ମଣିଷକୁ ଦି'କଡ଼ାର କରି ଦଉଛନ୍ତି ।"

"ଆରେ କ'ଣ ହେଲା ? କୁଆଙ୍କ ଉପରେ ଏତେ ରାଗୁଚୁ କାହିଁକି ?"

ମୁଁ ଅସମ୍ଭାଳ ବକିଗଲି, "ରାଗିବି ନାଇଁ, କ'ଣ ଶରଣ ପଶିବି ? ସେମାନେ ସବୁ ଭଲ ସୁନ୍ଦର ପକ୍ଷୀଙ୍କୁ ଆକାଶରୁ ତଡ଼ିବେ । ଆମ ଟେଲିଫୋନ ତାର କାଟି ଆମକୁ ଆମ ଘରୁ ତଡ଼ି ଏ ବାଡ଼ିବଗିଚା ଘରଦ୍ୱାର ଅଧିକାର କରିବେ ! କ'ଣ ନା ଭୁଷଣ୍ଡ କାକ ! ତାକୁ ମାରି ଟିକିଟିକି ନକଲେ ମୋ ମନରେ ଶାନ୍ତି ନାହିଁ ।"

"ହଁ ବାପା, ଆମେ ପରା ଛାତକୁ କେତେ ଦିନ ହେଲା ଆସିବା ବନ୍ଦକରି ଦେଇଛୁ ! ସେ ତେନ୍ତୁଳି ଗଛରୁ ଗୋଟାଏ କୁଆ ଏଠି କାହାକୁ ରଖେଇଦଉନାହିଁ । ତଡ଼ି ନଉଚି !"

ମୁଁ ଆହୁରି ଉତ୍ତେଜିତ ହୋଇଗଲି – "ଦେଖିଲ, ତା'ର ପୁଣି ଏଡ଼େ ସାହସ । ମୁଁ କାଲି ଗୋଟାଏ ଛିଟିକିଣି ଆଣିଦଉଚି । ଗୋଟାଳ ଗୋଡ଼ି ଗୋଟେଇ ରଖିଥିବ; ଦେଖିଲେ ଶାଳାକୁ ମାର !"

ମୁଁ ଯୁଦ୍ଧକାଳୀନ ଘୋଷଣା କଲାବେଳେ ସେନାପତି ପରି ପଇଁତରା କାଟୁଥିଲି । ପିଲାଏ ଛିଟିକିଣି ନାଁ ଶୁଣି ଖୁସିରେ ଡେଇଁଲେ । ପତ୍ନୀ ଖୁବ୍ ଉତ୍ସାହିତ ଜଣାଗଲେ; କାରଣ ତାଙ୍କ ଇଜ୍ଜତ ରଖିବାକୁ ଏ ଘରେ ଏତେ ଯୋଦ୍ଧା ଏବେ ଅଣ୍ଡା ଭିତ଼ି ବାହାରିଆସିଲେଣି !

କେବଳ ବାପା କିଛି ନ କହି ଅପେକ୍ଷା କରିଥାନ୍ତି ।

ଆମ ଯୋଜନା ସମ୍ପୂର୍ଣ୍ଣ ହୋଇଗଲା । କଥାରୁ ବାରୁଦ ସରିଆସିଲା । ମୋ ଦେହରୁ ଝାଳ ଶୁଖିଆସିଥିଲା ।

ଈଷତ୍ ଅନ୍ଧାର ଭିତରେ ବାପାଙ୍କ ସ୍ୱର ଶୁଭିଲା –

"ଶୁଣ ସମସ୍ତେ ମୁଁ ଯାହା କହୁଛି । ମୋ ବୋଲ ମାନି କୁଆଙ୍କ ସାଙ୍ଗେ ଲାଗ ନାହିଁ । ମୋର ମନେହେଉଛି ସେ କୁଆ ଏଇ ଗଛରେ ବସା ବାନ୍ଧି ଡିମ୍ବ ପକେଇଛି । ଏତିକିବେଳେ ସେ କାହାକୁ ଏ ପାଖେଆଖେ ରଖେଇଦବ ନାହିଁ । ତା' ବାହାରେ କୁଆଠାରୁ ଆଉ ଚତୁର, ଲଦୁଆ ପକ୍ଷୀ ନାହାନ୍ତି – ସେଇମାନେ ବଣରେ ରହନ୍ତି ନାହିଁ । ମଣିଷଙ୍କ ପାଖେ ପାଖେ କୋଉକାଳୁ ରହି ସେମାନେ ତା'ର ସବୁ ଚାଲାକି ଶିଖିଗଲେଣି ! ସେମାନେ କଦାପି ମରିବେ ନାହିଁ; ମଣିଷ ଥିବାଯାକ ତା' ପାଖେପାଖେ ରହୁଥିବେ ! ଏ ପୃଥିବୀକୁ ତମେ ଅଧିକାର କଲେ ଅଧେ ଭୂମି ତାଙ୍କୁ ଦେଇ ବାକି ଅଧକରେ ରହିବ !"

"ଅସମ୍ଭବ!" – ମୁଁ ଯୋଦ୍ଧୃଠାଣିରେ ଗର୍ଜିଉଠିଲି ।

ବାପା ଅଳ୍ପ ହସିଲେ, "ଆରେ କଥାଟା ଶୁଣ – ଏମିତି କ'ଣ ଗର୍ଜୁଛୁ ? ତୋ'ରି ଭଳି ମୁଁ ବି ସେମାନଙ୍କ ସାଙ୍ଗେ ଲଢ଼ିଥିଲି । ମୋର ସେତେବେଳକୁ ଟୋକା ବୟସ । ଏମିତି ଗୋଟାଏ କୁଆ ମୋ ସାଙ୍ଗରେ ଗୁରେଇତୁରେଇ ହୋଇ ଲାଗିଲା । ମୁଁ ଖପ୍‌କିନା ତା' ପୁଛକୁ ଧରିପକେଇଲି । ସେ ଛାଟିପିଟି ହୋଇ ମୋତେ ରାମ୍ପିପକେଇଲା । ମୁଁ ତାକୁ ଜୋର୍‌ରେ ବାଟୁଲିଖଡ଼ା ପରି ସାଇଁ-ସାଇଁ ବୁଲେଇଲି । କ'ଣ ହେଲା ନା', ମୋ ମୁଠାରେ ତା' ଲାଞ୍ଜର ସବୁଯାକ ପର ଉପ୍ରି ହୋଇ ରହିଗଲା । ସେ ଛାଟିହୋଇଗଲା ଦୂରକୁ । ସେଇଠି ଘାଲେଇ ପଡ଼ିରହିଲା କିଛି ସମୟ । ତା' ଉତ୍ତାରୁ ସେ ରାବିଲା ! ଓଃ, ସେଇଟା କୁଆଡାକ ନୁହେଁ; ଗୋଟାଏ କେମିତି ବିକଟାଳ ରଡ଼ି । ସେ ଆକାଶରେ ରହି ଡାକିଲା । ସେଇଟା ବୋଧେ ଯୁଦ୍ଧ-ଡାକରା । ଚାହୁଁ ଚାହୁଁ

ଅସଂଖ୍ୟ କୁଆ ରୁଣ୍ଡ ହୋଇଗଲେ । ସେମାନେ ମୋତେ ଚିହ୍ନଟ କରିନେଲେ । ମୋତେ ଘେରିଗଲେ ଶୂନ୍ୟରେ । ମୁଁ ଡରିଗଲି । ସେମାନଙ୍କ ଥଣ୍ଟକୁ ଦେଖି – ସେମାନଙ୍କ ରାଉ-ରାଉ ଡାକ ଶୁଣି ମୋ ପିଳେହିପାଣି । ମୁଁ ସେ ମୁଠାକଯାକ ପର ଫିଙ୍ଗିଦେଇ ଘରେ ପଶି କବାଟ ପକେଇଦେଲି । ସେମାନେ ଖେଦିଆସିଲେ ଆଗ ଘରଯାଏଁ । ଗଛ ଉପରେ ହଜାରେ କୁଆ ଆସି ଡାକିଲେ; ଫାଙ୍କବାଟେ ଅନେଇଲେ । ସବୁଯାକ ପର ଗୋଟେଇ ଥଣ୍ଟରେ ଧରି ଉଡ଼ିଗଲେ ସେଥିରୁ କେଇଟା । ସେମିତି କୁଆମେଳି ଆଉ ହେବାର ମୁଁ ଦେଖିନାହିଁ ।''

ମୋ ପୁଅ ପଚାରିଲା ଆଗ୍ରହରେ, ''ସେଇଠୁ କ'ଣ ହେଲା ଜେଜେ ?'' ବାପା ମୋତେ ଚାହିଁ ଉତ୍ତର ଦେଲେ, ''ସେଇଠୁ ମୋର ଅବସ୍ଥା ଆଉ କହନା ! ବାହାରକୁ ବାହାରିବାମାତ୍ରେ ସେ ଲାଞ୍ଜଖଣ୍ଡିଆ କୁଆ ଡେଣା ମେଲେଇ ବାଦୁଡ଼ି ପରି ମୋ ପିଛା ଧରେ । କୁଆ ମାଡ଼ିଆସନ୍ତି ଚାରିଆଡୁ । ମୁଁ ମୁଣ୍ଡରେ ଠେକା ଭିଡ଼ି ବାଡ଼ି ବୁଲେଇ ବୁଲେଇ ଯାଉଥାଏ । ଏମିତି ଚାଲିଲା ମାସସଂଖ୍ୟା । ଗାଁ'ର ସବୁ ଭେଣ୍ଡିଆ ମିଶି ସାହାପକ୍ଷ ହୋଇଚନ୍ତି । ହେଲେ, ଲୋକଗହଳି ଭିତରେ ସୁଦ୍ଧା କୁଆ ମତେ ବାଛି ଖୁମ୍ପିଲାଗିଥାନ୍ତି । ସୁବିଧା ପାଇଥିଲେ ମୋତେ ସେମାନେ କଞ୍ଚା ଖାଇଯାଇଥାନ୍ତେ ?''

ବାପାଙ୍କ ସ୍ୱର କୋହଲା ପବନ ପରି ଦେହ ଶୀତେଇଦେଉଥିଲା । କୁଆଟାଏ ବାଦୁଡ଼ି ପରି ଦୁଶିଯାଉଥିଲା – ଆକାଶ ଭରିଯାଇଥିଲା କଳା କଳା ପକ୍ଷୀଥାଟରେ । ରାଉ ରାଉ ଡାକୁଥିଲା ସମୁଦ୍ର !

ମୁଁ ଅଣାୟତ୍ତରେ ଛେପ ଢୋକିଲି ।

ବାପା ଦୀର୍ଘଶ୍ୱାସ ଛାଡ଼ି କହିଲେ, ''ଦିନେ ସକାଳୁ ସଜ ହୋଇ ଅନାଇଲା ବେଳକୁ ଖଣ୍ଡିଆ କୁଆ ଦୁଶିଲା ନାହିଁ । ଗୋଟିଏ ହେଲେ କୁଆ ସେ ଆଖପାଖ କୋଉଠି ଦୁଶିଲେ ନାହିଁ । ମୁଁ ବିଶ୍ୱାସ କରି ପାରିଲି ନାହିଁ । ମୁଁ ବଲବଲ କରି ଚାହିଁଲି – ଆସ୍ତେ ଠେକା ଫିଟେଇ କାନ୍ଧରେ ପକେଇଲି । ବାଡ଼ିଟିକୁ ନୁଆଇଁଆଣି ଉଶ୍ୱାସରେ ଆଗ କିଛି ସମୟ ସହଜରେ ନିଶ୍ୱାସ ମାରିଲି ।... ମୋର ସାଙ୍ଗସୁଖ ସବୁ ଆସିଲେ । ସେମାନେ ମଧ୍ୟ ସେମିତି ଆବାକାବା ହୋଇ ଅନେଇଲେ ଚାରିଆଡ଼କୁ । ଗୋଟାଏ ସେଥିରୁ କହିଲା, 'କି ରେ, ଆମ ଗାଁଟାରେ କ'ଣ ଜଗନ୍ନାଥଙ୍କ ରାଣ ଲାଗିଗଲା କି ରେ ? ବଡ଼ଦେଉଳରେ କୁଆ ଗୋଟିଏ ହେଲେ ନାହିଁ ।' ସମସ୍ତଙ୍କୁ ଉଶ୍ୱାସ ଲାଗିଲା । ଯାଇ ସେ ପୁରୁଣା ଆମ୍ବ ଗଛମୂଳେ ପହଞ୍ଚିଲୁ । ତା ମୂଳଯାଏଁ ଯିବାପାଇଁ କେହି କେବେ ସାହସ କରି ନ ଥିଲେ । ଦେଖିଲାବେଳକୁ କୁଆ ବସାରୁ ଅଧେ ଲାଗିରହିଛି; ଉପରେ ପୁଳେ ଏଠିସେଠି ହୋଇ ପୁଞ୍ଛର ପରସବୁ ପଡ଼ିଛି ।... କୁଆ ସେଇଠି ଡିମ୍ବ ଦେଇଥିଲା, ତାକୁ ଫଟେଇ ଛୁଆ ଉଡ଼େଇନେବାଯାଏ ସେମାନେ ସେ ଅଞ୍ଚଳକୁ ଘେରିଥିଲେ । ତା ପୂର୍ବଦିନ ବୋଧେ ଉଡ଼ିଗଲେ ଆଉ କୁଆଡ଼େ !... ସେହିଦିନୁ କୁଆମେଳି ହେବାକଥା ଭାବିଲେ ମୋ ଭିତରେ ଡର ପଶିଯାଏ । – ତମେ

କେହି ସେ କୁଆ ସାଙ୍ଗେ ଲାଗନାହିଁ । ସେଇଟା ଭାରି ସୁଜାଣ ପକ୍ଷୀ । ଦେଖିବ, ସେ ତା ବାମ ପୂରିଗଲେ ଆଡ଼େଇ ହୋଇଯିବ ।... ତାକୁ ସହିବାକୁ ପଡ଼ିବ । ଏ ବର୍ଷାରେ ତା ବସା ଭାଙ୍ଗିଦେଲେ ସେ କୁଆଡ଼େ ଯିବ, କହିଲୁ ? ସେ ଯଦି ସେଇ ଆଶଙ୍କାରେ ଏଇଠି ପହରା ଦେଲା, ସେଇଟା କ'ଣ ଦୋଷ !''

ଅନ୍ଧାରରେ ବାପାଙ୍କ ମୁହଁ ସ୍ପଷ୍ଟ ଦେଖାଯାଉ ନଥିଲା... ଆମେ ସବୁ କିଛି ନ କହି ଆସ୍ତେ ଛାତର ତଳକୁ ଓହ୍ଲାଇଆସିଲୁ ।

X X X X

ତା ଆରଦିନ ସକାଳୁ ଆମ ଘର ପଡ଼ିଶାରେ ଗୋଳ ହେଲା । ପୁଲିସ ପଲଟଣ ଲୋକବାକ ଆର ଛକରେ ରୁଣ୍ଡ ହୋଇଥାନ୍ତି । ମୁଁ ବଜାରକୁ ଯିବାବାଟରେ ସେଇଠି ଟିକିଏ ଅଟକିଗଲି ।

ପୋଲିସ ବାବୁ ଜଣେ ଗୋଡ଼ ଫରକଟେଇ ଠିଆହୋଇଥାଏ । ତାଙ୍କ ପାଖକୁ ଲାଗି ଲାଠିଆଳ ପଇଟଣ । ଟିକିଏ ଆଗକୁ ଗୋଟେ ଶୁକୁଟୀ କାଳିଆ ମାଇକିନିଆ ଡେଉଁଥାଏ । ତା ହାତରେ ଛୋଟିଆ ପାତି ହୋଇଯାଇଥିବା ପନିକିଟିଏ । ସେ ଗର୍ଜୁଥାଏ । ପନିକିଟାକୁ ଧରି ପବନକୁ ଛିଆଇ ପକଉଥାଏ । ଏତିକି ଟିକିଏ ବେଙ୍କେରୋଟ ରୋଗିଣା ମାଇକିନା । ବୟସ ପଂଚାଳିଶ । ଆମମାନଙ୍କ ଘରେ ବାସନ ମାଜେ ।... ସେମାନେ ସବୁ ଛୋଟିଆ ବସ୍ତିଟିଏ କୁଡ଼ିଆ ବାନ୍ଧି ସେଇଠି ଥାଆନ୍ତି । ସରକାରୀ ଜାଗାରୁ ସେମାନଙ୍କୁ ବେଦଖଲ କରିବାକୁ ଫଉଜ ଆସି ଠିଆହୋଇଥାନ୍ତି ।

ମୁଁ ରଙ୍ଗିଣୀକୁ ଚାହିଁରହିଥାଏ । ମୋତେ ଦିଶିଲା, କୁଆଟାଏ ବାଦୁଡ଼ି ପରି ଖଣ୍ଡିଉଡ଼ା ଦେଉଚି ଖପର ଖପର ହେଉଛି ଆତଙ୍କରେ, କ୍ରୋଧରେ । ମରିବ କିମ୍ବା ମାରିବା ଢଙ୍ଗରେ ।... ମୁଁ ପୋଲିସ୍ ସାଇବ ପାଖକୁ ଯାଇ କହିଲି –

''ମୁଁ ଶୁଣିଛି, ଏ ମାଇକିନାର ବୋହୂକୁ ଆଠ ମାସ ଗର୍ଭ । ଏ ବର୍ଷାଟା ଯାଉ । ସେ ବଳେ ତା' ପୁଅ-ନାତିକୁ ଧରି ଏଇଠୁ ଉଠିଯିବ ।... ନହେଲେ... ନହେଲେ ସେମାନେ ମାଡିଯିବେ ।'' ମୁଁ କ'ଣ କହିଲି, କେମିତି କହିଲି, ମନେନାହିଁ – ଲାଜ ଲାଜ ହୋଇ ବଜାରକୁ ଚାଲିଗଲି ।

ଆସିଲାବେଳକୁ ପୋଲିସ୍ ଗାଡ଼ି ଚାଲିଯାଇଥିଲା । ମାଟି ଝାଟି ତାଳବରଡ଼ାରେ ତିଆରି ସେ କୁଆ ବସାଗୁଡ଼ିକ ଅକ୍ଷୁଣ୍ଣ ରହିଥିଲା ।

ଅଜସ୍ର ମେଘ ଜମିରହିଥିଲା ଆକାଶରେ !!

□□□

# ଅପସାରିତ

ଆଣ୍ଠୁଯାଏ ଲୁଗା ଟେକି, ଗୋଟିଏ ଛତାତଳେ ଜାକିଜୁକି ହେଇ ଯେଉଁ ଦୁଇ ଜଣ ବର୍ଷା-ଅନ୍ଧାରରେ ବାଟ ବାରି ଚାଲୁଥିଲେ, ସେମାନେ କିଏ କେଜାଣି । ଜଣେ କିନ୍ତୁ ଏଇ ସାମ୍ନାରେ ପାରିହେଲାବେଳେ ଖୁବ୍ ସ୍ପଷ୍ଟ ସ୍ୱରରେ କହିଲା, ''ଏମିତି ଆଉ ବଞ୍ଚିବାର ଅର୍ଥ କଣ ?''

କାହିଁକି ଏଭଳି ବାକ୍ୟ ସେ କହିଥିଲା, କେଉଁ ପରିସ୍ଥିତିରେ ସେ ଜୀବନ ପ୍ରତି ଏତେ ବିମୁଖ ହେଇପଡ଼ିଥିଲା, ଏ ବଞ୍ଚିବା ତାକୁ ଏଡ଼ିକି ଅର୍ଥହୀନ ବୋଧହେଉଥିଲା, ଅନୁମାନ କରି କହିବା କଷ୍ଟ । ସେ କିନ୍ତୁ କଦାପି ଜାଣି ନ ଥିଲା ଯେ, ବଜ୍ର ପରି ସେ ବାକ୍ୟ ଓହ୍ଲେଇଆସିଲାବେଳେ ମାତ୍ର ପାଞ୍ଚ ହାତ ବ୍ୟବଧାନରୁ 'ଧନି ଅଜା' ତାକୁ ମୁଣ୍ଡ ପାତି ସ୍ୱୀକାର କରିନେବ – ଏବଂ ସେତିକି ବେଳୁ ସେଇ ବାକ୍ୟଟିକୁ ଗୁରୁମନ୍ତ୍ର ପରି ଘୋଷିଲାଗିଥିବ ।

ଲଣ୍ଠନଟିଏ ଧରି ବାଡ଼ିଆଡୁ କେହି ଜଣେ ସେ ବଖରାକୁ ଖାଲିପାଦରେ ପଶିଆସିଲା । ଟୁପ୍ ଟୁପ୍ ଚାଲି । ଲୁଗାପଟା ଆଡ଼େଇ କଣଟାଏ ଟାଣିନେଇ ଧାଇଁପଳେଇଲା ! କାହିଁ, କିଛି କହିଲା ନାହିଁ ତ । ସେଇ ଟୁପି ଚଢ଼େଇ ହେଇଥିବ । ପବି ! 'ପବି'ର ଆଉର ଅଜା ହଉଚି ଧନି ଅଜା । ପବି ମଧ ତାକୁ 'ଅଜା' ଡାକେ । 'ଅଜା' ଉପରକୁ ଆଉ ତ କିଛି ନାହିଁ ଡାକିବାକୁ । ପୁଣି ଅଜା, ବୁଢ଼ା ଅଜା, କ'ଣଟାଏ ଡାକିଲେ ଚଳନ୍ତା । ଇଟା, ଗୋଡ଼ି, ପଥର ଡାକିଲେ ବି ତେଣିକି ଚଳନ୍ତା – କିନ୍ତୁ ସେଗୁଡ଼ାକ ତୁଣ୍ଡରେ ପଇଟେ ନାହିଁ ! 'ପବି' ସେ ଲୋତରା ବୁଢ଼ିଆ ମୁହଁକୁ ଅନାଏ । ପାକୁଆ ପାଟିଦାଢ଼ରୁ ଆଖିକୁଣଯାଏ ପାଣିଳହଡ଼ି ପରି ହସଟିଏ ଓସାରିହୋଇଯିବାର ଦେଖେ । ତାକୁ ଲାଗେ, ଅଜା ସତେ ଘରର ବାକି ସମସ୍ତଙ୍କଠୁ ଭିନ୍ନ । 'ପବି' ଆସି ଏମିତି କିଛି ନ କହି ସେଦିନ କାହିଁକି ଚାଲିଗଲା ? ଧନି ଅଜା କିଛି ସମୟ ଭାବିଲା ପରେ ଚିନ୍ତା ହୁଗୁଳା ଧରିଗଲା । ଗୋଟାଏ କଥାକୁ ମନ ଭିତରେ ବେଶୀ ସମୟ ସେ ରଖି ପାରୁ ନ ଥିଲା ।

ଧନି ଅଜାର ବୟସ ଅସୁମାରି । ତା ସାଙ୍ଗର ଆମ୍ବ ପଣସ ନଡ଼ିଆ ଗଛସବୁ ମରିଗଲେଣି । ବଟ ଗଛଟାଏ ବଞ୍ଚିଛି; ହେଲେ ତା ଓହଳରୁ ଓହଳ ପଡ଼ିଗଲାଣି । ଧନି ଅଜାଠୁ ବୟସରେ କେବଳ ସେ ଖଡ଼ି ମୁଣ୍ଡିଆଟା ବଡ଼ – ନ ହେଲେ ଆଉ କେହି ନାହିଁ । ତା ଭିତରେ ବାହାରେ ଅଙ୍ଗସବୁ କାଠ ପାଷାଣ ହେଇଗଲାଣି; ବଧିରା ହେଇଗଲାଣି । ଏମିତି ବୋଧହୁଏ ସେ ପଥର ପାଲଟିଯିବ; ଅମର ହେଇଯିବ ।

ନହେଲେ ଭେଣ୍ଡା ବୟସରେ ନାତୁଣୀର ନାତିଟୋକା ଆଜି ମରିଯାଇଥାନ୍ତା, ଅଥଚ ଏ ଥୁଣ୍ଟା ବୁଢ଼ା ଶକୁନା ଏମିତି ବଞ୍ଚିରହିଥାନ୍ତା ? ଏମିତି ବଞ୍ଚିବାର ଅର୍ଥ କଣ ? "ଏ ଅମଙ୍ଗୁଳିଆ ବଉଁଶଖିଆ ସମସ୍ତଙ୍କର ମରଣ ଦେଖିବ – ତେଣିକି ଯାଇ ମଲେ ମରିବ, ନ ହେଲେ ନାହିଁ ।" "ଯା ଛାଇରେ ଏ ଘରେ କେହି ଉଧେଇପାରିବେ ନାହିଁ । କାଇଁ ଏଇଟା ଏମିତି ପୋଚା କୁକୁର ପରି ବଞ୍ଚିଚି କେଜାଣି । ଏଇଟା ଗଲେ ଏ ଘରୁ କଳଙ୍କ ଯିବ !"

କାନ ବଧିରା ନ ହେଲେ, ବୁକୁ ପଥର ନ ହେଲେ, ଛି' କହିଦିଅନ୍ତା ଆତ୍ମାପୁରୁଷ ଏତକ ଶୁଣିଦେଇ; ଅଥଚ ଧନି ଅଜା ସବୁ ଶୁଣେ ଏବଂ ତୁନିପଡ଼ିଯାଏ । ତାର ଆଉ କିଛି ପ୍ରତିକ୍ରିୟା ହେଉନାହିଁ । ତା ଭିତର କାଠେଇ ଯାଇନଥିଲେ ଏମତି ଲୁଣପାଣିର ଇହଡ଼ିମାଡ଼ ସେ କଣ ସହିପାରନ୍ତା ? ସେ ଏମିତି ସହିଯାଉଛି ବୋଲି ବଞ୍ଚିଛି, ନା ବଞ୍ଚିଛି ବୋଲି ଅଗତ୍ୟା ସହିଯାଉଛି ? କେଜାଣି !

ନାତୁଣୀର ନାତି ମରିଗଲା । କିଏ ସେ ଟୋକା ? ଧନି ଅଜା ଚେଷ୍ଟାକରୁଛି ଘଟଣାଟାକୁ ମର୍ମ ଭିତରେ ଥାପନା କରିବାକୁ; ଜମା ହଉ ନାହିଁ, ହୁଗୁଳିଯାଉଛି । ଏବେ ବୋଧେ ବଞ୍ଚିବା କିମ୍ବା ମରିବା ସେ କିଛି ଅନୁଭବି ପାରୁନାହିଁ – 'ଦେବୁ' ନାଁ ଧରି ତା ମା' ରାହା ଟେକି କାନ୍ଦୁଛି । ଘରେ ରୋଳ ଉଠୁଛି । ଧନି ଅଜାର ମନେପଡୁଛି ଭାରି ସୁନ୍ଦରିଆ ବକ୍‌ବାଜିଆ ପିଲାଟିଏ । ତା ସଙ୍ଗେ ସେ ଟାହିଟାପରା ଲାଗୁଥିଲା । ହେଲେ, ଅଙ୍କ କେତେ ଥର ମାତ୍ର ସେ ଦେଖିଛି ପିଲାଟିକୁ, ଭିତରେ ମିଞ୍ଚେଇ ପାରିନାହିଁ । ତାକୁ ଆଉ ସାହିର ସୁନ୍ଦରିଆ ଟୋକା ବୋଲି ପରିଚୟ ଦେଇଦେଲେ ମଧ୍ୟ କିଛି ଯାଏ-ଆସେ ନାହିଁ । ସେ ଆଦୌ ଜାଣିପାରୁନାହିଁ ଯେ, ସେ ତା' ରକ୍ତନାଳିରୁ ଜାତ ହେଇଚି । ସେ ଟୋକାର ମରଣ ଏମିତି, ଆହା କଲାଭଳି ଘଟଣାଟିଏ ନିଶ୍ଚୟ; ମାତ୍ର ଭିତରେ କିଛି ହେଲାଭଳି ଯନ୍ତ୍ରଣା ସେଥିରେ ସେ ପାଉନାହିଁ ବରଂ ତା ଡାହାଣ ଆଣ୍ଠୁର ଯନ୍ତ୍ରଣା ଆହୁରି ବଳେଇଯାଉଛି !

ଧନି ଅଜାର ଆଠଟା ନାତୁଣୀ । ଏ କୋଉ ନାତୁଣୀର ଝିଅ କାନ୍ଦୁଛି ? 'ପବି'ର ମା' । ସେ ଟୋକାର ମା'... ସେ'ଇ କାନ୍ଦୁଚି । ମିଛିମିଛିକା କଣ୍ଢେଇ ଖେଳରେ ନାତୁଣୀମାନେ ବିଭାଘର କରନ୍ତି; ଅଜାକୁ ନିମିତ୍ତଘର ଯିବା ପାଇଁ ନିମନ୍ତ୍ରଣ କରନ୍ତି । ସେଇଠି ଶିମ୍ବପତ୍ରରେ ମିଛିମିଛିକା ଭୋଜି ହୁଏ । ଝିଅ ଶାଶୁଘରକୁ ଯାଏ । କନ୍ଦାକଟା ହୁଏ । ତା'ପରେ ଫ୍ରକ୍‌ପିନ୍ଧା ନାତୁଣୀଗୁଡ଼ିଏ ଖେଳ ଛାଡ଼ି କଅଁଳା ବାଛୁରୀ ପରି ଡେଙ୍ଗ ଡେଙ୍ଗ ଚାଲିଯାନ୍ତି ମନଇଚ୍ଛା ।

ଏଇ 'ପବି' ମା' ଗୋଟାଏ ସେଇ ନାତୁଣୀର ଝିଅ । ନିଜେ ଗୋଟେ ସଖିକଣ୍ଢେଇ । ସେ କଣ ପୁଅ ମରିଗଲା ବୋଲି କାନ୍ଦୁଚି ମ ! ତା'ର କ'ଣ ସତକୁ ସତ ପୁଅ ହେଇଚି, – ଆଉ ସେ ପୁଅଟା ସତକୁ ସତ ମରିଯାଇଛି ? ଧନି ଅଜା

ବୁଝିବାକୁ, ବିଶ୍ୱାସ କରିବାକୁ ଚେଷ୍ଟାକରିଚାଲିଥାଏ, ତା ନିରୋଳା ବଖରାଟାରେ। ଘରସାରା ଆଲୋଡ଼ିତ ହେଉଥାଏ ଶୋକୋଚ୍ଛ୍ୱାସରେ !

ରାସ୍ତାରେ ଆଉ କିଏ ସବୁ ପାଣି ଚବର-ଚବର କରି ଚାଲିଗଲେ। ନୀରବ ମଣିଷମାନେ ଏମିତି ଚାଲିଲେ ଜନ୍ତୁ ଚାଲିଲା ପରି ଶୁଭେ ! ବର୍ଷା ଭିତରୁ ସତକୁ ସତ ଜନ୍ତୁଯାକ ଶିଢ଼ି ଘରକୁ ଉଠିଆସୁଥିଲେ – ଗୋରୁ, କୁକୁର, ବେଙ୍ଗ। ଧନି ଅଜା ସମ୍ଭାଳି ନପାରି ଖୁସ୍ ଖୁସ୍ ହେଲା। ଗଳା ଖଙ୍କାରିଲା। ତାକୁ ବଡ଼ ବିଚିତ୍ର ବୋଧହେଉଥିଲା। ହୁଏତ ଏକପ୍ରକାର ଅସୁସ୍ଥ ଲାଗୁଥିଲା।

କେହି ଜଣେ ଘର ଭିତରକୁ ପଶିଆସିଲା। କ'ଣ ଏଠିସେଠି ଜିନିଷ ଘାଣ୍ଟିଲା। ଧନି ଅଜାକୁ ଦୃଶ୍ୟେଇଲା ନାହିଁ। 'କିଏ' ବୋଲି ପଚାରିବାକୁ ଧନି ଅଜା ବୋଧହୁଏ ବିଳମ୍ବ କରିଦେଲା – କାରଣ ସେ ଜଣକ ସେତେବେଳକୁ ଚାଲିଯାଇଥିଲା।

ସେ ଘରର ପୁରୁଣା ଆସବାବ, ଲୁଗାପଟା, ଭଙ୍ଗା ଅଲଣା, ରସଥାଳି, ଥାଳିଆ, ଡବା ଆଦି ନିଷ୍କର୍ମ ପଡ଼ିରହିଲା ପୁରୁଣା ପଲଙ୍କଟା ଉପରେ।

ଏଇ ପଲଙ୍କ କୁଆଡ଼େ ଧନି ଅଜା ବିଭାଘର ଯୌତୁକରେ ପାଇଥିଲା। ଆଣଟି ଗୋରୀ, ଚକାମୁହାଁ, ପେଣ୍ଡିପାଣ୍ଡି ବାଙ୍ଗୁରୀଟିଏ। ଏଇ ପଲଙ୍କରେ ଦର୍ପଣ-ବାଡ଼ ବସିଥିଲା। ଶିଶୁଆ କାଠର କୁନ୍ଦା ଖୁରା କାଚପରି ଦାଉଦାଉ କରୁଥିଲା ! କେବଳ ଧନି ଅଜା ସେ ପଲଙ୍କର ପ୍ରଶସ୍ତି ମନହେଲେ ଗାଏ; ବାକି ସବୁ ଶୁଣନ୍ତି, କୁହାକୁହି ହୁଅନ୍ତି। – ଆଉ କିଏ ତାକୁ ସେକାଳେ ଦେଖିଛି ଯେ, କହିବ ? ଆଈ ଥିଲେ କହିଥାନ୍ତା। ସେ ତ ମଲାଣି ପଚାଶ ବର୍ଷ ହେଲା।

ଧନି ଅଜାର କିନ୍ତୁ କାଲିକା କଥା ପରି ମନେଅଛି। ଥରେ ସଞ୍ଜବେଳେ କାମରୁ ଫେରିଲାବେଳକୁ ତା ସ୍ତ୍ରୀ ପାଞ୍ଚ ବର୍ଷର ଝିଅକୁ କୋଡ଼ରେ ଧରି ଏଇ ପଲଙ୍କ ଉପରେ ବସିଥାଏ, ଝିଅକୁ ପ୍ରବଳ ଜର। ସେ ଆଖିବୁଜି କୁନ୍ଥଉଥାଏ। ଜର କୋଉ ନୂଆ କଥା; ରୋଗ କୋଉ ନୂଆ କଥା। ହେଲେ ଧନି ଅଜା ଔଷଧପତ୍ର ବୁଝିନେଇ ଥୟ ଧରି ରହିପାରୁ ନ ଥାଏ। ସେଇଠି ଲଙ୍ଗରପଙ୍ଗର ହେଉଥାଏ। ଝିଅର ନାଡ଼ି ଦେଖୁଥାଏ, ଜର ଦେଖୁଥାଏ। ଧନି ଅଜାର ଏମିତି କଛାହଗୁରା ଗୁଣ ତା ସ୍ତ୍ରୀ ଜାଣିସାରିଥାଏ। ନିଆଁପିଣ୍ଡୁଳା ପରି ଝିଅକୁ ଚାଦର ଘୋଡ଼େଇ ପଲଙ୍କର ଗୋଟେ ପାଖକୁ ଗଡ଼େଇ ଦେଇ ସେ ଦେହମୁଣ୍ଡ ସଳଖିଲା। କିଛି ନ ଜାଣି ଝିଅକୁ ପୁଣି ଆଉଁସି ସାଉଁଳି ବ୍ୟସ୍ତହେଲା ଧନି ଅଜା, ମୁହଁ ଟେକି ଅନେଇଲା ସ୍ତ୍ରୀକୁ। ତା ସ୍ତ୍ରୀ ତାକୁ ଏବଂ ତା ଓଲାପଣକୁ ଚାହିଁ ହସୁଥିଲା। ସ୍ତ୍ରୀର ହସ ଦେଖି ତାକୁ ଅନେକ ଉଶ୍ୱାସ ଲାଗିଲା। ତଥାପି, ଭାରି ମଞ୍ଜପାତଳ ମଣିଷଟାଏ ଧନି ଅଜା। ରାତିସାରା ତା ଆଖିରେ କଷା ପଡ଼ିଲା ନାହିଁ।

ସକାଳୁ ଧନି ଅଜାର ମନେହେଲା ଯେ ପୃଥିବୀସାରା ଖଣ୍ଡ ଖଣ୍ଡ ହୋଇ ଝଡ଼ିପଡୁଛି। ଅସଂଖ୍ୟ ଲୋକ ରୋଳ କରୁଛନ୍ତି। କେହି ଜଣେ ନଇଁପଡ଼ି ତା ଝିଅକୁ ଶୂନ୍ୟରେ ଟେକିନେଇ ଯାଉଛି। ସେ ଝାଙ୍କିହେଲା; ଗୁଡ଼ାଏ ପାଟିତୁଣ୍ଡ କଲା।

ଘରଲୋକେ ପଛେ କହିଲେ ଯେ କେହି କୁଆଡ଼େ ନ ଥିଲେ । ଧନି ଅଜା ଛାଇନିଦରେ ମନକୁ ମନ ବିଡ଼୍‌ବିଡ଼୍ ହେଉଥିଲା । ତା' ପରେ ଚେତା ହାରି ପଡ଼ିଗଲା । ସେତିକିବେଳେ ତା ଝିଅ ମରିଯାଇଥିଲା – ଧନି ଅଜା ଝିଅର ମରଣ ଦେଖିଲା ନାହିଁ । ତଥାପି ତା ଭିତରୁ ମଞ୍ଜ ଶୁଖିଗଲା; ରକ୍ତ ଶୁଖିଗଲା । ତା ଆତ୍ମାପୁରୁଷ ଉଶ୍ୱାସ ହେଇ ପହଁରିଥିଲା କିଛିକାଳ । ତା ବୁକୁ ଥୟ ହେବାକୁ କାହିଁ କେତେ ଦିନ ଲାଗିଗଲା । ଯୁଆଡ଼େ ଆଖି ପକେଇଲେ ସେଇଆଡ଼େ ସେ ଝିଅମୁହଁ ଦିଶୁଥିଲା । ଝିଅ ମଲେ ଏତେ ନିଦାରୁଣ କଷ୍ଟ ହୁଏ – ଧନି ଅଜାର ଜମା ବିଶ୍ୱାସ ନାହିଁ ଯେ କଣ୍ଢେଇ ଖେଳର ଏ ନାତୁଣୀଯାକ କେବେ ସେ କଷ୍ଟ ଅନୁଭବ କରିପାରିବେ ? ଧୁତ୍, କଣ୍ଢେଇଟାଏ କଣ ମରେ ?

ମରଣ କ'ଣ ଏମାନେ ବୁଝିବେ ? ଆଜିକାଲିକା ଡିମ୍ଭ – ତାଙ୍କୁ ଲାଗିଛି ଖେଳଘର । ଏମାନେ କଣ ସଂସାର କଲେଣି ନା ସଂସାରକୁ ବୁଝିଲେଣି ? ପୁଅଟାଏ କେମିତି ବାପ-ମା'କୁ ଚିପୁଡ଼ି ତାଙ୍କୁ ଶେଷକୁ ଖୋଳପା କରିଦିଏ, ପୁଅକୁ ତଥାପି କେତେ ପ୍ରାଣ ଦେଇ ପାଳିବାକୁ ହୁଏ – ଏମାନେ କଣ ବୁଝିଛନ୍ତି ?

ଥରେ ରାତିରେ ଅଝଟ ଲଗେଇଲା ବଡ଼ପୁଅ ଝଲେବି ଖାଇବ ବୋଲି । ବର୍ଷା-ରାତି । ସାଇବ ଅମଳ କଥା । ଧନି ଅଜାର ନୂଆ ବିଭା ହେଇ ଆଗମୁହଁରେ ପୁଅ ପାଇବା କାଳ । ନୂଆ ହେଇ ଯୁଦ୍ଧ ଲାଗିଥାଏ । ମହର୍ଗ କାଳ । ଅନ୍ଧାର କାଳ । ରାତିରେ ଆଲୁଅ ଜାଳିବାକୁ ମନା । ମାଟିତେଲ ମିଳେ ନାହିଁ । ଲୁଣ ଚିନି ମିଳେ ନାହିଁ । ସେଇ ଥର ମହରଗ ହୋଇଗଲା ଯେ କାହିଁରେ କ'ଣ । ପଇସାଟାରେ ଆଉ ଚାରି ପୁଞ୍ଜା ଝଲେବି ମିଳିଲା ନାହିଁ । ପୁଞ୍ଜାକୁ ପଡ଼ିଲା ପଇସେ ।

କଞ୍ଚାପଇସା ସେତେବେଳେ ଦେଖିବାକୁ ସ୍ୱପ୍ନ । ତଥାପି ଧନି ଅଜା ପୁଅମୋହରେ ସେ ଅନ୍ଧାର ରାତିରେ ଛତା ଟେକି ବାହାରିଥିଲା । ମଦନା ସାହୁ ଦୋକାନରୁ ଝଲେବି ଆସିଥିଲା । ସେ ଟୋକା ଗୋଟାଏ ଚୋବେଇ ଲୁହସିଙ୍ଘାଣି ମୁହଁରେ ଖଣ୍ଡିଆ ଦାନ୍ତ ଦେଖେଇ ହସିଦେଇଥିଲା । ଧନି ଅଜାକୁ ସ୍ୱର୍ଗସମ୍ପତ୍ତି ପାଇଲା ପରି ଲାଗିଥିଲା । ଏମାନେ କ'ଣ ଏବେ ପିଲାଙ୍କୁ ଏମିତି ପାଳିଛନ୍ତି ? ସେଇ ପୁଅ ପୁଣି ବଡ଼ ହେଲା । ରୁଢ଼ ସାଲୁବାଲୁ ମୁହଁରେ ଆଉ କିଏ ଭଳି ଦିନେ ସେ ଠିଆହେଲା । ତା ମନକୁ ଖାଇଲା, ପିନ୍ଧିଲା, ଚାକିରିବାକିରି କଲା – ତା'ର ପିଲାଝିଲା ହେଲେ । ଏଇ ପବିର ମା'ଟା ସବା ସାନ ନାତୁଣୀ ! – ଉଁ ହୁଁ – ପବିର ମା' ନାଇଁ ମ' – ତା' ମା' – କଣ ତା' ନାଁ ଟି – କାନରେ ନୋଳି ପିନ୍ଧି ଏଡ଼େ ଟିକିଟିଏ ହୋଇଥାଏ । ସବୁବେଳେ ଗଲର-ଗଲର ଗୀତ ଗାଉଥାଏ – ସେଇ ।

ବଡ଼ପୁଅକୁ ଧନି ଅଜା ଖୁବ୍ ଭଲପାଉଥିଲା; କିନ୍ତୁ ଆସ୍ତେ ଆସ୍ତେ ତାକୁ ସେ ଡରିବାକୁ ଲାଗିଲା । ପୁଅର ତେଜ ବଢ଼ିଆସିଲା; ଧନି ଅଜା ମଉଳି ପଡ଼ିଲା । ପୁଅ ରୋଗରେ ପଡ଼ିଲେ ତାକୁ ଆଉ ସେମିତି ଘାଣ୍ଟି ଲାଗିଲା ନାହିଁ । ଭଲ ହୋଇଯିବ ନାଇଁ କି ?

ଆଈ ଯେତେବେଳେ ମରିଗଲା, ଧନି ଅଜା ମୂକ ହେଇ ବସିରହିଲା କିଛିଦିନ । ତା’ ଉତାରୁ ଆଉ କୋଉ କଥାରେ ତା’ର ବିଶ୍ୱାସ ରହିଲା ନାହିଁ । ଯାହା ଖାଣ୍ଟି, ଯାହା ସାର, ସେ ସବୁ ସରିଗଲା । ତା’ ପାଇଁ ଏଣିକି କେବଳ କଣ୍ଢେଇ ଖେଳ । ଆଉ କେହି ବଞ୍ଚିଛନ୍ତି ବୋଲି କିମ୍ବା ମରୁଛନ୍ତି ବୋଲି ସେ ବିଶ୍ୱାସ କରିପାରିଲା ନାହିଁ – ସବୁ ମିଛିମିଛିକା । ଛୁଆଖେଳ ।

ତା’ ପୁଅ କାମରୁ ଅବସର ନେଲା । ଘରେ ସେ ଆଉ ଗୋଟିଏ ବୁଢ଼ା ଚଳପ୍ରଚଳ ହେଲେ । ବାହାର ଲୋକେ ‘ବୁଢ଼ା ବା’ବୁ କହିଲେ ତାକୁହିଁ ବୁଝୁଥିଲେ । ଅଜା କହିଲେ, ମାଲିକ କହିଲେ, ତାକୁହିଁ ବୁଝିଲେ । ଧନି ଅଜାଟି କ’ଣ କେଜାଣି ! ବୋଧହୁଏ ଗୋଟିଏ ଖେଳର ସାମଗ୍ରୀ ।

ତା’ପରେ ଦିନେ ଧାଁଧଉଡ଼ ଲାଗିଲା । ସତୁରି ବର୍ଷର ପୁଅକୁ ଘେରି ତା’ର ବିସ୍ତୃତ ପରିବାର ଠିଆରହିଲେ । ଧନି ଅଜା ଚାହିଁଲା ସେ ବୁଢ଼ାର ଲୋତରା ମୁହଁଟିକୁ । ତାକୁ ଅଚିହ୍ନା ବୋଧ ହେଲା । ସେ ଜମା ମନେ ପକାଇ ପାରିଲା ନାହିଁ, ଏଇ ସେ ବର୍ଷା-ରାତିରେ ଝଲେବି ଖାଇବାକୁ ଅଝଟ ଲଗେଇଥିଲା । ତା’ ଚାରିପଟେ ବାଳ ମୁକୁଳା କରିଥିବା ପୁରୁଷ ସ୍ତ୍ରୀ ପିଲାଗୁଡ଼ିକ ସମସ୍ତେ ଅଚିହ୍ନା ଲାଗିଲେ । ଆଗକୁ ଯିବା ଚେଷ୍ଟାରେ ସମସ୍ତେ ତାକୁ କହୁଣେଇ ପଛକୁ ପେଲିଦେଲେ । ସେ ଅନୁଭବ କଲା, ଆଉ କାହା ଘରକୁ ପଶିଆସିଛି । ମୃତ୍ୟୁଶଯ୍ୟାରେ ସେ ବୁଢ଼ାଟିକୁ ସେ ଜାଣେ ନାହିଁ । ଏମାନେ ବୋଧେ ତା’ର ପରିବାର ହେବେ । ତା’ ସ୍ତ୍ରୀ, ପୁଅ, ଝିଅ, ବୋହୂ, ନାତିନାତୁଣୀ, ବନ୍ଧୁକୁଟୁମ୍ବୀ – ତା’ର କ’ଣ ବାପଟାଏ ଥାଇପାରେ । ଧୁତ୍ !... ହୁଏତ କେବେ ଥିଲା... ସେ କୋଉ କାଳୁ ମରିଯିବଣି ନା !... ଧନି ଅଜାର ଆଖୁ କଟକଟ ହେଲା । ସେ ନଡ଼ଥଡ଼ ଗୋଡ଼ କାଢ଼ି ମୁହଁ ଫେରେଇ ନେଇଥିଲା... ତା’ କାନରେ କେତେ କଥା ପଡୁଥାଏ ।... “ହେ, ବୁଢ଼ାକୁ ବାଟ ଛାଡ଼ିଦିଅ । ଓଃ... ଏ ବଅସରେ ପୁଣି ଏଡ଼େ ଦୁଃଖ !... ବୁଢ଼ାଟା କେମିତି ବଞ୍ଚିଗଲା ଏ ଯାଏ ! ଏମିତି ବଞ୍ଚିବାର ଅର୍ଥ କ’ଣ ?

ସେମାନେ ହୁଏତ ଆର ବୁଢ଼ାକଥା କହୁଥିଲେ । ଧନି ଅଜାକୁ ସେମାନେ ତ କେହି ଚିହ୍ନି ନଥିଲେ । ସେ ତା’ ଆଣ୍ଠୁର ଯନ୍ତ୍ରଣାକୁ ଆଶ୍ରା କରି ତା’ର ପୁରୁଣା ପଲଙ୍କ ଏବଂ ଆଳୁମାଳୁ ବଖରାକୁ ପଶିଯାଇଥିଲା ।

ଆଉ ତୁହାଏ କାନ୍ଦ ବୋବାଳି ଶୁଣାଗଲା ।

ପାଣି ବର୍ଷୁଥାଏ ବାହାରେ । ଧନି ଅଜା ଘୁମେଇ ପଡ଼ି ଶୁଣୁଥାଏ । କାନ୍ଦଟା ଏମାନେ ଅବିକଳ ନକଲ କରିନେଇଛନ୍ତି । ଫ୍ରକ୍‌ପିନ୍ଧା ନାତୁଣୀମାନେ ଶିମ୍ବପତ୍ରରେ ଖିଆପିଆ ସାରି ଜଣକୁ ମିଛିମିଛିକା ଆଖିବୁଜି ଶୋଇବାକୁ କହିଦେଇ ତା’ ଚାରିଆଡ଼େ ବେଢ଼ି କାନ୍ଦିଲାଗିଛନ୍ତି । କି ଅଶୁଭ କଥା । କାଇଁ ଭଲା କିଏ ମରନ୍ତା ! ଏ ପଦ୍ମବନ ପରି ପରିବାରରେ ଯେ ମରିବା କଥା, ସେ ସବୁ ମରିସାରିଛନ୍ତି । ଏଇଟା ନିଶ୍ଚୟ ଗୋଟାଏ ଖେଳ । ଆଉ ଟିକକୁ ସରିଯିବ !

ଧନି ଅଜା କାନ୍ଧ ପାଖରେ କିଏ ଗୋଟାଏ ଧକେଇ ଧକେଇ ସକସକ ହେଲା । ସେ ବୁଲି ଚାହିଁଲା । ହାତ ବଢ଼େଇ ଦରାଣ୍ଡିଲା । କେହି ନାଇଁ ତ ।

ପୁଣି ଶୁଭିଲା ସୁକ୍‌ସୁକ ।

"ଆରେ କିଏସ୍ ?"

"ମୁଁ... ଉଁ, ଉଁ !"

"ପବି ! ଆଇଲୁ ଆଇଲୁ, ମୋ ପାଖକୁ ଆ' ।"

ଧନି ଅଜା ପବିକୁ ଆସ୍ତେ ବାଁ ବାହୁ ବେଢ଼େଇ ପାଖକୁ ଟାଣିଧରିଲା । ତା' ମୁଣ୍ଡ ଉପରେ ବୁଢ଼ିଆ ଥୋଡ଼ି ରଖି କାନେଇଲା । ମିଟିମିଟି ଅନେଇଲା ବାହାର ଅନ୍ଧାର ଓ ବର୍ଷାକୁ ।

ପବିକୁ ଧରି ଆସ୍ତେ ଝୁଲିଲା ଧନି ଅଜା ।

ଏମିତି ଝୁଲେଇଲାବେଳେ ଧନି ଅଜା ଆଗେ ଗେଲେଇହେଲା ପରି ଗାଉଥିଲା — "ମୋ ଚତୁରୀ ଚମ୍ପା ଲୋ; ମୋ ସହି-ସଙ୍ଗାତ ଲୋ; ମୋ ପଦୁରିମାଳ ଲୋ; ମୋ ଗେଲବସରୀ ଲୋ... ।" ତା'ର କେଜାଣି କାହିଁକି ସ୍ୱର ଫିଟିଲା ନାହିଁ; କିନ୍ତୁ ସେ ବୋଧହୁଏ ଅନୁଭବ କରୁଥିଲା, ସେ ମିଛିମିଛିକା ଭୋଜିଭାତ ପରି ଏଇଟା କାନ୍ଦଣା ଖେଳ ଲଗେଇଛନ୍ତି । କଣ୍ଢେଇପୁଅକୁ ମଲା ବୋଲି ଭାବି ଏତେ ଲୁହସିଙ୍ଘାଣୀ... କାନ୍ଦନା ଲୋ... କଣ୍ଢେଇଟା ପରା !!"

ଧନି ଅଜା ଖେଳରେ ବି କାନ୍ଦିପକାଏ ! ମଞ୍ଜୁପାତଳ ମଣିଷଟା ତ ! ପବିର କାନ୍ଦ ତାକୁ ସତ କାନ୍ଦ ପରି ଲାଗିଲା । ତା' ଆଖି ଜକେଇଗଲା । ନାକପୁଡ଼ା ଜଳିଲା ।

ସେ ସେମିତି ଖେଳରେ ମାତିଗଲା । "ଆଲୋ ପବି... ମୋ ଗୁଲୁରି ପବି, ବାଜୁରି ପବି... ତୋ'ର ପୁଅ ମରିଗଲା କି ! ଆହା, ଆହା, ମୁଁ ମରିଯାଏଟି !"

କାନ୍ଦ ଭିତରୁ ପବି କହିଲା, "ପୁଅ ନାଇଁ, ଭାଇ ମରିଗଲା !... ଉଁ, ଉଁ... ଦେବୁ ଭାଇ ମରିଗଲା ।... "

ଧନି ଅଜାକୁ ନୂଆ ଲାଗିଲା । ଭାଇକୁ ନେଇ ତ କୁଣ୍ଡିକାଣ୍ଡି ଖେଳ ହୁଏ ନାହିଁ । ଏ ନାତୁଣୀଗୁଡ଼ାକୁ ଆଉ ପାରିହେଲା ନାହିଁ...

ଧନି ଅଜାକୁ ଅସୁସ୍ଥ ଲାଗିଲା ।

"ଦେବୁ ମରିଗଲା ବୋଲି କ'ଣ କହୁଚି ଏ ଓଲିପାଣ୍ଡି ! ସତସତକାଗୁଡ଼ାକୁ ନେଇ କଣ ଖେଳନ୍ତି ! କେଡ଼େ ଅଲକ୍ଷଣିଆ କଥା !"

ତାକୁ ଆହୁରି ଅସୁସ୍ଥ ଲାଗିଲା ।

ସେ ଛେପ ଢୋକିଲା...

"ପବି ଲୋ, କାନ୍ଦନା... ଆଉ କାନ୍ଦନା,... ରାତି ହେଲାଣି ପରା । ଏଥର ଖେଳ ଭାଙ୍ଗିଦବା ! ତୋ' କଣ୍ଢେଇପୁଅକୁ ଜିଆଇଁ ଦବା !"

"ନାଇଁ ଅଜା... ଉଁ... ଉଁ... ଖେଳ ନାଇଁ... ଦେବୁ ଭାଇ ମରିଗଲା ।"...

ଧନି ଅଜା ଦବିଗଲା । ଦେବୁ... ଦେବୁ... କେତେ କାଳ ହେଲା ଏଇ ନାଁ ସେ ଶୁଣିଆସୁଛି — ତା'ର ଗୋଟେ ଶଳା ଥିଲା — ସେଇଟା ତ କୋଉକାଳୁ ଗଲାଣି... ଆଉ ଗୋଟାଏ ଦେବୁ — ବଡ଼ ଜୋଇଁର ସାନଭାଇ — ସେଇଟା କୋଉଠି ଅଛି କେଜାଣି...

ଧନି ଅଜା ଆଉ କୁଆଡ଼େ କଥା ବାଆଁରେଇ ନେଇଥାନ୍ତା ନା କ'ଣ ।

ପବି ଭିଡ଼ିହେଲା ପଳେଇଯିବାକୁ ।

ସେ ଧନି ଅଜାଠୁ ଆଡ଼େଇ ହେଇଗଲା । ମୁହଁ ଘୋଡ଼େଇ କାନ୍ଦି କାନ୍ଦି ଧାଇଁଗଲା ପିଣ୍ଡାବାଟେ ମଝି ବଖରାର ରୋଳ ଭିତରକୁ ।

ଧନି ଅଜାକୁ ବଳ ପାଇଲା ନାହିଁ ସେଇଠୁ ଉଠିଯିବାକୁ । ଆଣ୍ଠୁଭିତର ରାଟୁରାଟୁ ହେଲା । ସେ ଯେଉଁ ବକ୍ବାଜିଆ ଟୋକା ବେଳେବେଳେ ପବି ସାଙ୍ଗରେ ଆସେ, ସେଇ ତା'ହେଲେ ଦେବୁ — ଆରେ, ସେଇଟା କଷି ଟୋକାଟାଏ; ସେଇଟା ମରିଯିବ କେମିତି ? ଅସମ୍ଭବ କଥା । ଅବିଶ୍ୱାସରେ ଧନି ଅଜା ଅନ୍ଧାରରେ ଟିକିଏ ହସିପକେଇଲା । ତାକୁ ଜମା ଲାଗିଲା ନାଇଁ ସେ ମଲାପରି ।

ଆରେ, ମରିଯିବାଟା କ'ଣ ଏମିତି ଖାଲି ପଡ଼ିଛି ! କ'ଣ ହେଇଛି ଧନି ଅଜାର ? ସେ କ'ଣ ଜାଣିପାରୁନାହିଁ କିଛି !

ନା, ସବୁ ଜାଣୁଛି; ମାତ୍ର ବହୁ ଦୂରର ଡାକ ପରି ତାକୁ ଏ ଘଟଣା ଚହଲେଇ ପାରୁନାହିଁ ।

ତା' ନାତୁଣୀର ନାତି ଏଇ ଦେବୁ । ତା'ରି ରକ୍ତ ! ତା'ରି ଡାଳର ଡାଳ ? ତେବେ ତାକୁ ବାଧୁ ନାହିଁ କାହିଁକି ?

ଧନି ଅଜା ଚାରିଆଡ଼େ ବୋଧହୁଏ ଗୋଟାଏ ଖୋଳ ମଡ଼େଇ ହୋଇଯାଇଚି । ତା' ମର୍ମ ଲୁଚିଯାଇଚି କାହିଁ ଭିତରେ; ସେଠିକି କିଛି ହେଲେ ଭେଦିପାରୁନାହିଁ ।

ସେ ଅନ୍ଧାରରେ ଅଣ୍ଡାଳି ତା' ମସିଆ ଚାଦର ଆଉ ତକିଆ ଏକାଠି କରି ତା' ଉପରକୁ ଗଡ଼ିପଡ଼ିଲା । ଯଦି ଦେବୁ ସତକୁ ସତ ମରିଗଲା, ଆଉ ସେ ମଲା ନାହିଁ, ସେଥିପାଇଁ ଧନି ଅଜା କ'ଣ କରିପାରିବ ?

ଏମିତି ବଞ୍ଚିବାର ଅର୍ଥ କଣ ? ଅର୍ଥ କିଛି ନାହିଁ । ତେବେ ଧନି ଅଜା ହାତରେ କଣ ଅଛି — ବଞ୍ଚିବା ନା ମରିବା ? ଦେବୁ ତା'ଠୁ ଚାରି ପୁରୁଷ ତଳେ ଜନ୍ମିଛି — ତା'ଠୁ ସତୁରି ବର୍ଷ ପଛରେ ଜନ୍ମିଛି — ଧନି ଅଜା ବୁଝୁଛି — ସେ ତା' ନାତୁଣୀର ନାତି । ହେଲେ ସେ କଣ କରିପାରିବ !

ବର୍ଷାରେ ଗୋଟାଏ ଗାଡ଼ି ଆସି ଦୁଆରେ ଠିଆହେଲା ।

କାହିଁକି ଆସିଲା କେଜାଣି ?

ସମସ୍ତେ ମିଶି ମଝି ବଖରାରେ ରାହା ଟେକି କାନ୍ଦିଲେ ।

ଏ ବଖରାରେ ଧନି ଅଜା ଆଖିବୁଜି ପଡ଼ିରହିଲା — ଉଠିଲା ନାଇଁ, କି ଗଲା ନାଇଁ ।

ଓହୋ, କେଡ଼େ ପଥରହୃଦୟ ସତେ ! ରଜାପୁଅ ପରି ପୁଅ ମରି ଶୋଇଥିବାର ଦେଖିଲେ ଯାହାର ହେଲେ ଛାତି ଫାଟିଯିବ ।... ଏ ବୁଢ଼ା କେମିତି ସମ୍ଭାଳିଚି ?

ଜଣେ ବୟସ୍କା ସ୍ତ୍ରୀଲୋକ, ବାହୁନି ବାହୁନି ଏ ବଖରା ଆଡ଼େ ଆସିଲା ।

''ମୋର କେଡ଼େ ସୁନ୍ଦର ପୁଅ ଲୋ, ମୁଁ ମରିଯାଉଥାଏ ଲୋ... ମୁଁ ହୀନକପାଳୀ କିଆଁ ନ ମଲି ଲୋ... ।''

ଏ ବଖରା ଲାଇଟ୍ ଲଗେଇ ସେ ଏଣେତେଣେ ଆଗ ଚାହିଁଲା । କ'ଣଟିଏ ସେ ଖୋଜୁଥିଲା ।

''ହଇ ହେ ଅଜା, ତମକୁ ଏତିକିବେଳେ ଶୋଇବାକୁ ଥିଲା ? ଘରେ ଆସି ପ୍ରଳୟ ହେଲାଣି, ଘରର ଶ୍ରୀ ଚାଲିଗଲା; ତମେ କ'ଣ ଟିକିଏ ହେଲେ ତରଳିଲ ନାହିଁ – ତମକୁ ଟିକିଏ କାଟିଲା ନାଇଁ – ଆଉ ବଞ୍ଚିଲେ ତମର କ'ଣ ହବ ? ତମେ ହେଲେ ମରିଥାନ୍ତ – ମୋ' ଦେବୁ ବଞ୍ଚିଥାନ୍ତା !''

ଆଉ ଜଣେ ସେମିତି ବାହୁନି ବାହୁନି ଆସିଲା ପିଣ୍ଡାଆଡୁ । ଶେଷ କଥା ବୋଧହୁଏ ତା କାନରେ ପଡ଼ିଗଲା । ସେ କହିଲା –

''ସେ ଅଲକ୍ଷଣିଆ ବୁଢ଼ା କିଆଁ ମରିବ, ସେ ତ ତମ୍ବାମୁଣ୍ଡ ବାନ୍ଧି କଳିକାଳ ଭୋଗିବାକୁ ବସିଚି । ନ ହେଲେ ତା'ର ପୁଅ ନାତି ସବୁ ତା' ଆଗରେ ଜନ୍ମିଥାନ୍ତେ, ମରିଥାନ୍ତେ; ସେ ସେମିତି ଜିଇଁଥାନ୍ତା ! ତାକୁ ଯମ ସୁଦ୍ଧା ଡରିଗଲାଣି ।... ମୋ ଦେବୁ, କୁଆଡ଼େ ଗଲା ଲୋ, ମୁଁ କି କରିବି ଲୋ... ।''

ଧନି ଅଜା କ'ଣ ସେଇଠୁ ଉଠି ସେମାନଙ୍କ ସାଙ୍ଗରେ ମଝି ବଖରାର ରୋଳ ଭିତରକୁ ପଶିଯାଇଥାନ୍ତା ? ହାଡ଼ରୁ ମାଉଁସ ଝାଡ଼ିଲା ଭଳି ସେ କଟୁ କଥାରେ ବୁକୁ ବାଡ଼େଇ ପ୍ରାଣ ହାରିଦେଇଥାନ୍ତା ? ସେ କେବଳ ଚୁପ୍‌ଚାପ୍ ପଡ଼ିରହିଲା । ଏସବୁ ବି ଖୁବ୍ ଦୂରରେ ଘଟୁଥିବା କ'ଣ ଗୁଡ଼ିଏ ଘଟଣା – ଧନି ଅଜା ଦେହରେ ବାଜି ଝଡ଼ି ପଡୁଛି । ସେ ଦେଖୁଛି, ଶୁଣୁଛି କେମିତି ଗୋଟାଏ ଅଚିହ୍ନା ଢଙ୍ଗରେ ।

ସେମାନେ ଗଲାବେଳେ ଆଲୁଅଟାକୁ ଲିଭେଇଲେ ନାହିଁ . ସେମାନଙ୍କୁ ଡର କାହିଁ । ଧନି ଅଜା ମିଟିମିଟି ଅନେଇଥାଏ ସେ ବଖରାର ସାମଗ୍ରୀକୂଢ଼କୁ । ଗୋଟି ଗୋଟି ଜିନିଷ ବାରିପାରିବାର ଦୃଷ୍ଟି ତା'ର ନାହିଁ । ଖାଲି ସେତିକି ବେଳେ ନୁହେଁ, ପ୍ରାୟ ସବୁବେଳେ ତା ଆଖିରୁ ପାଣି ବୋହୁଥାଏ । ସେଥିପାଇଁ ସବୁ ଢଳଢଳ ଆକୃତି କେବଳ ଦିଶୁଥିଲା । କାହାକୁ ଚିହ୍ନଟ କରିବା ଧନି ଅଜା ପାଇଁ ସହଜ ନଥିଲା ।

କିନ୍ତୁ ଶୁଣିବାରେ ତାକୁ କୌଣସି ଅସୁବିଧା ନ ଥିଲା । ସେ ପରିଷ୍କାର ଶୁଣିପାରିଥିଲା ରାସ୍ତାର ସେ ଲୋକଟା କଥା – ''ଏମିତି ବଞ୍ଚିବାର ଅର୍ଥ କଣ ?'' ଧନି ଅଜା ତା'ପରେ ଖୁବ୍ ଉଦାସ ଏବଂ ଅସୁସ୍ଥ ବୋଧ କରୁଥିଲା । ଆରେ, ସେ କ'ଣ ଚାହୁଁଚି ଏମିତି ବଞ୍ଚିବା ପାଇଁ ? ସେ ମରିଯାଇଥିଲେ ଏ ଦେବୁ ଟୋକାଟି ଯଦି ବଞ୍ଚିଥାନ୍ତା, ତେବେ ସେ ମରିବା ପାଇଁ ଆପତ୍ତି କରି ନଥାନ୍ତା । ହେଲେ କ'ଣ ହେବ ?

ପ୍ରାଣଟା ତ ପାଳଦଉଡ଼ି ନୁହେଁ ଯେ ଛିଣ୍ଡେଇ ଦେଲେ ଛିଡ଼ିଯିବ ବା ଯୋଡ଼ିଦେଲେ ଯୋଡ଼ି ହୋଇଯିବ ।

କାହିଁକି ସତେ ତା'ର ସେ ପୁରୁଣାକାଳିଆ ବାପମା' ସେଇ ପୁରୁଣାକାଳିଆ ଖାଣ୍ଟି ବିଶ୍ୱାସରେ ମହାଦେବଙ୍କୁ ଲକ୍ଷେ ଚମ୍ପା ଚଢ଼ୋଉଥିଲେ, କାହିଁକି ମାଗୁଥିଲେ "ପୁତ୍ର ସମ୍ପତ୍ତି ଦିଅ ପ୍ରଭୁ ! ତାକୁ ଶହେ ବର୍ଷ ପରମାୟୁ ଦିଅ ।" – ଏବେ ଆଉ ଚାରିବର୍ଷ ଭରଣା ହେଲେ ସିନା ସେ ଲକ୍ଷେ ଚମ୍ପାର ମାଗଣ ମେଣ୍ଟିବ ।

ଧନି ଅଜା ଏମିତି ମିଟିକା ମାରି ଆଖିରୁ ପାଣି ନିଗାଡୁଥାଏ । ତାକୁ ଦିଶିଲା କେହି ଜଣେ ବଖରା ମଝିରେ ଆସି ଠିଆହେଇଗଲା । ଆକୃତି ତା ବାପର ଆକୃତି ଭଳି । ନାଇଁ ମ' – ସେ ମରି ହଜି କାହିଁ କେତେ କାଳ ଗଲାଣି – ସେ କାହିଁକି ଆସିବେ । ଆସିଲେ ଆସିବେ ଦିନେ ପାଛୋଟି ନେବା ପାଇଁ । କିଏ ତା'ହେଲେ ଠିଆହେଇଚି ?

ଧନି ଅଜା ଗାମୁଛାରେ ଆଖି ପୋଛି ଚାହିଁଲା । କାହିଁ ? କେହି ନାହିଁ ତ । କିଏ ଆସି ପୁଣି ଫେରିଯାଇଥିବ । ଧନି ଅଜାର ଗାମୁଛାଟା ପଲଙ୍କ ଆଉ କାନ୍ଥ ଫାଙ୍କରେ ଗଳିପଡ଼ିଲା । ସେ ଉଠି ହାତ ଗଳେଇଲା ତଳକୁ । କ'ଣ ନୂଆ ଜିନିଷଟାଏ ଉପରେ ଟିପ ବାଜିଗଲା । ସେ ଚିହ୍ନିଗଲା । କଣ ମନ ପାଇଲା କେଜାଣି, ତାକୁ ଉପରକୁ ଉଠାଇ ଆଣିଲା । ଗୋଟିଏ ମଧମ ଆକାରର ନଟେଇ । ବେଲ ଅଠା କାଚ୍‌ଗୁଣ୍ଡଦିଆ ହୋଇଥିବା ତାର ଭଳି ଟାଣ ସୂତା !... ସେ ଚାହିଁରହିଲା ସେ ନଟେଇଟାକୁ କିଛି କାଳ ! ତାର ମନେ ହେଲା, ନଟେଇଟିର ମଝି ଡାଙ୍ଗଟିକୁ, ଦୁଇଆଡୁ କିଏ ଜଣେ ଛୋଟ ହାତରେ ମୁଠେଇ ଧରିଚି ।

"ଅଜା, ବାଟରୁ ଘୁଞ୍ଚିଯା... ମୁଁ ପରା ଘୁଡ଼ି ଲଢ଼େଇ କରୁଚି । ଓଃ..."

ଧନି ଅଜାକୁ ପଛଆଡ଼ିଆ ଝୁଣ୍ଟିପଡ଼ି ସେ ନଟେଇ ହାତରେ ଛେଚିହେଇଗଲା ଛାତ ଉପରେ । ଧନି ଅଜା ଡରିଯାଇଥିଲା । ସେ ଟୋକା ବୋଧେ ବୋବାଳି ଛାଡ଼ି କାନ୍ଦିବ – ଏବଂ ତା ମା' ବାପ ଭଉଣୀ ସଭିଏଁ ଆସି ବୁଢ଼ାକୁ ପରସ୍ତେ ଶୋଧି ଦେଇଯିବେ । କିନ୍ତୁ ସେ ଟୋକାଟା ବଢ଼ିଆ । ମୁହଁ ଆମ୍ଳିଲେଇ ଆଣୁଆଣୁ ହସିଦେଲା ଅଜାକୁ ଚାହିଁ । ତା ମୁହଁଟି ସୁନ୍ଦର । ଚୌଦ କି ପନ୍ଦର ବର୍ଷ ବୟସ ହବ । ବାଙ୍କୁରା ଗୋରା ଚକଚକ ଗଢ଼ିଲା ପରି ଚେହେରା ।

ସେଇ ବୋଧହୁଏ ଦେବୁ ନା କଣ ?

ସେଇ ଦେବୁ କି ??

ଧନି ଅଜା ପଲଙ୍କ ଉପରେ ନଟେଇଟିକୁ ଥୋଇଦେଇ ଏକାଲୟରେ ଚାହିଁରହିଥାଏ । ସେଇ ଟୋକା ସେମିତି ବାଙ୍କୁରା – ଗୋରା – ଚାରି ଚଉରସ ! ଧନି ଅଜାର ବାପ ପରି । ଧନି ଅଜାର ପୁଅ ପରି । କିଏ ସେ ଟୋକା ? ଧନି ଅଜାର ବଡ଼ଝିଅ 'ରୁଚିରା' – ରୁଚିରାର ନାତି ସେ ଟୋକା, ତା' ଝିଅର ପୁଅ !

ଧନି ଅଜା ଆଖି ପୁଣି ଟଳମଳ ହେଲା । ତାକୁ ଦିଶିଲା, ସେ ଯେଉଁ ବାଙ୍କୁରା ଜଣକ ଆସି ପଲଙ୍କ ଦାଢ଼ରେ ବସିଲା, ସେ ଆଖିମିଟିକା ମାରି ଚାହିଁଲାବେଳକୁ କେହି ନାହିଁ ।

କେମିତି କେଜାଣି ଧନି ଅଜାକୁ ଲାଗିଲା ଯେ ସେ ନିଶ୍ଚେ ସେ ଦେବୁ ଟୋକା – ସେ ତା' ନଟେଇଟାକୁ ନବାକୁ ଆସୁଚି । ପୁଣି ଲୁଚିଯାଉଚି !! – ଗଳା ଖଙ୍କାରି ଧନି ଅଜା ତାକୁ ଡାକିଦେଇଥାନ୍ତା । ମନେପଡ଼ିଗଲା – ଆରେ, ସେ ପରା ମରିଗଲା ! ଆର ବଖରାରୁ କାନ୍ଦଣା ଶୁଭିଲା ବିଭିନ୍ନ ସ୍ୱରରେ ।

ଧନି ଅଜା ହାତରେ ସେଇ ନଟେଇଟିକୁ ଧରି ଶୂନ୍ୟକୁ ଚାହିଁ ବସିଥାଏ । ଏଇ ନଟେଇଟି ଧରି ସେ ଛାତରେ ଘୁଡ଼ି ଉଡ଼ାଉଥିଲା । ତାକୁ ଝୁଣ୍ଟିପଡ଼ି ମରିଗଲା । ସମସ୍ତେ ସେମିତି ତାକୁ ଝୁଣ୍ଟି ମରିଗଲେ । ଛୟାଣୋଇ ବର୍ଷକାଳ ଧନି ଅଜା କଣ ସମସ୍ତଙ୍କ ବାଟ ଜଗି ବସିଚି – କେହି ତାକୁ ଦେଖିପାରୁନାହାନ୍ତି – ଝୁଣ୍ଟିପଡ଼ି ମରିଯାଉଛନ୍ତି ?

ଚାହୁନି ଚାହୁନି ଗୋଟାଏ ମାଇକିନିଆ ପୁଣି ପଶିଆସିଲା । କିଏ ସେଇଟା କେଜାଣି ! ପଶୁ ପଶୁ ଧନି ଅଜା ହାତରୁ ସେ ନଟେଇଟାକୁ ଝାମ୍ପିନେଲା ।

''ଆଲୋ, ଧାଇଁ ଆସ ଲୋ ! ଏଇ ଅଲକ୍ଷଣିଆ ବୁଢ଼ା ମୋ ଦେବୁକୁ ମାରିଦେଲା ଲୋ; ଏଇ ନଟେଇ ପାଇଁ ଏତେ ଗୋଳ । ମା' ପଇସା ଦେଲା ନାହିଁ ବୋଲି ସିନା ମୋ' ପିଲା ରୁଷିକରି ଘରୁ ବାହାରିଗଲା । ରାସ୍ତାରେ ଗାଡ଼ି ମାଡ଼ିଗଲା, ସବୁ ଏଇ ନଟେଇ ପାଇଁ ।

ଆଉ କିଏ ଦି'ଜଣ ଆସି ବୁକୁ ବାଡ଼େଇ କାନ୍ଦିଲେ । କିଏ ସେ କେଜାଣି । ଗୋଟାଏ ସେଥିରୁ କ୍ଷେପିଆସି କ'ଣ ସବୁ ବକି ଦେଇଗଲା ଧନି ଅଜା ମୁହଁ ପାଖରେ । ତା ପାଟିର ଛେପ ଧନି ଅଜା ମୁହଁରେ ପଡୁଥିଲା । ଧନି ଅଜା ମୁଣ୍ଡରେ ଫୁରୁଫୁରୁ ଉଡୁଥିବା ଧଳା ବାଳକେରାକ ଧରି ସେ ଝିଙ୍କିନେଇଥାନ୍ତା ! କ'ଣ ହେଲା କେଜାଣି, ଓହରିଗଲା । ଧନି ଅଜା ସେ ନଟେଇଟାକୁ ଲୁଚେଇ ରଖିଦବାରୁ ଏତେ କାଣ୍ଡ ହେଇଗଲା ବୋଲି ସେମାନେ ପାଟିତୁଣ୍ଡ କରି ସେ ବଖରାରୁ ବାହାରିଗଲେ – ତେଣେ ଆହୁରି ଲୋକଙ୍କୁ ନେଇ ଆହୁରି ପାଟି କରିବାକୁ, ଆହୁରି କାନ୍ଦିବାକୁ ।

ସେମାନେ ସବୁ କିଏ ? ଧନି ଅଜାର କିଏ ସେ ସବୁ ?

ଦେବୁର ସେମାନେ ସବୁ କିଏ ?

ଧନି ଅଜା ଦେବୁର କିଏ ?

ସେ ପରା ତା ଆଈର, ମା'ର...

ଚୁଲି, ରଡ଼, ନିଆଁ...

ଧନି ଅଜାର ଡାହାଣ ଆଖି ଜଳଜଳ ହେଇ ଫୁଲିଥିଲା । ତା ଆଖି ସବୁବେଳେ ଜକେଇଥାଏ । ହେଲେ ସେମିତି ଧାର ଧାର ଲୁହ କାହିଁକି ବୋହୁଥିଲା ? ଧନି ଅଜା କ'ଣ କାନ୍ଦୁଥିଲା ? ତାକୁ କ'ଣ ଏମିତି ବାଧୁଥିଲା କି ?

□□□

# ବାମମାର୍ଗ

ସେ କାଲି ମୋ ପାଖରେ ସେମିତି ଅବସ୍ଥାରେ ଆସି ପହଞ୍ଚିଲା ସିନା; ନ ହେଲେ ତ ତା' ସାଥିରେ ମୋର କୋଉ କାଳର ପ୍ରସ୍ତ ପ୍ରସ୍ତ ସଂପର୍କ । ଆମେ ଥିଲୁ ପ୍ରକୃତରେ ତିନିଜଣ । କୁଅକୁ ଦେଖିଲେ ଡରୁଥିଲୁ, ପାହାଡ଼ ଦେଖିଲେ ଚଢୁଥିଲୁ, ନଈ ପହଁରୁଥିଲୁ ବନ୍ୟାବେଳେ, ଆମ୍ବ ତୋଳୁଥିଲୁ ଶିଖଡାଳରୁ । ମଣିଷଟାଏ ଆମ ଆଖିକୁ ପାହାଡ଼ ଭଳି ନ ଦିଶିଲେ ଆମେ ତାକୁ ଖାତିର କରୁ ନଥିଲୁ – ସେ ଯେ ମନ ସେ ହେଇଥାଉ ।

ଥରେ ଆମେ ସହରଠାରୁ କିଛି ଦୂରରେ ଠିଆ ହୋଇଥିବା ପାହାଡ଼କୁ ଲକ୍ଷ୍ୟ କଲୁ । ମନକୁ ମନ ସ୍ଥିର ହୋଇଗଲା ଯେ, ଆମେ ତାକୁ ଚଢ଼ିବୁ ଏବଂ ସେଇ ଦିନ ଚଢ଼ିବୁ । ସେତେବେଳକୁ ପ୍ରାୟ ମଧ୍ୟାହ୍ନ ପାଖାପାଖି ସମୟ, ଛୁଟିଦିନ ।

ଦିନ ତିନିଟା ବେଳକୁ ଆମେ ନିକଟେଇ ଗଲା ବେଳକୁ ପାହାଡ଼ କାୟା ବିସ୍ତାର କରୁଥାଏ । ଆମେ ବି ସ୍ପର୍ଦ୍ଧା ବିସ୍ତାର କରୁଥାଉ । ଶେଷରେ ପାହାଡ଼ମୂଳେ ଠିଆହୋଇ ଆମେ ଉପରକୁ ଚାହିଁଲୁ । ଢିମାଢ଼ିମା ବିରାଟ ବିରାଟ ପଥର, ଏଠିସେଠି କିଛି କଣ୍ଟାଗଛ, ସବା ଉପରେ ଆସ୍ତେ ଥୋଇଦେଲା ପରି, ଟିପ ବାଜିଲେ ଝଡ଼ିପଡ଼ିଲା ପରି ଗୋଟାଏ ବିଶାଳ ପଥର । ସେହି ଥିଲା ଆମର ଲକ୍ଷ୍ୟ । ତା' ଉପରେ ବସି ସୂର୍ଯ୍ୟାସ୍ତ ଦେଖିବୁ ଏବଂ ଓହ୍ଲେଇ ଆସିବୁ । ଏତିକିବେଳେ ପଥର ଉହାଡ଼ରୁ ଦରବୁଢ଼ା କାଠୁରିଆଟିଏ ଭାର ଧରି ଓହ୍ଲେଇ ଆସିଲା । ଆମ ଆଖି ମୁହଁକୁ ଚାହିଁ ବୋଧେ ଜାଣିଗଲା ଯେ, ଆମେ ପାହାଡ଼ ଚଢ଼ିବୁ । ଝାଳରେ ଓଦା ପାପୁଲିରେ ସେ ଆମକୁ ବାରଣ କରି କହିଲା, ''ନାଇଁ ଯା'ସ୍, ହେ ଲକେ ବାଗ୍ ଆଛେ !'' ଗୋଟାଏ ମୁହୂର୍ତ୍ତ ପରେ ବାଣ ଫୁଟିଲା ପରି ହସିଉଠିଥିଲା ଏଇ ଦିଲ୍ଲୀପ୍ ଚାନ୍ଦ୍ । ତାର ଗୋରା ତକତକ ଦର୍ପଣ ପରି ମୁହଁ, ହୀରା ପରି ଆଖି ହସରେ ଫାଟି ପଡୁଥିଲା । ଧଳା ମାର୍ବଲ ମୂର୍ତ୍ତି ପରି ତା' ବେକ ବୁକୁ ଉପରେ ଫଗୁ ବୁଣିହୋଇଯାଉଥିଲା । ତା' ହସ ଅଜାଡ଼ି ହେଇପଡୁଥିଲା ପାହାଡ଼ର ପ୍ରାନ୍ତରରେ, ଲହଡ଼ି ମାରୁଥିଲା ଦିଗ୍‌ବଳୟଯାଏଁ, ଆକାଶଯାଏଁ । ତା' ହସରେ ଅପମାନିତ ହେଲା ପରି କାଠୁରିଆଟି ଓହ୍ଲେଇଯାଇଥିଲା ଚଲା ରାସ୍ତାକୁ । ଆମେ ହୋ-ହଲ୍ଲା କରି ମାତିଯାଇଥିଲୁ ଏ ପଥରରୁ ସେ ପଥରକୁ, ଉପରକୁ ଆହୁରି ଉପରକୁ । ପାହାଡ଼ର ଅଣ୍ଟା ପାଖରେ ବିରାଟ ଗୁମ୍ଫା । ସେଇ ବୋଧେ ବାଘଗୁମ୍ଫା । ପାଖଆଖ ଫୁର୍‌କୁଟିଆ ଗନ୍ଧ । ଦିଲ୍ଲୀପ୍ ଗୋଡ଼ ଫରକଟେଇ ତା' ସାମ୍ନାରେ ଠିଆହେଲା । କୁହାଟିଲା ''ଏ ବାଘ . . . ହେ ବାଘ'' ଏବଂ ଡେଇଁଲା । କେବଳ ବାଘ ନୁହେଁ, ମୃତ୍ୟୁକୁହିଁ ଅସ୍ୱୀକାର କରୁଥିଲା ଦିଲ୍ଲୀପ୍ ।

କୋଡ଼ିଏ ବର୍ଷ ପରେ ସେ ଅଚାନକ ଆସି ରାତି ଦଶଟାରେ ପହଁଞ୍ଚିଥିଲା । ଖୁବ୍ ଭରସାରେ ନିଶ୍ଚୟ ଆସିଥିଲା । ଖୁବ୍ ଲଢ଼େଇ କରିସାରି ଆସିଥିଲା । କୋଉଠି ହୁଏତ ପାହାଡ଼ ଚଢ଼ୁ ଚଢ଼ୁ ବାଘ ହାବୁଡ଼ରେ ପଡ଼ିଯାଇଥିଲା; ଆସିଥିଲା ଆଶ୍ରୟ ନେବାକୁ । ତା' ଆଖିରେ ଭୀଷଣ କ୍ରୋଧ ଡହକୁଥିଲା । କ'ଣ କରିଥିଲା ଦିଲ୍ଲୀପ, ମୁଁ ତାକୁ ପଚାରିପାରିନାହିଁ । ସେ ନିଜେ ହୁଏତ କହିଥାଆନ୍ତା ସେ କଦାପି ସେପରି କିଛି କରିନାହିଁ, ଯେଉଁଥିରେ ତା'ର ଦେହ ହାତ ସେମିତି ରକ୍ତରେ ସାଲୁବାଲୁ ଅସନା ହୋଇ ରହିଥିଲା । ତାକୁ ତରବରରେ ଗେଷ୍ଟରୁମ୍ ଭିତରକୁ ପୂରେଇ ଦେଲାବେଳେ ସେ ସବୁ ନିଠେଇ ଦେଖିବାକୁ ତର ନାହିଁ । ତା' ଦେହର ଜଖମ୍‌ରୁ ହୁଏତ ରକ୍ତ ଝରୁଥାଇପାରେ । ରକ୍ତ ଝରିବାହିଁ ମୋ ପାଇଁ ଏକ ବିଷମ ଅବସ୍ଥା । କଞ୍ଚା ରକ୍ତ ଦେଖିଦେଲେ ମୋ ଦେହ ଶିତେଇଯାଏ, ଅଇ ଉଠେ, ଆଖି ଉପରକୁ ଅନ୍ଧାର ମାଡ଼ିଆସେ ।

ଏବେ ଗତ ରାତିର ଘଟଣା ଚଳଚ୍ଚିତ୍ର ପରି ଦିଶିଯାଉଛି । ଏତେ ସମୟ ହେଲା ଗେଷ୍ଟରୁମ୍ ଭିତରେ ଦିଲ୍ଲୀପ କ'ଣ କରୁଛି ? ସେ କ'ଣ ପାଇଖାନା ବାଟେ ମେହେନ୍ତର ରାସ୍ତାରେ ପୁଣି ଅନ୍ଧାର ଭିତରକୁ ଓହ୍ଲାଇଗଲା ? ତା' ପଛରେ ହୁଏତ ତା' ଶତ୍ରୁମାନେ ଗୋଡ଼େଇଛନ୍ତି – ଆଉ ପାଞ୍ଚମିନିଟ୍ ଭିତରେ ପହଞ୍ଚିଯିବେ । ସେମାନଙ୍କୁ ଭଡ଼କେଇବାକୁ କ'ଣ ସେ ଏମିତି ଫନ୍ଦିଟାଏ କରିଦେଲା ?

ଆଜିକୁ ପ୍ରାୟ ଦଶବର୍ଷ ତଳେ ବଜାରରେ ଥରେ ଦିଲ୍ଲୀପ ସାଙ୍ଗେ ଦେଖାହୋଇଗଲା । ମୋଟର ସାଇକେଲରେ ଉଡ଼ିଗଲାବେଳକୁ ମୋତେ ଦେଖି ବ୍ରେକ୍ ଦାବିଦେଲା । କହିଥିଲା – "ଆରେ ଦୋସ୍ତ, ତୋର ସବୁ ଖବର ମୁଁ ରଖିଛି । ତୁ ଏଇନା ମାତବର ଲୋକ । ତୋ ନାଁ ଶୁଣିଲେ ସମସ୍ତେ ଜାଣୁଛନ୍ତି । ମୋ ହାତରେ ଭାଇ ସେତେ ପାଠଶାଠ ହେଲା ନାହିଁ । ମୁଁ କୌଣସି ପ୍ରକାରେ ଚଳିଯାଉଛି । କେବେ ଆସିବି ଦିନେ କଥାଭାଷା ହେବା । ଆଉ ଗୋବିନ୍ଦ କଥା ତ ଶୁଣିଥିବୁ । ସେ ସ୍କୁଲ ମାଷ୍ଟର ହୋଇ କୋରାପୁଟ ଭିତରେ କୁଆଡ଼େ ପଡ଼ିଚି; ହେଲେ ତାକୁ ମୁଁ ନେଇ ଆସିବି । ସେ ଏଗୁଡ଼ାକୁ ଖାତିରି କଲା ନାହିଁ ବୋଲି ତାକୁ ଏ କୁକୁର ଶଳେ ଭିଣି ଖାଇଗଲେଣି । ବହୁତ କଥା ଅଛି କହିବାକୁ । କେବେ ଦିନେ ଆସିବି ତୋ ଘରକୁ ।"

ମୁଁ ତା ନିଜ ବିଷୟ ପଚାରିବାକୁ ସୁଯୋଗ ପାଇଲି ନାହିଁ । ସେ ଘାଇଁକିନା ମୋଟର ସାଇକଲ ନେଇ ଚାଲିଗଲା । ତା'ର ଅନେକ ପରିବର୍ତ୍ତନ ହୋଇଯାଇଥିଲା । ହେଲେ ସେ ରାଉରାଉ ଆଖି, ଫଣା ଟୋକିଲା ପରି ଠାଣି, ନିର୍ଭୀକ ରୋକ୍‌ଠୋକ୍ କଥା – ଦିଲ୍ଲୀପ୍ ଚାନ୍ଦ୍ ତେବେ ବି ସିଂହଟାଏ । ଏ ତ ଦଶବର୍ଷ ତଳର କଥା । ଯା ଭିତରେ କ'ଣ ସବୁ ହୋଇଗଲାଣି ମୁଁ ଜାଣି ନାହିଁ । ମୁଁ ନିଜେ ବାର ଜାଗା ବୁଲି ବୁଲି ଆସି ଏ ସହରରେ ପହଞ୍ଚିଛି । ମୋ ଚାରିଆଡ଼େ ସବୁବେଳେ ସରକାରୀ କାଛ । ମୁଁ ସରକାରୀ ଗାଡ଼ିରେ ଯା'-ଆସ କରେ । ସରକାରୀ ପଇସାରେ ଦିଲ୍ଲୀ ଗସ୍ତ କରେ ।

ରାତି ଦଶଟାରେ ଦିଲ୍ଲୀପ୍ ଆସି ପହଞ୍ଚିଛି । ତା'ର ସେ ମୋଟର ସାଇକଲ୍ ତ' ଆଣିନାହିଁ । ସେ ଖୁବ୍ ତରବରରେ ଧାଇଁଆସିଛି ।

ତା' ପଛରେ ନିଶ୍ଚୟ ବାଘ !

ମୁଁ ଗେଷ୍ଟରୁମ୍ କବାଟ ସାମ୍ନାରେ ଠିଆହୋଇ କାନେଇଲି । ହାତ ମାରିବାକୁ ଗଲି । ମୋତେ ଖୁବ୍ ଡର ମାଡ଼ିଲା ହଠାତ୍ । . . . ଦିଲ୍ଲୀପ୍ ବୋଧେ ଘର ମଝିରେ ମୁହଁମାଡ଼ି ପଡ଼ିଯାଇଛି । ତା' ପେଟତଳୁ ବହଳ ରକ୍ତଧାର ବୋହିଯାଉଛି ତଳ ଗଡ଼ାଣିକୁ । ତା' ଦରବୁଜା ଆଖି ସ୍ଥିର ହୋଇଯାଇଛି . . . ।

ସାମ୍ନା ରାସ୍ତାରେ ଜିପ୍‌ଟାଏ ଘାଇଁ ଘାଇଁ ମାଡ଼ିଗଲା । ମୋ ତାଳୁରୁ ତଳିପାଯାଏଁ ହୁଳାଟାଏ ଖସିଗଲା । ମୋ କପାଳ କାନମୁଣ୍ଡା ତାତିଗଲା । ବେଲ୍‌କନି କାନ୍ଥରେ ମୁଁ ହାତ ରଖି ବାହାରକୁ ଅନାଇଲାବେଳେ ମୋ ଆଙ୍ଗୁଠିଗୁଡ଼ାକ ମୋ ଅଣାୟତ୍ତରେ ଥରୁଥିବାର ମୁଁ ଅନୁଭବ କଲି ।

"ଆଜି ଶୋଇବ ନାହିଁ କି ?"

ମୁଁ ଚମକି ପଡ଼ିଲି । ହୁଏତ ଚିତ୍କାର କରି ପକାଇଥାନ୍ତି, ସ୍ତ୍ରୀକୁ ଦେଖି ସମ୍ଭାଳିଗଲି । ସେ କିନ୍ତୁ ମୋର ଅସ୍ୱାଭାବିକ ଢଙ୍ଗ ଜାଣିଗଲେ ନା କ'ଣ ?

"କିଓ, ଏମିତି କାଇଁକି ହଉଚ ?"

ମୁଁ ତରବରରେ ତାକୁ ବୈଠକଘର ଆଡ଼େ କଢ଼େଇନେଇ ଅନୁନୟ ଢଙ୍ଗରେ କହିଲି, "ଆଚ୍ଛା, ମାତ୍ର ଜଣେ ଗେଷ୍ଟକୁ ଚଳେଇନେଇପାରିବ ? କିଛି ଖାଇବାକୁ ଦେଇପାରିବ ?"

ସେ କିଛି ନ କହି ମୋ ମୁହଁକୁ ଚାହିଁଲେ । ମୁଁ କେବଳ ଗେଷ୍ଟ ରୁମ୍ ଆଡ଼କୁ ଆଙ୍ଗୁଠି ଦେଖେଇଦେଲି ।

ଏମିତି ବହୁବାର ଅଧରାତିଆ ତାକୁ ହଇରାଣ ହେବାକୁ ପଡ଼େ । ସେ ଭଦ୍ରମହିଳା କେବେ ଜାଣିବାକୁ ଚାହିଁନାହାନ୍ତି କାହା ପାଇଁ ଆୟୋଜନ ହୁଏ ।

ଏଥର କିନ୍ତୁ ପଚାରିଦେଲେ – "କିଏ ଆସିଛନ୍ତି କି ?"

ମୋ ଭୂରୁ କୁଞ୍ଚେଇଗଲା । ମୁଁ ଖୁବ୍ ଅସହଜ, ଅସ୍ୱାଭାବିକ, ସତର୍କ ହୋଇ କହିଲି – "ମୋର ପିଲାଦିନର ସାଙ୍ଗଟାଏ – ଦିଲ୍ଲୀପ୍ ଚାନ୍ଦ ।"

ସେ ମୁହୂର୍ତ୍ତେ ତଳକୁ ଚାହିଁ ହୁଏତ ମନେ ପକାଇବାକୁ ଚେଷ୍ଟା କଲେ । ତା'ପରେ ମୁହଁ ଟେକି ପଚାରିଲେ – "ତାଙ୍କର ପରଠା ଚଳିବ ତ ? ମାଂସ ତରକାରି ଢେର୍ ବଳିଛି; ଦେଇଦେବା ! ମୁଁ କିଛି ସାଲାଦ କାଟିଦିଏ ।" ସେ ତରବର ହେଇ ଚାଲିଗଲାବେଳେ ମୁଁ ତାଙ୍କୁ ଚାହିଁରହିଲି । ପୁଅ ଝିଅ ବଡ଼ ହୋଇ ବାହାରକୁ ଚାଲିଗଲେଣି । ସେ ଏଣିକି ଭାରି ଏକୁଟିଆ ପ୍ରାଣୀଟିଏ । ନ ହେଲେ କ'ଣ ମୁଁ ଶୋଇବି ନା ନାହିଁ ବୋଲି ପଚାରିଆସିଥାନ୍ତେ !

ମୋ ମୁଣ୍ଡରେ କେବଳ ଗୋଟିଏ ସମସ୍ୟା ସବାର ରହିଥାଏ । ମୁଁ କେବଳ କାନ ଡେରି ରହିଥାଏ । ସାହସ ହେଉ ନଥାଏ ଗେଷ୍ଟରୁମ୍ ଆଡ଼େ ଯିବାକୁ । ଅଧରାତିର

ଅନ୍ଧାର ଅରଣ୍ୟ ପରି ନୀରବ ସେ ଗେଷ୍ଟରୁମ୍‌ । ଏତେ ନୀରବ ରହିଲେ ସେ କାନ୍ଥ କବାଟ ବୋଧେ ଦୁଲ୍‌ଦୁଲ୍‌ କମ୍ପିବ । ଝଣ୍‌ଝାଣ୍‌ ଖସିପଡ଼ିବ ଭଙ୍ଗା କାଚ । ଛାତରୁ ଖସିପଡ଼ିବ ଚଳମାନ ପଙ୍ଖା । ଓଃ, ମୁଁ ଉଠିଲି ସେଇଆଡ଼େ ଧସେଇଯିବାକୁ; କିନ୍ତୁ ବାଁକୁ ମୋଡ଼ିଯାଇ ରୋଷେଇଘରେ ପହଞ୍ଚିଲି ।

ମୋ ସ୍ତ୍ରୀ କିଛି ସାଲାଦ କାଟିସାରିଥିଲେ । ମୋତେ ନ ଚାହିଁ ଅନ୍ୟମନସ୍କ ଢଙ୍ଗରେ କହିଲେ, ''ସେ କ'ଣ ଏଇନା ଖାଇବେ ନା ଡେରିରେ ?''

ମୋ ପାଖରେ ଉତ୍ତର ନଥିଲା । ମୁଁ ତାଙ୍କୁ ହଡ଼ବଡ଼େଇଗଲା ପରି କହିଲି, ''ତୁମେ ବରଂ ଏଇ ଟ୍ରେରେ ସବୁ ଯୋଗାଡ଼ି ରଖିଦିଅ; ଆଉ ଯାଇ ଶୋଇପଡ଼ । ମୁଁ ତା' କଥା ସମ୍ଭାଳିବି ।''

ସେ ମୋ ମୁହଁକୁ କିମ୍ଭୂତ ଢଙ୍ଗରେ ଚାହିଁଲେ । ସେ କ'ଣ ଭାବୁଥିଲେ ଯେ, ଆମେ ଦୁହେଁ କୌଣସି ଗୁରୁତର ଅପରାଧ କରିବସିବୁ ସାଙ୍ଗହେଇ ! ତାଙ୍କ ଆଖିରେ ଅମାପ ଉଦାସୀନତା । ସତେ ବା ସେ ମୋତେ ଜମା ଚିହ୍ନି ପାରୁନଥିଲେ । ମୁଁ କାଠଗଡ଼ାରେ କାତର ଆସାମୀ ପରି ଛେପ ଢୋକି ତଳକୁ ମୁଣ୍ଡପୋତିନେଲି । ମୁଁ କାହିଁକି ସେପରି ଦୁର୍ବଳ ଅନୁଭବ କରୁଥିଲି, କହିପାରିବି ନାହିଁ । ତଳକୁ ଚାହିଁ ଚାହିଁ ଭାବିଲି, ହୁଏତ ଦିନଯାକ କାମ କରି ସେ ଖୁବ୍‌ ଥକିଯାଇଥିଲେ । ତାଙ୍କ ଆଖିକୁ ଘୁମ ମଡ଼େଇ ହେଇ ଆସୁଥିଲା । ସେ ଆଉ କିଛି ସମୟ ପରେ ଶୋଇଯିବେ ।

ସେ କିଛି ନ କହି, ସତକୁ ସତ ଚାଲିଗଲେ ଶୋଇବାଘରକୁ !

ମୁଁ ବୈଠକଘର ପଙ୍ଖା ତଳେ ବସି ଶୂନ୍ୟକୁ ଅନେଇଥାଏ । କାନ ଠିଆ କରି ରଖିଥାଏ, କାଳେ ଗେଷ୍ଟରୁମ୍‌ ଆଡୁ କୌଣସି ଶବ୍ଦ ଆସିବ ।

ଦିଲ୍ଲୀପ୍‌ ଚାନ୍ଦ୍‌ କଦାପି ଚୋର ନୁହେଁ, ଡକେଇତ ନୁହେଁ, ମଣିଷମାରୁ ନୁହେଁ; ସେ ନିଶ୍ଚୟ ଟିକିଏ ବଦରାଗୀ ହୁକାପିଟା ହୁଣ୍ଡା . . . କିନ୍ତୁ ସେ ଅପରାଧ କରିବ ନାହିଁ . . . ସେ ସମୟ କଥା । ଆମେ ପାହାଡ଼ ପରେ ପାହାଡ଼ ଚଢ଼ିଚାଲିଥାଉ । ଦିନେ ମୁଁ ତାକୁ କହିଲି, ''ଦେଖ୍‌ ଦିଲ୍ଲୀପ୍‌, ଆଉ କାହାକୁ କଥା କୁହାଇ ନଦେବା ତୋର ଗୋଟାଏ ବଦଭ୍ୟାସ । ଅନ୍ୟ ଜଣେ କ'ଣ କହୁଛି ତୁ ଶୁଣିବୁ ନାଇଁ କାହିଁକି ? ଶୁଣିସାର, ତା'ପରେ ତୋ ଇଚ୍ଛା ଯାହା କହିବୁ ।''

ସେ ବେଖାତିର ଢଙ୍ଗରେ ଏଣେତେଣେ ଚାହିଁଲା, କିନ୍ତୁ ଚୁପ୍‌ରହିଲା ।

ମୁଁ କହିଲି, ''ଏ ପାହାଡ଼ ଶିଖରେ ପହଞ୍ଚିବା ଆମ ସମସ୍ତଙ୍କ ଇଚ୍ଛା । କେମିତି କେଉଁ ବାଟେ ପହଞ୍ଚିବା, ସେଥିରେ କେବଳ ବିଭେଦ ରହୁଛି । ମୁଁ କହୁଛି, ଯା ପଛପଟେ ଚଢ଼ିବା ଖୁବ୍‌ ସହଜ; କାରଣ ଚଢ଼ାଣିଟା ଖୁବ୍‌ ଆସ୍ତେ ଆସ୍ତେ ଉଠିଚି । ତୁ ଏପଟେ ଚଢ଼ିବାକୁ କାଇଁକି ଜିଦ୍‌ ଧରିଚୁ ? ଏ ପାଖଟା ପରା ଦେଖୁଚୁ ଠିଆ କାନ୍ଥ ପରି ।''

ସେ ଖିଙ୍କାରିଉଠିଥିଲା, ''ଚୋପ୍‌ ବେ ମାଇଚିଆ । ପାହାଡ଼ ଚଢ଼ିବୁ ତ ଏମିତି ସୁକୁମାରିଆ ହବୁ କାହିଁକି ? ତୁ ଯା ସେପଟେ ଆସ୍ତେ ଆସ୍ତେ ଉଠୁଥିବୁ । ତୋ ପାଇଁ

ଶିଡ଼ି ପଡ଼ିଚି ସହଜରେ ଉଠିବା ପାଇଁ । ମୁଁ ପାହାଡ଼ କହିଲେ ବୁଝେ ଗୋଟାଏ ଜିଅନ୍ତା ବାଘା ଜନ୍ତୁ, ଯେ ମୋତେ ପାଦେ ପାଦେ ଛକିଥିବ । ମୁଁ ତାକୁ ପାଦେ ପାଦେ ପରାଜିତ କରୁଥିବି । ମୁଁ ଜାଣେ, ଥରେ ଗୋଟିଏ ପାହୁଣ୍ଡ ଖସିଗଲେ ସେ ମୋତେ ଛାଡ଼ିବ ନାହିଁ; ଏକାଥରେ ଛତୁ କରିଦେବ । ଯଦି ମରଣ ସେମିତି ଖଣ୍ଡାପରି ଆଗରେ ଝୁଲି ନ ରହୁଛି, ତେବେ ଲଢ଼ିବାର ଅର୍ଥ କ'ଣ ବେ ନାଲାଏକ ? ମୋର ଆନନ୍ଦ ମୁକାବିଲାରେ ।'' . . . ଏମିତି ଗୁଡ଼ାଏ ରାଗିମାଗି କ'ଣ ସବୁ କହିଥିଲା । କିନ୍ତୁ କହିଥିଲା ତା' ବିଶ୍ୱାସର କଥା – ଆମ ଭିତରେ ପ୍ରଭେଦର କଥା ।

ଏବେ ବି ଦିଲ୍ଲୀପ୍ ଚାନ୍ଦ୍ ବୋଧେ କୌଣସି ଶିଖରେ ପହଞ୍ଚି ପାରିନାହିଁ – କେବଳ ପାହାଡ଼ ଚଢ଼ୁଛି; ଲଢ଼ିବାର ସଉକରେ, ତା ବାହୁରେ ବିଶ୍ୱାସ ଅଛି, ବୁକୁରେ ବଳ ଅଛି ବୋଲି । ଶାଳା ଏକବୁଝା ଦନ୍ତାକୁ କେମିତି ବୁଝେଇବ ତା' ଓଲାପଣ ।

ମନକୁ ମନ ଦିଲ୍ଲୀପ୍ ସାଙ୍ଗେ ସାମାନ୍ୟ ଭାବଦୋସ୍ତି କରି ହସିଦେଲି । ଏତିକିବେଳେ ଗେଷ୍ଟ ରୁମ୍‌ରେ ଖୁବ୍ ଆସ୍ତେ 'ଖୁଟ୍'କିନା ଆବାଜ ହେଲା । ମୋତେ ଲାଗିଲା ବଜ୍ର ପଡ଼ିଲାପରି । ମୁଁ ଚମକିଗଲି ସେ ଦୁଆରବନ୍ଧଯାଏଁ ଆଖିପିଛୁଳାକେ ।

କାହିଁ, କିଛି ନାହିଁ – ସବୁ ଆଗଭଳି ଚୁପ୍‌ଚାପ୍ ।

ମୁଁ ଆସ୍ତେ କବାଟରେ ହାତ ମାରିଲି ।

ସମୟଟା ଏଗାରଟା ଚାଳିଶ ।

ରାସ୍ତାଘାଟ ସାଇପଡ଼ିଶା ଶୂନ୍‌ଶାନ୍ । ମୁଁ ବହୁକାଳୁ ଦିଲ୍ଲୀପକୁ ହୁଏତ ଡରୁଥିଲି । ଭଲ ବି ପାଉଥିଲି ଖୁବ୍ ବେଶି; କିନ୍ତୁ ଜାଣିପାରୁ ନଥିଲି ତା'ର ସେ ସାଲୁବାଲୁ ରକ୍ତକୁ ନେଇ କ'ଣ କରିବି ? ମୁଁ ବେଲକନି ପାଖରେ ଫୁଲ ଗମ୍‌ଲାର ମଙ୍ଗକୁ ଧରି ଠିଆହୋଇଥାଏ । ଆସ୍ତେ ମୋ ହାତମୁଠା ଟାଣିଗଲା । ଦାନ୍ତପାଟି କଟମଟ ହେଲା । ମୁଁ ବୁଲିପଡ଼ି କବାଟରେ ହାତ ବାଡ଼େଇଦେଲି ।

କବାଟ ଠିଆମେଲା ହୋଇଗଲା ।

ସେଇଟା ବୋଧେ ଖୋଲାଥିଲା ମୂଳରୁ ।

ଚମକିପଡ଼ିଲି ନିଶ୍ଚୟ । କିନ୍ତୁ ମୁହୂର୍ତ୍ତକରେ ସମ୍ଭାଳି ଯାଇ ଭିତରକୁ ପଶିଗଲି ।

ଦିଲ୍ଲୀପ୍ ଖଡ଼ଖଡ଼ିଆ ପଟାଖଟଟା ଉପରେ ବସିଥିଲା । ମୁଁ ତା ଦେହହାତକୁ କଟମଟ ଚାହିଁ ରହିଥିବା ସେ ଅନୁଭବ କଲା । ମୋ ମୁହଁକୁ ଚାହିଁ ଅଳ୍ପ ହସିଦେଲା । ସେଭଳି ପରିସ୍ଥିତିରେ ବି ସେ ହସିପାରୁଥିଲା ! ତା ମୁହଁସାରା ରୁଢ଼, ଝାଳ, ଧୂଳି । ଆଖି ଚାରିପଟେ କଳାଦାଗ ! କ'ଣ ସବୁ ହୋଇଯାଇଛି ତା' ପୂର୍ବରୁ । ମୋତେ ପରାସ୍ତ କଲା ପରି କହିଲା, ''ଖଣ୍ଡେ ପିକା ଦେଇପାରିବୁ ?'' ମୁଁ ନିରୁପାୟ ହୋଇ ତାକୁ ଚାହିଁରହିଲି । ସେ ସାମାନ୍ୟ ଥଟ୍ଟାଳିଆ ସ୍ୱରରେ କହିଲା, ''ଓ, ବୁଝିଲି, ତୋର ଥାହୁରି ନାବାଳକି କଟି ନାହିଁ ।'' ସେ ତା ପକେଟ୍ ଅଣ୍ଡାଳି ଖଣ୍ଡେ ବିଡ଼ି କାଢ଼ିଲା । ଦିଆସିଲି କାଠି ଗୋଟାକ ପରେ ଗୋଟାଏ ଫସକିଯାଉଥାଏ । ସେ ଦାନ୍ତରେ ବିଡ଼ିଟାକୁ କାମୁଡ଼ି

ଧରି କେମିତି ଗୋଟାଏ ନିଶ୍ଚିନ୍ତ ଢଙ୍ଗରେ ଦିଆସିଲି ମାରୁଥାଏ । ଶେଷକୁ ଦି'କଳ ଧୂଆଁ ଫୁଙ୍କିସାରିଲା ପରେ ମୋତେ ପୁଣି ଚାହିଁଲା । ତା' ଆଙ୍ଗୁଠିସନ୍ଧା ପାପୁଲିଠଉ କହୁଣିଯାଏଁ ରକ୍ତ ବୋହି ଶୁଖିଯାଇଥାଏ । ତା'ର ମସିଆ କୋଠି କୋଠି ଜାମା ଚିରିଯାଇଥାଏ, ବୁକୁ ପାଖରୁ, କାନ୍ଧ ପାଖରୁ । ସେଥିରେ ଦି' ଚକଡ଼ା ରକ୍ତ ଲାଗିଥାଏ ଅଣ୍ଟାପାଖକୁ । ତା' ପେଣ୍ଟଖଣ୍ଡକ ଲୋଚାକୋଚା, ଅପରିଷ୍କାର । ''ଆରେ, ବସୁନୁ କାହିଁକି ? ବସ୍, ତୋ ପାଖରେ ଅନେକ କଥା ଅଛି ।''... ତା ତ ନିଶ୍ଚୟ ଅଛି... ମାତ୍ର କି ଧରଣର କଥା ? ମୁଁ କିଛି ନ କହି ବସିଲି । ମୋତେ ସାମାନ୍ୟ ଅସୁସ୍ଥ ଲାଗୁଥାଏ; ଅଇ ଟେକିଲା ପରି ଲାଗୁଥାଏ । ତା'ପରେ ସେ କ'ଣ କହିବ, କ'ଣ ହବ କେଜାଣି ? ସେ କିନ୍ତୁ ଶୂନ୍ୟକୁ ଚାହିଁ ଅନ୍ୟମନସ୍କ ବସିରହିଲା । ମୁଁ ସାମାନ୍ୟ କାଶି ଜଣେଇଦେଲି ମୋର ଉପସ୍ଥିତି ଏବଂ ଉତ୍କଣ୍ଠା । ସେ ଚଟ୍‌କିନା ବୁଲିପଡ଼ି କହିଲା, ''ମୁଁ ତୋ ଘରକୁ ପଶିଆସିଛି ବୋଲି ଡରୁଚୁ କି ? ଦୁଇଘଣ୍ଟା ଶୋଇଗଲା ପରେ ମତେ ଭଲଲାଗିଲାଣି । ମୁଁ ଚାଲିଯିବି । ତା' ପୂର୍ବରୁ ଟିକିଏ ଧୂଆଧୋଇହୋଇଯାଏ । ଜାମାଟାରୁ ସହଜରେ ଛାଡ଼ିବ ନାହିଁ । ମୁଁ ତାକୁ ଏଇଠି ପକେଇଦେଇ ଯିବି । ଖୋଲା ଦେହରେ ଚାଲିଗଲେ ମୋର କୌଣସି ମାନହାନି ହେବ ନାହିଁ ।'' କି ସର୍ବନାଶ ! ଯେକୌଣସି ପୋଲିସ କୁକୁର ଏଠିକି ପଶିଆସିବ; ଏ ଜାମାଟାକୁ ଦାନ୍ତରେ ଧରି ଗାରୁଗାରୁ ହବ । ପୋଲିସ ଅଫିସର ସ୍ଥିର ଆଖିରେ ମୋତେ ଚାହିଁବେ । ଦାନ୍ତ ଦାବି ଆଖି ସରୁ କରିନେବେ । ତା'ପରେ . . .

ସେ ବିଡ଼ିଟାକୁ ଗୋଇଠି ମଡ଼େଇ ବାଥ୍‌ରୁମ୍ ଆଡ଼ିକି ଆଗେଇଗଲା । ପଛକୁ ଫେରି ଚାହିଁ କହିଲା, ''ତୋ ଘରେ ଏଇନା କିଛି ଖାଇବାକୁ ଥିବ ?''

ମୋ ଶୁଖିଲା ଜିଭ ଓଠରୁ ଇତସ୍ତତଃ ହୋଇ ଶବ୍ଦଟିଏ ବାହାରିଲା – ''ଅଛି ।'' ସେ ଦାନ୍ତ ନିକୁଟି ହସିଦେଇ ବାଥ୍‌ରୁମ୍ କବାଟ ବନ୍ଦକରିଦେଲା ।

ଦିଲ୍ଲୀପ୍ ଚାନ୍ଦ୍ କଥାଟାକୁ କେଡ଼େ ସହଜରେ ନେଇପାରୁଛି ! ସେ କ'ଣ ହତ୍ୟା କରିଛି ଏବଂ ତା ବାହାଦୁରିଆ ଢଙ୍ଗରେ ତାକୁ ବେଖାତିର୍ କରୁଛି ? କାହାକୁ ହତ୍ୟା କରିଛି ? ଯାହାକୁ ମନ ତାକୁ ! ସେଥିରେ କ'ଣ ଥାଏ ? ସେ ଏକ ଖୁଣୀ ଆସାମୀ । ତା' ପଛରେ ପୁଲିସ୍, ତା' ପଛରେ କାନୁନ୍ । ତାକୁ ସେମାନେ ଖୋଜି ଖୋଜି ନିଶ୍ଚୟ ଏଠି ପହଞ୍ଚିବେ; ସରକାରଙ୍କ ବିଶ୍ୱସ୍ତ ଭୃତ୍ୟ ! ଦାମୀ ଉଚ୍ଚପଦସ୍ଥ ଅଫିସର ! ଖବରକାଗଜର ପ୍ରଥମ ପୃଷ୍ଠାରେ ଫଟୋ ବାହାରିଯିବ ! ନିନ୍ଦା ଅପମାନ ଜେଲ ! ମୁଁ ଝାଳେଇଗଲି !

''. . . ହଲୋ, ପୁଲିସ ଷ୍ଟେସନ୍ ? କିଏ କହୁଛନ୍ତି । . . . ଆଜ୍ଞା, ଅଫିସର ଇନ୍‌ଚାର୍ଯ ଲିଆକତ ଅଲ୍ଲିଙ୍କୁ ଟିକିଏ ଚଞ୍ଚଳ ଡାକନ୍ତୁ । ମୁଁ ଟି. ଆର୍. ପ୍ରହରାଜ କହୁଛି ।''

''. . . ସାର୍ – ସାର୍ . . . ମୁଁ ଅଲ୍ଲି କହୁଛି ସାର୍ . . . ୟେସ୍ . . . ସାର୍ ! ମୁଁ ଏଇ ସାଙ୍ଗେ ସାଙ୍ଗେ ବାହାରିଲି ସାର୍ !''

ବାଥ୍‌ରୁମ୍ କବାଟ ହଠାତ୍ ଫିଟିଯିବାରୁ ମୁଁ ପ୍ରାୟ ଡେଇଁପଡ଼ିଲି ।

ସେ ମୋତେ ସେଇଠୁ ସ୍ଥିର ଆଖିରେ ଚାହିଁ କହିଲା, ''କିରେ, ଏମିତି ଚମକୁଚୁ କାହିଁକି ? ସେତେବେଳୁ ଏମିତି ଠିଆରହିଚୁ କାହିଁକି ?''

ଖଟ ଆଡ଼କୁ ଯାଉ ଯାଉ ଥଟ୍ଟା କଲାପରି କହିଲା, ''ତୁ କ'ଣ ପୁଲିସ୍‌କୁ ଏଯାଏଁ ଡାକିବୁ ବୋଲି ଚିନ୍ତା କରୁଚୁ କି ?''

ମୁଁ କେମିତି ଚମକିପଡ଼ି ସେଇଠୁ ବାହାରି ଆସିଲି ରୋଷଘରଯାଏଁ ସେ ବୋଧହୁଏ ଦେଖିପାରିଲା ନାହିଁ । ସତେ ତ, ମୁଁ ପୁଲିସ୍‌କୁ ଡାକିଦେଇଥିଲେ ସେମାନେ ପହଞ୍ଚିଯାଇଥାନ୍ତେ । ମୁଁ ତାଙ୍କୁ କ'ଣ କହିଥାନ୍ତି ?

କହିଥାନ୍ତି ଦିଲ୍ଲୀପ୍ ମୋ ବନ୍ଧୁ ? . . . କହିଥାନ୍ତି ସେ ଖୁଣ୍ କରିଛି ?

ମୁଁ କେମିତି ଜାଣିଲି ବୋଲି ସେମାନେ ପଚାରିଥାନ୍ତେ ? ଦିଲ୍ଲୀପ୍ କ'ଣ କହିଥାନ୍ତା ପୁଲିସକୁ ? – ମୋତେ ?

ମୁଁ ଠିଆରହିଗଲି କିଛି ସମୟ । ଯାହା ହେଉ ପଛେ ଦିଲ୍ଲୀପ ଯଥାଶୀଘ୍ର ଚାଲିଯିବା ଉଚିତ ।

ମୁଁ ଘଣ୍ଟାକୁ ଅନେଇଲି । ରାତି ଗୋଟାଏ ବାଜିବାକୁ ସାତ ମିନିଟ୍ !

ମୋ ସ୍ତ୍ରୀ ସଜାଡ଼ି ଦେଇଥିବା ଟ୍ରେଟିକୁ ଟେକିନେଇ ଦିଲ୍ଲୀପ ସାମ୍ନାରେ ଥୋଇଦେଲି । ସେ ବିନା ଦ୍ୱିଧାରେ, ବିନା ବାକ୍ୟବ୍ୟୟରେ ତଳକୁ ମୁହଁ ପୋତି ହାଉଁହାଉଁ ଖାଇଦେଇଗଲା । ତାକୁ ବୋଧେ ଖୁବ୍ ଭୋକକରୁଥିଲା; ହୁଏତ ଦିନସାରା ଖାଇ ନଥିଲା କିଛି ।

ଆମ ଘରେ ଖୁବ୍ ଚମତ୍କାର ରନ୍ଧା ହୁଏ । ତା ବାସ୍ନା ଖୁବ୍ ସ୍ୱତନ୍ତ୍ର ।

ମୁଁ କିଛି ଦୂରରେ ଥାଇ ବାରିଦେଲି । ମୋ ପାଟିକୁ ପାଣି ଚାଲିଆସିଲା ।

ଦିଲ୍ଲୀପ ଚାନ୍ଦ ମାଂସକୁ ଖୁବ୍ ଲାଳାୟିତ ହୋଇ ଖାଉଥାଏ । ହାଡ଼ ରେକୁଟୁଥାଏ । ମେଲା ଦେହରେ ସେ ମୋତେ ହଠାତ୍ ଖୁବ୍ ଛୋଟ ଏବଂ ସାଧାରଣ ଦେଖାଗଲା । ମୁଁ ମୁହଁକୁ ନ ଚାହିଁ, ତା'ର ସେ ମଧ୍ୟମ ଧରଣର ସାବନା ଦେହଖଣ୍ଡକୁ ଚାହିଁଥାଏ । ମୁଁ ଚୌକିରେ ଦୃଢ଼ଭାବରେ ବସି କହିଲି, ''କ'ଣ ହେଇଚି ଦିଲ୍ଲୀପ, ମୁଁ ଶୁଣିବାକୁ ଚାହେଁ ।'' ସେ ନଳି ହାଡ଼ଟାକୁ ଅଧା ପାଟିରେ ପୂରେଇ ମୋତେ ଚାହିଁ ମୁଚ୍‌କି ମାରିଲା । ତା' ଆଖି କୁଞ୍ଚେଇଗଲା କିଞ୍ଚିତ୍ ।

ମୁଁ କିନ୍ତୁ ଖୁବ୍ ଦୃଢ଼ ଥିଲି ଭିତରେ ଏବଂ ବାହାରେ । ସେ ହାଡ଼ଟାକୁ ଶୋଷି ସାରିଲା ପରେ କହିଲା, ''ଟିକିଏ ସବୁର୍ କରିପାରୁନୁ । ଖାଇବାକୁ ଦେଇଚୁ ପରା । ମୁଁ ସାରିଦିଏ, କହିବି ।''

ସେତେବେଳେ ସମୟ ଗୋଟାଏ କୋଡ଼ିଏ । ବାହାରେ ଗହନ ଗଭୀର ରାତ୍ରି । ସାରା ପୃଥିବୀରେ କେବଳ ସ୍ୱପ୍ନ ବୋଝଇ ହେଇ ଚାଲିଛି ନୀରବରେ । ସମସ୍ତେ ସ୍ୱପ୍ନ-ରାଜ୍ୟରେ ଟଳମଳ ।

ଦିଲ୍ଲୀପ୍ ବାଥ୍ ରୁମ୍‌ରେ ଓଦା ଜାମାଟାକୁ ଚିପୁଡ଼ିବାର ଶବ୍ଦ ଶୁଣିଲି । ସେ ଆସି ମୋ ସାମ୍ନାରେ ଠିଆହେଲା । କହିଲା, ''ଦେଖ ତାପସ୍ ! ମୋତେ ଆଜି ଆଉ ବେଳ ନାହିଁ । ଆଉ କେବେ ଆସି ସବୁ କହିବି । ଦୁଇଟାରୁ ତିନିଟା ଭିତରେ ଆଉ ଜଣେ ମୋତେ ଅପେକ୍ଷା କରିଥିବ ! ମୁଁ ଯାଏ ! ଆଉ ଏ ଜାମାଟା ତୋ' ପାଖରେ ପକେଇଯିବା ମୋ ଯୋଜନାରେ ନାହିଁ । ମୁଁ ଛାଡ଼ିଯିବାର ପ୍ରସ୍ତାବ ଦେଲାବେଳେ ତୁ ଆଦୌ ପ୍ରତିବାଦ କଲୁ ନାହିଁ; ବୋଧହୁଏ ମୋ ଖାତିର୍‌ରେ; କିମ୍ବା ହୁଏତ ତୁ ଜାଣିପାରିଲୁ ନାହିଁ ସେଥିରେ ବିପଦ କେତେ । ତୋତେ ବିପଦରେ ପକେଇବା ମୋର ଇଚ୍ଛା ନୁହେଁ ।''

''କି ପ୍ରକାର ବିପଦ, ତୁ ଖୋଲି କହୁନାହୁଁ କାହିଁକି ? ଯଦି ବିପଦ ଥିଲା, ତୁ ମୋ ପାଖକୁ କାହିଁକି ଆସୁଥିଲୁ ?''

''ଯାଠୁ ବଳି ଆଉ ନିରାପଦ ଜାଗା ମୋ ପାଇଁ କାହିଁ ? କେହି କ'ଣ ଭାବିପାରିବ ଯେ ମୁଁ ପ୍ରହରାଜ ସାହେବଙ୍କ ଘରେ ଥାଇପାରେ !''

''ତୁ କ'ଣ ଏଠି ଆସି ଲୁଚିଥିଲୁ ?''

''ଧରାଯାଉ ଲୁଚିଥିଲି !''

ତା'ପର ପ୍ରଶ୍ନ ମୋ ଜିଭ ଅଗରେ ଇତସ୍ତତଃ ହେଲା । ମୁଁ ପଚାରିନପାରି ଛଟପଟ ହେଲି ।

''ହଁ, ଧର ତୁ ଯାହା ପଚାରିପାରୁନାହୁଁ ମୁଁ ଯଦି ସେଇଆ କରିଥାଏ ।''

''ମାନେ . . .''

''ମାନେ ଖୁଣ୍ କରିଥାଏ !''

ମୁଁ ଧଡ଼ାସ୍‌କିନା ଠିଆ ହୋଇ ପଡ଼ିଲି । ''ଅସମ୍ଭବ . . . !!''

ସେ ମୋତେ ଆସ୍ତେ ବସେଇଦେଇ କହିଲା, ''ବରଂ ଖୁବ୍ ସମ୍ଭବ । ମଣିଷଟାକୁ ଖୁନ୍ କରିବାଠୁ ବଳି ଆଉ ସହଜ କାର୍ଯ୍ୟ କିଛି ନାହିଁ ।''

ମୁଁ ଖୁବ୍ କଷ୍ଟରେ ସମ୍ଭାଳି ରହିଲି । ଜାଣିପାରିଲି ନାହିଁ ତା'ପରେ କ'ଣ କହିବି ।

ସେ କାଛକୁ ସ୍ଥିର ଆଖିରେ ଚାହିଁରହି କହିଲା, ''ତୁ ସେ କଥା ବୁଝିପାରିବୁ ନାହିଁ; କାରଣ ତୁ ସେ ଦିଗଟାକୁ ଜମା ଦେଖିନାହୁଁ । ସେ ସବୁ କହିବାକୁ ବେଳ ନାହିଁ । ତାପସ୍, ତୋର ବି ସହିବାକୁ ବଳ ନାହିଁ । ମୁଁ ଯାଏଁ – ତୁ ଜାଣୁ ମୁଁ ତୋ ଭଳି ସହଜ ରାସ୍ତାରେ ପାହାଡ଼ ଚଢ଼େ ନାହିଁ ।''

''ତା' ଠିକ୍, ମୁଁ ବି ଖୁନ୍ କରିପାରେ ନାହିଁ ।''

''କିନ୍ତୁ ପଡ଼ିଶା ଘରେ ଖୁନ୍ ହେଲେ ନିର୍ବିକାର ସହିଯାଇପାରୁ !''

''ତତେ କିଏ କହିଲା ମୁଁ ସହିଯାଏ ବୋଲି ?''

''ଯଥେଷ୍ଟ ପ୍ରମାଣ ରହିଛି ।''

"ଭୁଲ୍ କଥା ! ତୁ ଜାଣୁ, ମୁଁ ପୁଲିସକୁ ଯେକୌଣସି ମୁହୂର୍ତ୍ତରେ ଡକାଇ ଆଣିପାରେ ।

"ତା' ଜାଣେ । କିନ୍ତୁ କାହିଁକି ଡାକିପାରୁନାହୁଁ ତା' ବି ଜାଣେ ! ଶୁଣ୍ ତାପସ୍ । ତୋ ବିଚାରରେ ପ୍ରତ୍ୟେକ ଅପରାଧୀ ଦଣ୍ଡ ପାଇବା ଉଚିତ । ତୁ ଶୁଣି ହୁଏତ ଖୁସି ହେବୁ ଯେ, ମୁଁ ବି ଅବିକଳ ସେଇଆ ଚାହେଁ । ଅସୁବିଧାଟା କୋଉଠି, ଜାଣିଚୁ ? ଏଇ ଅପରାଧୀ ଚିହ୍ନିବାରେ ଆଉ ଦଣ୍ଡ ଦେବା ପାଇଁ ତୁମମାନଙ୍କର ସହଜିଆ ଢଙ୍ଗରେ । ଏଇ ଦେଖ୍, ତୁ ଯଦି ଜାଣିଲୁ ମୁଁ ଖୁନୀ ବୋଲି, ମୋତେ ଏଇଠି ତୁ ନିଜେ ଖୁନ୍ କରିଦେଇପାରିବୁ ? ନା, ତା କରିବାକୁ ବୁକୁରେ ବଳ ନାଇଁ । ପୋଲିସ୍ ଆସିବ । ବାନ୍ଧି ନେବ । ଓକିଲ ଜଜ୍ ମିଶି ଗୋଟାଏ ପ୍ରହସନ କରିବେ । ତା' ପରେ ମାନେ ବର୍ଷେ, ଦୁଇ ବର୍ଷ, ପାଞ୍ଚ ବର୍ଷ ପରେ, ଗୋଟାଏ ଦିନ ପାହାନ୍ତିଆରୁ ଲୋକଟାକୁ ପଛଆଡ଼େ ହାତ ବାନ୍ଧି ବେକରେ ଦଉଡ଼ି ଲଗେଇ ମାରିବ । ଏଥିରେ ତୋର ସନ୍ତୋଷ ଯେ, ଯାହାହେଉ ଅପରାଧୀ ଦଣ୍ଡପାଇଗଲା । ତୁ ତୋର କର୍ତ୍ତବ୍ୟ କରିଦେଲୁ । ବାଃ . . . ରେ ବାହାଦୁର । . . . ହଉ ଛାଡ଼, ତୁ କି ଚିହ୍ନିବୁ ଅପରାଧୀ । ତୁ କି ଦେବୁ ଦଣ୍ଡ ! . . . ମୁଁ ଯାଏଁ । ମୋର ବେଳ ନାହିଁ ।"

ସେ ଓଦା ଜାମାଟାକୁ ଫିଟେଇ ଅଣ୍ଟାରେ ବାନ୍ଧିଲା । ଖାଲି ପାଦ, ଖାଲି ଦେହ, ନୁଖୁରା ମୁଣ୍ଡ, ଅତି ସାଧାରଣ ମଣିଷଟା, ଅପରାଧୀଟା – ତଥାପି ବିଲ୍ଲୀପ ଚାନ୍ଦ ଗୋଟାଏ ଠାଣି, ସେ ଗୋଟାଏ ଚାହାଣି, ତାକୁ ଅସ୍ୱୀକାର କରିବା କଷ୍ଟ ।

ସେ ନିଃଶବ୍ଦରେ, ଦାଣ୍ଡକବାଟ ଖୋଲି ପଦାକୁ ବାହାରିଗଲା । ଅନ୍ଧାରରେ କୁଆଡ଼େ ମିଳେଇଗଲା ।

ସମୟ ରାତି ଦୁଇଟା କୋଡ଼ିଏ ।

ମୁଁ ହଠାତ୍ ଖୁବ୍ କ୍ଳାନ୍ତ ବୋଧକଲି । ମୋର ଦେହମୁଣ୍ଡରୁ ଜିଅ ଛାଡ଼ିଗଲା । ମୁଁ ଟଳମଳ ହୋଇ ଆସି ସୋଫାଉପରେ ଆଖି ବୁଜି କୁଢ଼େଇ ହୋଇ ପଡ଼ିଲି । ଟିକିଏ ଶୋଇପାରିଥିଲେ ହୁଏତ ଭଲଲାଗିଥାନ୍ତା । ନିଦ ହେଲା ନାହିଁ ! ଅସ୍ୱସ୍ତି ବଢ଼ିଲା, କ୍ଳାନ୍ତି ବଢ଼ିଲା । ମୁଁ ଖୁବ୍ ଚିଡ଼ିଗଲି । ମୋ ଦେହ ନିଆଁଧାସରେ ତାତିଲାପରି ଝାଳେଇଗଲା । ଠିଆହୋଇ ପଙ୍ଖା ସ୍ୱିଚ୍ ଟିପିବା ପାଇଁ ମଧ ମୋର ପ୍ରବୃତ୍ତି ହେଲା ନାହିଁ । ମୁଁ ସେମିତି ପଡ଼ିରହିଲି ନିଚେଷ୍ଟଭାବେ ।

ମୁଁ ଚମକି ଉଠିଲି । ଦାଣ୍ଡଆଡୁ ପାଟିତୁଣ୍ଡ ଚିତ୍କାର ଶୁଭୁଥିଲା । ମୋର କଲିଜା ଆସି ପଞ୍ଜରାରେ ପିଟିହେଉଥିଲା । ଗୋଡ଼ ପକ୍ଷୀଡେଣା ପରି ଫଡ଼୍‌ଫଡ଼୍ ଥରୁଥିଲା । ମୁଁ କୌଣସିମତେ ବାଳକନିଯାଏଁ ପହଞ୍ଚିଗଲି ।

"ଖୁନ୍, ଖୁନ୍ ହୋଇଗଲା; ପୁଲିସ୍ ଡାକ । ପୁଲିସ୍ – ପୁଲିସ୍ ।"

"ଆହେ କାହାର ଖୁନ୍ ହୋଇଗଲା ?" ମୁଁ ସାମାନ୍ୟ ବିରକ୍ତିରେ ତଳକୁ ଚାହିଁ ପଚାରିଦେଲି ।

ଅନ୍ଧାରରେ ଧାଉଁଥିବା ପାଦଶବ୍ଦ ଦୃମ୍‌ଦୃମ୍ ପାରିହେଇଗଲେ – ସେ ଛକ ପାଖରେ ପାଟିତୁଣ୍ଡ । ସେଇଠି ହତ୍ୟା । ସେଇଠି ଅପରାଧ । ମୋର ପ୍ରବଳ ଉତ୍କଣ୍ଠା ହେଲା ଯାଇ ଦେଖିବାକୁ । ପୁଣି ଭୟ ହେଲା । ଇଜ୍ଜତ୍, ସମ୍ମାନ, ଦାମୀ ଅଫିସର୍ ! . . . ମୁଁ ଘଣ୍ଟାକୁ ଚାହିଁଲି । ସମୟ ତିନିଟା ।

ହୁଳାଟାଏ ଖସିଗଲା ତାଳୁରୁ ତଳିପାଯାଏଁ । କିଛି ସମୟ ପୂର୍ବରୁ ଦିଲ୍ଲୀପ୍ ଚାନ୍ଦ କହୁଥିଲା, ''ଦୁଇଟାରୁ ତିନିଟା ଭିତରେ ଆଉ ଜଣେ ଅପେକ୍ଷା କରିଥିବ !'' ମାଇ ଗଡ୍ ! ସେ କ'ଣ ଏହାରି କଥା କହୁଥିଲା ?

. . . ''ମଣିଷଟାକୁ ହତ୍ୟା କରିବାଠୁ ବଳି ଆଉ ସହଜ କିଛି ନାହିଁ ।''

. . . କି ଭୟଙ୍କର !!

ମୁଁ ଟଳିଟଳି ପୁଣି ସୋଫା ଉପରକୁ ଫେରିଆସିଲି ।

ବାଘ ଆସି ଚାଲିଯାଇଛି । ପାହୁଲ-ଚିହ୍ନ ପଡ଼ିଛି ଘରସାରା । ହିଂସ୍ର ଜାନୁଆର୍ । ତାକୁ ଏଣିକି ଦେଖିଲାମାତ୍ରେ ଗୁଳି କରାଯାଇପାରେ । ଅଥବା ପୁଲିସକୁ କୁହାଯାଇପାରେ ଗୁଳି ମାରିବାକୁ ! – ଇଡିଅଟ୍ !

ମୁଁ ଘୋର ଅସୁସ୍ଥ ବୋଧ କଲି । ଗେଷ୍ଟ ରୁମ୍‌ରେ ପହଞ୍ଚି, ଅଇଁଠା ଟ୍ରେଟାକୁ ଉଠେଇବାକୁ ହାତ ବଢ଼େଇଲି । ଘୃଣ୍ଣ ଆସିଲି । ବାଥ୍ ରୁମ୍‌ରେ ଅନେକ ସମୟ ପାଣି ଖୋଲି ଗୋଡ଼ରେ ଚଟାଣରୁ ଅଦୃଶ୍ୟ ଦାଗକୁ ଲିଭେଇଲି । ଅସଂଖ୍ୟ ଥର ଗେଷ୍ଟ ରୁମ୍‌ରୁ ଡ୍ରଇଂ ରୁମ୍‌କୁ ଗଲି ଏବଂ ଆସିଲି । ଖୁବ୍ ପାଟି କରି ରାସ୍ତାରୁ କିଏ କହିଲା, ''ହେ ତାପସ୍ ବାବୁ, ଆପଣଙ୍କ ଗେଟ୍‌ଟା ମେଲା ହେଇଚି । ବଗିଚାରେ ବୁଲା ଗୋରୁ ପଶି ସବୁ ଖାଇଗଲେଣି । ହୁସ୍, ହାସ୍ . . . ଯାଃ . . . । ମୁଁ ଫେରିଆସେ ଅନେକ କଥା କହିବି ।''

ମୁଁ ବାଲ୍‌କନି ପାଖକୁ ଆସି ଦେଖିଲି ଯେ ରାତି ପାହିଗଲାଣି । ଜଗଦୀଶ୍ ବାବୁ ହାଫ୍‌ପେଣ୍ଟ ପିନ୍ଧି ବୁଲି ବାହାରିଲେଣି । ସେ ମୋ ବାରିରୁ ଗୋରୁ ତଡ଼ିପାରିଲେ ନାହିଁ । ସେ କାର୍ଯ୍ୟ ମାଳି ଆସିବାଯାଏଁ ରହିବ ନା ମୁଁ କରିବି ! ଠିଆ ହେଇ ଭାବିଲି । ମୋତେ ଦେଖି ଜଗଦୀଶ ବାବୁ, ଗାଈତଡ଼ା ଦାୟିତ୍ୱ ମୋତେ ଦେଇ ଚାଲିଗଲେ ।

ମୋତେ କିନ୍ତୁ ଅନେକ ଭଲ ଲାଗୁଥିଲା । ଆଲୁଅ ହେଇଯାଇଥିଲା ଚାରିଆଡ଼ । ଆଗ ଛକରେ ପୁଲିସ ଗାଡ଼ି ଦିଶୁଥାଏ । ମୋର ଆଦୌ ଆଗ୍ରହ ନ ଥାଏ ଯିବାପାଇଁ । ମୁଁ ସେମିତି ଠିଆହୋଇଥାଏ ଉତୁରି ଆସୁଥିବା ଆଲୁଅକୁ ଚାହିଁ ଚାହିଁ ।

ପଛରୁ ଶୁଭିଲା, ''ଆସ ଚା' ଖାଇବ ?''

ମୁଁ ଭୁସ୍‌କିନା ବୁଲିପଡ଼ିଲି । ରାଗିଗଲି । ''ଏମିତି ଗୋଟାଏ କ'ଣ ଡାକୁଛ ?''

ମୋ ସ୍ତ୍ରୀ ମୋତେ ଡରିଲା ଡରିଲା ଆଖିରେ ଚାହିଁଲେ ।

ମୁଁ ହୁଏତ ରାତିସାରା ନ ଶୋଇ ନିଶା ଖାଇଚି; ନାନା ଅପକର୍ମ କରିଛି । ସେ ଆସ୍ତେ ଡ୍ରଇଂ ରୁମ୍‌କୁ ଚାଲିଗଲେ । ମୁଁ ଯାଇ ଗୁମ୍‌ମାରି ବସିଲି । ଆମେ ନୀରବରେ ଚା' ପିଇଲୁ । ମୋର ସମସ୍ତ ସ୍ନାୟୁ ତଥାପି ଟାଣି ହୋଇ ରହିଥାଏ ।

"ହେ ତାପସ୍ ବାବୁ !" – ଜଗଦୀଶ ପାଣ୍ଡିଆଙ୍କ ସ୍ୱର । ମୋ ହାତରୁ ଚା' କପ୍‌ଟା ଖସିପଡ଼ିଥାନ୍ତା । ମୁଁ ତାଙ୍କୁ ପାଛୋଟି ଆଣିବାକୁ ଯାଉଁ ଯାଉଁ ସେ ପଶିଆସିଥିଲେ ।

"ଶୁଣିଲେଣିତ, କାଲି ରାତିରେ ଯାହା ସବୁ ବିଚିତ୍ର କାଣ୍ଡ ଘଟିଗଲା ।" ମୁଁ ବୋଧେ ସେଇଠି ପଥର ପାଲଟିଯାଇଥାନ୍ତି, ବାଲିବସ୍ତା ପରି ଭାରି ପାଦ ଘୋଷାରି ଘୋଷାରି ମୁଁ ତାଙ୍କ ପଛେ ପଛେ ଆସିଲି । ସେ ଗେଷ୍ଟ ରୁମ୍ ଆଡ଼େ ମୁହାଁଇ ଯାଉଥିଲେ । ମୁଁ ପ୍ରୟୋଜନରୁ ଅଧିକ ବଳ ପ୍ରୟୋଗ କରି ତାଙ୍କୁ ଡ୍ରଇଂରୁମ୍ ଆଡ଼କୁ ଆଗେଇଆଣିଲି ।

"କାଲି ବଡ଼ ବିଚିତ୍ର ଘଟଣା ସବୁ ଘଟିଲା । ଏ ମୁଲକରେ ଆଉ ରହି ହେବ ନାହିଁ । ରାତି ବୋଧହୁଏ ନଅଟା । ସୁରୁଯା ପାତ୍ରର ବାରବର୍ଷର ପୁଅଟାକୁ, ଦୁର୍ଗାମଣ୍ଡପ ଛକ ପାଖରେ କିଏ ଗୋଟାଏ ଛୁରୀ ଭୁଷିଦେଲା । ସେ ଟୋକାଟା ତଳେ ପଡ଼ି ଛଟପଟ ହଉଥାଏ । ଲୋକେ ହାଉହାଉ ହଉଥାନ୍ତି । କିଏ ଜଣେ ଆସି ପିଲାଟାକୁ ଟେକିନେଲା ଡାକ୍ତରଖାନାଯାଏଁ . . . । ସେଇଠି ନ ପହଞ୍ଚିଥିଲେ ପିଲାଟା ମରିଯାଇଥାନ୍ତା । ସେ ଲୋକଟା କାହା ସଙ୍ଗେ କଥାହେଇନାହିଁ; କେହି ତା' ମୁହଁକୁ ଅନେଇ ନାହାନ୍ତି । ଖୋଜିବା ବେଳକୁ ସେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଛି । ଏବେ ପୁଅ ପାଖରୁ ସୁରୁଯା ଫେରିଲା ଲୁଗାପଟା ନବାକୁ । କାଇଁକି ଫେରିଲା କେଜାଣି ? ସେ ଘରେ ପଶୁ ପଶୁ ତାକୁ କିଏ ଛୁରୀ ମାରିଦେଲା । ସେ ସେଇଠି ମରିଗଲା ।

ପୁଲିସ କହୁଛି, ସୁରୁଯା ପାତ୍ରକୁ ଚିଠି ମିଳିଥିଲା । ତା'ର ଅନେକ ଅଜଣା ଅପରାଧର ତାଲିକା କୁଆଡ଼େ ଥିଲା । ସେ ପୁଲିସ୍‌କୁ ସେତକ ଦେଖେଇନାହିଁ । . . . କ'ଣ ବୁଝୁଛନ୍ତି ତ' କଥାଟା ?"

ମୁଁ ବୋଧହୁଏ ଅନ୍ୟମନସ୍କ, କିମ୍ବା ଆତଙ୍କିତ ଦେଖାଯାଉଥିଲି; ବୋଧହୁଏ ରାତିସାରା ଶୋଇ ନ ଥିବାରୁ ସେଭଳି ଦେଖାଯାଉଥିଲି ।

"ଆଉ ଶୁଣନ୍ତୁ ! ପାତ୍ରକୁ ମିଶେଇଲେ ଏଭଳି ସାତଟା ହତ୍ୟାକାଣ୍ଡ ହେଇଗଲାଣି । ତାଲିକାରେ କୁଆଡ଼େ ମୋ ନାଁ ବି ଅଛି । ହେଃ, ହେଃ, ମୋଠି ସେମାନେ କ'ଣ ପ୍ରମାଣ କରିପାରିବେ ? ମୋର କାଗଜପତ୍ର ସବୁ ଦୋରସ୍ତ । ସୁପ୍ରିମ୍ କୋର୍ଟକୁ ମଧ ମୋର ଡର ନାହିଁ – ସେମାନେ କିନ୍ତୁ ଖୁବ୍ ଖୋଜଖବର ରଖୁଛନ୍ତି; ରଖନ୍ତୁ । କ'ଣ ଅପରାଧ କରିଥିଲେ ସିନା ମୋର ଡର ଥାଆନ୍ତା ।"

ସେ ଅସୁସ୍ଥ ବୋଧ କଲେ । ଉଠି ଠିଆହେଲେ ଯିବା ପାଇଁ । "କେହି ଜାଣିପାରୁନାହାନ୍ତି କିଛି । ନିହାତି ଅପାରଗ ପୁଲିସ୍ । ଏଠି କେହି ନିରାପଦ ନୁହେଁ, ଜାଣିଥାନ୍ତୁ । . . . "

ମୁଁ ଭାଗ ଭାଗ ହେଇଯାଉଥିଲି । କିଏ ଟେକିନେଲା ପିଲାଟିକୁ ଡାକ୍ତରଖାନା ?? କିଏ ପୁଣି ତା' ବାପକୁ ଖୁନ୍ କରିଦେଲା ସେଇ ରାତିରେ ? ପୁଲିସ୍‌କୁ ସବୁ କଥା କହିଦେଲେ କେମିତି ହୁଅନ୍ତା ?

ପୁଲିସ୍ ତାକୁ ଧରି ଫାଶୀ ଦେଇପାରେ !

. . .ନା, କିଛି ନ ଜାଣିଲା ପରି ଚୁପ୍ ରହିଗଲେ କ୍ଷତି କ'ଣ ? ଦିଲ୍ଲୀପ୍ ସେମିତି ପାହାଡ଼ ଚଢ଼ୁ ବାଘ ହାବୁଡ଼ରେ ପଡ଼ିବାଯାଏଁ; ଶିଖ ପାଖରୁ ଗୋଡ଼ ଖସିଯିବାଯାଏଁ । ସେମିତି ସେ ଅବଶ୍ୟ ଯିବ । ତାକୁ ରୋକି ହବନାହିଁ ।

ଦୁଆରବନ୍ଧ ପାଖରୁ ଜଗଦୀଶ ବାବୁ ପୁଣି ବୁଲିପଡ଼ି କହିଲେ – ''ଆଉ ବିଚିତ୍ର କଥା ଶୁଣନ୍ତୁ । ପାଦ୍ରର ବଗିଚା ପାଖରେ ଆଉ ଗୋଟେ ଲାସ୍ ମିଳିଛି । ସେ କୁଆଡ଼େ ଜାମାଟାକୁ ଫିଟେଇ ଅଣ୍ଟାରେ ଗୁଡ଼େଇଛି । ତାକୁ କେହି ଚିହ୍ନିପାରୁନାହାନ୍ତି ।''

ଧପ୍‌କରି କ'ଣଟାଏ ଜଳିଉଠିଲା ମୋ ଭିତରେ । କୁଢ଼େଇ ହୋଇଗଲା କ'ଣ ସବୁ । ''ମୁଁ ଦେଖିଲେ ଚିହ୍ନିଦେବି ।'' – ମୁଁ କେମିତି କହିଲି କେଜାଣି, ମୁଁ ବୋଧେ ମୋ କଲିଜାଟାକୁ ପାପୁଲିରେ ଟେକିଧରିଲି ଜଗଦୀଶ ବାବୁଙ୍କ ଆଗରେ ।

ସେ ଏଡ଼େଟାମାନ ଆଖି କରି ମୋତେ ଚାହିଁଲେ । ବିଚିତ୍ର ଢଙ୍ଗରେ ହସି ପ୍ରଶଂସା କଲେ । ''ଠିକ୍ ଅଛି, ମୁଁ ପୁଲିସ୍‌କୁ କହିଦଉଚି ।'' – ସେ ଟୋକାଳିଆ ଢଙ୍ଗରେ ପାହାଚ ଓହ୍ଲେଇଗଲେ ଡେଇଁଲା ପରି ।

ମୁଁ ବୋଧହୁଏ ଆଉ ପୃଥିବୀରେ ପାଦ ଦେଇ ଠିଆହୋଇପାରିଲି ନାହିଁ । ଗେଷ୍ଟରୁମ୍‌ର ପଟାଖଟ ଉପରେ ଅଣ୍ଡାଳି ଅଣ୍ଡାଳି ବସିପଡ଼ିଲି । ମୁହଁ ଘୋଡ଼େଇ ପିଲାଙ୍କ ପରି କାନ୍ଦିଲି ଅନେକ ସମୟ । ମୋ ସ୍ତ୍ରୀ ମୋ ପାଇଁ ଖୁବ୍ ଉଦ୍‌ବିଗ୍ନ ହୋଇପଡୁଥିଲେ; କିନ୍ତୁ ମୋର କୌଣସି ମରିବାର ଲକ୍ଷଣ ନ ଥିଲା । ମୁଁ ପରା ଖୋଦ୍ ସରକାରଙ୍କ ଦାମୀ ଅଫିସର !

– ଏବଂ ଆଜି ନଅଟାବେଳେ ମୁଁ ସଦର ଥାନାରେ ବୟାନ୍ ଦେବାକୁ ଯିବି !

□□□

# କନା କଣ୍ଢେଇ

ଏଇ ଅଶିଣ ମାସରେହିଁ ଅମର ହୋଇଯିବାକୁ ଇଚ୍ଛା ହୁଏ । ଏତେ ନିର୍ମଳ ସକାଳ ଏବଂ ଏଡ଼ିକି ସ୍ୱଚ୍ଛ ସନ୍ଧ୍ୟା ଛାଡ଼ିଯିବାକୁ ଇଚ୍ଛା ହୁଏନାହିଁ – ସେଥିପାଇଁ ମୁଁ ପରମାୟୁ କହିଲେ ଏଇ ଅଶିଣର ସୁନାକଣିଗୁଡ଼ିକୁ ଗଣତି କରେ ଏବଂ ବର୍ଷର ବାକି ମାସଗୁଡ଼ିକୁ କେବଳ ସହିଯାଏ ଏହାରି ଖାତିର୍‌ରେ !

ମୋର ଦୁଃଖ ଯେ, ଚାକିରି ଖାତିର୍‌ରେ ବି ମୋତେ ପ୍ରବାସରେ ଏକୁଟିଆ ରହିବାକୁ ପଡ଼େ; ଏବେ ଯେମିତି ରହିଛି । ପ୍ରତି ସପ୍ତାହରେ ଚିଠି ଲେଖୁଛି ଘରକୁ । ଶେଷ ଚିଠିଗୁଡ଼ିକ କେବଳ ନୀଡ଼କୁ ଫେରିଯିବା ପାଇଁ ଉଦ୍‌ବିଗ୍ନ ପକ୍ଷୀର ଡାକ । ଆଜିଠୁ ଆଉ ମାତ୍ର ଚାରିଦିନ; ଯାତ୍ରା ପାଇଁ ସବୁ ପ୍ରସ୍ତୁତି ହୋଇଗଲାଣି । ମନରେ କେବଳ ଛନଛନ ଜହ୍ନରାତି । କେମିତି ଏଇଠୁ ଚଞ୍ଚଳ ଉଡ଼ିଯିବା । କଥାବାର୍ତ୍ତାରେ ସେଥିପାଇଁ ଆଦୌ ଆଗ୍ରହ ନାହିଁ । କାମ କଲାବେଳେ ଅନ୍ୟମନସ୍କ ହୋଇଯାଉଛି । ଅଶିଣ ବୋଧହୁଏ ଯୌବନକୁ ଉତ୍ତେଜିତ କରି ରଖେ; ଜରା ମରଣକୁ ବାଟ ରୋଧି ଆସିବାକୁ ଦିଏ ନାହିଁ ।

ଏଠୁ ବିଦାୟ ନେଇଗଲେ ମୋର ମନେପଡ଼ିଲା ଭଳି ବୋଧହୁଏ କେହି ନାହାନ୍ତି । କେବଳ ସେ ରସିକ ବୁଢ଼ା ରାମି ମଉସା । ବିଶେଷ କରି ଗତ ପଅର ଦିନର ଘଟଣା ଜନ୍ମା ଭୁଲିବାର ନୁହେଁ । ରାମି ମଉସା ତ ଏମିତି ଭାରି ଏକୁଟିଆ ମଣିଷଟିଏ । କଣ୍ଢେଇ ଗଢ଼ି ବିକ୍ରି କରେ । କନା, ମାଟି, କାଠର ଜାତି ଜାତି କଣ୍ଢେଇ । ସୁନ୍ଦର କାଠକଣ୍ଢେଇଟିଏ ମତେ ଦେଇଛି । ପଇସା ନବାକୁ ମନା କରିଦେଇଛି । ଅଜବ ମଣିଷ ! କି ରେ, ମୋ ଝିଅ ଖେଳିଲେ ତୋ'ର ସେଥିରେ କ'ଣ ପେଟ ପୂରିଯିବ ! ଅନେକ ସନ୍ଧ୍ୟା ମୋ ସାଙ୍ଗରେ ସେ ବିତେଇଛି । କହୁଥିଲା, ସେ କୁଆଡ଼େ ବେହେଲା ବଜେଇବା ଶିଖିଛି; ପଇସା ନାହିଁ ବୋଲି କିଣିପାରିନାହିଁ । ଆଉ କେବେ କିଣିବ ? ଗିର୍ଜାରେ ସନ୍ଧ୍ୟାଘଣ୍ଟା ବାଜିଲେ ? ରାମି ମଉସା ପାଇଁ ବେଳେବେଳେ ମୋର ମନ ଘାଣ୍ଟି ହୁଏ ।

ହଁ ରାମି ମଉସା ଖ୍ରୀଷ୍ଟିଆନ୍ । ଶିଶୁକାଠର ଖୁବ୍ ପାତଳ କ୍ରୁଶଟିଏ ନିଜେ ତିଆରି କରି ବେକରେ ଝୁଲେଇଥାଏ । ପ୍ରାୟ ସବୁବେଳେ ପାଇଜାମା ପଞ୍ଜାବି ପିନ୍ଧିଥାଏ । ବାବୁରି ବାଳ, ଓହଳ ନିଶ, ନରମ ନୁଆଣିଆ ଭୁଲତା । ଖୁବ୍ ଅଳ୍ପ ହସେ, ହସାଏ ତା'ଠୁ ବେଶି । ସିଗ୍ରେଟ୍ ଟାଣେ । ବେଳ ପଡ଼ିଲେ ଟିକିଏ ନିଶା ଖାଏ । ପାନ ଜନ୍ମା ଚୋବାଏ ନାହିଁ କି ଶାଗ ଖାଏ ନାହିଁ । କହେ, ସେଥିରେ କୁଆଡ଼େ ତାକୁ ଗୋରୁଭଳି ଲାଗେ । ସେଥିପାଇଁ ସେ ପାନ ପାକୁଳି କରେନାହିଁ, କି ଘାସ ଭଳି ଶାଗଗୁଡ଼ାଏ ଶିଝାଇ ଖାଏ ନାହିଁ ।

କିନ୍ତୁ ମାଇକିନାଙ୍କ ପାଖ ପଶେ ନାହିଁ । ତାଙ୍କୁ ଦେଖିଲେ କେମିତି ଘାବରେଇଯାଏ । କଣ୍ଢେଇ ଦରଦାମ ଗୋଳମାଳ କରିପକାଏ । ସବୁ କଣ୍ଢେଇ ତଳେ ଦାମ ଆଗରୁ ଲେଖିରଖିବାକୁ ମୁଁ କହିଥିଲି । ସେଇଟା ତାକୁ ସୁବିଧା ହୁଏ । ସେ ସ୍ତ୍ରୀଲୋକମାନଙ୍କୁ କଣ୍ଢେଇର ଚକିପାଖ ଟେକି ଦେଖାଇଦିଏ । ମହିଳା ଗରାକମାନେ ରାମି ମଉସାକୁ କିନ୍ତୁ ଭଲପାଆନ୍ତି ବୋଲି ମୋର ଧାରଣା । ତା' ସହିତ ସେମାନେ ହୁଏତ ଖୁବ୍ ଗପିବାକୁ ଚାହାନ୍ତି; କିନ୍ତୁ ରାମି ମଉସା ଧରାଦିଏ ନାହିଁ । ଖାଲି ଲାଜାଏ । ପଦକରେ ଛିଣ୍ଡେଇଦିଏ । ତଳକୁ ମୁହଁ ପୋତି ବସିଯାଏ ।

ରାମି ମଉସା କିନ୍ତୁ ଟୋକା ମନକୁ ରଞ୍ଜେଇଲା ଭଳି ଅନେକ ମଜା ମଜା ରସରସିଆ କଥା କହିପାରେ; ହେଲେ ସୁଦ୍ଧା ମୋତେ ଅନେକ ଦିନ କୁକୁଡ଼ା ରାନ୍ଧି ଖୁଆଏ ଏବଂ ଗପେ । ମୁଁ କାହିଁକି ପରିବାର ଆଣୁନାହିଁ ବୋଲି ମିଠା ମିଠା ଗାଳି ଶୁଣାଏ – 'ଆରେ ବେକୁବ୍, ଏଡ଼େ ବର୍ଷାଦିନ ଚାଲିଗଲା, ତୁ କେମିତି ଦିନ ବିତେଇଲୁ, କେମିତି ରାତି ବିତେଇଲୁ ଏ ପ୍ରବାସରେ ? ଛୁଟି ମାଗି ପଳେଇଲୁ ନାହିଁ ? ଇଡ଼ିଅଟ୍ ଆଉ କାହାକୁ କହନ୍ତି ?' ସେ ମୋତେ ଏଇ ଅଶିଣ ମାସ ଭଳି ଉତ୍ତେଜିତ କରିଛି, ଚିଠି ଲେଖେଇଛି, ସ୍ୱପ୍ନ ଦେଖେଇ ଉତଳା କରିଛି । ମୁଁ ଅନେକ ବାର ଚିଡ଼େଇଲା ପରି କହିଛି, ''ଦେଖ ରାମି ମଉସା, ଯେ ଯେତିକି ସେ ସେତିକିରେ ରହିବା ଉଚିତ । ତମେ୍ଂ ତ ଏଯାଏଁ ବାଡୁଅ ରହିଲ । ତମେ କ'ଣ ବୁଝିବ ସ୍ତ୍ରୀ-ପୁରୁଷଙ୍କର ସେ ଗହନ କଥା ? ତମେ ତ ମାଇକିନିଆଁ ଦେଖିଲେ ଛାନିଆଁ ! ଆମେ କ'ଣ ଜାଣିନୁ ତମ ମର୍ଦପଣ !''

ରାମି ମଉସାକୁ ଏମିତି ଗାଳି ଭଲ ଲାଗେ ନା କ'ଣ ! ସେ ଅଳ୍ପ ହସିଦିଏ । ଅନେକେ ମୋ ଆଗରୁ ହୁଏତ ପଚାରିଥିଲେ, ମୁଁ ବି ଥରେ ପଚାରିଥିଲି, ''ଆଚ୍ଛା, ତମେ କ'ଣ ଟୋକା ବୟସରେ ନିଆଁକୁ ଆଙ୍ଗୁଠି ଦେଖେଇନ ? ତମର ଗୁମର ଫିଟାଇ କହୁନ କଥାଟା !''

ସେ ଜନ୍ମା ସେ ବିଷୟରେ ପାଟି ଫିଟାଇ ନଥିଲା, ମୋତେ ‑ କିଛି କହିନଥିଲା ।

କିନ୍ତୁ ଗତ ପଅରଦିନ କଥା ।

ସଞ୍ଜବେଳେ ପବନଟା ବହୁଥାଏ ହୁ-ହୁ । କେମିତି ଗୋଟାଏ ବାତୁଳିଆ ଉନ୍ମତ୍ତିଆ ପବନ । ମନ ହେଉଥାଏ ପିଲାଙ୍କ ପରି ଧାଇଁବାକୁ । ମୁଁ ଦେଖିଲି ରାମି ମଉସା ଦୁଆର ସାମ୍ନାରେ କଳା ମଚମଚ ଗାଡ଼ିଟିଏ ଆସି ଠିଆହେଲା । ମୋର କୌତୂହଳ ହେଲା ଦେଖିବାକୁ, ସେ କିଏ ଏମିତି ଗାଡ଼ିରେ କଣ୍ଢେଇ କିଣିବାକୁ ଆସିଛି । ମୁଁ ଚାଲ ଚାଲ ହେଇ ସେଇଠି ପହଞ୍ଚିଲାବେଳକୁ ଯାହା ଦେଖିଲି, ବିଶ୍ୱାସ କରିପାରିଲି ନାହିଁ । ଖୁବ୍ ଦାମୀ ମୁଲାଏମ ରଙ୍ଗର ଶାଢ଼ି ପିନ୍ଧି ଜଣେ ଭଦ୍ରମହିଳା – ବୟସ ଅନ୍ଦାଜ ଚାଳିଶ – ଅନେକ ବେଶି ବି ହୋଇପାରେ – ଗାଡ଼ିରୁ ଓହ୍ଲେଇ ଠିଆ ହେଇଥାନ୍ତି । ଏବେ ବି ତାଙ୍କୁ ସୁନ୍ଦରୀ ନ କହି ଉପାୟ ନାହିଁ । ଖୁବ୍ ଅସାମାନ୍ୟା । ତାଙ୍କ ପାଖରେ ସାଏବ୍

ଛୁଆପରି ଦୁଇଟି ପିଲା । ସେମାନଙ୍କ ପାଇଁ କଣ୍ଢେଇ କିଣିବାକୁ ବୋଧହୁଏ ସେ ଆସିଥାନ୍ତି । ହୋଇପାରେ ସେମାନେ ତାଙ୍କ ନାତିନାତୁଣୀ । ତାଙ୍କ ପୁଅଝିଅ କହିଲେ ବି କେହି ଜଣେ ବିଶ୍ୱାସ କରିଯିବ ।

ଗୋଟିଏ ମୁହୂର୍ତ୍ତ ପାଇଁ ଆମେ ସମସ୍ତେ କଣ୍ଢେଇ ହେଇଗଲୁ । ରାମି ମଉସା ଏବଂ ସେ ଭଦ୍ରମହିଳା ସାମ୍ନାସାମ୍ନି ଠିଆହୋଇ ସତେ ବା ପଥର ପାଲଟିଗଲେ । କାହାରି ଆଖିରେ ପତା ପଡୁ ନଥାଏ – ଏମିତି ବଲବଲ ଚାହିଁଥାନ୍ତି । ମୁଁ ତାଜ୍ଜୁବ ହୋଇ ରାମି ମଉସାକୁ ଚାହିଁରହିଥାଏ । କେବେ ଏ ଲାଜକୁରା ବୁଢ଼ାର ସାହସ ହେଲା ଏତେ ସମୟଧରି ଜଣେ ସ୍ତ୍ରୀଲୋକ ମୁହଁକୁ ଚାହିଁରହିବାକୁ । ମୋତେ ଲାଗିଲା, ସେମାନେ ବୋଧହୁଏ ଆଉ ପତା ପକେଇବେ ନାହିଁ । ମୁଁ ନିଜେ ମଟମଟ ଅନେଇ ରହିଥାଏ, ନିଶ୍ୱାସ ରୋଧି ରଖିଥାଏ, ପୁଷମାସିଆ ଝଡ଼ାପତ୍ର ଉଡ଼େଇଲା ପରି ସେ ଅଲକ୍ଷଣିଆ ପବନ ଯଦି ହାଉକିନା ମାଡ଼ିଆସି ନଥାନ୍ତା ଆମେ ସେମିତି କେତେକାଳ ଠିଆରହିଥାନ୍ତୁ, କହିବା କଠିନ ।

ପିଲାଏ ଖୁସ୍‌ଖୁସ୍ ହେଲେ ।

ଡ୍ରାଇଭର ଆସ୍ତେ ଆଡ଼ ହୋଇଗଲା ।

ବିନା କାରଣରେ ମୁଁ ତଳକୁ ମୁହଁକରି ହସିଦେଲି ।

ସେ ଭଦ୍ରମହିଳା ପ୍ରଥମେ ଖୁବ୍ ଇତସ୍ତତଃ କରି ମନକୁ ମନ ପ୍ରଶ୍ନ କଲାପରି କହିଲେ, "ମୁଁ କୋଉଠି ତମକୁ ଦେଖିଛି ନା କ'ଣ !"

ରାମି ମଉସା ଚମକିଲା ପରି ମୁଣ୍ଡ ଲାଡ଼ିଲା । ଆଖିମଟକା ପକେଇ ଚାହିଁଲା । ଛେପ ଢୋକିଲା । ଖୁବ୍ ଘାବରେଇଲା ପରି ସାମାନ୍ୟ ହସ – ହସିଲେ ରାମି ମଉସା ଏଡ଼େ ବଢ଼ିଆ ଗଞ୍ଜନାୟକଟିଏ ପରି ଦେଖାଯାଏ ବୋଲି ମୋର ଧାରଣା ନଥିଲା – କହିଲା "ନା ତ !"

ତା'ପରେ ସେ ଆଚମ୍ବିତ ସ୍ତବ୍ଧ ମୁହୂର୍ତ୍ତଟି ଚନ୍ଦ୍ରବିମ୍ବ ପରି ଚହଲିଗଲା ।

ରାମି ମଉସା ତା' ଦୋକାନର ଏକମାତ୍ର କାଠ ଚଉକିଟିକୁ ବାରମ୍ବାର ପୋଛି ସେଇଠି ବସିବାକୁ ନୀରବ ନିମନ୍ତ୍ରଣ କରୁଥାଏ ସେ ମହାର୍ଘ ଗରାକଟିକୁ ।

ସେ କିନ୍ତୁ ରାମି ମଉସାକୁ ଚାହିଁରହିଥାନ୍ତି ।

ମୋତେ କେହିହେଲେ ନଜର ଦେଉ ନଥାନ୍ତି ।

ପିଲାଙ୍କ ବରାଦ ଉପରେ ରାମି ମଉସା ତା'ର ସବୁଯାକ କଣ୍ଢେଇ ଆଣି ରଖିଦେଉଥାଏ ।

ମୋତେ ଲାଗୁଥାଏ, ସେ ସ୍ୱପ୍ନରେ ଚାଲବୁଲ କଲାପରି । ସେ ଜମା ଆଖିଟେକି ଚୌକିଆଡ଼େ ଚାହୁଁ ନଥାଏ କି କୌଣସି କଥାର ଉତ୍ତର ଦେଉ ନଥାଏ । କେବଳ ଅଳ୍ପ ହସିଦେଇ ପିଲାଙ୍କ ସାମ୍ନାରେ କଣ୍ଢେଇ ପରେ କଣ୍ଢେଇ ଥୋଇ ଦେଉଥାଏ ।

ତା' ଆରଦିନ ସକାଳ ବି ସତେ ଭାରି ଅଦ୍ଭୁତ ! ସେମିତି ପାଚିଲା ଖରା ମୁଁ ଏଯାଏଁ ଦେଖିନାହିଁ । ଆକାଶରେ ମେଘର ଚିହ୍ନ ନ ଥାଏ । ସବୁ କିନ୍ତୁ ଧ୍ୱଂସ ହୋଇଯାଇଥାଏ ରାତିକ ଭିତରେ । ସେଇ ସ୍ୱଚ୍ଛ ସକାଳଠୁ ସେଇ ଗୋଟିଏ ମାତ୍ର ମେରଦା ବଖରାରେ ଏକାଠି ସମସ୍ତଙ୍କ ପାଇଁ ଭାତ ରନ୍ଧା ହେଲା । ବାପା କକେଇ ଏକାଠି ବାହାରିଲେ ଭଙ୍ଗା ଘର ସଜାଡ଼ିବାକୁ । ଆମେ ସମସ୍ତେ ଲାଗିଗଲୁ । ଭଙ୍ଗା ଘରକୁ ଚାହିଁଦେଲେ ଆମ ଭିତରର ଭଙ୍ଗା ମନ କାହିଁ କୁଆଡ଼େ ଲୁଚିଯାଉଥିଲା ।

ମାସେ କାଳ କାହାକୁ ତର ନଥାଏ । ଦିନସାରା ଖଟି ଖଟି ରାତିରେ ସେଇ ମେରଦା ଘରେ ମୁନ୍ଦୁରା ପକେଇ ସମସ୍ତେ ଗଡ଼ିପଡ଼ିଥିଲୁ । ମତେ ଲାଗୁଥିଲା ଯେ; ସେମିତି ଏକାଠି ଲଢ଼ିଗଲେ ଆମେ ସାରା ସଂସାରଟାକୁ ସଜାଡ଼ି ଦେଇଥାନ୍ତୁ । ମେରଦା କାନ୍ଥକୁ ଲାଗି ବାକ୍ସପତ୍ର ପେଡ଼ି-ପେଟେରା ଧାଡ଼ି ଧାଡ଼ି ରଖାହେଇଥାଏ । ମେଲା ପିଣ୍ଡାରେ ରୋଷଶାଳ । ବୋଉ ପରିବା କାଟିଲେ, ଖୁଡ଼ୀ ବେସର ବାଟୁଥାନ୍ତି; ଭାଉଜ ଭାତହାଣ୍ଡି ଓହ୍ଲେଇ ଆଣୁଥାଏ । ନଡ଼ା ଛାତ କରି ବଉଳିକୁ ରଖାହେଇଥାଏ । ନୂଆ କଡ଼ି ବରଗା ଆସିଲା । ନୂଆ ଛପର ଆସିଲା । ଲୋକ ଲାଗିଲେ । ଛାତ ସଶକ୍ତ ହେଇ ବନ୍ଧାହେଲା । ସବୁ ବଖରା ଝଡ଼ାଝଡ଼ି ସଜାସଜି ହେଇଗଲା । ସୁନ୍ଦର ଦିଶିଲା ଏବଂ ଏଇ ସଜେଇବାବେଳେ ସମୟ ପାଇ ମୁଁ ତୁଳି ଧରି ଆଙ୍କିଥିଲି ଗୋଟିଏ ଖୁବ୍ ବଡ଼ ଫୁଟିଲା ପଦ୍ମ । ବୁନୁ ଦେଖି ଖୁସି ହେଇଯାଇଥିଲା ।

ଆଜି ଜାଣି ଯେ ଯାହା ବଖରାରେ ଶୋଇଥିବେ । କିନ୍ତୁ ଆଜିହିଁ ସକାଳଟାରୁ ଲାଗିଗଲା କଜିଆ ପାଟିତୁଣ୍ଡ । ବଚସାରେ ଛାତ ଖଣ୍ଡ ଭୁଶୁଡ଼ି ପଡ଼ିଥାନ୍ତା । ପୁଣି ବାପା କକେଇ ଉଚ୍ଚବାଚ ହେଇ ଅଲଗା ହେଇଗଲେ । ବୋଉ ଖୁଡ଼ୀ ଲଢ଼ିଗଲେ ସମସ୍ତଙ୍କ ଆଗରେ । ଭାଉଜକୁ ବୋଉ କଥାରେ ଭାଇନା ପିଟିଦେଇଗଲା । ପିଲାଏ ରଡ଼ି ଛାଡ଼ିଲେ । ମୋତେ ଖେଙ୍କିଆସିବାରୁ ମୁଁ ଆସି ପୁଣି ଦାଣ୍ଡପିଣ୍ଡାର ସେଇ ପଢ଼ାଘରେ ବସିଚି । ମୋ ଭିତର ଖିନଭିନ୍ ହେଇଗଲା ପରି ଲାଗୁଚି । ମୋତେ ଭୋକ କରୁଚି ସକାଳୁ । . . . ଏମିତି କ'ଣ ସବୁ ହୋଇଗଲା ପୁଣି ?

ମୋତେ କାନ୍ଦ ମାଡ଼ିଲାରୁ ମୁହଁ ଘୋଡ଼େଇ ମୁଁ ଟେବୁଲ ପାଖରେ କାନ୍ଦିଛି । ରାଗରେ ନିଆଁ ଜଳିଉଠୁଚି ମୋ ଭିତରୁ । ମୁଁ କେବେ ପ୍ରାର୍ଥନା କରେ ନାହିଁ । ଏଇନା ଆଖୁ ମାଡ଼ି କରଯୋଡ଼ି ଡାକୁଚି, ''କେହି ଯଦି ଉପରେ ଅଛି, ସେ ପୁଣି ଥରେ ଗର୍ଜିଉଠୁ ! ଅଜାଡ଼ି ଦେଉ ବିପତ୍ତି । ଉଡ଼ିଯାଉ ଏ ଛାତ । ସାତ ପୁରୁଷି ମେରଦା ଭାଙ୍ଗିଯାଉ ! ଆମକୁ ବିପନ୍ନ କର, ପ୍ରଭୁ, କାତର କର, ମଣିଷ କର !''

□□□

# ଅନ୍ତିମା

ନଈ ଘାଟ ଆଡ଼କୁ ମୋଡ଼ଣି ପାଖରେ ବିନ୍ଧାଣୀ ସାହିର ଦେବୀ ମେଢ଼ ଝଟକୁଥାଏ ହୁତ୍‌ହୁତ୍ ହୁତାଶନ ପରି । ଦୁଲୁ ଦୁଲୁ କମ୍ପୁଥାଏ ସେ ଭୂମି, ଦଶଟା ସମତାଳିକ ଢୋଲ ମାଡ଼ରେ । ଦଶଟା ମହୁରୀ ଏକା ସାଙ୍ଗରେ ସ୍ୱର ତୋଳି ଗୁନ୍ଥି ହୋଇ ଯାଉଥାନ୍ତି ଶାଳ ଗଛରେ ଲଇ ପରି । ଚନ୍ଦ୍ରଉଦିଆ ଆଲୁଅ ଛିଟିକି ପଡୁଥାଏ କଳା ମଚମଚ ଢୋଲିଆର ହୁଡ଼ାହୁଡ଼ା ବୁକୁ ଆଉ ଚମକୁଥିବା ବାହୁ ଉପରୁ । ଚଡ଼କ ପରି ଛିଣ୍ଣୁଥାଏ ତାଳ । ବିଜୁଳି ପରି ଛାଟି ହେଇଯାଉଥାଏ ବାବୁରିବାଳିଆ ମଥା । ଅଢ଼େଇ ପାହୁଣ୍ଡରେ ଘେର କାଟିଲାବେଳେ ଭୂଇଁରୁ ଉଠି ଯାଉଥାଏ । ମହୁରିଆ ଫଣା ତୋଳିଥିବା ନାଗ ପରି ଝୁଲୁଥାନ୍ତି । ଢୋଲ ମହୁରୀର ଘନନାଦରେ ସ୍ତବ୍ଧ ଦେଖଣାହାରୀଙ୍କ ପଞ୍ଜରା କମ୍ପୁଥାଏ; କମ୍ପୁଥାଏ ଦେବୀଙ୍କ ପୂଜାପୀଠ ।

ମେଢ଼ ପଛରେ ପୁରୁଣା ଅଶୋକ ଗଛ; କାଠ ଚମ୍ପା, ଦେବଦାରୁ । ତା' ପଛକୁ ପୁରୁଣା ଆମ୍ବ ତୋଟା, ନଈପଠା । ତେଣିକି ନଈ ଆରପାରି ପାହାଡ଼, ତାରା ଝିଲିମିଲି ଆକାଶ ଆଉ ନିସ୍ତବ୍ଧ ନିଶାର୍ଦ୍ଧ ନୀରବତା ।

ଚନ୍ଦ୍ରଉଦିଆ ଆଲୁଅରେ ମେଢ଼ ଝଟକୁଥାଏ ବହ୍ନି ପରି । ଦେବୀଙ୍କ ମୁକୁଟ, ହାର, କେୟୂର, କଂକଣ ଝଟକୁଥାଏ । ଦେବୀଙ୍କ ତ୍ରିଶୂଳ, ଖର୍ପର, ପାଶ ଅଂକୁଶ ଝଟ ଝଟ ହେଉଥାନ୍ତି । ଦେବୀ ସ୍ୱୟଂ ନାଲିପାଟରେ ତରଳ ଅଗ୍ନି ପରି ଚମକୁଥାନ୍ତି । ତାଙ୍କ ବାହୁ, ବୁକୁ, ମୁଖ ମଣ୍ଡଳ, ଘସାମଜା ସୁବର୍ଣ୍ଣ ପରି ଶୋଭା ପାଉଥାଏ ।

ବିନ୍ଧାଣୀ ସାହି ଦେବୀମେଢ଼ର ସତେ ତୁଳନା ନାହିଁ !

ପଞ୍ଚାଏ ଟୋକା ତାଟକା ହେଲା ପରି ଚାହିଁ ରହିଥାନ୍ତି ଢୋଲକୁ; ଢୋଲିଆକୁ ଏବଂ ସେମାନଙ୍କ ପଛରେ ସେ ଅପୂର୍ବ ଦେବୀ ରୂପକୁ । ଜଳନ୍ଧର ହାତିଆଳ ସେମାନଙ୍କ ଭିତରେ ସବୁଠୁ ବଳୁଆ, ସବୁଠୁ ଉଞ୍ଚ ଆଉ ଚଉରସ୍ । ତା'ର ନିଶ ଦାଢ଼ି ଉଠିଗଲାଣି । ସେ ଏକା ଲୟରେ ଦେବୀ ପ୍ରତିମାକୁହିଁ ଚାହିଁଥାଏ । ଢୋଲ ମହୁରୀ ଗହଗହ ନାଦରେ ସେ ଦୁଲୁଦୁଲୁ ହେଉଥାଏ ସତ କିନ୍ତୁ ସେଆଡ଼େ ସେ ଜମା ଚାହୁଁ ନ ଥାଏ ।

ଦେବୀଙ୍କ ମୁହଁକୁ ଚାହିଁ ରହିଥାଏ ଆଖିରେ ପଲକ ନ ପକାଇ । ସେ ଆଖି, ସେ ଭ୍ରୁରୁ, ସେ ଠିଆ ନାକ, ପୁରିଲା ପୁରିଲା ଓଠ, ଗାଲ ବେକ !

ଏଡ଼ିକି ସୁନ୍ଦର କ'ଣ ମଣିଷ ହେଇ ପାରିବେ ? ଏମିତି ସୁନା ପରି ରଙ୍ଗ କ'ଣ କାହାରି ହେଲେ ହେଇପାରିବ ? – ଦେବହୁତି – ଗୋରୀ, ହେଲେ ସେ ଅଲଗା । ମଣିଷ ଚମଡ଼ାରେ କେତେ ବା ଉଜ୍ଜ୍ୱଳ ଆସିବ ? ରଂଜନା – ଗହମ ରଂଗ,

ହାତଗୋଡ଼ ସୁନ୍ଦର । ହେଲେ ଏମିତି ନୁହେଁ । ଯା'ଠୁ ବଳି ସୁନ୍ଦର ବୋଧହୁଏ ଏ ପୃଥିବୀରେ ସମ୍ଭବ ନୁହେଁ ।

ଜଳନ୍ଧର ଆଖି ଖସିଆସିଲା – ବେକ ବୁକୁ ଡେଣା ଉପରକୁ । ସେ ଉଲ୍ଲସିତ ହେଲା । କଟି ଉପରେ ସୁନା ପାଟିଆ କଷି ଭିଡ଼ିଦେଇଥିବାରୁ କି ଅପରୂପ ଠାଣି । ବୁକୁ ଉପରେ ସେ ପାଟ ଶାଢ଼ୀ କେମିତି ମାନିଛି !!

ଜଳନ୍ଧର ହାଁ କରି ଚାହିଁ ରହିଥାଏ ନିଷ୍ପଲକ, ଭକୁଆଟାପରି । ତା' ମୁହଁରେ ଗୋଟାଏ ବିଭୋର ଭାବ । ସେ କ'ଣ ଭାବୁଥାଏ କେଜାଣି ।

ତା ସାଙ୍ଗ ନିଧି ମଳିକ । ବୟସ ତା'ରି ପାଖାପାଖି । ବିଶେ ପିଲାଳିଆ । ତା' ନିଘା ମୁକୁଟ ଉପରେ । ହାର କଂକଣ ଉପରେ । ସୁନାପରି ଦାଉଦାଉ ଅଳଂକାର । ତା' ଆଖି ଖୋସି ହୋଇ ଯାଉଥାଏ । ଇସ୍ ଏଗୁଡ଼ାକ ଯଦି ସତକୁ ସତ ସୁନା ହୋଇଥାନ୍ତା ନା ! ସେ ବାହୁଟି ଅଣ୍ଟାସୂତାଠଉ ପାଦର ନୂପୁର ପର୍ଯ୍ୟନ୍ତ ଚାହିଁଗଲାବେଳେ ମହିଷାସୁର ଉପରେ ଆଖି ପଡ଼ିଯାଏ । ସେ ତାକୁ ବି ଚାହିଁ ରହେ । ମହିଷାସୁର ରଜା ତା'ର ବି ମୁକୁଟ ହାର, କଙ୍କଣ ଝଟକୁଥାଏ । ନିଧି ମଳିକ ଆଉ କିଛି ଦେଖିପାରେ ନାହିଁ । ହଉ ପଛେ ଚୋରି । କିନ୍ତୁ ସେ ମୁକୁଟ ଦି'ଖଣ୍ଡ ରଖିବାକୁ ନିଧି ମଳିକର ଭାରି ମନ ।

ଜଳନ୍ଧର ଆଉ ନିଧି । ସହରର ଏଇ ଅଞ୍ଚଳଟାରେ ବେଶ୍ ନାମଜାଦା ଟୋକା । ବାରପ୍ରକାର କଥା ତାଙ୍କ ନାଁରେ ଶୁଣାଯାଏ । ସେମାନେ କାହାକୁ ଟିକିଏ ବୋଲି ଖାତିର କରନ୍ତିନାହିଁ, ଡରନ୍ତି ବି ନାହିଁ । ଚୁଡ଼ଙ୍ଗ ଅରଣା ଟୋକା ଦି'ଖଣ୍ଡ । ପାଠ ଘରେ ଶୂନ, ଶାଠଘରେ ବି ଶୂନ । ଘରେ କ'ଣ ଗଣ୍ଡେ ଖାଇଦେଇ ଭେଟା ବୁଲିଲାପରି ସହର ସାରା ଚକ୍କର କାଟିବା ହେଲା ତାଙ୍କ କାମ । ତାଙ୍କ ପଛରେ ଆଠ-ଦଶ ଡରକୁଳା ପିଲା ସବୁବେଳେ ଲାଗିଥାନ୍ତି – ତାଙ୍କ ଭିତରୁ ମାଣିକ୍ ଚାନ୍ଦ୍ ଧନୀଘରର ଗେଲବସରିଆ ପୁଅ । ସେ ମଝିରେ ମଝିରେ ଦଶ-କୋଡ଼ିଏ ଟଙ୍କା ଆଣେ । ସେଥିରେ ସମସ୍ତେ ମିଶି ଫୁର୍ତ୍ତି କରନ୍ତି । ଜଳନ୍ଧର ଅଧେ ପଇସା ନେଇଯାଏ । ତା'ର କଡ଼ାପାନ ଆଉ ଚା' ସିଗ୍ରେଟ ପାଇଁ ତାକୁ କେହି ପ୍ରତିବାଦ କରନ୍ତି ନାହିଁ ।

ଜଳନ୍ଧର ତ' ଆଉ ଏମିତି ସେମିତି କେହି ନୁହେଁ । ସେ ହେଲା 'ଲିଡ଼ର' – ମାନେ ଦଳପତି । ସେ କିନ୍ତୁ ଆଉ କାହାକୁ ସିଗ୍ରେଟ ଟାଣିବାକୁ ଦିଏ ନାହିଁ କି ପାନ ଖାଇବାକୁ ଦିଏ ନାହିଁ ।

ସୁରଥ ବେହେରା ଥରେ ପାନ ଚାକିଥିଲା ପାଟିରେ । ସେ ଜଳନ୍ଧର ହାବୁଡ଼ରେ ପଡ଼ିଗଲା ।

ଢୋ'କିନା ଗୋଟାଏ ଚଟକଣାରେ ତା' ଗାଲ ଭିତରୁ ପାନ ଖସି ପଡ଼ିଲା । 'ବେ ମେଝଡ଼, ତୁ କ'ଣ ପାନ ଖାଉଚୁ ? – ସ୍କୁଲବେଳାରେ ତୁ କ'ଣ ବୁଲୁଚୁ ? ଯାଉଚୁ ନା ନାଇଁ ସ୍କୁଲକୁ – ନା' ଦେଖିବୁ ଏଇନା !'

ସୁରଥ ବାଧ୍ୟ ପିଲା ପରି ସ୍କୁଲକୁ ଗଲା । ସେଇଠି ମାଷ୍ଟ୍ରଙ୍କଠୁ ମାଡ଼ ଖାଇଲା । କିନ୍ତୁ ଆଉ ପାନ ଖାଇଲା ନାହିଁ କି ସ୍କୁଲ ଛାଡ଼ି ବୁଲିଲା ନାହିଁ ।

ତା'ର ପ୍ରାଣେ ଭୟ କାଳେ ଜଳନ୍ଧର ଦେଖିଦେବ ।

ଜଳନ୍ଧର କିନ୍ତୁ ସ୍କୁଲ ବାହାରେ ଛକିଥାଏ, ଝିଅପିଲାଙ୍କୁ – ତାଙ୍କୁ କଟାସ ପରି ଅନାଏ । ସେମାନଙ୍କୁ ଦେଖିଲେହିଁ ତା'ର ହୋସ୍ ଉଡ଼ିଯାଏ । ତା' ବୁକୁ ଦାଉଁ ଦାଉଁ ହୁଏ, ଜିଭ ଶୁଖିଯାଏ । ତା' ଦେହସାରା ତାତିଯାଏ ତହତହ ହେଇ । ତା' କଅଁଳ ନିଶ ଉପରେ ଟୋପି ଟୋପି ଝାଳ ଜମିଯାଏ । ସେ କିଛି କହିପାରେ ନାହିଁ । ଖାଲି ତାଙ୍କୁ ଚାହିଁ ରହେ ତାଳୁରୁ ତଳିପା ଯାଏ ।

ତାକୁ ଲାଗେ ସେ ଝିଅଗୁଡ଼ିକ ବୋଧେ ପବନରେ ପହଁରିଯାନ୍ତି । ସେମାନେ ବୋଧେ ଫୁଲପରି ହାଲୁକା, ପକ୍ଷୀକରି ଉଶ୍ୱାସ – ଚାହିଁଲେ ଫୁର୍‌ଫୁର୍ ଉଡ଼ିଯାଇ ପାରିବେ । ଭୂଇଁରେ ସେମାନଙ୍କର ପାଦଚିହ୍ନ ବୋଧେ ପଡ଼େନାହିଁ ।

ଜଳନ୍ଧର ସେମାନଙ୍କର ରଙ୍ଗ ବେରଙ୍ଗ ପୋଷାକ ଦେଖି ଅନ୍ଧ ହୋଇଯାଏ । ତା'ର ଭାରି ଇଚ୍ଛାହୁଏ ସେଥିରୁ ଦୁଇଜଣକୁ ଆଶ୍ଳେଷିବାକୁ । ପାଟିରେ ଲଜେଞ୍ଜ ଭଳି ଚାପି ଦେବାକୁ ।

କିନ୍ତୁ ଦିନ ପରେ ଦିନ ଜଳନ୍ଧର କେବଳ ଚାହିଁ ରହେ । କାହାକୁ ଛୁଇଁପାରେ ନାହିଁ କି କାହାକୁ କଥା କହି ପାରେ ନାହିଁ – ତା' ଭିତରେ କ'ଣ ସବୁ ଗବ୍‌ଗବ୍ ହୁଏ – ସେ ଖୁବ୍ ରେକେଟି କଡ଼ା ଗୁଣ୍ଡିପାନକୁ ଚେବାଏ, ତା' ଦେହ ସାରା ଝିମ୍‌ଝିମ୍ କରି ଝାଳେଇଯାଏ । ତାକୁ କିଛିଟା ଭଲ ଲାଗେ । –

ସେଦିନ ଦେବୀଙ୍କୁ ଦେଖି ସେ ଆକୃତା ହୋଇ ଯାଇଥିଲା । ଏତେ ଲାବଣ୍ୟ ଏତେ ଔଜ୍ଜଲ୍ୟ ସେ କେବେ ଦେଖି ନ ଥିଲା ତ' । –

ସେ ଆଉ ମେଢ଼ ପାଖ ଛାଡ଼ିଲା ନାହିଁ । ନିଧିଆ ବି ରହିଗଲା ତା' ସାଙ୍ଗରେ । ଦୁହେଁ ନିରୋଳାରେ ରହି ଏକ ଲୟରେ ପ୍ରତିମାକୁ ଦେଖି ଲାଗିଥାନ୍ତି ।

ଜଳନ୍ଧର ଅନୁଭବକଲା ଯେ ସେ ଆଉ ସେଇଠୁ କୁଆଡ଼େ ଯାଇପାରିବ ନାହିଁ । ସେ ସେଇଠି ଠିଆହୋଇ ରହି ବି ପାରିବ ନାହିଁ । ସେ ବୋଧେ ଲଦ୍‌ପଦ୍ ହେଇ ସେଇଠି ତରଳିଯିବ; କିମ୍ବା ହୁଏତ' ସେ ହଳେ ଆଖି ହେଇ ଲାଖିଯିବ ଦେବୀଙ୍କ ଦେହରେ ।

ତା ମନରେ ଉଚାଟ ଆସିଲା, ସେ ଯାଇ ଦେବୀଙ୍କ ପାଖେ ପହଞ୍ଚିବ । ତା' ବୁକୁ ଧଡ଼ଧଡ଼ ହେଇ କଲିଜାଟା ଖସିପଡୁ ତା' ଭିତରୁ, କିନ୍ତୁ ସେ ଅବଶ୍ୟ ସେ ଦେହକୁ ଟିକିଏ ଛୁଇଁ ଦେବ । ଟିକିଏ ଆଉଁସି ଦେବ ।

ଢୋଲ ମହୁରୀର ତୁମୁଳ ଶବ୍ଦ ତା'କୁ ଶୁଭୁ ନ ଥାଏ । ସେ ତା' ଅଣାୟତ୍ତରେ ଓଟାରି ହେଇଯାଉଥାଏ ମେଢ଼ଆଡ଼କୁ । ସେ ଘୁଞ୍ଚି ଘୁଞ୍ଚି ଯାଇ ସାଲୁ କନାର ବାଡ଼

ପାଖରେ ଅଟକିଗଲା । ତେଣିକି ପୂଜାଭୂମି । ସେଠିକି ପୂଜକ ଛଡ଼ା ଆଉ କେହି ଯିବା ମନା । ଜଳନ୍ଧର ଓଗାଳ ପାଖରେ ଅଟକିଯାଇ ବୋଧେ ବର୍ତ୍ତିଗଲା । ନହେଲେ, ପ୍ରବଳ ଜଳ ଭଉଁରୀ ଭିତରକୁ ସେ ଟାଣି ହୋଇ ଯାଇଥାନ୍ତା । –

ପୂଜକ ଠିଆହେଲେ । ବାଁ ହାତରେ ଘଣ୍ଟି, ଡାହାଣ ହାତରେ ଧୂପଦାନି । ଗୁଗ୍‌ଗୁଳ୍ ଗନ୍ଧରେ ସେ ପୀଠ ମହକିଗଲା । ଜଳନ୍ଧର ଦେଖିଲା, ଧୂପ ଧୂଆଁରେ ଆଚ୍ଛନ୍ନ ହୋଇଯାଉଛନ୍ତି ଦେବୀ । ଚଳନ୍ତି ମେଘ ପଛଆଡ଼କୁ ଜହ୍ନ ବାହାରି ଆସିଲା ପରି ପୁଣି ଦେବୀଙ୍କ ମୁହଁ ଦିଶି ଯାଉଛି । ଯେତେଥର ଧୂଆଁ ଉଠୁଥାଏ, ସେତିକିଥର ଜଳନ୍ଧର ପୂଜକ ଆଡ଼େ କଟମଟ ଅନେଇ ନେଉଥାଏ । କେତେବେଳକୁ ଧୂପ ପର୍ବ ସରିଲା । ତା'ପରେ ଉଠିଲା ସପ୍ତମୁଖୀ ଦୀପ । ପୂଜକ କ'ଣ ସବୁ ବୋଲୁଥାଏ । ଘଣ୍ଟି ବଜାଉଥାଏ, କିନ୍ତୁ ଦୀପଟିକୁ ଯେଉଁ ଢଙ୍ଗରେ ଆଳତି କରୁଥାଏ ତା'ର ପଟାନ୍ତର ନାହିଁ । ଦୀପ ଆଲୁଅରେ ଦେବୀଙ୍କ ଦେହ, ମୁହଁରୁ ଜ୍ୟୋତି ବାହାରି ଆସୁଥାଏ । ଜଳନ୍ଧର ବିଭୋର ।

ଢୋଲ ମହୁରିଆ ଆଳତି ପରେ ତାଙ୍କ ସାଜ ସରଞ୍ଜାମ ଧରି ଦେବୀଙ୍କୁ ଆଣ୍ଠେଇ ପଡ଼ି ଜୁହାର ହେଲେ । ତା'ପରେ ଉଠି ଆସ୍ତେ ଧାଡ଼ି ବାନ୍ଧି ବାହାରିଗଲେ ରାସ୍ତା ଉପରକୁ । ଦେଖଣାହାରି ବି ଘୁଞ୍ଚିଗଲେ ।

ନିଧି ଜଳନ୍ଧର ପିଠିରେ ଆଙ୍ଗୁଠି ଗେଞ୍ଜିଲା । 'ଆବେ କେତେ ଭକ୍ତି ଦେଖେଇ ହଉଚୁ । ଯିବା ପରା ଚାଲ୍ । କାଲି ଗୋଟାଏ ଦିନ ଖୋଲା ଦର୍ଶନ । ରାତିକି ବିସର୍ଜନ । ଭାରି ଆଡ଼ମ୍ବରରେ ପଟୁଆର ହେବ । ସେତିକିବେଳେ ସାମିଲ ହେଇଯିବା । ନଈଘାଟରେ ଯେତେବେଳେ ଟଣା ଓଟରା ହବ; ଯେ ଯାହାର ସବୁ ଝାମ୍ପିବେ, ମୁଁ ଏ ଦି'ଟାଯାକ ମୁକୁଟକୁ ନେବି ବୋଲି ଭାବିଛି ।'

ଜଳନ୍ଧର ତଥାପି ନିର୍ବାକ୍ ।

ନିଧିଆକୁ ସବୁ ଗୁମର ଜଣା । ସେ ଜଳନ୍ଧରର କାଖ ପାଖରେ ଆଙ୍ଗୁଠି ଗେଞ୍ଜିଦେବାରୁ ସେ ଚମକି ପଡ଼ିଲା । ତା' ଆଖିରେ ପତା ମଟ ମଟ ହେଲା । ଗୋଟେ ପବନ ତା' ବୁକୁ ଭିତରୁ ଓହ୍ଲେଇଗଲା ।

''ନିଧିଆ, ତୁ କୁଆଡ଼େ ଯାଉଚୁ ଯା', ମୁଁ ଏଠୁ ଆଉ ଘୁଞ୍ଚିବି ନାହିଁ । ମୁଁ ଏଠୁ ଗଲେ ମରିଯିବି ।''

''ଆବେ, ତୁଟା କ'ଣ ବାୟା ହେଲୁ ନା' କ'ଣ ? ଏଇଠି କ'ଣ କରିବୁ ? ତେଣେ ତୋ' ମା' ଉଚ୍ଛନ୍ନ ହବ ! କାଲି ସକାଳୁ ଚାଲି ଆସିବା ନି, ତୁ ଏବେ ଚାଲ୍ ।''

ଜଳନ୍ଧର ପୁଣି ପ୍ରତିମାକୁ ଅନେଇ ଠିଆ ହୋଇଥାଏ । ତା'ର ସମଗ୍ର ଚେତନା ବୁଡ଼ିଯାଇଥାଏ ସେ ଅପରୂପା ପ୍ରତିମାରେ ।

ନିଧିଆ ସିନେମା ଢଙ୍ଗରେ ତା' ଆଖି ଆଗରେ ହାତ ପାପୁଲିକୁ ଦୁଇଥର ଏପାଖ ସେପାଖ କରି ପୁଣି ଡାକିଲା ।

''ବେ ଓଲୁ । ପୁଣି କ'ଣ ହଜିଗଲୁ କିବେ ? – ଭଲା ସିନେମା ହିରୋ ମାର୍ଗେ ଆକ୍ଟିଂଟା ଜମଉଚୁବେ !! ଆଚ୍ଛା, ଏଇଟା ମାଟି ପିତୁଳାଟାଏ ବୋଲି ତୁ ଜାଣିଚୁ ନା ନାହିଁ ? ମାତ୍ର ଏଇଟା ଏଡ଼ିକି ସତ ପରି ଲାଗୁଚି ଯେ ବେଳେବେଳେ ନିଶ୍ୱାସ ନେଲାପରି ଦିଶିଯାଉଛି ।''

''ବେଶ୍ ବେଶ୍, ଏବେ ଯାଇ ତୁ ଠିକଣା କଥା କହିଲୁ । ଏ ସତକୁସତ ନିଶ୍ୱାସ ମାରୁଛନ୍ତି । ମଝିରେ ମଝିରେ ଅଳ୍ପ ହସିଦେଉଛନ୍ତି । ତାଙ୍କ ହାତର ଚମ୍ପାକଢ଼ ପରି ଆଙ୍ଗୁଠି ଟେକି ହେଇଯାଉଛି । ତାଙ୍କ ବୁକୁ ଉଠୁଚି ପଡୁଚି । ତୁ ଭଲ କରି ଅନେଇଥା, ତତେ ବି ଦିଶିବ ।''

ନିଧିଆ ଜଳନ୍ଧରର ଡେଣାଧରି ଓଟାରିନେଲା । ଜଳନ୍ଧର ଭିଡ଼ି ହେଉଥାଏ । ଚାହିଁଥିଲେ ସେ ନିଧିଆକୁ ଛିଞ୍ଚାଡ଼ି ଦେଇଥାନ୍ତା । କିନ୍ତୁ ଜଳନ୍ଧରର ହାତ ଗୋଡ଼ରୁ ଜିଅ ଛାଡ଼ିଯାଇଥାଏ । ନିଦରୁ ଉଠିଲା ପିଲାଟିଏପରି ସେ କୁଁ-କୁଁ ହଉଥାଏ । ତାକୁ ନିଧିଆ ଟାଣି ନେଇଯାଉଥାଏ ଦୂରରୁ ଦୂରକୁ ।

ସେମାନଙ୍କ ଟୋକା ସାଙ୍ଗମାନେ ଢୋଲ ମହୁରିଆଙ୍କ ପଛେ ପଛେ ପଳେଇଥାନ୍ତି ଆଉ ଗୋଟେ ମେଢ଼କୁ । ନହେଲେ ସେମାନେ ଜମ୍ମା ତାଙ୍କ ଆଖିକୁ ବିଶ୍ୱାସ କରି ପାରି ନଥାନ୍ତେ ।

ଜଳନ୍ଧର ସତେ ବା ବତୁରି ଯାଇଥିଲା । ଲୁହରେ, କୋହରେ, ପୁଲକରେ । ସେ ଶୋଷି ହୋଇଯାଇଥିଲା । ତା' ହାଡ଼ ଭିତରୁ ରସ ନିଗିଡ଼ି ଯାଇଥିଲା । ହାଡ଼ଯାକ ଲଇ ଭଳି ହେଇଯାଇଥିଲା ।

ନିଧିଆ ବି ତାଜୁବ୍ ହେଇଯାଇଥିଲା । ଏଇ କ'ଣ ହୁଡୁମ୍ବା ଜଳନ୍ଧର, ସେ ଖୁରି ଖାଉଥିବା ଷଣ୍ଢ ପରି ଫୁ-ଫୁକାର କରୁଥାଏ । ତା' ପାଖ ପଶିବାକୁ ଡରମାଡ଼େ ?

ତା' ମନକୁ ପାପ ଛୁଇଁଲା । ସେ ଭାବିଲା ଯେ, ଜଳନ୍ଧର ଦେବୀଙ୍କୁ ଭେଟେଣା ହେଇଗଲା ।·ଦେବୀ ପ୍ରତ୍ୟକ୍ଷ ହେଲାବେଳେ ସେ ସାମ୍ନାରେ ହାବୁଡ଼ିଗଲା । ସେମିତି ହେଲେ କୁଆଡ଼େ ରକ୍ତବାନ୍ତି ହେଇ ଲୋକେ ମରିଯାନ୍ତି ବୋଲି ସେ ଶୁଣିଥିଲା । ଜଳନ୍ଧର ଭାରି ଟାଣୁଆ ବୋଲି ବୋଧେ ଏତିକିରେ ସମ୍ଭାଳି ଯାଇଛି । –

ନିଧି ଯାଇ ଜଳନ୍ଧର ଘର ଦୁଆରେ ପହଞ୍ଚିଲା । ଭିତରେ ଖାଲି ତା'ର ବିଧବା ମା'ଟା । ଆଉ ତା' ବଡ଼ଭାଇ ତ ଆର୍ମିରେ ମିଶିଲା । ଜଳନ୍ଧରକୁ ଡାକୁଚି ମିଶିବାକୁ । ଏ ଟୋକା ମଙ୍ଗୁ ନାହିଁ ।...

ମା'କୁ କିଛି ଆଉ ନ କହି ନିଧି ବୋଧହୁଏ ପଳେଇ ଆସିଥାନ୍ତା । କିନ୍ତୁ ନ କହିଲେ ପୁଣି ବିପଦ ।

''ମାଉସୀ, ଜଳନ୍ଧର ଟିକିଏ ହାଲିଆ ହେଇ ପଡ଼ିଛି, ତାକୁ ଶୁଆଇ ଦିଅ । ମୁଁ କାଲି ସକାଳୁ ପୁଣି ଚାଲିଆସିବି ।''

ଏତକ କହି ଦେଇ ତରବରରେ ଚାଲିଗଲା ନିଧି ମଳିକ ।

ଜଳନ୍ଧର ବେଳେବେଳେ ଖୁବ୍ ରାତିରେ ଫେରେ, ଆଉ କିଛି ଖାଇବ ନାହିଁ କହି ଖଟରେ କୁଢ଼େଇ ହେଇପଡ଼େ । ମା' ଆସି ଚାଦର ଘୋଡ଼େଇ ଦେଲାବେଳକୁ ସେ ନିଘୋଡ଼ ନିଦରେ ଶୋଇ ସାରିଥାଏ ।

ସେ ଦିନ କିନ୍ତୁ ଭାରି ଶାନ୍ତ ଦିଶୁଥିଲା । କୌଣସି କଥାକୁ ପ୍ରତିବାଦ କରୁ ନଥିଲା । ମା' ଭାତ ବାଢ଼ି ତାକୁ ଡାକି ଦଉ ଦଉ ସେ ଯାଇ ଚୁପ୍‌ଚାପ୍ ଥାଳି ପାଖରେ ବସିଲା । ବାଇଗଣ ବେସର ଆଳୁ ଚଟଣି ସାଙ୍ଗକୁ ସୁନସୁନିଆ ଶାଗ । ଅନ୍ୟଦିନ ହେଇଥିଲେ ସେ ଡେଇଁଥାନ୍ତା । ହଟ ଲଗେଇଥାନ୍ତା ।

ସେ ତଳକୁ ମୁହଁ ପୋତି ସୁନାପିଲା ହେଇ ସବୁ ଖାଇଦେଇ ଉଠିଲା । ତା' ମା' ତା' ପିଠିରେ ମୁଣ୍ଡରେ ହାତ ସାଉଁଳି ଆଣିଲାବେଳେ ଚିଡ଼ିଲାନାହିଁ ।

ମା' ତା'ର ଖୁସିରେ କାନ୍ଦିପକେଇଲା । ତା'ପରେ ହାଉଳି ଖାଇଲା ପରି ଜଳନ୍ଧର ଆଗରେ ପାଟିକଲା – ''ହଇରେ ତୁ ଏମିତି କାଇଁ ଧିମେଇ ଯାଇଚୁ ? ତୁ କଥା କହୁ ନାହୁଁ କାହିଁକି ? ଏମିତି କାଇଁ ମୁଚୁ ମୁଚୁ ହସୁଚୁ ବାୟାଙ୍କ ପରିକା ?'' ତା' ମୁହଁ ପାଖରେ ଶୁଂଘିଦେଇ ପଚାରିଲା – ''ତୁ ନିଶା ହେରିକା ଖାଇନାହୁଁ ତ ?''

ଜଳନ୍ଧର କୌଣସି ଉତ୍ତର ଦେଲା ନାହିଁ ।

ତା' ଆଖିରେ ଗହୀରରେ ସ୍ୱପ୍ନ ଟଳମଳ ହେଉଥିଲା । କେତେବେଳକେ ଭାରି ଶାନ୍ତ ଢଙ୍ଗରେ କହିଲା –

''ମୋ ଶେଯ ପାରିଦେଲୁ, ମୋତେ ଭାରି ନିଦ ମାଡୁଚି ।''

''ମୁଁ ମରି ଯାଉଥାଏ ଟି ! ମୋ ଧନ, ତୁ ପାଟି ଫିଟେଇ କଥା କହିଲାରୁ ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ତ ନହେଲେ କେତେ କ'ଣ ଭାବି ଯାଉଥିଲି । ତୁ ଲୁଗା ପାଲଟି ଦଉଥାଟି, ମୁଁ ତୋ ଶେଯ ପକେଇ ଦଉଚି !''

ରାତିସାରା ଆକାଶରେ ସୁନା ବିଛେଇ ହୋଇଗଲା । ଭାରି କଅଁଳ, ନିର୍ମଳ, ଉଷୁମ ଲାଗିଲା ପୃଥିବୀ । ଲାବଣ୍ୟ ପ୍ରତିମା ନିଶ୍ୱାସ ମାରୁଥିଲା ରାତିସାରା ଜଳନ୍ଧରର ଶରୀର ଉପକଣ୍ଠରେ ।

ତା' ଦେହ ଶୀତକଣ୍ଟା ମାରି ଯାଉଥିଲା । ଦେହ କାଠେଇ ଯାଇଥିଲା । ନିର୍ଜୀବ ହୋଇ ଯାଉଥିଲା ହାତଗୋଡ଼ । ମୋଟ ଉପରେ ତା'ପାଇଁ ରାତିର ସ୍ୱପ୍ନ ଆଉ ଦିନର ସତ୍ୟ ଏକାକାର ହୋଇଯାଉଥିଲା । ସେ ଜାଣିପାରୁ ନଥିଲା ସେ ଚାହିଁଥିଲା ନା ଶୋଇଥିଲା । କିନ୍ତୁ ଚମକିଲା ପରି ସେ ବାରମ୍ବାର ସେଇ ଦେବୀ ପ୍ରତିମାକୁ ସୁମରୁଥିଲା –

ସକାଳୁ ନିଧି ଆସିଲାବେଳକୁ ଜଳନ୍ଧର ଅଗଣାରେ ଗୋଟେ ଦଉଡ଼ିଆ ଖଟ ଉପରେ ଚିତ୍‌ମାତ ହୋଇ ପଡ଼ିଥାଏ । ତା' ଆଖିରେ ବିଭୋର ଭାବ !

''ଆବେ ତୁ ବିନ୍ଧାଣୀ ସାହି ମେଢ଼କୁ ଯିବୁନାଇଁ କି ? – ମୁଁ ତ ଭାବିଥିଲି ତୁ ଶଳା ମତେ ଅପେକ୍ଷା ନ କରି ପଳେଇ ସାରିବୁଣି ।''

ସେ ଖଟ ବାଡ଼ା ଉପରେ ବସି ଜଳନ୍ଧର ପେଟରେ ଗେଲରେ ଘୁସି ମାରି କହିଲା – ''ଉଠ୍ ଘେରାଏ ମାରିଦବା । ଆଜି ବଢ଼ିଆ ପ୍ରୋଗ୍ରାମ ସବୁ ଅଛି । ଆଜିର ଉଠାଣି ଭୋଗଟା ବି କୁଆଡ଼େ ଭାରି ବଢ଼ିଆ ହବ ।'' –

ଜଳନ୍ଧର ସେମିତି ପଡ଼ିରହି କହିଲା – ''ତୁ ଯା' ମୁଁ ଯିବି ନାହିଁ ।''

ନିଧି ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ । ''ଆବେ କାଲି ଝିଙ୍କିଲେ ଆସୁ ନଥିଲୁ । ଏ ରାତି ଭିତରେ କ'ଣ ହେଇଗଲା, ଶଳା ଭିଲେନ୍ ଭଳି କଥା କହୁଛୁ ?''

''ଆବେ ତୁ ଯା' ମୁଁ କହୁଛି ।'' ସ୍ପ୍ରିଂ ଭଳି ଉଠିପଡ଼ି ଜଳନ୍ଧର ପାଟିକଲା ।

ନିଧି ଚମକି ଠିଆ ହୋଇପଡ଼ିଲା ।

ଆରେ ବାପ୍‌ରେ, ଯେତ ସେଇ ପୁରୁଣା ମାରେଣା ଷେଣ୍ଢ । ଜଳନ୍ଧର ହାତିଆଳ ରାଗିଲେ ତା' ପାଖ ପଶିବା ବିପଦ ।

ନିଧି ତା' ସ୍ୱରକୁ ଅନେକ ନରମ କରି କହିଲା – ''ନାଇଁ ବେ, ଘରଟାରେ ବସି କାଇଁ ବୋର୍ ହବୁ ? ସେଥିପାଇଁ ଡାକୁଥିଲି । ନ ହେଲା ତୁ ଯଦି କହିବୁ ଆଉ ଘଣ୍ଟେ ଛାଡ଼ି ବାହାରିବା, ମୁଁ ଅପେକ୍ଷା କରୁଚି ।''

''ନାଇଁ ତୁ ଯା', ମୁଁ ମୋ ମନକୁ ଯେତେବେଳେ ଇଛା ଯିବି – ନ ହେଲେ ନ ଯିବି !'' – ନିଷ୍ପତ୍ତିର ସ୍ୱର ।

ନିଧି ଚୁପଚାପ୍ ପଛକରି ଚାଲିଗଲା ରାସ୍ତାକୁ ।

ଜଳନ୍ଧର ଯେତେବେଳେ ସ୍କୁଲ ଗେଟ୍ ପାଖକୁ ଯାଏ ଫୁର୍‌ଫୁର୍ ଉଡ଼ିଆସୁଥିବା ରଙ୍ଗବେରଙ୍ଗୀ ଚଢ଼େଇକୁ ଦେଖିବାକୁ ସେ କାହାକୁ ସାଙ୍ଗରେ ନିଏ ନାହିଁ । ନିଧିକୁ ବି ନୁହେଁ ।

ସେ ବ୍ୟାପାରଟା ସଂପୂର୍ଣ୍ଣ ବ୍ୟକ୍ତିଗତ ।

ସେଦିନ ସକାଳଟା ସେ ମା' ପାଖରେ ବସି ବୋଲହାକ କଲା । ମା' ବାର କଥା ଗପି ଲାଗିଥାଏ । ଜଳନ୍ଧର କେବଳ ଶୁଣୁଥାଏ । ଆଗ କଥା, ତା' ବାପ କଥା । ବାପର ପାରିଲାପଣିଆ କଥା ।

''ଆମ ଘର ଦୁଆରେ ଯେଉଁ ଲମ୍ବା ପଥରଟା ପଡ଼ିଚି, ସେଇଟା ତୋ ବାପା କାନ୍ଧେଇ ନେଇ ଆସିଥିଲେ । ଏବେ ତାକୁ କୂଅ ମୂଳକୁ ନବାପାଇଁ ଆଠଜଣ ଭେଣ୍ଡିଆ ହାଲିଆ ହୋଇଗଲେ ।''

ହଁ ସତେତ ! ଜଳନ୍ଧର ଖୁବ୍ ଖୁସିହୋଇ ଭାବୁଥିଲା ତା' ବାପା କଥା । ହେଲେ ସେଇଟା ପଛ କଥା ।

ମା' ପାଖରେ ବସି ସେ ମଟରଚଣାରୁ ଚୋପା ଛଡ଼େଇ ଦେଲା । ମା'ର ଖୁସି କହିଲେ ନ ସରେ । ସେ ବେଳ ଜାଣି ସାହସ କରି କହିଲା – ''ଜଳରେ;

ମନଦେଇ ଯଦି ଦି' ଅକ୍ଷର ପଢ଼ିଥାନ୍ତୁ ଏତେବେଳକୁ କେତେ ପାଠ ହେଇ ସାରିଥାନ୍ତା ।''

''ମୁଁ ପଢ଼ିବି ।''

ତା' ମା' ବୋଧେ କୋଟି ନିଧି ପାଇଗଲା ।

ସେଇଟା ମିଛ ହଉ ବରଂ କିନ୍ତୁ କେମିତି ଅମୃତ ପରି ଲାଗୁଚି ଶୁଣିବାକୁ ।

ମା' ମନକୁ ପୁଣି ପାପ ଛୁଇଁଲା । କାହିଁକି, ଏମିତି ନରମିଗଲା ମହା ଦୁର୍ଦ୍ଦଣ୍ଡ ଟୋକା ଜଳନ୍ଧର । କ'ଣ ହେଇଚି ତା'ର ?

''ମତେ ସତ କହିବୁ ପୁଅ ! ତୋ'ର କ'ଣ ହେଇଚି କାଲିଠୁ ? ତତେ କ'ଣ କିଏ କିମିଆଁ କରିଦେଇଛି ? – କାଲି ଦଶହରାରେ କ'ଣ କେହି ସାଧୁ ମାହାତ୍ମା ତତେ କୃପା କରିଛନ୍ତି ? ତୁ ମତେ ଗାଳି ଦଉନୁ କାହିଁକି ? କାଲି ପରା ପିଢ଼ା ଫୋପାଡ଼ିଥିଲୁ – ମୋ ଗୋଡ଼ ଆଙ୍ଗୁଳି ଫାଟିଯାଇଚି, ହେଇ କନା ଭିଡ଼ିଚି ଦେଖୁନୁ !''

ସେ ଜଳନ୍ଧର ଗାଲକୁ ଆଉଁସି ତା' ନୂଆ ରୁମ ଲାଗିଥିଲା ଥୋଡ଼ି ଟେକି କହୁଥାଏ – ''ତୁ ଆମର ଯେମିତି ଥିଲୁ ସେମିତି ଭଲ । ତୁ ଏମିତି ଆଉ କାହାପରି ବସିଚୁ, କଥା କହିଲେ ହସ ହସ ହେଇ ଚାହୁଁଛୁ ! – ମୋର ତ ହାଲୁକ ଶୁଖିଯାଉଛି । କହ ବାପା, ତୋର କ'ଣ ହେଇଚି ।''

ଜଳନ୍ଧର ତଥାପି ଚୁପ୍ ।

ସେ କିଛି ନ କହି ବାଡ଼ିଆଡ଼େ ବୁଲି ବାହାରିଗଲା ।

ସେଇଠି କୁଅମୂଳ ପିଙ୍ଗୁଳି ଗଛ, ସଜନାଗଛ ମୂଳେ ବୁଲିଲା – ଗଛର ମୂଳ ଡାଳ ପତ୍ରକୁ ଆଉଁସିଲା ।

ଖୁବ୍ ସୁନ୍ଦର ଦିଶୁଥିଲା ତାକୁ ସେସବୁ ।

ଗୋଟାଏ ଚିକ୍କଣ ନୂଆଁଣିଆ ପିଙ୍ଗୁଳି ଡାଳକୁ ଅନେକ ବେଳଯାଏଁ ଅନ୍ୟମନସ୍କ ହେଇ ସାଉଁଳିଲା –

ତା' ଆଖି ଆଗରେ ସୁନାଛାଉଣି ହେଇଗଲା ପିଙ୍ଗୁଳି ଗଛଯା'ନ । ସେ ଆଖିମଟକା ମାରି ଚାରିଆଡ଼େ ଚାହିଁଲା, ଅଳ୍ପ ହସିଦେଇ ଆଗେଇଗଲା ।

ତାକୁ ଗୋଲାପ ପାଖୁଡ଼ା ଉପରେ ଚାରିକାତ ମେଲେଇ ପଡ଼ି ରହିଲା ପରି ଲାଗୁଥିଲା । ଖୁବ୍ ଉଶ୍ୱାସ । ସତେ ବା ସେ ଶୋଲ ବା ତୁଳାର କଣ୍ଢେଇଟି !

ତା' ମା' ତାକୁ ସେଦିନ ପାଖରେ ବସେଇ ମନ ଖୁସିରେ ଖୁଆଇ ଦେଲା – ପିଠି ଆଉଁସିଦେଲା । ପୁଣି କ'ଣ ମନ ପାଇଲା ଗୁଡ଼ାଏ ସକସକ କାନ୍ଦିଲା ।

ଜଳନ୍ଧର ତା' ଗୋଡ଼ ଫିଟିଲା ଦିନୁ କେବେ ଦି' ପହରେ ଘରେ ରହି ନଥିଲା । ଦି' ପହରଟାହିଁ ତାର ଉନ୍ନତ ବେଳା । ସେ ସେତିକିବେଳେ ସବୁଠୁ ବେଶି କଡ଼ା ପାନ ଚୋବାଏ, ସିଗ୍ରେଟ୍ ଫୁଙ୍କେ ଆଉ ଖାଇବା ଛୁଟିବେଳେ ସ୍କୁଲ ଗେଟ୍ ପାଖରେ ଛିଡ଼ାହୁଏ ।

ସେଦିନ ଜଳନ୍ଧରର ପ୍ରବୃତ୍ତି ହେଲା ନାହିଁ ଘରୁ ଗୋଡ଼ କାଢ଼ିବାକୁ । ଇଚ୍ଛା ହେଲାନାହିଁ ଦେବହୁତି, ରଂଜନା, ସୋନାଲି ଆଦିଙ୍କୁ ମନେପକାଇବାକୁ ।

ସେମାନେ ବି କିଛି ମାତ୍ରାରେ ନିରାଶ ହେଇଥିବେ ଯେ, ସେ ଲଫଙ୍ଗା ଟୋକା ତାଙ୍କୁ କଟାସ ପରି ଅନେଇବାକୁ ଗେଟ୍ ପାଖରେ ଠିଆ ହେଇନାହିଁ ।

ଜଳନ୍ଧରକୁ ଆମୋଦିତ ଲାଗିଲା । ସେ ଆରାମରେ ଖଟରେ ପଡ଼ି ଛାତକୁ ଚାହିଁଥାଏ ଖୁବ୍ ଗୋଟାଏ ଅଏସ୍ କଲାଭଳି, ତାକୁ ବି ନିଜ ଉପରେ ଆଶ୍ଚର୍ଯ୍ୟ ଲାଗୁଥାଏ । ଏମିତି ହେଇପାରେ ବୋଲି ସେ ବି ଜାଣି ନ ଥିଲା ।

ସେ ଯେଉଁଆଡ଼େ ଦେଖିଲେ କେବଳ ସେ ଦେବୀ ପ୍ରତିମାହିଁ ତାକୁ ଦିଶୁଥାଏ । ସେ ଝଟ ଝଟ ସୁନା ବର୍ଣ୍ଣ – ସେ ଅପୂର୍ବ ମୁହଁ, ଆଖି, ଓଠ, ଗ୍ରୀବା – ତାକୁ ଦିଶିଗଲେ ସେ ହଠାତ୍ ଅବଶ ବୋଧ କରୁଥାଏ । –

ସେ କିନ୍ତୁ ଜାଣିପାରୁ ନ ଥାଏ ସେପରି କାହିଁକି ହେଉଥାଏ । କାହିଁକି ଜର ମାଡ଼ି ଆସିଲା ପରି ମୁହଁ ଦେହ ଫଣଫଣ ତାତିଯାଉଥାଏ । କାହିଁକି ତା' ଭିତର ଓଲଟ ପାଲଟ ହେଇ ଯାଉଥାଏ ।

ଆଶ୍ଚର୍ଯ୍ୟ କଥା ଜଳନ୍ଧର ଆଉଥରେ ମେଢ଼ ପାଖକୁ ଯିବାକୁ ସାହସ ସଂଚୟ କରିପାରୁ ନଥାଏ । କାହିଁକି ସେ ଡରୁଥାଏ ? କାହାକୁ ? ତା'ର ଭୟ ହେଉଥାଏ ଯେ, ସେଇଠି ଆଉଥରେ ପହଞ୍ଚିଲେ ସେ ଅଣାୟତ୍ତରେ ଭିଡ଼ି ହେଇଯିବ । ସେ ଅପୂର୍ବ ରୂପରାଶିରେ ହୁଏତ ଲାଖିଯିବ; ହୁଏ ତ ସେଇଠି ସେ ଲୀନ ହୋଇଯିବ ।

ମୁହଁ ସଞ୍ଜ ବେଳକୁ ନିଧି ଆସି ପହଞ୍ଚିଲା ।

''କିରେ ଜଳ, ତୁ ମେଢ଼ ପାଖରୁ ଫେରିଆସିଲୁଣି । ଆଜି ମୁଁ ପାଞ୍ଚଟା ମେଢ଼ରେ ପୂଜା ପ୍ରସାଦ ପାଇଲି । ସବୁଠି ବଢ଼ିଆ ହେଇଚି । ହେଲେ ବିନ୍ଧାଣୀ ସାହିବାଲା କମାଲ୍ କରି ଦେଇଛନ୍ତି । ତତେ କେମିତି ଲାଗିଲା ?

ଜଳନ୍ଧର କିଛି ନ କହି ଚୁପ୍‌ଚାପ୍ ବସି ରହିଲା ।

ନିଧି ଡରିଗଲା । ଆଚ୍ଛା, ତୁ ସକାଳୁ ସେମିତି ଘରେ ବସିବୁ ନା କ'ଣ ? ତୁ କୁଆଡ଼େ ଯାଇନାହୁଁ ?

'ନା !'

''ବଢ଼ିଆ ମୌକା ଛାଡ଼ିଦେଲୁ । ହେଲେ ଭସାଣିକୁ ଯିବା ନା ନାହିଁ ? ଆଜି ଯାହା କହ ମୋତେ ଭାରି କଷ୍ଟ ଲାଗିଲା । ତୁ ଥିଲେ ତ କାନ୍ଦି ପକେଇଥାନ୍ତୁ । ସେ ବ୍ରାହ୍ମଣ ଯେମିତି ବିସର୍ଜନ କଲା ଦେବୀ ପ୍ରତିମାକୁ ।''

ଜଳନ୍ଧର ଆବେଗରେ ପଚାରିଲା – ''ବିସର୍ଜନ ସରିଗଲା ନା' କ'ଣ ?''

''ଆବ୍‌ବେ ନାଇଁ । ସେ ମନ୍ତ୍ର ପଢ଼ି ତାଙ୍କୁ ବିସର୍ଜନ କରିଦେଲା । ଗୋଟେ ଓସାର ମୁହଁ ଚେମ୍ବୁରେ ପାଣି ଭର୍ତ୍ତି କରିଥାଏ । ହାତରେ ଗୋଟେ ଛୋଟ ଦର୍ପଣ ଧରି ଦେବୀଙ୍କୁ ପଛ କରି ବସିଥାଏ । ସେଇ ଦର୍ପଣରେ ଦେବୀଙ୍କ ପ୍ରତିମାକୁ ମନ୍ତ୍ର ପଢ଼ି ପଢ଼ି ସେ

ଚେମ୍ବୁ ପାଣିରେ ଧୀରେ ଧୀରେ ବୁଡ଼େଇ ଚାଲିଥାଏ । ତା' ମନ୍ତ୍ର ଗୁଡ଼ାକ ବାହୁନି ବାହୁନି କାନ୍ଦିଲା ପରି ଶୁଭୁଥାଏ । ଯେତେସବୁ ସେଇଠି ସେତେବେଳେ ଥିଲେ ସମସ୍ତେ ତଳକୁ ମୁହଁପୋତି ଠିଆ ହେଇଥାନ୍ତି । ସମସ୍ତଙ୍କ ଆଖି ଢକେଇ ଯାଉଥାଏ ।'' –

'ସେଇଠୁ ?' ଜଳନ୍ଧର ଉତ୍କଣ୍ଠିତ ହୋଇ ପଚାରିଲା – ''ସେଇଠୁ ସେ ଦର୍ପଣ ଚେମ୍ବୁ ଭିତରେ ବୁଡ଼ିଗଲା । ବ୍ରାହ୍ମଣ ଆଉ ଟିକିଏ କ'ଣ କରି ସେ ଚେମ୍ବୁ ଧରି ଉଠିଲା । ପଛକୁ ଲେଉଟି ଦେବୀ ମେଢ଼କୁ ଆଉ ଚାହିଁଲା ନାହିଁ । ସେମିତି ଟାଉ ଟାଉ ଚାଲିଗଲା ।''

ସମସ୍ତେ କହିଲେ – ''ଯେମିତି ପ୍ରଥମେ ସେ ଦେବୀଙ୍କର ପ୍ରାଣ ପ୍ରତିଷ୍ଠା କରିଥିଲା, ସେମିତି ସେଇ ପ୍ରାଣକୁ ନେଇ ଚାଲିଗଲା । ଏଣିକି ମେଢ଼ରେ ଯୋଉ ମାଟି ପ୍ରତିମାକୁ ସେଇ ମାଟି ପ୍ରତିମା । ତା' ଦେହରୁ ଦେବୀ ଓହ୍ଲେଇଗଲେ ।''

''ତା'ପରେ ?...

''ତା'ପରେ ଆଉ କ'ଣ ? – ତୁ ମତେ କହିଥିଲୁ ନା' ଦେଖି ଜାଣିଲେ ସେ ପ୍ରତିମା ହସୁଛନ୍ତି, ନିଶ୍ୱାସ ମାରୁଛନ୍ତି, ତାଙ୍କ ହାତ ଆଙ୍ଗୁଠି ହଲୁଚି । ...ମୁଁ ବି କାଲି ସେଇଆ ଦେଖିଲାପରି ଲାଗିଥିଲା । ଆଜି ସେ ବ୍ରାହ୍ମଣ ଚାଲିଗଲାପରେ – ସତକୁସତ ସେ ପ୍ରତିମାରେ ଆଉ ଜିଅ ଥିଲାପରି ଦିଶୁନାହିଁ । ସେମିତି ଦାଉ ଦାଉ ଦିଶୁନାହିଁ, ଜୀଅନ୍ତା ଦିଶୁନାହିଁ । ସତେ ବା ଯାହା ଥିଲା ତା'ର ମୁର୍ଦ୍ଦାରଟା ।''

''ଚୋପ୍ ବ୍ବେ!!''

ଚଡ଼କ ପଡ଼ିଲା ପରି ଜଳନ୍ଧର ଗର୍ଜିଉଠିଲା । ବିଜୁଳି ପରି ଛାଟି ହେଇଗଲା । କାହାକୁ ଅପେକ୍ଷା ନ କରି ଧାଇଁଗଲା ଦାଣ୍ଡକୁ । ସେଇଠୁ ସିଧା ବିନ୍ଧାଣୀ ସାହି ମେଢ଼ ପାଖକୁ ।

ନିଧି ତା' ପଛେ ପଛେ ଚାଲିଥାଏ କ'ଣ ହବ ଦେଖିବାକୁ । ଜଳନ୍ଧର ଧାଇଁ ଧାଇଁ ଧକଉଥାଏ । ମେଢ଼ ପାଖରେ ଲୋକ ଭିଡ଼ ନଥାଏ । କାଁ-ଭାଁ ଦି'-ଚାରିଜଣ କ'ଣ ସବୁ ଯୋଗାଡ଼ କରୁଥାନ୍ତି । ଦୀପଟିଏ ଜଳୁଥାଏ ।

ଜଳନ୍ଧର କନାଟିବାଡ଼ ପାଖରେ ଠିଆ ହୋଇ ରହିଲା । ଚାହିଁରହିଲା ଦେବୀଙ୍କୁ ଅପଲକ ଆଖିରେ । ହଠାତ୍ ଗୋଟାଏ ପଲକରେ ସେ ବାଡ଼ ଡେଇଁଯାଇ ଦେବୀଙ୍କୁ କୁଣ୍ଢେଇ ଧରିଲା । ଲାଖିଗଲା ସେ ବିଗ୍ରହରେ । ସେ ମହିଷାସୁରର ଆର୍ତ୍ତନାଦକୁ ମହାସିଂହର ହେଣ୍ଟାଳକୁ ଅତିକ୍ରମି ଯାଇଥିଲା । ଦେବୀ ପ୍ରତିମାର ବେକରେ ବାହୁ ବେଢ଼େଇ ଦୁଇ ଗୋଡ଼କୁ ପଛରେ ଛନ୍ଦି ଦେଇଥିଲା ।

ନିଧି ଛାନିଆଁ ହେଇ ହାଉଳି ଖାଇଲା ।

ଲୋକେ ହାଁ-ହାଁ କହି ଘେରିଗଲେ ।

ଡାକ-ହାକ ହେଇ ଅନେକ ରୁଣ୍ଡ ହେଇଗଲେ ।

''ଆରେ ହେ, ଓହ୍ଲେଇଆ, ଜଳ, ସାହିବାଲା ତତେ ହାଣିଦେବେ ।''

''ଆହେ ଦେଖୁଚ କ'ଣ ଟାଣିଆଣ ତାକୁ । ସାବଧାନ, ବିଗ୍ରହ ଯେମିତି ଖଣ୍ଡିଆ ନ ହୁଅନ୍ତି ।''

''ଭିଡ଼ିଆଣ ସେ ପ୍ରକୃତିଛଡ଼ା ବୋଦାଟାକୁ । ଏଇଠି ପଶୁବଳି ଚଢ଼େଇଦବା ।''

''ଧର-ଧର ମାର-ମାର'' ଶବ୍ଦ ଚାରିଆଡୁ ଶୁଭିଲା । ଚାରିଜଣ ଭେଣ୍ଡିଆ ଜଳନ୍ଧରର ଜାବ ଫିଟେଇବାକୁ ଟଣାଟଣି କଲେ । ମେଢ଼ ଦୋହଲିଲା । ପ୍ରତିମା କମ୍ପିଲା ।

ଜଳନ୍ଧରର ଦେହ ସାରା ଝାଳରେ ବୁଡ଼ିଯାଇଥାଏ । ତା ତାଳୁରୁ ତଳିପାଯାଏ ଥରୁଥାଏ ବରଡ଼ାପତ୍ର ପରି ।

ସେମାନେ ଯେତେ ଭିଡ଼ିଲେ ଜଳନ୍ଧରର ଜାବ ଫିଟିଲା ନାହିଁ । ଲୁହା ଷଣ୍ଢୁଆସି ପରି ତା' ହାତ ଗଣ୍ଠି ପଡ଼ିଯାଇଥାଏ, ପାଦ ଛନ୍ଦି ହୋଇଯାଇଥାଏ ।

ତାକୁ ସେମାନେ ଟାଣିଲାବେଳେ ଖଣ୍ଡିଆ କରିପକାଇଲେ । ଲୁହାଛଡ଼ ପୂରେଇ ତାଡ଼ିଲାବେଳକୁ କିଏ ତାଗିଦା କଲା –

''ଆରେ ସାବଧାନ, ଦେବୀଙ୍କ ବିଗ୍ରହ ଖଣ୍ଡିଆ ହେଇଯିବ ।''

ନିଧି କନାଟି ବାଡ଼ ଏପଟେ ଠକ୍ ଠକ୍ ଥରୁଥାଏ । ତା' ପାଟି ଶୁଖି ଯାଉଥାଏ । ଜିଭ ଭିଡ଼ି ନଉଥାଏ ଭୟରେ । କ'ଣ ହବଟି ! ସେମାନେ ବୋଧେ ଜଳକୁ ପ୍ରାଣରେ ମାରିଦେବେ । ତାକୁ ସତକୁସତ ବଳି ଚଢ଼େଇ ଦେବେ !

ସେ ଅଥୟ ଅଣାୟତ୍ତ ସମୟ କେତେକାଳ ଯାଏଁ ସମସ୍ତଙ୍କ ଉପରେ ସବାର ହୋଇ ରହିଲା କେଜାଣି । ବିସ୍ମୟ କ୍ରୋଧ ଜିଘାଂସାର ଖରଶାଣ ଖଡ୍‌ଗ, ଖଟ୍ବାଙ୍ଗ, ତ୍ରିଶୂଳ ସେ ପବନରେ ବିଜୁଳି ପରି ଚମକୁଥାନ୍ତି ।

ମହାସମର ଜାରି ରହିଥାଏ ସମସ୍ତଙ୍କ ସମକ୍ଷରେ, ସମସ୍ତଙ୍କ ସତ୍ତ୍ୱେ ।

ନିଧି ଦେଖିଲା ଯେ ଜଳନ୍ଧର ଏଣିକି ରହି ରହି କମ୍ପୁଛି । ତା' କମ୍ପିବା ଧିମେଇଗଲା ଏବଂ ସେ ନିଶ୍ଚଳ ହେଇଗଲା ।

ଅଚାନକ ଲଦ୍‌ଲାଦ୍ ଖସିପଡ଼ିଲା ଜଳନ୍ଧର ମହିଷାସୁର ଉପରେ; ସିଂହ ଉପରେ । ପଡ଼ିଗଲା ପରେ ସେ ଆଉ ହଲଚଲ ହେଲାନାହିଁ । ମରିଗଲା କି ଆଉ ।

ତାକୁ ସେମାନେ ଟେକି ଆଣିଲେ ଛେଦ ପଡ଼ିଥିବା ବଳି ପରି, କନାଟି ବାଡ଼ ଏପଟେ ତଳେ ଶୁଆଇଦେଇ ତାକୁ ସେମାନେ ବେଢ଼ି ରହିଲେ । ନିଧି ଛାନିଆ ହେଇ ଅନେଇଥାଏ ଜଳନ୍ଧରର ମୁହଁକୁ । ଆଖି ଦ୍‌ରବୁଜା, ମୁହଁ ଶେତା – ହେଲେ କେମିତି ଗୋଟାଏ ଖୁବ୍ ଶାନ୍ତ, ତୃପ୍ତ, ମୁଗ୍ଧ ଭାବ ତା' ଚେହେରାରୁ ଜଣାପଡୁଥାଏ ।

ସେ ତା' ବୁକୁକୁ ନିଘା କରିଥାଏ । ତା' ଜାମା ବୋତାମ ଫିଟି ଯାଇଥାଏ । ଝାଳ ସରସର ଦେହ ସାରା । ତଥାପି ନିଧି ଜାଣିପାରିଲା ଯେ ନିଃଶ୍ୱାସ ଚାଲିଛି ।

ଜଣେ ବୟସ୍କ କିଏ ମଧ ନଇଁପଡ଼ି ତା ନାକ ପାଖରେ ହାତ ରଖି ସେଇଆ କହିଲେ – ''ବଞ୍ଚିଚି ।''

'କିଏ ଏଇଟା ?'

"ସେ ତଳ ସାଇର ବାଳୁଙ୍ଗା ଟୋକା ! ଏଇଠି ସଦାସର୍ବଦା ବୁଲୁଥାଏ ।"

"କ'ଣ ତା ନା ? ଘର କୋଉଠି ? ବାପା ନାଁ କ'ଣ ?"

କୌଣସି ଉତ୍ତର ମିଳିଲା ନାହିଁ । ନ ମିଳିବା କଥା ।

ସେଇ ନୀରବତା ଭିତରେ ସେଇ ବୟସ୍କଜଣକ ମୁନ୍ଦେ ପାଣିଆଣି ଜଳନ୍ଧରର ମୁହଁରେ ଛାଟୁଥାନ୍ତି ।

ସାହସ ପାଇଲା ପରି ନିଧି କହିଲା – "ତା' ନାଁ ଜଳନ୍ଧର ହାତିଆଳ; ମୁଁ ତା ଘର ଦେଖିଚି ।"

"ଆଚ୍ଛା ! ଆଚ୍ଛା ! ଗୋଟେ ରେକ୍‌ସାରେ ପକେଇ ୟାକୁ ଘରକୁ ନେଇ ଯା' !"

ଶଙ୍କିଲା ପରି, ଛାନିଆ ହେଲା ପରି ନିଧି ଜଳନ୍ଧରକୁ ସମ୍ଭାଳି ଧରିଥାଏ । ତା' କାନ୍ଧରେ ଜଳନ୍ଧରର ନିଶ୍ୱାସ ତାକୁ ବଳ ଦେଉଥାଏ ।

ସେ ବୟସ୍କଜଣକ ରେକ୍‌ସା ପଛରେ ଆସି ନିଧିକୁ ବୁଝେଇଲା ପରି କହିଲେ – "କିଛି ଭୟ କରିବାର ନାହିଁ । ମା'ଙ୍କ କୃପା ହେଲେ ସେ ଭଲ ହେଇଯିବ । ଭାଗ୍ୟକୁ ଦେବୀଙ୍କ ମନ୍ତ୍ର ବିସର୍ଜନ ସରିଥିଲା । ପ୍ରତିମାରେ ଆଉ ପ୍ରାଣ ନ ଥିଲେ, ନ ହେଲେ ଏ ଟୋକା ସେଇଠି ଜଳି ଯାଇଥାନ୍ତା ।"

ନିଧି ଶୀତେଇ ଗଲା ! ଜାକି ଧରିଲା ଜଳନ୍ଧରର ଝାଳ·ସରସର କାକର ଦିହଟାକୁ ।

ସେ ଦିନ ସଂଧ୍ୟାରେ ମେଢ଼ ବାହାରିଲା ଖୁବ୍ ପଟୁଆରରେ । ତଳସାହି ମୁଣ୍ଡରେ ଢୋଲ ମାଡ଼ ଶୁଭିଲା । ମହୁରୀ ବାଜିଲା । ପଡ଼ିଶାଘର ବିଶୁ କକା ଜଳନ୍ଧରକୁ ଦେଖି ତା ନାଡ଼ି ଚିପି କହିଲେ – "କିଛି ଭୟ କରିବାର ନାଇଁ । ତାକୁ ନିଦ ହେଇଯାଇଛି ଉଠାଅ ନାଇଁ । ସେ ଭଲ ହେଇଯିବ ।"

ନିଧି ଦି' ଭାଗ ହେଇ ରହିଥାଏ । ଜଳକୁ ଛାଡ଼ିଗଲେ ତା' ମା' ଛାନିଆ ହେଇଯିବ । – ତେଣେ ବିନ୍ଧାଣୀସାହି ମେଢ଼ ଚାଲିଯିବ – ସେ ଦେଖିପାରିବ ନାଇଁ ।

ଫେର୍ ତାକୁ ବି କେମିତି ଗୋଟାଏ ଡର ମାଡ଼ିଲା । ସେ ଆଉ ମେଢ଼ ପାଖକୁ ଯାଇ ବିସର୍ଜନ ଘାଟରେ ସେ ମୁକୁଟ କାଢ଼ିବାକୁ ସାହସ କଲାନାଇଁ । ତା ବାହାରେ ମହିଷାସୁର ମୁକୁଟଟା ଚେପା ହେଇଯାଇଥିଲା ଜଳନ୍ଧର ତା' ଉପରେ ପଡ଼ିଯିବାରୁ ।

ମେଢ଼ ପଟୁଆର ଘୁଞ୍ଚିଗଲା ଆର ସାହିକୁ । ଦୂରକୁ ଦୂରକୁ ଘୁଞ୍ଚିଗଲା ଢୋଲ ମହୁରୀର ଘନନାଦ ।

ରାତ୍ରିର ନୀରବତା ଓହଳି ଆସିଲା ଶୀତଳ ଆକାଶରୁ । ତାରାମାନେ ବୁଣି ହେଇଗଲେ । ନଈପଠା ସେପାରି ପାହାଡ଼ ଆଉ ପ୍ରତିଧ୍ୱନି ତୋଳିଲା ନାହିଁ । ସେଇ ପ୍ରଥମ ପ୍ରହର ଭିତରେ ନଈର ସହରପାଖ ଦକ୍ଷିଣ ଧାର ପାଣିରେ ଦେବୀଙ୍କ ବିସର୍ଜନ ସରିଗଲା ।

ତା' ପରଦିନ ଦୁର୍ବଳ ଥମ୍ ଥମ୍ ସକାଳ ।

ଜଳନ୍ଧର ମାସେ ବାଧିକା ପଡ଼ିଥିଲା ମଳୁ ପରି ଉଠିବସିଲା । ତାକୁ ଖୁବ୍ ଉଶ୍ୱାସ, ପବନରେ ଉଡ଼ିଗଲା ପରି ଲାଗୁଥାଏ । ବିଶୁ କକା ଆସି ଦେଖିଦେଇଗଲେ । ''ଆଉ କିଛି ଚିନ୍ତାନାହିଁ । ଏଥରଟା ଜଳ ବର୍ତ୍ତିଗଲା ଜାଣ'' – କିଛି ସମୟ ରହି ତାକୁ ଆଉଁସି ସାଉଳି ଚାଲିଗଲେ । ଜଳନ୍ଧର ମଞ୍ଚ ଟାଣ ଧରି ଆସିଲା ।

ଦୁଇଦିନ ଧରି ସେ ଘରୁ ଗୋଡ଼ କାଢ଼ି ନ ଥିଲା ।

ଦୁଇଦିନ ନିଧି ମଧ ତା ପାଖକୁ ଆସି ନଥିଲା । ତା' ପରଦିନ ସକାଳୁ ସେ ଆସି ପହଞ୍ଚିଗଲା । ଜଳନ୍ଧର ତାକୁ ଦେଖି ଅଳ୍ପ ହସିଲା ।

''କିବ୍‌ବେ ହୁତୁମ୍ୟା, ଏଥର ବାଗ ଧରିଗଲୁ ତ' । ବାହାରିପଡ଼ ଘେରାଏ ବୁଲି ଆସିବା ।''

ଜଳର ମା' ଶୁଣି ପାଟିକଲା – ''ନାଇଁ ବାପା, ତାକୁ ଆଉ ଖରାତରାରେ ନେ ନା' । ତା'ର ନୂଆ ଦିହ ପରି ହେଇଚି ।''

''ନାଇଁ ମାଉସୀ, ସେ ଥରେ ବୁଲି ଆସିଲେ ତାକୁ ଫୁର୍ତ୍ତି ଲାଗିବ ।''

ଜଳନ୍ଧର ବି ଉଠି ଜାମା ପେଣ୍ଟ ଗଳେଇ ହେଇ ପଡ଼ିଲା । ଦୁହେଁ ରାସ୍ତା ଉପରକୁ ଆସିଯିବାରୁ ତାକୁ ସତକୁସତ ଭାରି ଭଲ ଲାଗିଲା ।

ନିଧି କ'ଣ ଭାବିଲା କେଜାଣି ସେଇ ବିନ୍ଧାଣୀସାଇ ଆଡ଼େ ବାଟ କାଟି ଗଲା । ମେଢ଼ ପାଖରେ ଖାଲି ବାଉଁଶ ଛାଞ୍ଚଟା ତଥାପି ଥିଲା । ସେଥିରେ ଗଣ୍ଡାଏ କାଉ ବସି ରାବୁଥିଲେ – ସେ ଜଳନ୍ଧରକୁ ସେଇଠି ଠିଆହେବାକୁ ଦେଲାନାହିଁ, ନାନା କଥା କହି ବାଆଁରେଇ ନେଇଗଲା ନଈଘାଟଆଡ଼େ । ସେଇଠି ସେ ଦୁହେଁ, ଅସୁମାରି ଦି'ପ୍ରହର ବିତେଇଛନ୍ତି । କେତେ ଡେଇଁଛନ୍ତି । ପାଣି ପହଁରିଚନ୍ତି । –

ପୁରୁଣା ଆମ୍ବଗଛ ପାଖରେ ମାଟି ଖାଇ ଯାଇଥାଏ । ସେଇଠି ଘାଟ ଦିଶେ ନାହିଁ । ସେ ଗଡ଼ାଣିକୁ ଆଗେଇ ଗଲେ ଆଉ ଦଶ ପାହୁଣ୍ଡରେ ଘାଟ ।

ସେଇ ମୋଡ଼ ପାଖରେ ଓହ୍ଲେଇ ଗଲା ମାତ୍ରେ ଦିହେଁ ଥମ୍ ହେଇ ଠିଆ ହେଇଗଲେ ।

ସେଇ ବୋଧେ ଦେବୀ ପ୍ରତିମାର ଅବଶେଷ । ମଥାଟା ଝଡ଼ି ଯାଇଥାଏ । ସେଇଠି ଗୋଟିଏ ଡେମ୍ଫ ପରି କ'ଣ ଉଭାରି ରହିଥାଏ । ଦେହସାରା କାଦୁଅ ସାଲୁବାଲୁ । ହାତ ପାପୁଲି ଝଡ଼ିଯାଇଥାଏ । ବାହା ଉପରୁ ମାଟି ଖସିଯାଇ ଭିତର ନଡ଼ା ଆଉ ସୁତୁଲି ଦିଶୁଥାଏ ।

ସେଇଠି ଏମାନଙ୍କୁ ପଛକରି ଯେ ବସିଥାଏ, ତାକୁ ଏ ଦୁହେଁ ଜାଣିଛନ୍ତି ତ । ଭୟରେ ସେମାନେ ତା ପାଖ ପଶନ୍ତି ନାହିଁ । ସେ ଖଣ୍ଡ ଦୂରରେ ପଳାଶ, ଶିମୂଳି ବଣ ଭିତରେ ରହୁଥିବା ମଶାଣି ଚଣ୍ଡିଆ ତାନ୍ତ୍ରିକ । –

ସେ ତା ସାମ୍ନାରେ ନିଆଁଢାଳି ତା' ଉପରକୁ ଫୁଲର ପାଖୁଡ଼ା ପକଉଥାଏ । ଧୂଆଁ ଉଠୁଥାଏ । ତା' ଦି'ପାଖେ, ଆଉ କ'ଣ ସବୁ ମାଟି ସରାମାନଙ୍କରେ ଥୁଆ ହୋଇଥାଏ ।

ସେ ଆଭିଚାରିକ ଜପୁଥାଏ । ବିକଟାଳ ଶୁଭୁଥାଏ ତା' ସ୍ୱର । ତା' ଝାମ୍ପୁରା ମୁଣ୍ଡକୁ ବାରବାଂର ତଳେ ଲଗେଇ ପ୍ରଣାମ କରୁଥାଏ ।

ନିଧିର ହୋସ୍ ଆସିଲା ଯେତେବେଳେ ସେ ଦେଖିଲା ଜଳନ୍ଧର ହାତ ଯୋଡ଼ି ଥରୁଛି । ତା' ଆଖିରୁ ଧାର ଧାର ଲୁହ ଝରିଯାଉଛି । ସେ ସେଇଠି ଆଣ୍ଠେଇପଡ଼ି ମୁଣ୍ଡ ତଳେ ଲଗେଇ ରହିଲା । ହାତ ଲମ୍ୱେଇଦେଲା ଆଗକୁ ।

ନିଧି ଆତଙ୍କିତ ହୋଇ ଚାହିଁଥାଏ । ଦେବୀଙ୍କ ସେ ଅବଶିଷ୍ଟ ରୂପକୁ ଥରିଲା ଥରିଲା ହାତରେ ନମସ୍କାର କରୁଥାଏ ।

ସେ ଅନୁଭବ କରୁଥାଏ ଯେ ସେଇଟା ବୋଧେ ଜଳନ୍ଧରର ସଙ୍କଟ ବେଳା... ତାକୁ ଉଠେଇଦେବା ଉଚିତ ହେବ ନାହିଁ । ସେ ଯା'ପରେ ହୁଏ ତ ବର୍ତ୍ତିଯିବ ନତୁବା ନିବର୍ତ୍ତିଯିବ ।

ମଶାଣି ଚଣ୍ଡିଆ ତାନ୍ତ୍ରିକ ବାରବାଂର ପ୍ରଣାମ କରୁଥାଏ, ଅପରାଧ ପାଇଁ କ୍ଷମା ମାଗୁଥାଏ ତା'ପାଇଁ; ଜଗତ ପାଇଁ–

ସୂର୍ଯ୍ୟ ଉଠିଆସୁଥାଏ ପୁରୁଣା ଆମ୍ବତୋଟା ଗହଳରୁ...

□□□

# ହିସାବ ନିକାଶ

ସେ ଗାଁ ନାଁ ବି ପାତ୍ରପୁର !

ସେଇ ନାଁରେ ଆଉ ଶହେ-ଦୁଇଶ' କୁଆଡ଼େ ଦେଶସାରା ବୁଣି ହେଇ ରହିଥିବେ ଛୋଟବଡ଼ ଗାଁ ।

ମଣିଷ ଗୁଡ଼ାକ ବି ସେମିତି ଯାହାକୁ ଯୋଉ ନାଁରେ ଡାକିଦେଲେ ଚଳିବ । ଶୁକୁରା, ମକରା, ଟିକିରା । ନୁଖୁରାମୁଣ୍ଡିଆ, ରୁଢ଼ିଆ, ଭକୁଆ ମୁହାଁ, କାନ୍ଦୁରା କାନ୍ଦୁରା ଲୋକଗୁଡ଼ିଏ । ଶିରାଳ ହାତରେ ବଡ଼ ବଡ଼ ପାପୁଲି... କୌଣସି ଗୋଟିଏ ପାପୁଲିରେ ଭାଗ୍ୟରେଖା ନାହିଁ । ଆଉ ଅନ୍ୟ ରେଖା ବି ଲିଭି ଯାଇଚି ନା କ'ଣ । ଖାଲି ଗୋଟାଏ ଲଙ୍ଗଳଗାର ପରି ଜୀବନ ରେଖାଟାଏ ପାପୁଲିକୁ ଦୁଇଭାଗ କରି ଚିରି ଦେଇଛି ।

ମାଇପି ସବୁ ସେଇଭଳି ନୁଖୁରିମୁଣ୍ଡି, ଏକ ବସ୍ତ୍ରୀ, ହାଡ଼ୋଇ । ଚିତାକୁଟା ଡେଣା, ମୁଣ୍ଡାକାଚ କଚଟି, ରସ ମୁଦି ହାତ । ସେଇ ପାଇଟିଆଳି ହାତରେ ଫାଟକୁଡ଼ା ପାପୁଲି । ମୋଟା ଗଣ୍ଠିଆ ଆଙ୍ଗୁଠିରେ ଅସନା ମଳା ନଖ । ଯାଙ୍କୁ ବି ଯାହାମନ ତାହା ଡାକିଲେ ଚଳିବ... ପୁନେଇ, ସୁନେଇ, ଫୁଲ, ସୁଲ, ଦ୍ରୁପଦି ।

ପିଲାଗୁଡ଼ାକ ଲଙ୍ଗଳା, ଟିମିରି ପେଟିଆ, କାଛୁଆ ଅସନା ଭୋକିଲା ହିଞ୍ଜହିଞ୍ଜିଆ । ଦୁକୁଦୁକି ପଞ୍ଜୁରୀ, ଗାତୁଆ ଆଖି ଚାରିକଡ଼େ ପୁଞ୍ଜି ପୁଞ୍ଜି ଝାଳ । କପାଳ ବେକ ଅଠାଅଠା ।

ଗୋଡ଼ଠଉ ମୁଣ୍ଡଯାଏ ସବୁ ମାଇପି ପିଲାଙ୍କର ଗୋଟାଏ ରଙ୍ଗ – ମାଟି ରଙ୍ଗ । ଦିହ ସାରା ଧୂଳି ମଳି । ପେଟରେ ପାଟିରେ ଆଖିରେ ଅମାପ ଭୋକ । ସମସ୍ତଙ୍କ ପାଇଁ ଗୋଟିଏ ମାତ୍ର ଅକୁହା କଥା – ଦୁଃଖ ।

ଏଭଳି ଗାଁ ଏଇ ପାତ୍ରପୁର ।

ଏଠି ପୁଣି ପଦୁଅଁ ଫୁଟିବ । ଏଠି କୁଆଡ଼େ ହାତୀ ପଲାସିବ !! ସଜନା ଗଛରେ ଶିଝୁ ବାଡ଼ରେ ଏଠି ସେଠି କଥା ବାଢ଼େଇ ହଉଚି ଯେ ମନ୍ତ୍ରୀ ଆସିବେ !!

ସମସ୍ତଙ୍କୁ ଆକ୍ତା ଆକ୍ତା ଲାଗୁଚି ।

ଅଣ ନିଃଶ୍ୱାସି, ଆଫା ଆଫା ଲାଗୁଚି ।

ଧାଡ଼ି ଧାଡ଼ି ଗାଡ଼ି ଆସି ପହଞ୍ଚି ଯାଉଛନ୍ତି ତାଳବଣିଆ ପାଖରେ । ଏଣିକି ସେ ସାନ ସାନ ନରମା ସୁକୁମାରିଆ ଚକ ଆସିପାରିବେ ନାଇଁ । ଆବଡ଼ା ଖାବଡ଼ା ପାଣି କାଦୁଅରେ ଛେଚି କଚି ହେଇ ଶଗଡ଼ ବୋଲି ଯାଉଚି । ତାକୁ ହଡ଼ା ବୋଲି ଟାଣୁଛନ୍ତି । ନ ହେଲେ ମଣିଷ କେମିତି ଯିବା ଆସିବା କରନ୍ତା ? ଜିପ୍ ଗାଡ଼ିଆ ବାବୁ କ'ଣ

ଶଗଡ଼ରେ ଆସିବାକୁ ରାଜି ହେବେ ? ମନ୍ତ୍ରୀଙ୍କୁ ନ ହେଲା ପାଲିଙ୍କିରେ ବସେଇ ନେଇ ଆସିବା !

ମନ୍ତ୍ରୀ ସତେ ଏ ଅସନା-ମସନାକୁ କାଇଁ ଆସୁଛନ୍ତି ଯେ ! କ'ଣ ଦେଖିବେ ଏଇଠି ?

ଏଇଠି କିଏ ଗୋଟେ ମରନ୍ତା ହେଲେ ? ମରଣ ତ ମନ୍ତ୍ରୀଙ୍କ ଆଖିକୁ ନୂଆ ଲାଗନ୍ତା । ଖୁସି ହେଇଯାଆନ୍ତେ । ନ ହେଲେ ଏଠି କଣ ଆଉ ଅଛି ?

ଆଉ ଦୁଇଶ ପାତ୍ରପୁରରେ ଯାହା, ଏଇଠି ବି ସେଇଆ । ତାଳବଣିଆ ପାଖରୁ ଗୋଟେ ଲଙ୍ଗଳା ଟୋକା ଖାଲ ଢିପ ଡେଇଁ ଦୌଡ଼ି ଆସିଲା ଗାଁକୁ, ଗୋଟେ ନିଶ୍ୱାସରେ । ଭାରି ଟାଣୁଆ ଟୋକା । ନିତିଦିନ ଗଣ୍ଡେ କ'ଣ ଖାଇବାକୁ ପାଇଲେ ସେଇଟା ସର୍କସରେ ମିଶିଯାନ୍ତା ।

ଆସି ବହେ ଧକେଇଲା । ହାତରେ ଠାରିଲା ଏପାଖ ସେପାଖ । ସେଇଠୁ କହିଲା – ''ମଁତିରି, ...ମଁତିରି ଆଇଗଲେ ।''

ଇଲୋ ବୋପାଲୋ । ମନ୍ତ୍ରୀ ଆସିଗଲେ ? କ'ଣ କରିବେ, ନିପାରିଲା, ମଳିମୁଣ୍ଡିଆ, ପାତ୍ରପୁରିଆ ? ହାଉଯାଉ ହେଲେ । ଧନ୍ଦାଳି ହେଇଥିବା ପଙ୍କ ପୋଖରୀର ନିର୍ଜୀବିଆ ମାଛ ପରି । ତାଙ୍କ ଗୋଡ଼ ହାତ ଚଳିଲା ନାହିଁ । ପାଟି ଫିଟିଲା ନାହିଁ । ଆଖିରେ ପଲକ ପଡ଼ିଲା ନାହିଁ ।

କିଏ ଗୋଟେ କହିଲା – ''ଆରେ ଫୁଲମାଳ କାଇଁ ? ବେକ ଉଛୁଳେଇଲା ପରି ଚାରି-ଛ'ଟା ଫୁଲମାଳ ନ ହେଲେ କେମିତି ହବ ?''

''ଏ ଦହି, ଦୁଧ, ସର, ଲହୁଣୀ, ମାଛ କଇଁଛ କାହିଁ ? ମନ୍ତ୍ରୀ କ'ଣ ମଣୋହି କରିବେ ?''

''ଶଙ୍ଖ, ମହୁରୀ ବାଇଦ କାହିଁ ? ନାଚ ଗୀତ କାହିଁ ? କ'ଣ ଦେଖି ମନ୍ତ୍ରୀ ମୁରୁକିବେ ?''

ଆବେ ଏ ଗାଁଟାରେ ଚାଲିବାକୁ ବାଟ କାହିଁ ? ଗୋବର କାଦୁଅ ଖାଲ ଖଣା! ଲୁଗା ଟେକି କ'ଣ ସେ ତୁମ ପରି ଯାଇ ପାରିବେ ? – ଗୋଡ଼ କାଦୁଅ ହେଲେ ଧୋଇବାକୁ ପାଣି କାହିଁ ? ସବୁ ଘରୁ ମାଟି ହାଣ୍ଡି ଖାଲିକରି ଏକାଠି କଲେ କ'ଣ ମନ୍ତ୍ରୀ ପାଦ ଧୋଇବାକୁ ଅଣ୍ଟିବ ?

ମନ୍ତ୍ରୀ ଆସିଛନ୍ତି, ଭାଷଣ ଦେବାକୁ ଚାହିଁଲେ ଲୋକ କାହାନ୍ତି ? ଆଜିକ ହେଲେ ଅଳପଇଷେ ଯାଇ ନଥାନ୍ତେ ଢାଳ ଗୋଟାଇବାକୁ, ଗୋଡି ଖଟିବାକୁ ।

''ଇସ୍, ମରିଯାଆନ୍ତ ହେଲେ ପାତ୍ରପୁରିଆ – ପିଲାବୁଢ଼ା ମାଇକିନିଆ ଯେତେ ଅଛ । ଗାଁଟାରେ ଗୋଟାଏ ହେଲେ ଜିଅନ୍ତା ନାହିଁ । ସବୁ ମୁର୍ଦ୍ଦାର ଦେଖିଲେ ବୋଲି ମନ୍ତ୍ରୀ ଫେରି ଯାଇ କହନ୍ତେ ।''

ଯେ କହୁଥିଲା ସେ ଆସି କେତେବେଳୁ ଗାଁରେ ପହଞ୍ଚି ଯାଇଥିଲା । ସେ ତିନିଖଣ୍ଡ ଗାଁ ସେପାରିର ଗ୍ରାମ ସେବକ । ନାଁ ନକୁଳ ନାହାକ । ତା'ର ଫାଳକେ ଗୋଟାଏ ରଂଗ । କଥାକେ ଯୋଡ଼ାଏ ବାଙ୍କ । ସେ ଆସି ଏମିତି ହାଉଁ ପାଉଁ ହେଲାଣି ଯଦି, ତେବେ ମନ୍ତ୍ରୀ ନିଶ୍ଚେ ଆସିଗଲେ ।

ଆରେ ଆସିଲେ କ'ଣ । ସେ ପରା ସେଇ ତାଳବଣିଆ ପାଖରେ ଗାଡ଼ିରୁ ଓହ୍ଲେଇ ଠିଆ ହୋଇଛନ୍ତି ! ସେଇଠୁ ଯେମିତି ସବୁ ହାକିମ ବାବୁ ପାତ୍ରପୁରକୁ ଆଖି ଟେକି ଚାହିଁ ଦେଇ ଚାଲିଯାନ୍ତି, ମନ୍ତ୍ରୀ ସେମିତି ଚାହିଁ ଫେରି ଯାଉ ନାହାନ୍ତି କାହିଁକି ? କ'ଣ ଗରଜ ପଡ଼ିଚି ଗାଁରେ ପଶିବାକୁ ?

''ଆହେ, ମନ୍ତ୍ରୀ ଉପରେ ଆହୁରି ଆହୁରି ବଡ଼ ନେତା ନାହାନ୍ତି କି ? ତାଙ୍କରି ହୁକୁମ ହେଇଥିବ ପରା !!!''

ନକୁଳ ନାହାକ କହୁଚି ଯଦି ତା'ହେଲେ ସେଇଆ ହେଇଥିବ ।

ମନ୍ତ୍ରୀ ତାହେଲେ ନିଶ୍ଚେ ବିଜେ ହେବେ ।

ଗାଁଟି ଯାକ ଲୋକ ଆସି ଗାଁମୁଣ୍ଡ ଫାଳିକିଆ ବରଗଛ ମୂଳେ ଠିଆ ହୋଇଗଲେ । ଗଛର ଆର ଫାଳକ ଦି'ପୁରୁଷ ତଳେ ଚଡ଼କ ପଡ଼ି ଜଳି ଯାଇଥିଲା ।

ନକୁଳ ନାହାକ ୟାକୁ ଠେଲି ତାକୁ ଭିଡ଼ି ଧାଡ଼ି ସଳଖିଲା । ବେକରେ ଗାମୁଛା ଓହଳେଇ ଚାଲିଗଲା କିଛିବାଟ । ତେଣିକି କାଦୁଅ, ଏଠି ସେଠି ପଥର । ତାଳବଣିଆ ହୁଡ଼ା ପାଖରୁ ଗୋଟାଏ ହିଡ଼ିହିଡ଼ିଆ ଗଡ଼ାଣି ।

ମନ୍ତ୍ରୀ ହୁଡ଼ା ଉପରେ ଠିଆ ହୋଇ ଅନେଇଲେ । କ'ଣ ପାଖ ଲୋକକୁ କହି ପାଦ କାଢ଼ିଲେ ଆଗକୁ । ହାକିମ ବାବୁମାନେ, ଫଟୋ ଉଠାଳି ମାନେ ତାଙ୍କ ଆଗକୁ ଗଡ଼ି ଆସିଲେ । ଗୋଟେ ଦି'ଟା କାଦୁଅରେ ପଡ଼ିଲେ । ଆହା, ଆହା କେଡ଼େ କଥା ହେଲା । ଜନ୍ମଯାକ ଭୂଇଁରେ ଚାଲି ନଥିବା ପାଦ ପୁଣି କାଦୁଅରେ ପଡ଼ିଗଲା ।

ମନ୍ତ୍ରୀ ଓହ୍ଲେଇବେ କେମିତି ?

ତାଙ୍କ ଦି'ପାଖେ କାନ୍ଧ ଦେଖେଇ ଲୋକ ଠିଆ ହୋଇଗଲେ । ଚାହିଁଲେ ମନ୍ତ୍ରୀ ହାତ ଥାପିଦେବେ । ଆହୁରି ଲୋକ କାଦୁଅକୁ ଓହ୍ଲେଇଗଲେ । ମନ୍ତ୍ରୀଙ୍କ ପାହୁଣ୍ଡ ପଡ଼ିବା ଜାଗାରେ ପଥର, ଇଟା ଥୋଇବାପାଇଁ । ପହଣ୍ଡି ବିଜେ କଲାପରି ମନ୍ତ୍ରୀ ଝୁଲି ଝୁଲି ଆଉଜି ଆଉଜି, ସେ କାଦୁଅ ଗୋହିରୀ ପାରି ହେଉଥାନ୍ତି । ନିର୍ବିକାର କାଦୁଅରେ ଚକଟି ଚାଲିଥିବା ଚନ୍ଦା, ବାଙ୍ଗୁରା, ପେଟା, ମୁହଁ ଫଣଫଣିଆ, ଗୋରା ତକତକ ହାକିମମାନଙ୍କୁ ଅତି ସନ୍ତୁଷ୍ଟ ହେଲାପରି ଚାହୁଁଥାନ୍ତି ?

କହୁଥାନ୍ତି ସତେବା – ''ତୁ କି ବର ମାଗିବୁ ମାଗ୍ ।''

ହାକିମ ପାନଖିଆ ଦାନ୍ତ ଦେଖେଇ ମନ୍ତ୍ରୀଙ୍କୁ ଅନେଇ ଆଖି ତଳକୁ କରି ନେଉଥାନ୍ତି ବିନୟରେ । ନୀରବରେ ବୁଝେଇ ଦଉଥାନ୍ତି – ''ଆଜ୍ଞାଏ କ'ଣ ସାରେ, ବେକେ କାଦୁଅରେ ପଶ୍ କହିଲେ ପଶିବାକୁ ଗୋଲାମ୍ ହାଜର୍ ଅଛି । ଖାଲି ଖଟୁଆକୁ

କାନ ଦେବେ ନାଇଁ ସାର୍ । ମୁଁ କ'ଣ କାମରେ ଠକି ପାରେ, ମୁଁ କ'ଣ ଲାଞ୍ଚ ମିଛରେ ବୁଡ଼ିଥିଲା ପରି ଦେଖାଯାଉଛି ସାରେ ?''

ନକୁଳ ନାହାକ ଏ ପାଖେ ଥାଇ ଖଲ ଖଲ ହଉଥାଏ । ସେ ଚାହୁଁଥାଏ କାଦୁଅରେ ଶୋଇପଡ଼ି ପାଛୋଟି ଆଣନ୍ତା ତା' ସାଇବକୁ । କହନ୍ତା ମୋ ଉପରେ ଚାଲି ଆସନ୍ତୁ ସାର୍ । ଆଉ ହାକିମଙ୍କ ପଛେ ପଛେ ମନ୍ତ୍ରୀ ତା' ଉପରେ ପାଦ ଥାପି ଦିଅନ୍ତେ ଯଦି ସେ ଧନ୍ୟ ହେଇ ଯାଆନ୍ତା । କାରଣ ତେଣିକି ଏଇତକ ପୁଞ୍ଜିକରି ସେ କେତେ କ'ଣ ଦୁହିଁଆଣନ୍ତା ମନ୍ତ୍ରୀଙ୍କ ନିଜଲୋକ, ପାଖଲୋକ ହେଇ ।

ତେବେ ନକୁଳ ନାହାକ କି ଛାର ମଣିଷ'। ଯଦି ଏଡ଼େ ଏଡ଼େ ମୁଣ୍ଡ କାଦୁଅରେ ଲଟପଟ ହଉଛନ୍ତି, ସେ ବା ତାଙ୍କ ସାଙ୍ଗରେ କୋଉ ସାହସରେ ଟକ୍କର ଦବାକୁ ଯିବ । ଟାଙ୍ଗରା ଭୂଇଁରେ ଯେତିକି ଭାଗ୍ୟ ତେଢ଼ିଲା ସେତିକି ।

ମନ୍ତ୍ରୀ ଏ ମୁଣ୍ଡେ ଆସି, ସମସ୍ତଙ୍କୁ ଛାଡ଼ି ଠିଆ ହେଲେ । ଓହୋ କି ଦୁର୍ଗମ ଅଂଚଳକୁ ଗସ୍ତ ନ କଲେ ମନ୍ତୀ ? ହାକିମ ପାଖକୁ ଲାଗିଆସି କହିଲେ ।

''ଏ ପାତ୍ରପୁରକୁ କୌଣସି ମନ୍ତ୍ରୀ, ଅଫିସର ହାକିମ କେହି କେବେ ଆସି ନଥିଲେ ସାର୍ ।''

ମନ୍ତ୍ରୀଙ୍କ ଓସାର ମୁହଁରେ ଓସାର ହସ ! କ'ଣ ମନ ପାଇଲା କେଜାଣି ପଚାରିଦେଲେ – ''କିନ୍ତୁ ତମେ ନିଶ୍ଚେ ଆସିଥିବ ଭୂୟାଁବାବୁ ।''

''ଭୂୟାଁବାବୁ ଚାରିଆଡ଼କୁ ଥରେ ଚାହିଁଦେଲେ । ମୁହୂର୍ତ୍ତକରେ ଭାବିନେଲେ ଯେ ସତ କହି ଦେଲେ ଲାଭ ଅଛି ।''

''ନାଇଁ ସାର୍, ମୁଁ କହିଲି ପରା ଆପଣ ସର୍ବ ପ୍ରଥମେ ଏ ଗାଁକୁ ଆସିଛନ୍ତି । ତା' ପୂର୍ବରୁ ମୁଁ କ'ଣ ଆଉ କେହି ଆସିନାହାନ୍ତି ।''

''ଆଚ୍ଛା, ଆଚ୍ଛା ! ଚାଲ ଗାଁକୁ ଯିବା !''

ଫାଳିକିଆ ବରଗଛ ମୂଳେ ମାଟି ରଙ୍ଗର ସ୍ଥିର ପ୍ରତିମାଗୁଡ଼ିକ ତାଙ୍କୁ ସ୍ପଷ୍ଟ ଦେଖାଗଲେ । ଏଇମାନେ ତା'ହେଲେ ଗାଁର ଭାଇ ଭଉଣୀ ।

ମନ୍ତ୍ରୀ ଚାରିଆଡ଼କୁ ଚାହିଁଲେ । ଜଣେ ଅର୍ଥ କଲା ମନ୍ତ୍ରୀ ରିସେପ୍‌ସନ୍ ଚାହୁଁଛନ୍ତି । ମୁଁ କହୁ ନଥିଲି ଆଗରୁ କିଛି ବ୍ୟବସ୍ଥା ହୋଇନାହିଁ । ଏଥର ସମ୍ଭାଳ । ଏଥିପାଇଁ ଦୁଇ-ଚାରିଟା ମୁଣ୍ଡ ଗଡ଼ି ଯାଇପାରେ ।'

ଆଉ ଜଣେ ଅର୍ଥ କଲା – ଗୋଟାଏ ଥର ଦେଖିଦେଲେ ମନ୍ତ୍ରୀ ସବୁ ବୁଝି ଯାଆନ୍ତି । ସେ ଗାଁଟାକୁ ଏମିତି କଳିନେଲେ ।

ଭୂୟାଁବାବୁ ବୁଝିଲେ ଯେ ମନ୍ତ୍ରୀ ଫଟୋଗ୍ରାଫରକୁ ଖୋଜୁଛନ୍ତି ।

ସେ ଇଙ୍ଗିତ କରିବାରୁ ଫଟୋ ଉଠାଳି ଦଳ ମନ୍ତ୍ରୀଙ୍କ ଆଗକୁ ଦୌଡ଼ିଗଲେ । ମନ୍ତ୍ରୀଙ୍କ ଓସାର ମୁହଁକୁ ହସ ଫେରି ଆସିଲା ।

ମନ୍ତ୍ରୀ ନଇଁ ପଡ଼ିବାରୁ ଫଟୋଉଠାଳି ନଇଁ ପଡ଼ିଲେ । ହାକିମବାବୁମାନେ ମନ୍ତ୍ରୀଙ୍କ ପଛରେ ସଜାଡ଼ି ହୋଇଗଲେ ବିଭିନ୍ନ ଭଙ୍ଗୀରେ, ବ୍ୟସ୍ତ ଥିଲାପରି, ସାହାଯ୍ୟ କଲାପରି, ଫଟୋ ଉଠୁଛି ବୋଲି ନ ଜାଣିଲା ପରି ।

ମନ୍ତ୍ରୀ ଗୋଟାଏ ହାଡ଼ ଗୁଜୁଗୁଜିଆ ଟୋକାକୁ କୋଳକୁ ଟାଣିନେଲେ ତାଙ୍କ ବାହୁ ଘେର ଭିତରେ ଆଉ ପୁଞ୍ଜାଏ ଖଣ୍ଡେ ସେପରି ଟୋକା ରହିଥିଲେ ମଧ ଜଣା ପଡ଼ି ନଥାନ୍ତା ।

ସେଇ ଟୋକା ତାଳବଣିଆରୁ ଖେପାମାରି ଦୌଡ଼ି ଆସିଥିଲା ଗାଁକୁ ମନ୍ତ୍ରୀ ଆସିବା ଖବର ନେଇ । ଭାରି ଟାଣୁଆ ଟୋକା । ଗଣ୍ଡେ ଖାଇବାକୁ ପାଇଲେ ସର୍କସରେ ମିଶିଯାନ୍ତା ।

''କିରେ ତୋ ନା' କ'ଣ ?'' ତା' ଚିବୁକ ଟେକି ଅତି ଗେହ୍ଲାରେ ପଚାରିଲେ ମନ୍ତ୍ରୀ ।

ସେ ଟୋକା ସେତେବେଳେକୁ ଝାଳେଇ ଯାଇଥିଲା ।

ତା' ବେକ ପାଖ ନାଡ଼ ଡେଉଁଥିଲା । ବୁକୁ ଦାଉଁ ଦାଉଁ ପଡ଼ିବା ଦିଶୁଥିଲା ।

ସେ କିଛି କହିପାରିଲା ନାହିଁ ।

ଖାଲି ଟିକିଏ ମାତ୍ର ମୋଡ଼ିହେଲା ମୁକୁଳି ଆସିବାକୁ ।

ଗାଁ ବାଲାଙ୍କ ଆଖି ଢଳେଇ ଆସିଥିଲା । ତାଙ୍କର ପୁଣି ଗୋଟାଏ ଗାଁ । ସେ ଗାଁର ପୁଣି ବାରବୁଲା ଟୋକା ସପନି – ତାକୁ ପୁଣି ମନ୍ତ୍ରୀ ଗେଲକରି ପଚାରୁଛନ୍ତି – ''ତୋ' ନାଁ କ'ଣ ?'' କାହୁରା ଲୋକେ ଲୁହ ଥନ୍ ଥନ୍ ଆଖିରେ ଚାହିଁଥାନ୍ତି ଡେଣିକି କ'ଣ ହବ ଦେଖିବାକୁ ।

ଲଇଁ ପଡ଼ି ଭୂୟାଁବାବୁ ସଂଗ୍ରହ କରିଥିବା ଖବର ଉପରେ ତା' ମୁଣ୍ଡରେ ହାତ ସାଉଳି ଆଣି କହିଲେ – ''ଆରେ କହିଦଉନୁ ସପନି ବୋଲି, ମନ୍ତ୍ରୀ ପଚାରୁଛନ୍ତି ପରା ।''

ମନ୍ତ୍ରୀ ଚାହିଁଲେ ଭୂୟାଁକୁ, ସାବାସ୍ ଅଜାଡ଼ିଦେବା ଭଙ୍ଗୀରେ । ଭୂୟାଁବାବୁ ଅଳ୍ପ ହସି ଆଖି ନୂଆଁଇଦେଲେ ନିସ୍ତରିଲି ନିସ୍ତରିଲି କହିବା ଭଙ୍ଗୀରେ ।

''ତୋ' ନାଁ ସପନି ?''

ସପନି ତା' ନୁଖୁରା ମୁଣ୍ଡ ଟୁଙ୍ଗାରି ଦେଲା ।

''ଭଲ ନାଁ ତ । ତୋ ଘର କୋଉ ସାଇ ?''

ପାତ୍ରପୁର ବୋଧେ ପଲ୍ଲବି ଗଲା । ଗାଁ ଲୋକେ ଚାହାଁଚାହିଁ ହେଲେ । ଏଠି ସାଇ କାଇଁ ? ଏଠି ତ ଗାଁ ଦାଣ୍ଡ ଦି'ପାଖେ ଦି'ଧାଡ଼ି କୁଡ଼ିଆ । ମନ୍ତ୍ରୀ କହିଲେଣି ଯଦି, ଏଣିକି ସାଇ ହୋଇଯିବ । ବାଁ ସାହି, ଡାହାଣ ସାହି । ନ ହେଲେ ଉତ୍ତର ସାହି, ଦକ୍ଷିଣ ସାହି ।

ସପନି ମୁହଁ ଟେକି ଗୋରୁ ଠାରିଲା ପରି ଠାରି ଦେଲା ଉତ୍ତର ସାହିକୁ ।

ମନ୍ତ୍ରୀ ଉଠିଲେ । ସପନିର ଡେଣାଟାକୁ ଧରିଥାନ୍ତି । ଫଟୋ ଉଠା ଚାଲିଥାଏ । ମନ୍ତ୍ରୀଙ୍କ ଧଳା ଫରଫର ପଞ୍ଜାବୀ ମସିଆ ହୋଇଯାଇଥାଏ ।

ଗାଁ ଲୋକଙ୍କୁ କହୁଣେଇ ଆସିଥିବା ଧୋବ ଧାଉଳିଆ ମଣିଷମାନେ ଆଗକୁ ମାଡ଼ିଗଲେ । ଫଟ ଉଠାଳି ସବା ଆଗରେ ପଛେଇ ପଛେଇ ଚାଲିଥାଏ ।

ଗାଁ ବାଲାଏ ଆସ୍ତେ ସମସ୍ତଙ୍କ ପଛେ ପଛେ ଚାଲିଲେ । ତାକୁ ଭାଳେଣି ପଡ଼ିଗଲା । ସପନି ଘରକୁ ମନ୍ତ୍ରୀ କେମିତି ଯିବେ । ତା' ସାନ ଭାଇଟା ବାଧିକା ପଡ଼ିଚି, ବାପାର ଦେଖା ନାଇଁ ଦି' ମାସ ହୋଇଗଲା । ମା' ମୁଲ ଲାଗି ପାରୁ ନାହିଁ । ଦି' ଦିନ ହେଲା ତା' ଘରେ ଚୂଲୀ ଜଳିନାହିଁ ।

ଗାଁ ଦାଣ୍ଡ ଅସନା ମସନା । ଅଳିଆ ଗଦା, ଗୋବର ଗଦା । ପାଣି କାଦୁଅ ପଚର ପଚର ।

ଫଟୋ ଉଠାଳି ଯା ପିଣ୍ଡା ତା' ପିଣ୍ଡା ଚଢ଼ି ଫଟୋ ଉଠାଉଥାନ୍ତି । ମନ୍ତ୍ରୀ ଚାଲିଥାନ୍ତି ସପନି ଡେଣା ଧରି ତା' ଘରକୁ । ଭୂୟାଁବାବୁ ଠାରି ଦେବାରୁ ଲୋକ ଖବର ନେଇ ଖେପିଗଲେ ।

ଆଗକୁ ଯାଇ ସେ କୁଡ଼ିଆଟି ଆଗରେ ଠିଆ ହୋଇଗଲେ ଫଟୋଉଠାଳି ଦୁଆର ମୁହଁରୁ ମନ୍ତ୍ରୀଙ୍କ ଆସିବା ଦୃଶ୍ୟ ଉଠାଇନେଲେ । ମନ୍ତ୍ରୀଙ୍କ ଓସାର ମୁହଁରେ ଓସାର ହସ ସମେତ ।

ସପି ମା' ଛାନିଆ ହେଇଯାଇଥିଲା । ତା' ମସିଆ କସ୍ତାଟାକୁ ଦିହ ଲୁଚେଇ ଚିରା ଲୁଚେଇ ଜଡ଼ ସଡ଼ ଠିଆ ହେଲା । ତଳେ ମୁଣ୍ଡ ଲଗେଇ ଓଳଗି ହେଲା ।

ମନ୍ତ୍ରୀ ନୁଆଁଣିଆ ଚାଳ ପାଖରେ ନଇଁଲେ, ଫଟୋ ଉଠାହେଲା । ଦୁଆର ବାଟେ ଆଡ଼ ହେଇ ପଶିଲେ । ଫଟୋଉଠିଲା । ଘର ଭିତରେ ଫଟ ଉଠାଳି ତା ଆଲୁଅ ଢାଳିଦେବାରୁ ନଡ଼ା ଚାଳରୁ ଥୋଲାଥୋଲା ଅଳନ୍ଧୁ ଦେଖାଗଲା । ଗୋଟାଏ କୁଣକୁ ହାଣ୍ଡି ମାଠିଆ ଦି'ଖଣ୍ଡ ଦିଶିଲା । ରସ ଡେକ୍‌ଚି ଲୋଟା ଦିଶିଲା । ଅଳଗୁଣିରେ ସେଇ ଅଳନ୍ଧୁ ରଙ୍ଗର ଦି'-ତିନିଖଣ୍ଡ କ'ଣ ସବୁ ଓହଳିଥିଲା । ମୁନ୍ଦରା ଉପରେ ଚିରା କନାରେ ଘୋଡ଼େଇହେଇ ଶୁଖିଲା ମୁହଁଟିଏ ଦିଶୁଥିଲା । କୋରଡ଼ିଆ ଆଖି, ଠାପୁଆ ଗାଲ, ଦୁହିଁ ହେଇ ଯାଉଥିବା ଶଂଖି ଦିଶୁଥିଲା ।

ସେ ଦୃଶ୍ୟ ପାଇଁ କେହି ପ୍ରସ୍ତୁତ ନଥିଲେ । ସ୍ଥିର ହେଇଗଲା ସବୁ, କିଛି ସମୟପାଇଁ । ଭୂୟାଁବାବୁ ଆସି ସାହସ କରି କହିଲେ – "ସାର୍‌, ଗାଁ ବୁଲିବାକୁ ଅଛି ।"

ମନ୍ତ୍ରୀ ଶୁଣି ନ ଶୁଣିଲା ପରି ଚାହିଁ ରହିଲେ ।

ଭୂୟାଁବାବୁ ଆଉ ଅନ୍ୟ ହାକିମମାନେ ଛନଛନ ହେଲେ । କାଳେ ମନ୍ତ୍ରୀ କହିଦେବେ, ଅନାହାର ମୃତ୍ୟୁ କଥା । କାଳେ ପଚାରିଦେବେ ସୁଲଭ ଦୋକାନ କଥା; ଶସ୍ତା ଚାଉଳ କଥା । କାଳେ ପଚାରିଦେବେ ଡାକ୍ତର କିଏ । ଔଷଧ ଆସୁଚି ନା ନାହିଁ । –

ମନ୍ତ୍ରୀ ବୋଧେ ଦୁଃଖ ଦେଖି ବିହ୍ୱଳ ହୋଇଯାଇଛନ୍ତି । ଏଇନା ଚାହିଁ ପାରନ୍ତି ପାଞ୍ଚଶ ଟଙ୍କା ଦବାପାଇଁ । ତାଙ୍କ ପ୍ରାଇଭେଟ ସେକ୍ରେଟାରୀ ମୁଣ୍ଡା ଦରାଣ୍ଡି ପକାଇଲେ । ବିଡ଼ିଓ କାନରେ ଫୁସ୍ ଫୁସ୍ ହେଲେ । କ'ଣ ସବୁ ଏ ହାତ ସେ ହାତ ହେଇଗଲା ।

ମନ୍ତ୍ରୀ ପଚାରିଲେ, କ'ଣ ହୋଇଛି ?

ପ୍ରଶ୍ନଟି ଚାରିଆଡୁ ବୁଲିଆସିଲା ଭୂୟାଁବାବୁ ପାଖକୁ ।

ଆଉ କାହାକୁ ଅବା ମନ୍ତ୍ରୀ ପଚାରି ପାରିବେ ?

ଭୂୟାଁବାବୁ କହିଲେ – "ଏବେ ସାର୍ ଋତୁ ପରିବର୍ତ୍ତନ ଚାଲିଛି – ଯୋଉଆଡ଼େ ଦେଖିବେ ଏମିତି ଜର ଲାଗି ରହିଛି । ଗୋଟାଏ ପ୍ରକାର ଭାଇରାଲ୍ ଫିଭର ।"

ଇସ୍ କି ବିଚକ୍ଷଣ ବୁଦ୍ଧି । ନ ହେଲେ କି ଭୂୟାଁ ମାଡ଼ି ବସିଥାନ୍ତେ ଏତେ ବଡ଼ ଗଦି !

'ଦେଖ ଭୂୟାଁ, ତମର ବୁଝିବା ଢଙ୍ଗ ବଦଳିଲା ନାହିଁ । ତୁମେ ଭାବୁଛ ୟାକୁ କିଛି ଇନ୍‌ଜେକ୍‌ସନ୍ ଫୋଡ଼ି ଔଷଧ ଗିଳେଇଦେଲେ ଭଲ ହେଇଯିବ । – ତୁମେ ମୂଳ କଥାଟି ବୁଝି ପାରୁ ନାହଁ । କେବେ ବୁଝି ପାରିବ ନାହିଁ । ତୁମେମାନେ ତ' ଆମ ଭଳି ଲୋକଙ୍କ ସାଙ୍ଗରେ ମିଶି ନାହଁ ।'

ଆଲୁଅ ଆଡ଼କୁ ନୋଟ ଖାତା ଟେକି ଜଣେ ଟିପି ପକଉଥାଏ ସବୁ ଶବ୍ଦ ।

ମନ୍ତ୍ରୀ ଚାରିଆଡ଼କୁ ମୁହଁ ବୁଲେଇ ଆଣିଲେ । ଫଟୋ ଉଠିଲା । ସମସ୍ତେ ଅଜ୍ଞ ଅବୋଧ ଦେଖାଗଲେ । କେହି ମୂଳକଥା ଜାଣି ନାହାନ୍ତି । ଏଇଠି ମନ୍ତ୍ରୀ ତାଙ୍କର ଗୋଟିଏ ବହୁ ପରୀକ୍ଷିତ ମହାବାକ୍ୟ ପ୍ରୟୋଗ କରିଦେବା ସବୁ ଦିଗରୁ ଉଚିତ ହେବ ବୋଲି ବିଚାରିଲେ ।

କହିଲେ – "ଏ ପିଲାଟିର ରୋଗ ଭାଇରାଲ୍ ଫିଭର ନୁହେଁ – ଏହାର ରୋଗ ହେଉଛି ଦାରିଦ୍ର୍ୟ !"

ସେଇ କୁଡ଼ିଆ ଘର ଉଛୁଳାଇ ହଠାତ୍ ତାଳିମାଡ଼ ହେଲା । ମନ୍ତ୍ରୀ ମୃଦୁ ମୃଦୁ ହସି ଅପେକ୍ଷା କଲେ ତାଳିମାଡ଼ ସରିବା ଯାଏଁ । ଫଟୋ ଉଠିଲା ।

ସବୁ ସ୍ତବ୍ଧ । ରୋଗିଣା ପିଲା, ଆଉ ତା' ମା' ଉପରେ ଆଲୁଅ ପଡ଼ିଗଲା । ସେମାନେ ବି ଆଶ୍ଚର୍ଯ୍ୟ ହୋଇ ଶୁଣିଲେ ।

ମନ୍ତ୍ରୀ କହିଲେ – "ଏଇ ଦାରିଦ୍ର୍ୟ ସହିତ ସଂଗ୍ରାମ କରିବାକୁ ଆମ ସରକାର ଦୃଢ଼ ସଂକଳ୍ପ । ଦାରିଦ୍ର୍ୟ ହେତୁ ଏ ପିଲାଟି ଖାଇବାକୁ ପାଉନାହିଁ । ତେଣୁ ୟାର ଏ ଅବସ୍ଥା ।"

ପ୍ରାଇଭେଟ ସେକ୍ରେଟରୀ ମୁଣ୍ଡାରେ ହାତ ମାରିନେଲେ ।

ମନ୍ତ୍ରୀ କହିଲେ – "ପିଲାମାନେ ଆମର ଭବିଷ୍ୟତ । ସେମାନେ ଯଦି ଦୁର୍ବଳ ରୋଗିଣା ହୋଇଯିବେ, ଆମେ ଆଉ କେମିତି ସୁନାର ଭାରତ ଗଢ଼ି ପାରିବା ?

ସେଥିପାଇଁ ମୁଁ ପଣ କରିଛି, ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ'' ପୁଣି କରତାଳି ।

''ଭୂୟାଁବାବୁ ତମକୁ ପଚାରିଲେ ତମେ କହିବ ଏ ପିଲାଟାକୁ କ୍ଷୀର ପିଆଇଲେ ସେ ସ୍ୱାସ୍ଥ୍ୟବାନ ହୋଇଯିବ । ତମେ ଘୋଷାପାଠ ଜାଣିଛ । ଆମ ଐତିହ୍ୟ ସଂସ୍କୃତି ତୁମକୁ ଜଣାନାହିଁ । ଆମେ ବି ପଢ଼ିଛୁ । ଦୁଗ୍ଧ ପାନ କଲେ ବଢ଼ଇ ଶକ୍ତି । କିନ୍ତୁ ତୁମେ ଜାଣ, କ୍ଷୀରସାର କାହାକୁ କହନ୍ତି । କ୍ଷୀରସାର ବୋଇଲେ ଦୁଧସର । ସେଇଟା ହେଲା କ୍ଷୀରର ବଳ । ପାଞ୍ଚଲିଟର କ୍ଷୀରରୁ ଯାହାମିଳିବ, ତା' ଉପର ସରଟାରେ ତାହା ମିଳିବ । ସେଥିପାଇଁ ଆଗକାଳେ ସେଇ ସରଟାକୁ ତରଳେଇ ଘୃତ କରି ହୋମ ଯଜ୍ଞ ମାନଙ୍କରେ ଦେବତାଙ୍କୁ ଦିଆହଉଥିଲା । ତା'ର ଅର୍ଥ ହେଲା ଯେ ଘିଅ ଖାଇଲେହିଁ ଦେହରେ ଚଞ୍ଚଳ ବଳ ଚାଲି ଆସିବ । ଏ ତଥ୍ୟଟାକୁ କେହି ଜାଣି ନାହାନ୍ତି । ମୁଁ ତାକୁ ଗବେଷଣା କରି ପ୍ରମାଣ କରିଛି । ନିଜେ ମଧ ଅଭ୍ୟାସ କରୁଛି । ମୁଁ କ୍ଷୀର ଛୁଏଁ ନାହିଁ । କିନ୍ତୁ ଘିଅ ନ ହେଲେ ନ ଚଳେ । ଦେଶ ସେବାରେ ଲାଗିରହିଲେ କ୍ଷୀର ପିଇ ଶକ୍ତି ସଂଚୟ କରିବାକୁ ବେଳ କାହିଁ ?''

ପୁଣି ତାଳି ମାଡ଼ ।

ମନ୍ତ୍ରୀଙ୍କ ମୁହଁରୁ ବେକରୁ ଝାଳ ନିଗିଡ଼ିବାରେ ଲାଗିଲା । ଦେଶ ସେବାରେ ନିଶ୍ଚୟ ଝାଳ ନିଗିଡ଼ିବାକୁ ପଡ଼େ । ମନ୍ତ୍ରୀଙ୍କର ସେଥିରେ କାର୍ପଣ୍ୟ ନାହିଁ ।

ଏତିକିବେଳେ ତାଙ୍କ ହାତ ଘଣ୍ଟା କିଣିକିଣି ହେଇ ବାଜିଉଠିଲା । ସେ ଘଣ୍ଟାକୁ ଦେଖି କହିଲେ,

''ଆଚ୍ଛା, ତାହେଲେ ଶୁଣ, ଏ ପିଲାଟି ପାଇଁ ଦଶ-ପନ୍ଦର ଲିଟର ଭଲ ଗୁଆଘିଅ ପଠାଇଦିଅ । ସରକାରଙ୍କ ସ୍ୱାସ୍ଥ୍ୟ ଯୋଜନାରେ ଏଇଟାକୁ ସାମିଲ କର । ନହେଲେ ଦେଶର ସ୍ୱାସ୍ଥ୍ୟ ଆଣିପାରିବ ନାହିଁ ।

ମନ୍ତ୍ରୀ ମୁହଁ ପୋଛି ପୋଛି କଣେଇହୋଇ ଦୁଆରେ ଗଳିଗଲେ । ମୁଣ୍ଡ ନୁଆଁଇ ଚାଳ ତଳେ ପାରିହୋଇଗଲେ ଦାଣ୍ଡକୁ । ସପନି କଥା ମନେ ନାହିଁ ଆଉ କାହା କଥା ମନେ ନାହିଁ । ଘଣ୍ଟା ବାଜିଗଲା ପରେ ମନ୍ତ୍ରୀଙ୍କୁ ଆଉ ରୋକିବା କଷ୍ଟ ।

ସେ ଟାଉଟାଉ ଚାଲିଲେ ।

ଅନ୍ୟମାନେ ସେହିପରି ଚାଲିଲେ ।

ଫଟୋଉଠାଳି ଦୂରରୁ ଯାଇ ବୋତାମ ଟିପିଲେ । ମନ୍ତ୍ରୀଙ୍କ ଓସାର ମୁହଁରେ ଆଉ ଥରେ ଓସାର ହସ ଦିଶି ଲିଭିଗଲା ।

ଗାଁ ଯାକ ମଣିଷ ପୁଣି ଫାଳିକିଆ ବଟତଳେ ଠିଆହୋଇ ଚାହିଁଥାନ୍ତି । କାଦୁଅ ଗୋହିରୀ ପାରିହୋଇ ଧୋବଧାଉଳିଆମାନେ ତାଳବଣିଆ ହୁଡ଼ା ଚଢ଼ିଗଲେ । ଗାଡ଼ି ସବୁ ଘାଇଁ ଘାଇଁ ବୁଲିପଡ଼ିଲେ ।

ପାତ୍ରପୁରିଆ ଆଖି ଫେରାଇ ଚାହିଁଲେ ଚାରିଆଡ଼େ, ନକୁଳ ନାହାକ ମଧ ସେଇଠି ନଥିଲା ।

ସେମାନେ ଖାଲି ସପନିକୁ ଆଉସି ହେଇଗଲେ ।

ସଂଧ୍ୟା ନଇଁ ଆସିଲା ପାତ୍ରପୁରକୁ ।

ସେମାନେ କଥାବାର୍ତ୍ତା ହେଲେ ମନ୍ତ୍ରୀ କହିଛନ୍ତି ସପନି ଭାଇ ପାଇଁ ଦଶ-ପନ୍ଦର ଲିଟର ଖାଣ୍ଟି ଗୁଆଘିଅ ପଠାଇଦେବେ । ପିଲାଟାର ଭାଗ୍ୟ ଫିଟିଗଲା ଜାଣ ! ମନ୍ତ୍ରୀଙ୍କ ଖାତା ପତ୍ରରେ ତା' ନାଁଟା ଉଠିଯିବ ! ଆଉ ତା'ର ଦୁଃଖ ନାହିଁ ।

ଜଣେ କିଛି ହିସାବ କରି କହିଲା ଜାଣିଚ ମଉସା ସେତକ ଘିଅ କେତେ ପଇସା ହବ ? ଲିଟର ଶହେ ତିରିଶ ଟଙ୍କା ହେଲେ ଦଶ ଲିଟରକୁ ତେରଶହ ଟଙ୍କା ପରେ ହେଲେ ତ ଆଉରି ବେଶୀ । ସେଥିରୁ ସେ ଅଧେ ବିକିଦେଲେ ତ' କାହିଁରେ କ'ଣ !

ତେଣିକି ସବୁଦିନ ପାତ୍ରପୁରରେ ଚର୍ଚ୍ଚାର ବିଷୟ ହେଲା ଗୁଆଘିଅ । ସେଇଟା କେମିତି ସୁନାଗୁଣା ପରି ଦିଶେ । ଟେପାଏ ପଡ଼ିଲେ ଶୁଖିଲା ଭାତ ଖାଇହେଇଯାଏ ବିନା ଶାଗ ତର୍କାରିରେ । କିଏ କେତେ ଘିଅ ଖାଇଛି । ମନ୍ତ୍ରୀ ଦିନକୁ କେମିତି ପାଞ୍ଚ ଲିଟର ଘିଅ ପିଉଥିବେ । ଏସବୁ କଥା ହେଇ ସମସ୍ତେ ଚିକଣିଆ ଦେଖାଗଲେ ।

ପାଖଆଖ ଗାଁରେ ଖବର ଲାଗିଗଲା ଯେ ପାତ୍ରପୁରକୁ ଘିଅ ଆସିଛି । ସରକାରୀ ଖାଣ୍ଟି ଗୁଆଘିଅ ।

ସପନି, ସପନି ମା' ଆଉ ତାର ସାନପୁଅ ସୁନିଆକୁ ସବୁଦିନ ଗାଁ ମାଇପେ ଯାଇ ଦେଖି ଆସିଲେ, ପେଜପାଣି ପହଞ୍ଚେଇଲେ । ମନ ନେଇଥିଲେ କେତେବେଳେ କ'ଣ ! ଗାଁରୁ ଫେରିବାବେଳେ ପ୍ରାଇଭେଟ ସେକ୍ରେଟେରୀ ବି.ଡ଼ି.ଓ.ଙ୍କୁ ଫିସ୍ ଫିସ୍ କ'ଣ କହିଲେ । ସେ ହସି ହସି ମୁଣ୍ଡ ଟୁଙ୍ଗାରିଲେ । ଉଭୟଙ୍କୁ ଚାହିଁ ଭୂୟାଁ ସାହାବ ବୁଝିଗଲେ ।

ବି.ଡ଼ି.ଓ. ହୁକୁମ୍ ଦେଲେ 'ନାଥୁ' କଣ୍ଟ୍ରାକ୍ଟରକୁ ସେ ବଡ଼ ବଡ଼ ଦୁଇଟିଣ ଘିଅ ଯୋଗାଡ଼ କରି ପହଞ୍ଚେଇବ ! ଖୋଦ୍ ମନ୍ତ୍ରୀଙ୍କ ବରାଦ୍ ।

ନାଥୁ ଦୁଇଟିଣ ମହମହ ବାସୁଥିବା ଘିଅ ଆଣି ଥୋଇଲା । ତା'ଆର ଦିନ ସକାଳୁ ଚାଲାଣ କରିବ ବି.ଡ଼ି.ଓ.ଙ୍କ ଗାଡ଼ିରେ ରାଜଧାନୀ । ରାତିରେ ନାଥୁଆଣି ପରଠା ସେକିବାକୁ ଟୋପାଏ ଭଲ ଘିଅ ଆଣିବାକୁ ଯାଇ ଦୁଇ ଟିଣରୁ ଦୁଇ ଲିଟର ଲେଖା କାଢ଼ିନେଲା । ସେଥିରେ ନିର୍ମଳ ପାମୋଲିନ୍ ଚାରିଲିଟର ମିଳେଇଦେଇ ଠିପି ମାରିଦେଲା । କିଛି କହିଲା ନାହିଁ । ଆଜିକାଲି ସବୁଠି ତ ଏମିତି ଟିକିଏ ଭେଜାଲ୍ ହେଇଯାଇଛି, କ'ଣ କରାଯାଏ ।

ପ୍ରାଇଭେଟ୍ ସେକ୍ରେଟେରୀଙ୍କ ଘରେ ପହଞ୍ଚିବାରୁ ସାମଲବାବୁ – ତାଙ୍କ ନାଁ ପଦ୍ମନାଭ ସାମଲ – ଫୋନ୍ କଲେ ଭୂୟାଁ ସାହେବଙ୍କୁ ।



''ସାର୍ ଭଲ ମାଲ୍ ହେଇଚି । ମନ୍ତ୍ରୀଙ୍କ ପାଖକୁ କିଛି ଗଲାଣି । ଆପଣ ଟିକିଏ ଟେଷ୍ଟ କରିଥାନ୍ତେ ସାର୍ । ହେଇ ପାଞ୍ଚ-ଦଶ ଲିଟର ! ...ହଉ ସାର୍ । ମୁଁ ଜାଣେ ସାର୍ ଆପଣ ଏ ବିଷୟରେ ଭାରି ସଚ୍ଚୋଟ – ହଁ ସାର୍ ଏଇଟା କିଛି ନୁହେଁ ସାର୍ ଏମିତି ଖାଲି – ହଉ ସାର୍ ଏଇ ଦଶମିନିଟ୍ ଭିତରେ ପଠାଇଦେବି ।''

ବି.ଡ଼ି.ଓ. ଅପେକ୍ଷା କରିଥାନ୍ତି ପ୍ରାଇଭେଟ ସେକ୍ରେଟାରୀ ଗୋଟିଏ ଛୋଟିଆ ଚାରିକେଜିଆ ଟିଣରେ କିଛି ଘିଅ ଆଣି ଥୋଇଲେ । ''ଏଇଟା ଆପଣ ନିଅନ୍ତୁ ସେ ଗାଁକୁ କ'ଣ ଟିକେ ପଠାଇଦେବେ ।''

''ହଉ ସାର୍ । ମନ୍ତ୍ରୀ ଏ ଘିଅ ବାସ୍ନାଟା ଭାରି ପସନ୍ଦ କରିବେ । କହିବେ ସାର୍ ଆଉ ଦରକାର ହେଲେ ଯାଉଁଳି ବି.ଡ଼ି.ଓ.ଙ୍କୁ କହିହେଲେ ଆସିଯିବ ।

''କିଓ, ମନ୍ତ୍ରୀଙ୍କ ପାଖକୁ ଯିବାକୁ ମାଲ କାହିଁ । ଭୂୟାଁବାବୁ, ମାଲହୋତ୍ରାବାବୁ, ଡିଙ୍ଗଲବାବୁ – ଏମିତି ଟିକିଏ ଟିକିଏ ବାଣ୍ଟିଦେଲେ, ମୋ ପାଇଁ ଟିଣଟା ରହିଯିବ ଶୁଘିଂବାବୁ । – ମନ୍ତ୍ରୀଙ୍କୁ କ'ଣ ଘିଅ ଅଭାବ ହେଇଚି ଯେ ତୁମ ଘିଅ ସେ ଖାଇବେ ? ଦେଖିବା ପରେ । ମୁଁ କହିଦେବି ଯେ ବି.ଡ଼ି.ଓ.କୁ କୋଡ଼ିଏ ଲିଟର ଘିଅ ପାତ୍ରପୁରରେ ପହଞ୍ଚାଇବାକୁ ଦିଆଗଲା ।'' ସେ ଖୁସି ହୋଇଯିବେ । ମୁଁ ଏକଥା ଖବରକାଗଜରେ ମଧ ବାହାର କରାଇ ଦଉଚି ।

ବି.ଡ଼ି.ଓ. ଆଉ କିଛି ନ କହି ସେ ଚାରିକେଜିଆ ଟିଣଟିକୁ ଉଠାଇ ବାହାରି ଆସିଲେ । ତାଙ୍କୁ ମନେହେଲା ଟିଣଟା ଅଧା ଖାଲି ଥିଲା ।

ପାତ୍ରପୁରଠାରେ ଲୋକେ ଚାହିଁ ରହିଥାନ୍ତି । କେତେ ଖାଣ୍ଟି ଗୁଆଘିଅ ପହଞ୍ଚିବ । ସୁନିଆ ଦେହ ଆହୁରି ବିଗିଡ଼ି ଚାଲିଥାଏ । ଖାଇବାକୁ ଦାନା ନାହିଁ । ଔଷଧ ପାନେ ଦବାକୁ ପଇସା ନାହିଁ । ତା ଆଖି ଆହୁରି ଆହୁରି ଗଭୀରକୁ ପଶିଯାଉଥାଏ ।

ଦିନେ ପାହାନ୍ତା ପହରରୁ ସପନି ମା'ର କାନ୍ଦଣା ଶୁଭିଲା । ଗାଁ ସାରା ଜାଣିଗଲେ ଯେ, ପିଲାଟା ଚାଲିଗଲା । ସକାଳୁ ପାତ୍ରପୁର ଝାଉଁଳି ଯାଇଥିଲା । ଚିରା ସଅପଟି ଗୁଡ଼େଇହେଇ ଶୋଇଥିଲା ସୁନିଆଁ ।

ମସୁଧା ଚାଲିଥିଲା କିଏ ନେବେ ପିଲାଟାକୁ ସଂସ୍କାର ପାଇଁ ।

ଏତିକିବେଳେ ନକୁଳ ନାହାକ ଧପାଲି ଆସିଲା ।

''ଭାଇମାନେ, ମୁଁ ନେଇଆସିଛି ପହିଲି କିସ୍ତି । ମୁଁ କ'ଣ ଛାଡ଼ିଲିକି; ଯୁଝିଗଲି ନା ! ହାଁରେ ହାଁ, ମନ୍ତ୍ରୀ ଖୋଦ୍ କହିଛନ୍ତି, ଗାଁଟା ଯାକ ଲୋକ ଶୁଣିଛନ୍ତି । ପାତ୍ରପୁରରେ ଯେ କୌଣସି ପ୍ରକାରେ ଘିଅ ନ ପହଞ୍ଚିଲେ ନୁହେ । – ବି.ଡ଼ି.ଓ.ଙ୍କ ପାଖରୁ କହିବୋଲି ଏତକ ନେଇଆସିଛି । ଏ ତ ସାଧାରଣ ଘିଅ ନୁହେଁ । ଏଥିରୁ ଚାମଚେ ଔଷଧ ଭଳି ଖାଇଲେ ପନ୍ଦିରଦିନ ଯିବ । ତା' ପରେ ପୁଣି ଦେଖିବା ।

ଗୋଟିଏ ସରୁ ନଳିଆ ଚାରିଆଙ୍ଗୁଳିଆ ଶିଶି କାଢ଼ିଲା ।

କେହି କିଛି କହିଲେନାହିଁ । ବସିଲାଠଉ ଉଠିଲେ ନାହିଁ ଦେଖି ନକୁଳ ନାହାକର ହୋସ୍ ଆସିଗଲା ।

ସେ ଚାରିଆଡ଼କୁ ନଜର ପକାଇ ଜାଣିଗଲା ଘଟଣାଟା କ'ଣ ? "ଇସ୍, କେଡ଼େ କଥା ହେଲା । ଟୋକାଟା ବଞ୍ଚିଥିଲେ ତା'ରି ନାଆଁରେ ଏ ପାଞ୍ଚଖଣ୍ଡ ଗାଁକୁ ମୁଁ ଘିଅରେ ବୁଡ଼େଇ ଦେଇଥାନ୍ତି । କ'ଣ କରାଯାଏ, ଆମକୁ ଭାଗ୍ୟ ସହିଲା ନାହିଁ । ତମେ ପିଲାଟାକୁ ଆଉ ଗୋଟାଏ ଓଳି ବଞ୍ଚେଇ ରଖିଥିଲେ ସେ ମରି ନଥାନ୍ତା । ଏ ବିଶଲ୍ୟକରଣୀ ମଲା ଲୋକକୁ ବଞ୍ଚେଇଦବ । ଶୁଖିଲା କାଠରେ ଗଜା କାଢ଼ିଦବ ।

ତା'ପରେ ନକୁଳ ନାହାକ କ'ଣ ଗୋଟାଏ ହାତ ପାହାନ୍ତାରେ ପାଇଗଲାଭଳି ସପନିକୁ କହିଲା ।

"ଦେଖିଲୁ ପୁଅ, ଚାମଚଟା ଆଣିବୁ" – ପୁଣି କ'ଣ ଭାବି କହିଲା – "ନହେଲେ ଆଉ ଗୋଟାଏ କ'ଣ ଆଣ, ସବୁ ମୁନିଆ ଗୋଟେ ଡାମ୍ଫଣ ପାଇଲେ ଆଣ୍ ।"

ଗାଁ ଲୋକେ ସେମିତି ଅବସନ୍ନ ହୋଇ ବସିଥାନ୍ତି ।

ସପନି ସତକୁସତ ଡାମ୍ଫଣଟାଏ ନେଇଆସିଲା । ତା' ବାପ ବସ୍ତା ସିଲେଇ କରିବାକୁ ଗଲାବେଳେ ତାକୁ ନଉଥିଲା –

ନକୁଳ ନାହାକ ଗୁଡ଼ାହୋଇଥିବା ସଅପ ପାଖରେ ଟିପେଇ ବସିଲା – "ପିଲାଟିର ମୁହଁ କାଢ଼ିଲ !"

କିଏ ସଅପଟାକୁ ଖୋଲିଦେଲା । କନା ଆଡ଼େଇଦବାରୁ ସ୍ଥିର ଦରବୁଜା ଆଖି ଯୋଡ଼ିକ ଚାହିଁ ରହିଥିଲା । ନକୁଳ ନାହାକର ମଧ୍ୟ ଦେହ ହାତ କମ୍ପିଗଲା ।

ତଥାପି ସେ ଡାମ୍ଫଣ ଅଗରେ ଘିଅ ଟେକି ଧରିଲା । ଈଷତ୍ ମେଲା ହୋଇଥିବା ସେ ଶୁଖିଲା ଓଠ ପାଖରେ ।

କିଏ କହୁଛନ୍ତି ଠୋପାଏ ପଡ଼ିଲା, କିଏ କହୁଛନ୍ତି ପଡ଼ିନାହିଁ । ମୁହଁ ଘୋଡ଼େଇ ଦିଆଗଲା । ସଅପ ଗୁଡ଼େଇ ଦିଆଗଲା ।

ଶିଶିଟିକୁ ଯତ୍ନରେ ଠିପି ମାରି ନକୁଳ ନାହାକ ତା' ମୁଣାରେ ପୁରେଇଲା ।

ଡାମ୍ଫଣଟିକୁ ଛଣକ ନାକ ପାଖରେ ଧରି କହିଲା – "ଶୁଂଘ, ଘିଅର ମହକଟା କେମିତି । ନିଅ ଏଇଟାକୁ ସମସ୍ତଙ୍କୁ ଶୁଘାଂଇଦବ । ମୁଁ ଆସୁଛି ।"

ନକୁଳ ନାହାକ ଲମ୍ବ ଲମ୍ବ କ୍ଷେପାରେ ସକାଳ ସୂର୍ଯ୍ୟକୁ ଗ୍ରାସିଲାପରି ଅପସରିଗଲା ପୂର୍ବ ଦିଗକୁ ।

□□□

# ଦାୟାଦ

କ'ଣଟା ମିଳେ ନିଆଁରୁ, ଧୂଆଁରୁ ଅଥବା ସକ୍ ସକ୍ କାନ୍ଦଣାରୁ ଯେ ନିର୍ମଳ ସାଆନ୍ତା ଗୋଟେଇ ରଖିଥାନ୍ତା ବାପର ସନ୍ତକ ବୋଲି ?

ଆସ୍ତେ ଆସ୍ତେ କିନ୍ତୁ ଗୋଟିଏ ପରେ ଗୋଟିଏ ଆସ୍ତରଣ ଅପସରି ଗଲା । ନୀରବି ଆସିଲା ଶୁଦ୍ଧ ଶ୍ରାଦ୍ଧ ଘର । ବନ୍ଧୁ ପରିଜନ, ଦୂର ନିକଟ ଆତ୍ମୀୟ ସ୍ୱଜନମାନେ କ'ଣ ସବୁ କହି କହି ଘୁଞ୍ଚିଗଲେ କେଜାଣି କୁଆଡ଼େ ।

ଗୋଟାଏ ଥମଥମ ବିଶାଳ ସଂଧ୍ୟା ନଇଁଆସିଲା ଅରଣ୍ୟ କୁହୁଡ଼ି ପରି ବଗିଚାକୁ । ଘରଟାରେ ଏତେଗୁଡ଼ାଏ ଖାଲି ଯାଗା, ଏତେ ନିଶ୍ଚଳ ନୀରବତା ତାକୁ ଏମିତି ଆବୋରି ଯିବ ବୋଲି ସେ ଭାବି ନଥିଲା ।

ବାପାଙ୍କ ପୁରୁଣା ଚୌକିରେ ବସି ସେ ଟେବୁଲରେ ହାତ ବୁଲେଇ ଆଣିଲା । ଝର୍କା ରେଲିଂ ଦେଇ ସୋରା ସୋରା ଆକାଶକୁ ଚାହିଁଲା । କେଜାଣି କେମିତି ତା ବୁକୁ ଉଛୁଳେଇ, ଆଖି ଉଛୁଳେଇ ଶୋକର ଧାରା ଝରିଗଲା । ନୀରବରେ ପ୍ରଥମଥର ପାଇଁ ସେ ଅନୁଭବ କଲା ସେ ଅଗାଧ ଅତଳ ଶୂନ୍ୟତା...

''କିରେ କାନ୍ଦୁଚୁ କ'ଣ ମାଇଚିଆଟା ! ଏ ପରୀକ୍ଷାରେ ଭଲ ହେଲା ନାହିଁ ବୋଲି କ'ଣ ସବୁ ଅଶୁଦ୍ଧ ହେଇଗଲା । ଆଉଥରେ ଦବୁ । ଯା' ବୋଉ ଚକୁଳି କରିଚି ଖାଇପକା ।''

ଆଉ ପରୀକ୍ଷାରେ ସତକୁସତ ନିର୍ମଳ ଶହେରେ ଅଶୀ ନମ୍ବର ରଖି ମ୍ୟାଟ୍ରିକ୍ ପାଶ୍ କରିଥିଲା । ତା' ଉତ୍ତାରୁ ସବୁ ପରୀକ୍ଷା ପରେ ବାପା ତା' ପିଠିରେ ହାତ ମାରି ଦିଅନ୍ତି । ତାକୁ ଚାହିଁ ମୁଚ୍ ମୁଚ୍ ହସି ଦିଅନ୍ତି । ସେଇ ତାଙ୍କର 'ସାବାସ୍' କହିବା ଢଙ୍ଗ । ବାପାଙ୍କ ବଡ଼ପଣ ତାଙ୍କ କଥା କହିବା ଅପେକ୍ଷା, ନୀରବ ରହିବା ଭଙ୍ଗୀରେ, ନିଶ୍ଚଳ ଠିଆହୋଇ ମୁକାବିଲା କରିବା ଢଙ୍ଗରେ; ବାଘକୁ ହେଉ ଅଥବା ବଜ୍ରକୁ – ଯେମିତି ସେ ଚୁପ୍‌ଚାପ୍ ପଥର ମୂର୍ତ୍ତିପରି ଠିଆହୋଇଥିଲେ ମା' ଚାଲିଗଲାବେଳେ ।

ସମସ୍ତେ ହାଉଜାଉ ହେଉଥାନ୍ତି ।

କିନ୍ତୁ ଦୁର୍ଲଭ ସାଆନ୍ତା ସେମିତି ନିଶ୍ଚଳ ଚାହିଁ ରହିଥାନ୍ତି ।

ଆଖିରେ ପଲକ ପଡୁ ନଥାଏ ।

କେତେବେଳେ ମନ ହେବାରୁ ଆସ୍ତେ ମୁହଁ ବୁଲେଇ ତଳକୁ ମୁଣ୍ଡପୋତି ଚାଲିଗଲେ । ସେଇ ବୋଧେ ତାଙ୍କ କାନ୍ଦିବା ଢଙ୍ଗ ।

ସେ ନ ହେଲେ ମାଇଚିଆ ପରି ଲୁହ ଗଡ଼େଇ କାନ୍ଦି ଥାନ୍ତେ ନା' କ'ଣ ! –

ନିର୍ମଳ ଖୁବ୍ ଅନୁରୋଧ କରିଥିଲା ତାଙ୍କୁ ନେଇ ପାଖରେ ରଖିବାକୁ ।

ବାପା କେବଳ ତା କାନ୍ଧରେ ହାତଥୋଇ ମୁହଁକୁ ଚାହିଁଥିଲେ ।

ଅଳ୍ପ ହସି ବାଁ ହାତରେ ନିଶ ଟେକି ଦେଇଥିଲେ ।

ତା'ର ଅର୍ଥ ହେଲା "ନୋ, ଥାଙ୍କସ୍ !"

ଗୋଟେ ଥର ନିର୍ମଳ ବାପାଙ୍କ ପାଇଁ ଚମତ୍କାର ଶାନ୍ତିପୁରି ଧୋତି ଆଉ ପଞ୍ଜାବୀ ଆଣିଥିଲା କଲିକତାରୁ ।

ବାପା ମଣିଷକୁ ଯେମିତି ଲୁଗାକୁ ସେମିତି ଛୁଇଁଦେଇ ଭଲ ପାଇଯାଉଥିଲେ । ତାଙ୍କ ମୁହଁରୁ ଆଖିରୁ ଜଣାଗଲା ଯେ ସେ ଲୁଗା ହଳକ ପସନ୍ଦ କରିଥିଲେ ।

ହଠାତ୍ କହିଲେ – "ଆରେ ବୋହୂକୁ ପଚାରି ଆଣିଚୁ ତ !"

ନିର୍ମଳକୁ ଏ ବାକ୍ୟଟି ଶୁଣି ଭାରି ଅସୁସ୍ଥ ଲାଗିଥିଲା । ବାପା ବୋଧେ ମନେ ମନେ ଆଉ କ'ଣ ଭାବୁଥିଲେ । ବୋଧେ ରଞ୍ଜନା ତାଙ୍କୁ ଆପଣାପଣର ବିଶ୍ୱାସ ଦେଇପାରୁ ନଥିଲା ।

ବାପା ବୋଧେ ସେଥିପାଇଁ ତା' ପାଖରେ ରହିବାକୁ ରାଜି ହେଉ ନଥିଲେ । କିନ୍ତୁ ବବ୍‌ଲୁକୁ ବାପା ପ୍ରଗାଢ଼ ସ୍ନେହ କରୁଥିଲେ ।

ସେ ଟୋକାର ସାହସ ଦେଖି ନିର୍ମଳ ତାଜୁବ୍ ହେଇ ଯାଉଥିଲା । ସେ ସିଧାସଳଖ ବାପାଙ୍କ ନିଶ ଉପରେ ହାତ ମାରିଦେଉଥିଲା । ସେ ଲମ୍ବା ନାକଟାକୁ ଧରିବାକୁ ତାକୁ ବୋଧେ କୌତୁକ ଲାଗୁଥିଲା – "ଆରେ ବାପ୍‌ରେ ବାପା ଯଦି ଗର୍ଜି ଉଠନ୍ତି ।"

ନିର୍ମଳର ରକ୍ତ ପାଣି ପାଣି ହେଇଯାଉଥିଲା । କିନ୍ତୁ ବାପା ଆଦୌ ସେମିତି କିଛି କରୁ ନଥିଲେ । ବରଂ ଓଲଟି ବବ୍‌ଲୁର ନାକ ଧରି ଟାଣୁଥିଲେ । ତା' ସାଙ୍ଗରେ କଥା ହେଉଥିଲେ । ତା'ରି କଥାକୁ ନକଲ କରି କରି ତାକୁ ଚିଡ଼ଉଥିଲେ ।...

ଝରକା ସେପଟେ ଅଂଧାର ଜମି ଯାଉଥିଲା ।

ନିର୍ମଳ ଅନୁଭବ କଲା ଯେ ତା' ପାଖରେ କେହି ଜଣେ ଠିଆ ହେଇଚି । ସେ ବୁଲି ଚାହିଁଲାବେଳକୁ ରଂଜନା ।

ରଂଜନା ବି ଉଦାସ ଦେଖାଯାଉଥିଲା ।

"ଚା ଖାଇବ ?"

ଉହୁଁ ।

"ବବ୍‌ଲୁ ଅବେଳଟାରେ ଶୋଇଗଲା । କିଛି ଖାଇ ନାହିଁ । ଏଠି ଦଶ ଦିନ କାଳ ଅଣହେପାଜତରେ ସେ କେତେ ଝଡ଼ିଗଲାଣି !"

ନିର୍ମଳ ଚାବୁକ୍ ଖାଇଲା ପରି ଚୌକିରୁ ଉଠିଗଲା । ଚାଲିଗଲା ବଗିଚାକୁ ଓ ଘନେଇ ଆସୁଥିବା ନିର୍ଜନ ଅଂଧାରକୁ ।

ସେ ବାଦାମ ଗଛକୁ ଆଉଜି ଠିଆହେଲା । ଆଖିବୁଜି ରହିଲା ଅନେକ ବେଳଯାଏଁ ।

– ଗଛରେ ଏବର୍ଷ ଫଳ ଲାଗିଛି । ବବ୍‌ଲୁ ଏଯାଏଁ ଗଛ ଚଢ଼ା ଜାଣିନାହିଁ ।

ବାପା ଏ ଗଛ ଲଗେଇବା ଦିନ କହୁଥିଲେ ନା – "ଆରେ ଏ ଗଛ ଫଳିଲାବେଳକୁ ତୋ ପୁଅ ବଡ଼ହେଇ ଗଛ ଚଢ଼ା ଶିଖିଥିବ । ଏମିତି ଲାଜଉଚୁ କ'ଣ ? – ତୁ ବିଭା ହବୁ ନାଇଁକି ?"

ନିର୍ମଳ ଗଛଟିକୁ ଆଉଁସିଦେଇ ଆଡ଼ ହୋଇଗଲା । ବଗିଚାର ସିମେଣ୍ଟ ବେଞ୍ଚ ଉପରେ ବସି ଆକାଶକୁ ଚାହିଁ ରହିଲା ଅସଂଖ୍ୟ ତାରାକୁ । କେଉଁ ଅସଂଖ୍ୟ ତାରାରୁ ଗୋଟିଏ ତାର ମାନନୀୟ ଆଉ ଆତ୍ମୀୟ ?

ସେ ବଗିଚା ବାଟ ଦେଇ ଘରେ ପଶିଲା । ସେଇବାଟେହିଁ ବାପା ଯିବାଆସିବା କରୁଥିଲେ । ଦାଣ୍ଡ ପାଖଟା ଏମିତି କିଏ ଆସିଲେ ଗଲେ ବ୍ୟବହାର ହେଉଥିଲା ।

ଓଃ ଘରଟା ଏମିତି ନିସ୍ତବ୍‌ଧ ହେଇଥିଲା ଯେ ନିର୍ମଳ ତା' ନିଶ୍ୱାସ ଶୁଣି ପାରୁଥିଲା ।

ଭିତର ବଖରାରେ ରଞ୍ଜନା ପୁଅ ପାଖରେ ଶୋଇଯାଇଥିଲା । ସେ ବି ଆଉ କ'ଣ କରିଥାନ୍ତା ? ତାର ଦାୟିତ୍ୱ ଆଉ ପରିଶ୍ରମ କିଛି କମ୍ ନ ଥିଲା ସେ ଦଶଦିନ ।

ନିର୍ମଳ ମନରୁ ଅବଶୋଷ ଘୁଞ୍ଚି ପାରୁ ନଥିଲା । ସେ ଟେଲିଗ୍ରାମ୍ ପାଇ ଆସୁ ଆସୁ ଦୁଇଦିନ ଲାଗିଗଲା । ପହଞ୍ଚିଲାବେଳକୁ ଜୁଇ ଲିଭିସାରିଥିଲା । ଘରେ ଭିଡ଼ ଜମି ଆସୁଥିଲା । ତା'ପରେ ଦିନ ରାତି ଟଣା ଓଟରା, ଘୋ-ଘା ଭିତରେ ଛିନ୍‌ଛତ୍ର ହେଇ ଯାଇଥିଲା ନିର୍ମଳ । ବେଳ କାହିଁ ଚାହିଁବାକୁ ନିଜକୁ ବା ଅପରକୁ । ବେଳ କାହିଁ ହିସାବ କରିବାକୁ କ'ଣ ଗଲା କ'ଣ ରହିଲା ?

ସେ ରଞ୍ଜନାକୁ ଉଠାଇଲା – ସେମିତି ଆସ୍ତେ ପହରିଲା ପରି ଚାଲି ଗଲା ବାପାଙ୍କ ବୈଠକକୁ ।

ଦାଣ୍ଡ ଦୁଆର କବାଟ ଫାଳେ ଆଉଜେଇ ହେଇଗଲା । ଥମ୍ ହେଇ ଠିଆ ହେଇଗଲା ନିର୍ମଳ । ଚାହିଁ ରହିଲା ମେଲା ଫାଳକ ବାଟେ ଅଂଧାର ବାରଣ୍ଡାକୁ ।

ସେ କେଜାଣି କାହିଁକି ଡାକିଦେଲା – "ବାପା !"

ପବନଟା ପଶି ଆସିଲା ଘର ଭିତରକୁ । ଖୋଲା ଝରକା ପିଟିହେଲା ବାହାର କାନ୍ଥରେ । ନିର୍ମଳ ଛନ୍‌ଛନ୍ ହେଇ ଚାହୁଁଥାଏ ଏପାଖ ସେପାଖ ।

ସେ ଦେଖିଲା ଟେବୁଲ ଉପରେ ବାପାଙ୍କ ବଡ଼ ଫଟଟା ପୁଣି ଥୁଆ ହେଇଚି । ଦୁଇଟି ମଲ୍ଲୀଫୁଲ ଫଟ ପାଖେ ସଜଡ଼ା ହେଇଚି । ଧୂପଦାନୀରେ କଦେଇ ଇଣ୍ଡଷ୍ଟ୍ରିଜ୍‌ର ତେର ନମ୍ବର କାଠିଟିଏ ଜଳି ଜଳି ପ୍ରାୟ ସରିଆସିଲାଣି ।

ଏଇଟା କ'ଣ ରଞ୍ଜନା କରିଚି ? ସେ କ'ଣ ମୋତେ ଖୁସି କରିବାକୁ ଏମିତି ଦେଖେଇ ହେଇଚି, ନା ସେ ବାପାଙ୍କୁ ହୁଏତ' ଯା ଭିତରେ କିଛି ଭଲ

ପାଇଯାଇଛି । ତା' ବାହାରେ ବର୍ତ୍ତମାନ ଭଲ ପାଇବାରେ କ୍ଷତି କଣ ? କିଛି ଦବାକୁ ତ ପଡୁନାହିଁ ।

ନିର୍ମଳର ଦାନ୍ତ ଚାବି ହେଇଗଲା । ଆଖି ସରୁ ସରୁ ହେଇଗଲା । ନାକପୁଡ଼ା ଫୁଲି ଉଠିଲା ।

ତାର ମନେ ପଡ଼ିଗଲା ଟେଲିଗ୍ରାମ କଥା । ସେ ଅଫିସରୁ ଆସି ଜଳଖିଆ ଖାଇ ଅନେକ ବେଳ ଗଲା ପରେ ପଚାରିଥିଲା – "କ'ଣ ଚିଠି ପତ୍ର ଆସିଚି କି ?"

"ନାଇଁ ! – ହଁ ସେଥିରୁ ଗୋଟେ ଟେଲିଗ୍ରାମ୍ ଆସିଚି !"

"ଟେଲିଗ୍ରାମ୍ ଆସିଚି, ଅଥଚ ତମେ ମତେ କହିନାହଁ ।

"କୋଉ ନୂଆ କଥା ଯେ କହିବି । ସେଇ ବାପାଙ୍କ ଦେହ ଖରାପ ।" ନିର୍ମଳ ଟେଲିଗ୍ରାମ୍ ପଢ଼ି ସାରିଥିଲା ।

"ବୁଢ଼ା ହେଲେ ତ ଏଇଆ ଚାଲିଥିବ । ଶୁଣ, ଏଥର କାହା ହାତରେ ଟଙ୍କା ପଚାଶ ଶହେ ପଠେଇଦିଅ । ସେ ନ ନେଲେ ବି ତାଙ୍କ ପାଖରେ ଥୋଇ ଦେଇ ଆସୁ । ନ ହେଲେ ତମ ଗାଁର ଯୋଉ ଲୋକ ନା', କହିବେ ପୁଅ ପଚାରିଲା ନାହିଁ ।

ନିର୍ମଳ ମନେ ମନେ ରଞ୍ଜନାକୁ ରାଗରେ ଖଣ୍ଡ ଖଣ୍ଡ କରି ପକେଇଥିଲା । ଚିଠି ଫେରିଆସିଲା ।

ଖବର ପହଞ୍ଚିଲା ଯେ ବାପା ଚାଲିଗଲେ ।

ନିର୍ମଳ ନିଜକୁ ନିଜେ କ୍ଷମା କରି ପାରୁନଥାଏ ।

ବାପା ଶେଷ ମୁହୂର୍ତ୍ତଯାଏ ନିଶ୍ଚୟ ଚାହିଁଥିବେ ତାକୁ ଦେଖିବାକୁ । ବବ୍ଲକୁ ଦେଖିବାକୁ । ଅଥଚ ଚାରି ଦିଗରେ ଅପରିଚିତ ମୁହଁମାନଙ୍କୁ ଦେଖି ଆଖି ବୁଜି ଦେଇଥିବେ ।

ନିର୍ମଳ ପୁଣି ବାପାଙ୍କ ଚୌକିରେ ବସି ତାଙ୍କ ଫଟକୁ ଚାହିଁଲା – ଟେବୁଲ ପାଖକୁ ଲାଗି ତାଙ୍କ ବହିଥାକ । ଗୁଡ଼ିଏ ଡାଏରୀ, କିଛି ଖାତା । କ'ଣ ସବୁ ଲେଖିଥିଲେ କେଜାଣି ?

ନିର୍ମଳର ହଠାତ୍ ମନେ ପଡ଼ିଗଲା ଯେ ରାତି ପାହିଲେ ସେ ନିଜେ ପ୍ରସ୍ତୁତ ହେବ କାନପୁର ଯିବାପାଇଁ । ରଂଜନା, ବବ୍ଲକୁ ଧରି ଯିବ ତା' ବାପଘରକୁ । ଏ ଘରେ କୋଲପ ପଡ଼ିବ । ଫିଟିଲେ କେହି ଜଣେ ଭଡ଼ା ରହିବ ।

ତା' ମନ ବିଚଳିତ ହେଇଗଲା । କାନପୁର... ଦେଶପାଣ୍ଡେ – କହୁଥିଲା ତା' ମା'କୁ ନେଇ ସେ ଦିଲ୍ଲୀରେ ଦେଖାଇବ । ଅଲ୍ଇଣ୍ଡିଆ ଇନ୍ଷ୍ଟିଚ୍ୟୁଟରେ । ଯା ଭିତରେ ହୁଏତ ସେ ଦେଖାଇ ଆସି ସାରିବଣି । ଯୋଗ୍ୟ ପୁଅ, କାହିଁକି ନ କରିବ ?

ନିର୍ମଳ କ୍ଷୋଭରେ ଖଣ୍ଡ ଖଣ୍ଡ ହୋଇ ଯାଉଥାଏ ।

ରଂଜନା ପଛରୁ ପଚାରିଲା – "ରୁଟି ଖାଇବ ?"

ପ୍ରୟୋଜନରୁ ଅଧିକ ଜୋର୍ ଦେଇ ନିର୍ମଳ କହିଲା – "ନା"

ରଂଜନା ସାମ୍ନାକୁ ଆସି ଠିଆ ହେଲା ।

''ଏମିତି କାହିଁକି ହଉଚ ? ତମେ ଭୋକେ ଶୋଇଗଲେ ବାପା ଚାଲି ଆସିବେ ନା କ'ଣ ? — ଚାଲ ମୁହଁ ଧୋଇ ପକାଅ ! ମୁଁ ରୋଟି ସନ୍ତୁଳା ବାଢ଼ି ଦଉଚି । କ୍ଷୀର ଅଛି ସକାଳର, ଖାଇବ ଯଦି... ।''

''ତମେ ଖାଇ ନିଅ । ବବ୍‌ଲକୁ ଖୁଆଇ ଦିଅ । ମୋତେ ଭୋକ ନାହିଁ ।''

''ବବ୍‌ଲୁ ଖାଇଲାଣି । ମୁଁ ତମକୁ ଅପେକ୍ଷା କରିଛି । ଯଦି ଖାଇବ ନାହିଁ, ତା' ହେଲେ ମୁଁ ବା କାହିଁକି ଖାଇବି ?''

ନିର୍ମଳ ରଂଜନାକୁ ଚାହିଁଲା । ତାକୁ ଲାଗିଲା ସେ ଖାଇ ପିଇ ସାରିଛି । ଅନେକ ସମୟରେ ଘରକୁ ଫେରିବାକୁ ତା'ର ବିଳମ୍ବ ହେଲେ ସେ ସେମିତି ଖାଇନିଏ । ନିର୍ମଳ ହିଁ ତାକୁ କହିରଖିଛି ନ ଜଗିବାକୁ । କାରଣ ସ୍ତ୍ରୀଟାତ' ରାନ୍ଧୁଣୀ ନୁହେଁ ଯେ ସେ ସମସ୍ତଙ୍କୁ ଖୁଆଇ ସାରିଲା ପରେ ଯାହା ବଳିବ ତାକୁ ଖାଇ ଏ ଘରେ ବଞ୍ଚିବ —''

ରଂଜନା ବୋଧେ ନିର୍ମଳର ଚାହାଣିରୁ ବୁଝିଗଲା ସେ କ'ଣ ଭାବୁଛି । କହିଲା — ''ତମେ ଡେରିରେ ଫେରିଲେ ସବୁବେଳେ ଏକା ବସି ଖାଇଚି । କିନ୍ତୁ ସେ ଦିନ ଆଉ ଆଜିର ଦିନ ଭିତରେ ଅନେକ ତଫାତ୍ । ଆଜି ଅନ୍ତତଃ ତୁମେ ଏକୁଟିଆ ଖାଇବସିବ ନାହିଁ ବୋଲି ମୁଁ ମନେ ମନେ ସ୍ଥିର କରିଛି ! ମୁଁ ବସିବି ତୁମ ସାଙ୍ଗରେ । ତେଣିକି ତୁମ ଇଚ୍ଛା । ଯଦି ତୁମେ ଏତେ ଦିନ ପରେ ଆଜି ନିହାତି ଶୋକ ମନାଇବାକୁ ଚାହୁଁଥାଅ ଠିକ୍ ଅଛି — ମୋର ସେଥିରେ କିଛି କହିବାର ନାହିଁ ।

ନିର୍ମଳ କିଛି କହି ପାରିଲା ନାହିଁ ।

ରଂଜନା ସତେ ତା'ର ଏକୁଟିଆ ପଣକୁ କେତେ ବୁଝିପାରିଥିଲା । କିନ୍ତୁ ବାପାଙ୍କୁ ବୁଝିବାରେ ତା'ର ଏତେ ଅସୁବିଧା କାହିଁକି ?...

ରଂଜନା କିଛି ନ କହି ଆସ୍ତେ ନିର୍ମଳର ହାତଧରି ବାଟ କଢ଼େଇ ଆଣିଲା ଖାଇବା ପାଖକୁ । ସେମିତି ଚୁପ୍‌ଚାପ୍ ପରଠା ଡବା ଖୋଲିଦେଲା । ସେ ଖୁବ୍ ଜାଣେ ମଇଁଷି ଘିଅର ପରଠା ନିର୍ମଳକୁ କେତେ ଭଲ ଲାଗେ । ମୂଳା ସନ୍ତୁଳାରେ କାଙ୍କଡ଼ ପଡ଼ିଲେ ସେ କେତେ ଭଲ ପାଏ ।

ନିର୍ମଳ ତଳକୁ ମୁହଁ ପୋତି ବସିଥାଏ ।

ରଞ୍ଜନା ପାଖରେ ଠିଆହୋଇ ତା' ପିଠିରେ ହାତ ରଖି କହିଲା — ''ଖାଅ'' ।

ନିର୍ମଳ ବୁଝିଯାଇଥିବା ଅଝଟ ପିଲାଟାଏ ପରି ଖାଇବା ଆରମ୍ଭ କଲା । ମୁଣ୍ଡ ସେମିତି ତଳକୁ । ଆଖି ଥମ୍ ଥମ୍, ମୁହଁ ଥମ୍ ଥମ୍ ।

ରଂଜନା ଆଉ ଗୋଟେ ଥାଳିଆରେ ସନ୍ତୁଳା ଆଣି ବସିଲା । ଖଣ୍ଡିଏ ପରଠା ନେଇ ଚୁପ୍‌ଚାପ୍ ଖାଇଲା । ରାଗ ରୋଷ ନାହିଁ । କଳି ତକରାଳ ନାହିଁ । ଅଥଚ କ'ଣଟାଏ ଦି' ଜଣକ ମଝିରେ, ସେମାନଙ୍କୁ ଆଚ୍ଛନ୍ନ କରି ଢଳଢଳ ହେଉଥିଲା । ସେମାନଙ୍କର ପାଟି ଫିଟୁ ନଥିଲା ।

''କିଏ ଗୋଡ଼ଉଚି ?''

''ଏଇ ଲୋକଟା... ଏଇ ଆଲୁଅ ତା' ମୁହଁରେ ପଡ଼ିଲା କୋଉଠୁ ? ଓ, ଏଇଟା ତ ମୋ ବାପା । ସେ କ'ଣ ମତେ ହତ୍ୟା କରିବାକୁ ଗୋଡ଼ଉଛନ୍ତି ? ତାଙ୍କ ହାତରେ ସେଇଟା ବୋଧହୁଏ ଛୁରୀ । ସେ ତା'ହେଲେ ମତେ ଖୁନ୍ କରିବାକୁ ସେମିତି ମୋ ପଛରେ ଧାଉଁଛନ୍ତି । ମତେ ଆହୁରି ଡରମାଡୁଚି । ମୁଁ ଚିତ୍କାର କରିପାରୁ ନାହିଁ ।''

''ଆହୁରି ପଛକୁ ଫେରି ଯାଆନ୍ତୁ ।''

ଡକ୍ଟର ସ୍ଲୋନ୍ ପୂର୍ବାପେକ୍ଷା ଅଧିକ ସତର୍କ ହେଲାପରି ଜଣାଗଲେ ।

ଶଶଧରବାବୁ ଧୀରେ ଧୀରେ କହିବାକୁ ଲାଗିଲେ –

''ଇସ୍... ଭାରି ଅନ୍ଧାର । ସରୁ ରାସ୍ତା ଗୋଟାଏ ସୁଡ଼ଙ୍ଗଭଳି । ନିଃଶ୍ୱାସ ରୋଧିହୋଇ ଯାଉଚି । ଆଃ... ଖୋଲିଗଲା ସେ ଯେଉଁ ଗୋଟି ବାନ୍ଧିଥିଲା ।''

''କ'ଣ ଦେଖିପାରୁଛନ୍ତି ?''

''ଗୋଟାଏ କୋଠା... ପୁରୁଣାକାଳିଆ ଜମିଦାରିଆ କୋଠା... ଖୁବ୍ ବଡ଼ ଅଗଣା, ମାଟିର ଉଞ୍ଚ ପାଚେରୀ, ପାଚେରୀ ଉପର ଖପର ଛାତ । ଶୀତ ଦିନ ସକାଳ । ମୁଁ ଗୋଟାଏ ବଡ଼ ଗଦି ଲାଗିଥିବା ଚୌକିରେ ବସିଚି । ମୋ ପାଖରେ ମୋର ଚାକର ବାକର ବେଢ଼ି ରହିଛନ୍ତି । ମୋ ସାମ୍ନାକୁ ଗୋଟାଏ ଲୋକକୁ ଅଣାଯାଉଚି । ସେ ମତେ ଦେଖି ଦେଖି ଉତ୍ୟକ୍ତ ହୋଇ ଉଠୁଚି । ସେ କମ୍ପୁଚି ରାଗରେ । ତା' ଆଖି ଦପ୍ ଦପ୍ କରୁଚି, ତା' ପାଟିରୁ ଜାବ ବାହାରୁଚି । ସେ ଓଟାରି ହଉଚି, ଉହୁଙ୍କି ଆସୁଚି । ତାକୁ ଅନ୍ୟମାନେ ଟାଣିଧରିଛନ୍ତି ।

ମୁଁ ତାକୁ ଚାହିଁ ପାନ ପିକ ପକଉଚି, ଗର୍ଜୁଚି... ।''

ଡକ୍ଟର ସ୍ଲୋନ୍ ଟେପ୍‌ରେକର୍ଡ଼କୁ ଆଉ ଟିକିଏ ଶଶଧରବାବୁଙ୍କ ତକିଆ ପାଖକୁ ଘୁଞ୍ଚାଇ ଦେଇ କହିଲେ –

''ଆପଣ ତାକୁ ଶୁଣନ୍ତୁ । ସେ କ'ଣ କହୁଛି ।''

''ସେ ଗର୍ଜୁଛି । କହୁଚି, ତତେ ମୁଁ ଛାଡ଼ିବି ନାହିଁ – ଛୋଟରାୟ । ତତେ ମୁଁ ଟିକିଟିକି କରି କାଟିଦେବି । ତୁ ମୋ ଝିଅକୁ ବଳାତ୍କାର କଲୁ । ତା' ଗେରସ୍ତକୁ ଲୋକ ଲଗେଇ ମାରିଦେଲୁ । ମୋ ଝିଅକୁ ଆଣି ଘରେ ପୋଇଲିପରି ରଖିଲୁ... ମୁଁ ତତେ ହାଣିଦେବି ବେ ଶଳା... ତୁ ଜମିଦାର ହେଲୁ ବୋଲି କ'ଣ ଝିଅ ବୋହୂ ମାନିବୁ ନାଇଁ ।''

''ତା' ଝିଅ କିଏ ? ତାକୁ କେମିତି ଆପଣ ଆଣିଲେ ?''

''ଇସ୍, ଝିଅଟା ତ ହୀରାଖଣ୍ଡେ । ତାକୁ ଦେଖିବାମାତ୍ରେ ଆଣିବାକୁ ଚାହିଁଲି । ମୁଁ ତ ମାଲିକ... କ୍ଷେତରେ ଫସଲ ଉଠିଲେ ମୋର... ଗାଁରେ ଝିଅ ବଡ଼ ହେଲେ ମୋର । କ'ଣ ହେଲା ସେଥିରୁ ଗୋଟାଏ ଅଯୋଗ୍ୟ ତାକୁ ବାହାହେଇଗଲା ବୋଲି ? ଖାଲି କ'ଣ ମୁଁ ? ମୋ ଖାନ୍‌ଦାନ୍ ଏମିତି କୋଉକାଳୁ ଭୋଗି ଆସିଚନ୍ତି । ପ୍ରଜାମାନେ

ପୂଜା କରି ଆସିଚନ୍ତି । ମୁଁ ସେ ଝିଅଟାକୁ ଆଣିବାକୁ କହିଲି । ସେ ବେକୁବ୍ କଟୁରୀ ଧରି ବାହାରିଲା ଲଢ଼ିବ, ତା' ମାଇପକୁ ବଞ୍ଚେଇବ । ଆମ ଲୋକେ ତାକୁ ଧରିନେଲେ । ତାକୁ ଆୟତ୍ତ କରୁ କରୁ ତା' ପ୍ରାଣ ଚାଲିଗଲା । ସେଇଟା ଭାଗ୍ୟ କଥା – କିନ୍ତୁ ସେ ବୁଢ଼ାଟା – ମାନେ ତା' ବାପ ଏମିତି କାହିଁ ହଉଚି ?''

''ତା'ପରେ କ'ଣ ହେଲା ?''

''ସେ ବୁଢ଼ାକୁ ହାତକଡ଼ି ବାନ୍ଧିନେଇ ଯିବାକୁ ମୁଁ ହୁକୁମ ଦଉଚି । ସେ ଗଲାବେଳେ ପଛକୁ ଚାହିଁ ଚାହିଁ କ'ଣ ସବୁ ଶୋଧି ଶୋଧି ଯାଉଚି । ମୋଟ ଉପରେ ମତେ ସେ ଭୟଙ୍କର ଭାବେ ଘୃଣା କରୁଚି । ମୁଁ ଅନୁଭବ କରିପାରୁଚି ।

ସେ ବୁଢ଼ାଟା ତା' ଆରଦିନ ମରିଯାଇଚି ।''

''ତା'ପରେ ?''

''ତା' ଝିଅ ମୋ ଉପରେ ବାପ ଭଳି ଗାଳି ବର୍ଷା କରୁଚି । କହୁଚି... କହୁଚି – ସେ ମତେ ଖାତିର କରେନାହିଁ । ସେ ଯାହାକୁ ମନ ତାକୁ ଗେରସ୍ତ କରିପାରେ । ମତେ ନୁହେଁ ।''

''ସେ ଝିଅକୁ ଆପଣ କ'ଣ ବିଭା ହଉଚନ୍ତି ?''

ଶଶଧରବାବୁ ବିଚିତ୍ର ଢଙ୍ଗରେ ହସିଲେ । ତାଙ୍କର ନିଦୁଆ ସ୍ୱରରେ ଭାରି ବିକଟାଳ ଶୁଭିଲା ।

''ମୁଁ ଯେତେ ମାଇକିନା ଆଣିଚି, ସମସ୍ତଙ୍କୁ ବିଭାହେବି ନା କ'ଣ ? ବିଭା ତ ଥରେ ହେଇଚି । ଏଇଟା ସେମିତି ରହିବ । ଆଉ ଅଠରଜଣକ ପରି... ।''

''ତା'ପରେ ?''

''ମୋର ମନେପଡ଼ିବାରୁ ମୁଁ ସେ ମାଇକିନା ପାଖକୁ ଯାଇଚି... ତା' ପାଖରେ ଆଉ ଜଣେ କିଏ ଅଛି । ଲୁଚି ଯାଇଛି... ସେ ମାଇକିନା ମତେ ନିଶା ଖୁଆଉଚି... ମତେ ଗୋଟେ ଚୌକିରେ ବସେଇ ଦଉଚି । ଗୋଟେ ଲୋକ ଆସି ମୋତେ ତୁଣ୍ଡି ବାନ୍ଧିଦଉଚି, ଦୁହେଁ ମିଶି ଚୌକିରେ ମତେ ବାନ୍ଧିଦଉଚନ୍ତି –''

ଶଶଧରବାବୁଙ୍କ ବୁକୁ ଧଡ଼ଧଡ଼ ହେଲା । ମୁହଁ ବିମର୍ଷ ହୋଇଗଲା ।

ଡକ୍ଟର ସ୍ଲୋନ୍ ସେମିତି ସ୍ଥିର ସ୍ୱରରେ କହିଲେ – ''ତା'ପରେ... ତା'ପରେ କ'ଣ କୁହନ୍ତୁ ?''

''ସେ ମାଇକିନା ମୋ ମୁହଁକୁ ରାମ୍ପିଦେଇଗଲା । ମୋତେ ବିଧା ଲାତ ମାରିଲା । ମନ ଇଚ୍ଛା ମୋ ମୁହଁରେ ଛେପ ପକେଇଲା । କହିଲା, ତୁ ଶହେ ଜନ୍ମରେ ମୋ ଗିରସ୍ତ ହୋଇପାରିବୁ ନାହିଁ । ମତେ ବିଭାହେଲେ ବି ମୁଁ ତତେ ଶହେଥର ଛାଡ଼ି ଆଉ ଜଣକୁ ଭଜିବି । ଦେଖି ତୋ ଆଖିରେ ଦେଖି ମର । ସେ ସେଇ ଲୋକଟାକୁ ମୋ ସାମ୍ନାରେ ଲଙ୍ଗଳା କରିପକେଇଲେ । ନିଜ ଲୁଗା କାଢ଼ି ଫିଙ୍ଗିଦେଲା – ମୁଁ ଆଖି ବୁଜିଦେଲି... ଆଃ, ମୁଁ ସେ ଦୁଇଜଣକୁ ଏକାଠି ଜାଳିଦେବି... ମୁଁ ଖାଲି ମୁକୁଳିଯାଏ

– ତା'ପରେ ମୋ ମୁଣ୍ଡ ଉପରେ କିଏ କଣଟାଏ ଭାରି ଜୋର ପିଟିଦେଲା । ମୁଁ ଆଖି ଫିଟେଇଲି – ସେ ଲଙ୍ଗଳା ମାଉକିନା ଗୋଟାଏ ଟାଙ୍ଗିଆରେ ମୋ ମୁଣ୍ଡକୁ ଆଉ ଥରେ ହାଣିବାକୁ ଉଞ୍ଚେଇଚି । ତା'ପରେ ଅନ୍ଧାର ହୋଇଯାଉଚି । ବହଳିଆ ଥୋଲା ଥୋଲା ରକ୍ତ ପରି ଅନ୍ଧାର –''

ଡକ୍ଟର ସ୍ଲୋନ୍ ଶଶଧରବାବୁଙ୍କ କପାଳରେ ପାପୁଲି ରଖି ନିଜେ ଆଖି ବୁଜିନେଲେ । ତାଙ୍କ ବୁକୁରୁ ଏକ ଦୀର୍ଘଶ୍ୱାସ ଓହ୍ଲେଇଗଲା ।

ଶଶଧରବାବୁ, ସହଜ, ଶାନ୍ତ ହୋଇଗଲେ ।

ଡକ୍ଟର ସ୍ଲୋନ୍ କିଛି ସମୟ ଅପେକ୍ଷା କରି କହିଲେ –

''ଡକ୍ଟର ପ୍ରଧାନ, ଆପଣ ବର୍ତ୍ତମାନ ଉଠନ୍ତୁ ।''

ଶଶଧରବାବୁ ଆଖି ଖୋଲି ମଟମଟ ଚାରିଆଡ଼େ ଅନେଇଲେ । ଖଟ ଉପରେ ବସି ମୁଣ୍ଡଟାକୁ ଚାପି ଧରିଲେ ।

''ମୁଁ ଭୟଙ୍କର ଦୁଃସ୍ୱପ୍ନ ଦେଖିଲି ଡକ୍ଟର । କିନ୍ତୁ ସେଇଟା ତ ସ୍ୱପ୍ନ ନୁହେଁ । ମୁଁ ତାକୁ ସ୍ୱପ୍ନ କହିପାରିବି ନାହିଁ । ସେଇଟା ଏତେ ସ୍ପଷ୍ଟ । ମୁଁ ଆପଣଙ୍କୁ କ'ଣ କହିବି ?''

''କିଛି କହିବାର ଦରକାର ନାହିଁ । ଆପଣ ସବୁ କହିସାରିଛନ୍ତି । ଆପଣଙ୍କ ଜୀବନରେ ,ଯେଉଁ ଦୁଇଜଣକୁ ନେଇ ଆପଣ ସଂକଟାପନ୍ନ ସେମାନଙ୍କ ସହିତ ଆପଣଙ୍କ ସମ୍ପର୍କ ଅନେକ ପୁରୁଣା ।''

''ମାନେ ? ଆପଣ କ'ଣ କହିବାକୁ ଚାହାନ୍ତି ମୁଁ ଯାହା ଦେଖିଲି ସେଇଟା ସବୁ ସତ ?''

ଡକ୍ଟର ସ୍ଲୋନ୍ ମୃଦୁମୃଦୁ ହସି ତାଙ୍କ ମୁଣ୍ଡ ଉପରେ ହାତ ରଖି କହିଲେ – ''ସେସବୁ ଏକ ରହସ୍ୟ । ଆସନ୍ତୁ କଫି ପିଇବା, କଥାବାର୍ତ୍ତା ହେବା ।''

କିଛି କଫି ବିସ୍କୁଟ ଖାଇଲାପରେ ଶଶଧରବାବୁ କିଛିଟା ସୁସ୍ଥ ବୋଧକଲେ । ଆଶ୍ୱସ୍ତ ମଧ୍ୟ ବୋଧକଲେ ।

କୌଣସି ଏକ ବିରାଟ ସଂକଟରୁ ମୁକୁଳି ଆସିଲାପରି ଅନୁଭବ କଲେ ।

''ଆଚ୍ଛା ଡକ୍ଟର ସ୍ଲୋନ୍, ମୁଁ ଦେଖିଥିବା ଦୁଃସ୍ୱପ୍ନ ଶୁଣିବାକୁ ଆପଣଙ୍କର ଆଗ୍ରହ ନାହିଁ ।''

''ଆପଣ ପରା ସବୁ କହିସାରିଛନ୍ତି । ମୁଁ ଆପଣଙ୍କୁ ରିଗ୍ରେସନ କରାଇ ନେଇଥିଲି । ଆପଣ ପିଲାଦିନ କଥା କହିସାରିଲା ପରେ ଜାଣିଶୁଣି ଆହୁରି ପଛକୁ ଯିବାକୁ କହିଥିଲି । ଆପଣ ମଝିରେ ଗୋଟାଏ ଅନ୍ଧାର ଉପତ୍ୟକା ପାରିହେବା ପରେ ପୁଣି ସବୁ ସ୍ପଷ୍ଟ ଦେଖିପାରିଥିଲେ । କିନ୍ତୁ ଯାହା ଦେଖିଲେ ସେ ସମ୍ପୂର୍ଣ୍ଣ ଆଉ ଏକ ସମୟ ଏବଂ ବ୍ୟକ୍ତିର କଥା – କିନ୍ତୁ ଆପଣ କ'ଣ କହୁଚନ୍ତି ସେ ଜମିଦାର ଆଉ କିଏ ?''

''ଆଦୌ ନୁହେଁ, ଡକ୍ଟର ସ୍ଲୋନ୍ । ବରଂ ମୁଁ ଭାବୁଛି ମୁଁ ହିଁ ସେଇ ଜମିଦାର ।

ସେତେବେଳେ ଯାହା ପରିଶୋଧ ହୋଇପାରିନାହିଁ, ସେଇଟା ଏବେ ହେଲାଭଳି ଲାଗୁଚି । ଏଇଟା କିନ୍ତୁ ଆଉ ଦୁଇଜଣଙ୍କୁ ଏହିପରି ରିଗ୍ରେସନ କରେଇନେଇ ପାରିଲେ ସତମିଛ ପରୀକ୍ଷା ହୋଇଯାଇ ପାରନ୍ତା । ସେ ଦୁଇଜଣ ହେଲେ ମୋ ବାପା ଆଉ ମୋ ସ୍ତ୍ରୀ । ସେମାନେ ଯେ ମୁଁ ବର୍ତ୍ତମାନ ଦେଖିଥିବା ଚରିତ୍ର ଏ କଥା କେମିତି ଜାଣିବା ?''

''ଆପଣ ଠିକ୍ କହିଛନ୍ତି ।''

''ଆପଣ ଡକ୍ଟର ସ୍ଲୋନ୍, କ'ଣ ଭାବୁଛନ୍ତି ଏ ଅଦ୍ଭୁତ ବିଷୟରେ ? ଏଇଟା କ'ଣ ପୂର୍ବଜନ୍ମ କଥା । ଏମିତି କ'ଣ ପ୍ରସ୍ତ ପ୍ରସ୍ତ ଜୀବନ ଆମେ ବଞ୍ଚୁଚେ ?''

ଡକ୍ଟର ସ୍ଲୋନ୍ କିଛି ନ କହି ଅଳ୍ପ ହସି ଚାହିଁ ରହିଲେ କେବଳ ।

□□□

# ପଞ୍ଚପୁତ୍ରର କାହାଣୀ

''ସେମାନେ ଚାହିଁଲେ ଏଇଠି ଇନ୍ଦ୍ରପୁରୀ ତୋଳିଦେଇ ପାରିବେ । ଏକେ ଏକେ କୋଟିପତି । ଶୁଣାଯାଏ ସେମାନେ କାଳିପୂଜା ପରେ ଆସୁଛନ୍ତି । ଏକାଠି ବସି ପାଞ୍ଚଲୋକଙ୍କୁ ପଚାରି ବୁଝି ଯାହା ନିଷ୍ପତ୍ତି କରିବେ ତାହା ହେବ ।''

''ତୁମେ ତ ସବୁଠୁ ପୁରୁଣା ଲୋକ । ଏ ଖାନ୍‌ଦାନ୍ ସମ୍ଭାଳି ରହିଛ ସେ କାଳରୁ । ତମେ କ'ଣ ଚାହୁଁଛ ? ଏଠି ଧର୍ମଶାଳା ହେବ, ନା ମନ୍ଦିର ହେବ, ନା ହୋଟେଲ ହେବ ?''

''ମୁଁ ଦଶବର୍ଷ ବୟସରୁ ଏ ସମ୍ପତ୍ତି ଜଗି ପଡ଼ିଛି । ମୋତେ ଆସି ପଚାଶ ଟପିଲା । ମୋତେ ସେମାନେ ଟଙ୍କା ପଠାଇ ଡକେଇଛନ୍ତି । ମୁଁ ସମସ୍ତଙ୍କ ପାଖକୁ ଯାଇଛି । କେହି କାହାକୁ ଊଣା ନୁହନ୍ତି । କୁବେର ସମ୍ପତ୍ତି ଫାଟି ପଡୁଚି । ହେଲେ ଏ ପଚିଶବର୍ଷ ଭିତରେ କେହିହେଲେ ଜଣେ ଆସି ଏଇଠି ପାଦ ପକେଇ ନାହାନ୍ତି ।''

''ଏଇଠି ବୁଢ଼ା ରହୁଥିଲେ ପରା । ତାଙ୍କୁ ଦେଖିବାକୁ କ'ଣ କେହିହେଲେ ଆସିନାହିଁ ?''

''ନା'' ! ସେଇଟା ଏ ପରିବାରର ରହସ୍ୟ । ମୁଁ ଏତେବର୍ଷ ରହିଲି ସିନା କିଛି ଜାଣିପାରିଲି ନାହିଁ । ରାଣ ଖାଇଲା ପରି ପାଞ୍ଚପୁଅଯାକ ଏଇଠି ପାଦ ଦେଇ ନାହାନ୍ତି । ଟଙ୍କା ପଇସା ପଠାଇଛନ୍ତି । ହେଲେ ସେଇଟା ବି ମୁଁ ଅନୁମାନ କରି କହୁଛି । ତାଙ୍କ ଭିତରେ କ'ଣ ଗୋଟାଏ ଭୟଙ୍କର ଗୁମର ରହିଛି, ସେଇଟା କେହି ଜାଣନ୍ତିନାହିଁ ।''

''ବାପ ଚାଲିଗଲେ । ସେତେବେଳେ ମଧ୍ୟ ସେମାନେ କେହି ଆସିଲେ ନାହିଁ ବୋଲି ଲୋକେ ଛି-ଛି କରୁଛନ୍ତି ।''

କିନ୍ତୁ ମୁଁ ଯେତେ ପାରିଛି ବୁଝେଇଛି, ସେମାନେ କୌଣସି କାରଣରୁ ଧର୍ମ ଲଙ୍ଘି ପାରିନାହାନ୍ତି । ତାଙ୍କୁ କିଏ କେମିତି ବାନ୍ଧି ରଖିଥିଲା ମୁଁ କହିପାରିବି ନାହିଁ । କିନ୍ତୁ ମୁଁ ଜାଣେ ବାବୁଙ୍କ କ୍ରିୟାବେଳକୁ ଲକ୍ଷେ ଟଙ୍କା ଆସିଥିଲା । ଏଠି ତାଙ୍କ ଭାଇଭଗାରି ସବୁ ତାଙ୍କୁ ନେଇ ଟଣା ଓଟରା ହେଉଥିଲେ । ବୁଢ଼ୀ ତ ଚାଲିଯାଇଥିଲେ ମୂଳରୁ, ବଡ଼ପୁଅ ବିଭାବେଳୁ । ସେତେବେଳେ ମୁରବି ନିଜେ ସବୁ ସମ୍ଭାଳିଲେ ।''

''ଆହେ ରଖ ତମ ଚାତୁରୀ କଥା । ପୁଅ ହେଇ ଜନ୍ମ ହେଇଥିବ, ବାପ ମରିଗଲେ ପାଣି ମୁନ୍ଦେ ଟେକିବ ନାହିଁ, ମୁଖାଗ୍ନି ଦେବନାହିଁ, ସେ କି ପୁଅ ?''

''ମୁଁ ବି ସେମିତି ଭାବିଛି । କେତେ କାନ୍ଦିଛି । ହେଲେ ବୁଢ଼ା ତୁଣ୍ଡରୁ କେବେହେଲେ ପଦେ ବାହାରି ନାହିଁ । ସେ କେବେ କୌଣସି ପୁଅକୁ ଦୋଷ ଦେଇନାହାନ୍ତି । ବନ୍ଧୁ କୁଟୁମ୍ବୀ ଲୋକ ବଳେଇବାରୁ ସେ କହିବା ମୁଁ ଶୁଣିଛି । ''ସେମାନଙ୍କୁ ମୁଁ ରାଣ

ପକେଇଛି । ସେମାନେ କେହି ମୁଁ ଏଠି ଥିବାଯାକେ ଆସିବେ ନାହିଁ ।'' କି ରାଣ ? – ସେ କାହିଁକି ସେମିତି ରାଣ ପକାଇଛନ୍ତି ? କାହାରି ପଚାରିବାର ସାହସ ନାହିଁ ।''ବୁଢ଼ା ମରିବା ପରେ ତ ସେମାନେ ଆସିଥାନ୍ତେ ।''

''ନାଇଁ ପରା, ତାଙ୍କୁ କୁହାହୋଇଥିଲା ଏଇବର୍ଷ ଏଇ ମାସ ଶେଷଦିନ ଆସି ପହଞ୍ଚିବାକୁ । ବୁଢ଼ା ମରିବାର ପାଞ୍ଚବର୍ଷ ହେଇଗଲା । ୟା ଭିତରେ ଭାଇଭଗାରି ଏ ସମ୍ପତ୍ତିବାଡ଼ି ପାଇଁ ମାଲିମକଦ୍ଦମା କଲେ । ଓକିଲଙ୍କୁ ନେଇ ମୁଁ ଦିଲ୍ଲୀ, ନାଗପୁର, ଗ୍ୱାଲିଅର ଯାଇଛି । ସେଇଠି ପୁଅମାନେ ବସି ସବୁ କଥା ବୁଝିଛନ୍ତି । ଅସୁମାରି ପଇସା ସାରିଛନ୍ତି । ଏ ସମ୍ପତ୍ତିରେ କେହି ଟିପମାରି ପାରି ନାହାନ୍ତି । ପୁଅମାନଙ୍କ ନାଁରେ ଫଇସଲା ହେଇଛି ।''

''ସେମାନେ କ'ଣ ଏଇମାସ ଶେଷକୁ ଆସିବେ ବୋଲି ତମକୁ କହିଛନ୍ତି ?''

''ସେମାନେ ପରା ସଜବାଜ ହଉଥିଲେ ଆସିବାକୁ । ମୋତେ କହିଛନ୍ତି, ସତର୍କ କରିବାକୁ । ଏଇ ମାସ ରାଣ ମେଣ୍ଟିବ । କ'ଣ ତେଣିକି ଭାଗ୍ୟରେ ଅଛି କେଜାଣି !''

''ଆଚ୍ଛା ଦଶବର୍ଷ ବୁଢ଼ା ଏକାକୀ ରହି ଚଳୁଥିଲେ ଟି ! କେତେବେଳେ କ'ଣ ମନ ହେଇ ନାହିଁ ପୁଅଙ୍କୁ ଦେଖିବାକୁ ?''

''ନା, ମୁଁ କେବେ କେମିତି ସେ କଥା ଉଠେଇଲେ ସେ ମୁହଁ ବୁଲେଇ ଦେଉଥିଲେ ।''

''ଛାଡ଼, ଏସବୁ ବୁଝିବା ଆମର ସାଧ୍ୟାତୀତ ।''

ସଞ୍ଜବେଳେ ଦୌଲତରାମ କୋଠି ଆଗରେ ଠିଆହୋଇ ଭୋଳା ସାଆନ୍ତା ସାହିଟୋକା ଅମରକୁ ସେ ଖାନ୍‌ଦାନ୍ କଥା ବୁଝାଉଥିଲା । ସେ କୋଠିକୁ ନେଇ ନାନା ଗୁଜବ ଉଠେ, ପୁଣି ମଉଳିଯାଏ । ଦୌଲତରାମ ତାଙ୍କ ସମୟରେ ବିଲାତ ଫେରନ୍ତା । ବିଦେଶୀ ବ୍ୟବସାୟରେ କଲିକତା ପେଣ୍ଠ ଉପରେ ଘର । ଅମାପ ସମ୍ପତ୍ତି । ଦେଖିବାକୁ ରାଜପୁତ୍ର, ବୟସ ପଚିଶ । ସେ ଚାହିଁଥିଲେ ସାଇବାଣୀ ବିଭାହୋଇ ପାରିଥାନ୍ତେ କିନ୍ତୁ ସେ ତା ନ କରି ବଙ୍ଗାଳୀ ଦତ୍ତ ପରିବାରର ଗୋଟିଏ ଇଂରାଜୀ ପଢ଼ୁଆ ଝିଅକୁ ସ୍ଥିରକଲେ, ବୟସରେ ଆଠବର୍ଷ ସାନ । ଜାତି କୁଟୁମ୍ବୀଙ୍କ ବିରୋଧ ହେଲା । ସେ କାହାକୁ ଖାତିର ନ କରି ସେଇ ପରମା ସୁନ୍ଦରୀ ଡେଙ୍ଗୀ ବଙ୍ଗାଳୁଣୀ ଝିଅଟିକୁ ହିଁ ବିଭାହେଲେ । ଜାତିଭାଇ ଆଡ଼ ଆଡ଼ ହେବାରୁ କଲିକତା ଛାଡ଼ିଦେଲେ । ଦିଲ୍ଲୀ, ଗ୍ୱାଲିଅର, ନାଗପୁର, ଆଜମୀର, ବମ୍ବେ ସହରମାନଙ୍କରେ ବ୍ୟବସାୟ କେନ୍ଦ୍ର ଖୋଲିଲେ । ଅଜସ୍ର ସମ୍ପତ୍ତି ଠୁଳ କଲେ । ବିଭା ହେବାର ଏଗାର ବର୍ଷ ଭିତରେ ପାଞ୍ଚପୁଅ ଜନ୍ମ ହେଲେ । ପଦ୍ମବନ ପରି ଦୌଲତରାମ ପରିବାର ଦିନୁଦିନ ବିକଶିତ ହେବାରେ ଲାଗିଲା । ଯେତେବେଳେ ବଡ଼ପୁଅକୁ ପନ୍ଦରବର୍ଷ, ସେ ତାକୁ ବିଲାତ ପଠେଇଦେଲେ । ଅନ୍ୟମାନଙ୍କୁ କାହାକୁ ଲଭଡ଼େଲ, କାହାକୁ ଜେଭିଅର୍ସ, କାହାକୁ ଷ୍ଟିଫେନ୍‌ସ ପଠାଇଦେଲେ ଇଂରାଜୀ ପାଠ ପଢ଼େଇବାପାଇଁ । ସେତିକିବେଳେ ଝଡ଼

ଉଠିଲା । ଘରେ ପ୍ରବଳ ପାଟିତୁଣ୍ଡ ହେଲା । ମୂଳ କଥା କେହି ଜାଣିପାରିଲେ ନାହିଁ । ବାହାରକୁ ଦୌଲତରାମ ଆଉ ତାଙ୍କ ପତ୍ନୀ ସାମାଜିକ ଶିଷ୍ଟାଚାରର ଖିଲାପ କିଛି କରୁନଥିଲେ । କିନ୍ତୁ ଆସ୍ତେ ଆସ୍ତେ ତାଙ୍କ ଭିତରେ ଗୋଟାଏ ବ୍ୟବଧାନ ସୃଷ୍ଟି ହେବା ଭୋଳା ସାଆନ୍ତା ଲକ୍ଷ୍ୟ କରି ପାରୁଥିଲା ।

ରାତିରେ ତା ନିଦ ହଠାତ୍ ଭାଙ୍ଗିଯାଉଥିଲା । ସେ ଝରକା ବାଟେ ଅନେଇଲା ବେଳକୁ ଦୌଲତରାମ୍ ଦମ୍ପତି ବେଶ୍ ଅଭଦ୍ର ଭାଷାରେ ଗାଳିଗୁଲଜ କରୁଥିବାର ସେ ଶୁଣିଥିଲା । ତା'ର ମନେହେଉଥିଲା ଯେ ମଝିରେ କେହି ଜଣେ ତୃତୀୟ ବ୍ୟକ୍ତିକୁ ନେଇ ସେମାନେ କଜିଆ କରୁଥିଲେ ।

ମଝିରେ ମଝିରେ ସେମାନେ ହପ୍ତାଏ ଦୁଇ ହପ୍ତା ଆଦୌ କଥା ହେଉ ନଥିଲେ । ଘରର କାନ୍ଥବାଡ଼ ଶିରାପ୍ରଶିରା ଟଣକି ରହୁଥିଲା, ସେ ନୀରବତା ଭିତରେ । ତା'ପରେ ନିରନ୍ଧ୍ର ମେଘରୁ ବଜ୍ରବିଦ୍ୟୁତ୍ ଅଜାଡ଼ିହୋଇ ପଡୁଥିଲା ।

ହେମା ଦତ୍ତ । ଦୌଲତରାମଙ୍କ ସ୍ତ୍ରୀ ମଝିରେ ଦୁଇବର୍ଷ ବାପଘରେ ରହିଗଲେ । ପିଲାମାନେ ଛୁଟିରେ ଆସିଲେ ବାପାପାଖେ ମୁହଁମାରିଦେଇ କଲିକତା ପଳଉଥିଲେ । ସେଇଠୁ ଚାଲିଯାଉଥିଲେ ପଢ଼ିବାକୁ । ଦୌଲତରାମ ସେତିକିବେଳେ ନିଶା ଖାଇବା ଆରମ୍ଭ କରିଥିଲେ । ସେତିକିବେଳେ ତାଙ୍କୁ ଦେଖିବାକୁ ଡର ମାଡୁଥିଲା ।

ତା'ପରେ ଦିନେ ହେମା ଫେରିଲେ ଏ ସହରକୁ । କିନ୍ତୁ ରହିଲେ ସେ କୋଠାର ଡାହାଣ ପାଖେ । ବାଁ ପାଖେ ରହିଲେ ଦୌଲତରାମ । ମଝିରେ ଭୋଳା ଆଉ ଦି'-ଚାରିଜଣ ବୋଲକରା ଉଭୟପଟେ ରହି ସେବା କରୁଥିଲେ ।

ଦିନେ ଦୌଲତରାମ ତାଙ୍କ ପାଖ ଘରକୁ ଖୁବ୍ ଝଡ଼ାଝଡ଼ି କରି ସଜାଇବାକୁ ହୁକୁମ ଦେଲେ । ଭଲ ଖାଇବା ପିଇବା ପାଇଁ ବରାଦ କଲେ । ମାଲିକାଣୀଙ୍କ ମନକୁ ପାଉଥିବା ସବୁ ପ୍ରକାର ଜିନିଷ ରନ୍ଧାହେଲା । ଭୋଳା ସାଆନ୍ତା ଭାରି ଖୁସିଟାଏ ହେଇ କାମରେ ଲାଗିଥାଏ । ଭାବୁଥାଏ ଯେ ସେଦିନ ବୋଧେ କ'ଣ ବୁଝାମଣାଟାଏ ହେଇଯିବ । ମଝିରେ ଅଦୃଶ୍ୟ ବାଡ଼ ଭାଙ୍ଗିଯିବ ।

କିନ୍ତୁ ସେଭଳି କିଛି ହେଲାନାହିଁ । ହେମା ଦତ୍ତ ରେଲୱେ ହୋଟେଲରେ ଖାଇବାକୁ ଚାଲିଗଲେ । ଦୌଲତରାମ ଖୁବ୍ କୁହୁଳିଲେ । ରନ୍ଧାବଢ଼ା ଜିନିଷସବୁ ସେମିତି ପଡ଼ିରହିଲା । ରାତିସାରା ନିଶା ଖାଇ ତା ଆରଦିନ ଦଶଟାଯାଏଁ ବେହୋସ ପଡ଼ିରହିଲେ । ସେଇଦିନ ସେ ତାଙ୍କ ବାକ୍ସଟି ଧରି ବାହାରିଗଲେ କାହାକୁ କିଛି ନ କହି । ଫେରିଲେ ତିନିମାସ ପରେ ।

ଏମିତି ଦି'ଜଣଙ୍କ ଭିତରେ ଆଉ ମିଳାମିଶା ହେଇପାରିଲା ନାହିଁ ।

ତା'ପରେ ହେଲା ବଡ଼ ପୁଅ ଧର୍ମରାଜର ବିଭାଘର । ସେ ନିଜେ ଦିଲ୍ଲୀରେ କୋଟିପତି ଝିଅଟିକୁ ଠିକ୍ କରିଥିଲେ । ପୁଅମାନେ ତ ପ୍ରାୟ ନିଜ ନିଜ ବ୍ୟବସାୟ ସମ୍ଭାଳି ରହୁଥିଲେ । ସବା ସାନପୁଅକୁ ସେତେବେଳକୁ ଏକୋଇଶି ବର୍ଷ । ସେ

ବଡ଼ଭାଇ ପାଖରେ ରହୁଥିଲା । ତା'ପାଇଁ ଛାଡ଼ୋରରେ କାରବାର ଆଉ ସମ୍ପତ୍ତିବାଡ଼ି ରଖାହୋଇଥିଲା । ବାହାଘର ହେଲା ସେଇ ଦିଲ୍ଲୀରେ । ଏଠୁ ବାପା ମା' ଯାଇ ବିଭାଘର କରେଇଲେ । ଭୋଲା ସାଆନ୍ତା ଶୁଣିଲା ସେଇଠି କୁଆଡ଼େ ପାଞ୍ଚ-ସାତ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା ବର ପକ୍ଷରୁ ।

ବିଭାଘର ଦି'ଦିନ ପରେ ଦୌଲତରାମ ଏକୁଟିଆ ଫେରିଲେ । ହେମା ରହିଲେ ପିଲାଙ୍କ ପାଖେ କିଛିଦିନ । ଆସିଲାବେଳେ ପିଲାଙ୍କ ଓଠଧରି କାନ୍ଦିପକାଇଥିଲେ । କହିଥିଲେ ଆଉ କେବେ ଦେଖା ନ ହୋଇପାରେ ।

ପିଲାମାନେ ଜାଣିଥିଲେ ଯେ ତାଙ୍କ ବାପ ମା'ଙ୍କ ଭିତରେ କ'ଣଟାଏ ଭୟଙ୍କର ଅଭିଶାପ ପରି ଝୁଲି ରହିଛି । କାହାରି ସାହସ କିନ୍ତୁ ହେଉ ନଥିଲା ପଚାରି ଦେବାପାଇଁ ।

ହେମା ଫେରିଲେ । ଫେରିବା ଦିନହିଁ ରାତି ଦଶଟାବେଳେ ଉଭୟଙ୍କ ଭିତରେ ଭୟଙ୍କର ପାଟିତୁଣ୍ଡ ହେଲା । ତା'ର ଦୁଇଦିନ ପରେ ହେମାଙ୍କ ମୃତ୍ୟୁ ହେଲା । ଲୋକେ ଚୁପ୍‌ଚାପ୍ ହେଲେ । କିନ୍ତୁ ଦୌଲତରାମଙ୍କ ଟଙ୍କାର ସୁଅ ସବୁ ଭସେଇନେଲା । ପିଲାଙ୍କୁ କୁଆଡ଼େ ସେ ଟେଲିଗ୍ରାମ କରିଥିଲେ ପନ୍ଦରବର୍ଷ ପରେ ଆସିବାକୁ ।

ତଥାପି ଧର୍ମରାଜ ଚାରିଭାଇଙ୍କୁ ଧରି ବାହାରିଥିଲେ ଆସିବାକୁ । ତାଙ୍କ ମାମୁଁ ନିଖିଳ ଦତ୍ତ ପାଇଲଟ ଅଫିସର ଆଉ ଅଜା ସୁକୁମାର ଦତ୍ତ ଦିଲ୍ଲୀରେ ଦୈବାତ୍ ପହଞ୍ଚିଯିବାରୁ କଥା ଅନ୍ୟ ପ୍ରକାର ହେଇଗଲା । ସେ ଦୁହେଁ ଖୁବ୍ କାନ୍ଦିଲେ । ଖୁବ୍ ରାଗିଲେ । କିନ୍ତୁ ମନାକଲେ ଏଠିକି ଆସିବାକୁ । କ'ଣ କାରଣ ଥିଲା, ତା ଆଉ କାହାକୁ କହିଲେନାହିଁ ।

ଏଇଭଳି କଥା ଗଡ଼ିଆସିଲା ଆଜିଯାଏଁ ।

x x x x

ମାର୍ଗଶିର ଶେଷ ଆଡ଼କୁ ବେଶ୍ ଶୀତ ପଡ଼ିଆସିଥାଏ । ଦୌଲତରାମଙ୍କ କୋଠି ଆଗରେ ଦି'ଖଣ୍ଡ ଗାଡ଼ି ଆସି ଲାଗିଲା । ଭୋଲା ସାଆନ୍ତା ଆଉ ପାଞ୍ଚଜଣ ମିଶି ଦୁଆରେ ଧାଡ଼ିବାନ୍ଧି ଓଳଗି ହେଲେ ।

କୋଠିର ମାଲିକମାନେ ଆସି ପହଞ୍ଚିଲେ । ଦୌଲତରାମଙ୍କ ପାଞ୍ଚପୁଅ ଓ ଦୁଇ ନାତି । ସ୍ତ୍ରୀଲୋକ କେହି ଆସିନଥିଲେ । କାହିଁକି ଆସିନଥିଲେ କେଜାଣି ! ଭାଇମାନେ ବୋଧେ ଚାହିଁନଥିଲେ ତାଙ୍କ ପରିବାରର ସବୁଠାରୁ ଗମ୍ଭୀର ଗୋପନୀୟ ବିଷୟରେ ଆଉ କେହି ଦଖଲ ଦେଉ । ଘରେ ପଶୁ ପଶୁ ଭୋଲା ସାଆନ୍ତା ସବୁ ବଖରାର ତାଲା ଫିଟେଇଦେଲା । ଡାଇନିଂ ହଲରେ ଚା' ଆଣି ରଖିଦେଲା ।

ନାତି ଟୋକା ଦି'ଜଣ ସାରା ଘର ଖେଦିଗଲେ । ଶଙ୍ଖ ମଲମଲ ପଥର ଚଟାଣରେ ଗୋଡ଼ ଘଷି ଚାଲିବାକୁ ତାଙ୍କୁ ସୁଖ ଲାଗୁଥିଲା ।

ପୁରୁଣାକାଳିଆ କାରୁକାର୍ଯ୍ୟ ଲାଗିଥିବା ଟେବୁଲ, ଚୌକି, ସୋଫା, ପଲଙ୍କ, ଆଇନା ତାଙ୍କୁ କଉତୁକିଆ ଲାଗୁଥିଲା । ଶିଶୁ କାଠରେ ହାତିଦାନ୍ତର କାମ ହୋଇଥିବା କବାଟ ଆଉ ଡାଇନିଂ ଟେବୁଲ ଦେଖି ସେମାନେ ବିଶ୍ୱାସ କରିପାରୁ ନଥିଲେ ।

ପାଞ୍ଚଭାଇ କିନ୍ତୁ ଗମ୍ଭୀର । ଯେ ଯାହା ବଖରାରେ ନିତ୍ୟକର୍ମ ସାରି ବାହାରିଲେ । ଧର୍ମରାଜଙ୍କ ବରାଦ ଅନୁସାରେ ଭୋଳା ଗରମ ଗରମ ଇଡ଼୍ଲି ଆଣି ଥୋଇଲା । ରୂପାର ଛୁରୀ ଚାମୁଚ, ବିଦେଶୀ ପ୍ଲେଟ, କାଚଗ୍ଲାସ୍ କାଢ଼ି ଥୋଇଲା ।

ଭାଇମାନେ ତଥାପି ଚୁପ୍‌ଚାପ୍ ବସି ଖାଇଲେ । କଥାବାର୍ତ୍ତା କମ୍ । ସମସ୍ତଙ୍କ ଉପରେ ଓହଳି ରହିଥାଏ କିମ୍ଭୂତ ଗୋଟାଏ ଛାଇ ।

''ଆଚ୍ଛା, ଭୋଳା ଆମକୁ ବାବାଙ୍କ ଟ୍ରେଜେରି ଘରକୁ ନେଇଚାଲ ।'' – କହିଲେ ଧର୍ମରାଜ ।

ଅନ୍ୟ ଚାରିଭାଇଙ୍କୁ ଆଖିରେ ଜଣାଇଦେଲେ ତାଙ୍କ ସାଙ୍ଗେ ଯିବାକୁ । ଭୋଳାର ଛାତି କମ୍ପିବାକୁ ଲାଗିଲା । କ'ଣ ଅନର୍ଥ ସେ ଭିତରେ ଚେକାମାରି ଶୋଇରହିଛି, ପେଡ଼ିରେ କଳାନାଗ ପରି କେଜାଣି ! ସେ କେବଳ ଜାଣେ ଯେ, ସେ ବଖରାର ତାଲାରେ ଜଉମୁଦ ପଡ଼ିଛି । ତାକୁ ମାଲିମକଦ୍ଦମାବେଳେ ବି କେହି ଖୋଲି ନାହାନ୍ତି ।

ଗୋଟାଏ ବଡ଼ ବୈଠକ ଘର । ତା'ର ଦକ୍ଷିଣ କାନ୍ଥରେ ଟ୍ରେଜେରି ଘରର କବାଟ । ସେ ବୈଠକ ଘରେ ଗାଲିଚା, ସୋଫା ଝଡ଼ାଝଡ଼ି ହୋଇ ରହିଥାଏ ।

ବୈଠକ ଘରେ ପହଞ୍ଚି ଧର୍ମରାଜ ଭୋଳାକୁ କହିଲେ – ''ତୁମେ ବର୍ତ୍ତମାନ ଯାଅ । ପିଲା ଦି'ଜଣକୁ ବଜାର ଆଡ଼େ ବୁଲେଇ ମନ୍ଦିର ଦର୍ଶନ କରାଇଦେବ ।''

ଭୋଳା ବୁଝିଲା । ସେ ବାହାରି ଆସିଲା ପରେ ବୈଠକ ଘର କବାଟ ଭିତରୁ ବନ୍ଦ ହେଇଗଲା ।

ଧର୍ମରାଜ ସୋଫାରେ ବସି ସମସ୍ତଙ୍କୁ ଚାହିଁ କହିଲେ – ''ଆମେ ବୋଧହୁଏ ଜୀବନର ସବୁଠାରୁ ବଡ଼ ପରୀକ୍ଷା ଦେବାକୁ ଯାଉଛୁ । ଯାହା ଥିବ ତାକୁ ମୁଣ୍ଡପାତି ସ୍ୱୀକାର କରିନେବାକୁ ମୁଁ ସମସ୍ତଙ୍କୁ ପ୍ରସ୍ତାବ ଦେଉଛି । କାରଣ ତାକୁ ବଦଳାଇବା ପାଇଁ, ବୁଝେଇବାପାଇଁ କିମ୍ବା ଆମ ପ୍ରଶ୍ନର ଉତ୍ତର ଦେବାପାଇଁ ବାପା ମା' କେହି ନାହାନ୍ତି । କିନ୍ତୁ ଆମମାନଙ୍କ ଜୀବନର ମୂଳଗ୍ରନ୍ଥି ଆଜି ଫିଟିବାକୁ ଯାଉଛି ।

ସେ ତାଙ୍କ ପଞ୍ଜାବି ପକେଟରୁ ଗୋଟିଏ ପ୍ୟାକେଟ କାଢ଼ିଲେ । ତା' ଭିତରୁ ଜଉମୁଦ ପଡ଼ିଥିବା ଗୋଟିଏ ଛୋଟ ପାର୍ଶଲ । ତାକୁ ଦେଖେଇ ସେ କହିଲେ, ଏଇଟା ଏ ଟ୍ରେଜେରି ଚାବି । ଏଥିରେ ବାବାଙ୍କ ସିଲ୍ ପଡ଼ିଛି । ଲେଖା ହୋଇଛି – ''To be opened on 30 Oct. 1992.''

ସମସ୍ତେ କିଛି ସମୟ ନୀରବ – ସେ ଆଦେଶକୁ ମାନ୍ୟତା ଦେଲାପରି ଜଣାଗଲା । ଏ ଦୁର୍ଲଂଘ୍ୟ ଆଦେଶକୁ ସେମାନେ ଏତେବର୍ଷ ଧରି ପାଳନ କରି ଆସିଥିଲେ ।

ଚାବି ସହିତ ଛୋଟ ଚିଠିଟାଏ ମଧ୍ୟ ଥିଲା । ତା'ର ଅର୍ଥ ଥିଲା – ''ସେଇ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ତୁମେମାନେ କେହି ଏଠାକୁ ଆସିବାର ପ୍ରୟୋଜନ ନାହିଁ ।''

ସେମାନେ ଖୁବ୍ ଅସୁସ୍ଥ ବୋଧ କଲେ ।

ସବା ସାନଭାଇ ପଙ୍ଖାଟାକୁ ଆଉରି ଜୋରରେ ଚଳାଇଦେଲା। ଧର୍ମରାଜ ସମସ୍ତଙ୍କ ଆଗରେ ସେ ଜଉମୁଦ କାଢ଼ି ଚାବିଟିକୁ ବାହାରକଲେ ।

କବାଟ ତାଲା ଉପରୁ ମଧ ଜଉମୁଦ ଭଙ୍ଗାଗଲା । ସେମାନେ ସମସ୍ତେ କିଛି ମାତ୍ରାରେ ଉଦ୍‌ବିଗ୍ନ ଜଣାଯାଉଥିଲେ । କ୍ଲାନ୍ତ ଦେଖାଯାଉଥିଲେ । ଅଜ୍ଞାତ ଆତଙ୍କ ସତେ ବା ତାଙ୍କୁ ଘେରି ରହିଥିଲା ।

ଟ୍ରେଜେରି ଘର ନିଃଶବ୍ଦ ଫିଟିଗଲା ।

ଭିତରେ ତିନିଟା ବଡ଼ ବଡ଼ ଲୁହା ଟ୍ରେଜେରି । ମଝି ଟ୍ରେଜେରିର ହାଣ୍ଡଲରୁ ଓହଳି ରହିଥିଲା ଚାବି ପେନ୍ଥା । ବୋଧହୁଏ ସବୁଯାକ ଟ୍ରେଜେରିର ଚାବି ।

ଧର୍ମରାଜ ସେ ଚାବିଥୋଲା ହାତରେ ଧରି ମଝି ଟ୍ରେଜେରି ଫିଟାଇଲାବେଳେ ତାଙ୍କ ହାତ ଈଷତ୍ କମ୍ପୁଥିଲା । ଟ୍ରେଜେରିର ମଝି ଥାକରେ ଅଳଙ୍କାର ବାକ୍ସ ଭଳି ଛୋଟ ସୁନ୍ଦର ବାକ୍‌ସଟିଏ – ତାରି ଉପରେ ଲଫାପାରେ ଖଣ୍ଡିଏ ଚିଠି । ସେଥିରେ କାହାରି ଠିକଣା ନଥିଲା । କେବଳ ଲେଖାଥିଲା – ଅକ୍ଟୋବର ୩୦, ୧୯୯୨ ।

ସେ ଚିଠିଟି ଧରି ଧର୍ମରାଜ ଟ୍ରେଜେରି ସାମ୍ନାରେ ତଳେ ବସିପଡ଼ିଲେ। ଅନ୍ୟମାନେ ତାଙ୍କ ପାଖେ ବସିଲେ । ଚିଠିଟି ଖୋଲାଗଲା ।

ସବା ଉପରେ ଲେଖାଥିଲା –

''ତୁମେ ପାଞ୍ଚଭାଇ ସମସ୍ତେ ଉପସ୍ଥିତ ଅଛ ତ ? ଆଉ କେହି ନାହାନ୍ତି ତ ?''

ତା ପରେ ଦୌଲତରାମଙ୍କ ହାତଲେଖା ଚିଠି –

''ଧର୍ମରାଜ, ବଳରାଜ, ଧନରାଜ, ନଗରାଜ, ଦେବରାଜ – ତୁମକୁ ଆଉ କେମିତି ସମ୍ବୋଧନ କରିବି ବୁଝିପାରୁନାହିଁ। ତୁମକୁ ଏ ବିଷୟ ନ କହିଲେ ବି ଚଳୁନାହିଁ। ତୁମେ ଏ ଚିଠି ପଢ଼ିଲାପୂର୍ବରୁ ମୁଁ ଚାଲିଯାଇଥିଲେ ଭଲ ହୁଅନ୍ତା। ବଞ୍ଚିଥିଲେ ବି ମୁଁ ଶପଥ କରୁଛି ଅକ୍ଟୋବର ୩୦, ୧୯୯୨ ଦିନ ମୁଁ ଏଠାରେ ନ ଥିବି ।''

ଧର୍ମରାଜ ଚିଠିରୁ ମୁହଁ ଟେକି ଭାଇମାନଙ୍କୁ ଚାହିଁଲେ । ସମସ୍ତଙ୍କ ମୁହଁ ନିଷ୍ପ୍ରଭ ଦେଖାଯାଉଥିଲା । ସେ ପୁଣି ପଢ଼ିଲେ –

''ଆଜି ଅକ୍ଟୋବର ୩୦, ୧୯୯୨, ମୋର ବିବାହର ସୁବର୍ଣ୍ଣ ଜୟନ୍ତୀ । ପଚାଶ ବର୍ଷ ତଳେ ହେମା ଦତ୍ତକୁ କଲିକତାରେ ବିବାହ କରିଥିଲି। ସେତେବେଳେ ମୁଁ ଭାବିଥିଲି ସେ ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ। ଏବେ ବି ମୋର ସେ ଧାରଣା ଅପରିବର୍ତ୍ତିତ ରହିଛି । ମୁଁ ତାକୁ ଅତ୍ୟନ୍ତ ଭଲ ପାଉଥିଲି । ତା ଉପରେ କାହାର ଦୃଷ୍ଟି ପଡ଼ିଗଲେ ମୁଁ ସହି ପାରୁ ନଥିଲି। ସାମାଜିକ ଶିଷ୍ଟାଚାରରେ ସେ କାହାକୁ ଚାହିଁ ସାମାନ୍ୟ ହସିଦେଲେ ମୁଁ ଈର୍ଷାରେ, ସନ୍ଦେହରେ ଜଳି ଉଠୁଥିଲି ।

ଆମେ ସାରା ଭାରତ ବୁଲିଛୁ। ତାକୁ ମୁଁ ଛାଇଭଳି ଜଗିଥାଏ। ମୁହୂର୍ତ୍ତେ ଛାଡ଼ିଯାଏ ନାହିଁ।

କିନ୍ତୁ ମଝିରେ ମୋର ମନେ ହେଉଥିଲା ଯେ, ସେ ମୋତେ ଖାତିର କରୁନଥିଲା । ମୋର ସନ୍ଦେହ ହେଉଥିଲା, କିନ୍ତୁ ବିଶ୍ୱାସ ହେଉନଥିଲା ଯେ, ମୋତେ ଛାଡ଼ି ଆଉ କାହାକୁ ହୁଏତ ଚାହୁଁଥିଲା । ମୁଁ ଦିନେ ସହି ନ ପାରି ତାକୁ ପଚାରିଦେଲି, ସେ ଯେମିତି ଢଙ୍ଗରେ ହସିଲା ମୁଁ ଜାଣିଗଲି ଯେ, ସେ ମୋତେ ଧୋକା ଦେଉଛି ସେଥିପାଇଁ ମୋତେ ତାଚ୍ଛଲ୍ୟ କରୁଛି ।

ତାପରେ ମୋ ଜୀବନର ଚରମ ଦୁର୍ଦ୍ଦଶା ଆରମ୍ଭ ହେଲା । ସେସବୁ ମୁଁ ଲେଖିପାରୁନାହିଁ । ମୁଁ କେବଳ ତାକୁ ପଚାରିଥିଲି – ''ତୁ କେଉଁମାନଙ୍କୁ ଗୋପନ ପ୍ରଣୟ କରିଛୁ ମୁଁ ଜାଣିନାହିଁ । ମୁଁ କିନ୍ତୁ ଦିନେ ନିଶ୍ଚୟ ତୋ ମୁଖା ଖୋଲି ଦେବି । ମୋତେ ଖାଲି ଏତିକି ଦୟାକର, ମୋତେ କହି ଦେ ଏ ପାଞ୍ଚପୁଅ କାହାର ! ସେମାନେ ମୋର ନା ନୁହଁନ୍ତି ।''

ଧର୍ମରାଜ ଚିଠିରୁ ମୁହଁ ଆଡ଼ କରିନେଲେ । ତାଙ୍କ ବୁକୁ ଭିତରୁ ଦୀର୍ଘଶ୍ୱାସ ବାହାରି ଗଲା । ସେ ତଳକୁ ମୁହଁ ପୋତି ସମ୍ଭାଳି ନେଲା ପରେ ପୁଣି ପଢ଼ିଲେ ।

''ଉତ୍ତରରେ ସେ ମୋତେ ତିନିଥର ଛୁରିକାବିଦ୍ଧ କରିଛି, ଯେଉଁ ତିନିଟା ବାକ୍ୟ ସେ ମୋତେ ଦୀର୍ଘ ବ୍ୟବଧାନ ଭିତରେ ଲେଖିଛି, ତାହା ଏଇ ବାକ୍ସରେ ପାଇବ । ଗୋଟିଏ ବାକ୍ୟରେ ମୁଁ ଛଟପଟ ହୋଇଛି ଦେଢ଼ବର୍ଷ । ତା'ପରେ ଦ୍ୱିତୀୟ ଓ ତା'ର ତିନିବର୍ଷ ପରେ ଶେଷ ବାକ୍ୟ, ଧର୍ମରାଜର ବିଭାଘର ପରେ । ସେ ମୋତେ ହତ୍ୟା କରିଗଲା । ମୁଁ ପାଲଟା ତାକୁ ସତତୁ ସତ ହତ୍ୟାକରି ପାରିଥିଲେ ଖୁସି ହୋଇଥାନ୍ତି । କିନ୍ତୁ ସେଥିରେ ବି ସେ ମୋତେ ସୁଯୋଗ ନ ଦେଇ ଠକିଦେଲା ।

ସେ ବିଷ ଖାଇ ରାତିରେ ଶୋଇଯାଇଥିଲା । ମୁଁ କିପରି ପ୍ରତିଶୋଧ ନେଲି କହିବିନାହିଁ । କିନ୍ତୁ ସେ ଭ୍ରଷ୍ଟା ମଲାପରେ ବି ଅପ୍‌ସରା ପରି ସୁନ୍ଦର ଦିଶୁଥିଲା ।

ତୁମମାନଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ । ତଥାପି ତୁମକୁ ମୁଁ ମୋ ଖାନ୍‌ଦାନ୍‌ରୁ ବଞ୍ଚିତ କରୁନାହିଁ । ତୁମେ ତୁମ ମା'ର ଦୋଷ ସ୍ୱୀକାର ନିଜେ ପଢ଼ିନିଅ । ଏକ ଦୁଇ-ତିନି ଲେଖା ହୋଇଥିବା ସେ ଚିଠାଗୁଡ଼ିକ ସେଇ କ୍ରମରେ ପଢ଼ିବ ।

ଇତି,

ହତଭାଗ୍ୟ ଦୌଲତରାମ ।

ତଳକୁ ମୁଣ୍ଡ ପୋତି ପାଞ୍ଚଭାଇ ସ୍ଥାଣୁ ଭଳି ବସି ରହିଲେ ଅନେକବେଳ । ମୁଣ୍ଡ ଉପରେ ବୁଲୁଥିବା ପଙ୍ଖା ଶବ୍ଦ ଛଡ଼ା ଆଉ କିଛି ଶୁଭୁନଥିଲା । ଧର୍ମରାଜଙ୍କ ମୁହଁରୁ ରକ୍ତ ନିଗିଡ଼ି ଯାଉଥି[illegible] । ସେ ଶେତା ପଡ଼ିଯାଇଥିଲେ ।

ଆଉ ଚାରି[illegible] ସେମିତି ତଳକୁ ମୁଣ୍ଡପୋତି ବସିଥାନ୍ତି । କାହାରି ତୁଣ୍ଡରୁ ବଚନ ବାହାରୁ ନ[illegible]ଏ ।

ଶେଷକୁ ବଳରାଜ ହିଁ [illegible] ଦେଲାପରି କହିଲେ – ''ଠିକ୍ ଅଛି । ଯାହା ଶୁଣିବା କଥା ପ୍ରାୟ ଶୁଣି ସାରିଲେ । ଆଉ ଅଳ୍ପ ଶୁଣିଦେଲେ କଥା ସରିଲା । ସମୁଦ୍ରରେ

ପଶିଲାପରେ ଚିଚିଟାକୁ ଭୟ କାହିଁକି ? ବଡ଼ଭାଇ ସେ ପେଡ଼ି ଫିଟେଇ ଚିଠାମାନଙ୍କୁ ପଢ଼ି ଦିଅନ୍ତୁ ।'' ଧର୍ମରାଜ କିଛି ନ କହି ସବା ସାନଭାଇ ଦେବରାଜ ଆଡ଼କୁ ବାକ୍ସଟିକୁ ବଢ଼େଇଦେଲେ ।

ଦେବରାଜ ବାକ୍ସ ଖୋଲିବାମାତ୍ରେ ଏକ ନମ୍ବର ଚିଠାଟି ଉପରେ ରଖାହୋଇଥିଲା । ଛୋଟ ଲଫାପାଟିଏ, ରଙ୍ଗ ଗୋଲାପୀ । କାଗଜ ଦାମୀ ।

ସେ ଲଫାପା ଫିଟାଇ ଚିଠା ବାହାରକଲେ । ଛୋଟ ବାଦାମୀ ରଙ୍ଗର ମୋଟା କାଗଜ । ପ୍ରାୟ ଭିଜିଟିଂ କାର୍ଡ଼ ଭଳି । ସେଥିରେ ଇଂରାଜୀରେ ନାରୀ ହସ୍ତାକ୍ଷରରେ ଲେଖାଥିଲା ।

''One son is not yours''

ଅର୍ଥାତ୍ ପାଞ୍ଚ ପୁଅ ଭିତରୁ ଗୋଟିଏ ପୁଅ ତୁମର ନୁହେଁ । ମାନେ ବାକି ଚାରିପୁଅ ତୁମର ।

ଦେବରାଜ ବାକ୍ୟଟି ପଢ଼ିଦେବାପରେ ଚମକି ପଡ଼ିଲେ । ଏପରି ସ୍ପଷ୍ଟ ଭାବରେ ଜଣେ ମା' କଣ ଏମିତି କହିପାରେ ? କେଉଁ ଜଣକ କଥା ସେ କହିଛି ? କିଏ ସେ ?

କିଏ ସେ ? – କିଏ ସେ ? କିଏ ସେ ?

ଘୁମୁରି ଉଠିଲା ଏ ବିଷାକ୍ତ ପ୍ରଶ୍ନର ଘୂର୍ଣ୍ଣିବାତ୍ୟା ପ୍ରତ୍ୟେକ ମନରେ । ପ୍ରତ୍ୟେକଙ୍କର ଆଶଙ୍କା, କାଳେ ସେ ନିଜେ ସେଇ ହତଭାଗ୍ୟ ନୁହେଁ ତ ! ପୁଣି ବିଜୁଳି ପରି ଆଉ ଚାରିଜଣକ ସମ୍ଭାବନା ମଧ ଖେଳିଯାଉଥାଏ ।

ଶରବିଦ୍ଧ ହେଲାପରି ପାଞ୍ଚଜଣଯାକ ବିବଶ କ୍ଲାନ୍ତ ହୋଇ ବସିରହିଲେ । ଏ ବିକଟ ପ୍ରଶ୍ନର ଉତ୍ତର କିଏ ଦେଇପାରିବ ? ସନ୍ଦେହର ବିଷ ଘାରି ଆସୁଥାଏ; ସମସ୍ତଙ୍କ କପାଳରେ ଝାଳ । କେହି ଯଦି ଆଙ୍ଗୁଠି ଦେଖେଇ ଜଣକୁ ଚିହ୍ନଟ କରି ଦିଅନ୍ତା ସମସ୍ତେ ଆଶ୍ୱସ୍ତ ହୋଇଯାନ୍ତେ । ଚିହ୍ନଟ ହୋଇଥିବା ଭାଇ ମଧ ତା'ର ଅନିବାର୍ଯ୍ୟତାକୁ ମାନି ନିଅନ୍ତା ।

ଏଇ ସନ୍ଦେହର ବିଷ ଦୌଲତରାମଙ୍କୁ ଖାଇଯାଇଥିବ । ସେ ବାରମ୍ବାର ହେମାଦତ୍ତଙ୍କୁ ପଚାରିଥିବେ । ନେହୁରା ହୋଇଥିବେ, ଚିତ୍କାର କରିଥିବେ, ପ୍ରଳାପ କରିଥିବେ । କିନ୍ତୁ ଦୌଲତରାମଙ୍କ ପଞ୍ଜରାରୁ ଏ ବିଷାକ୍ତ ଶରକୁ କାଢ଼ି ନଥିବେ ହେମାଦତ୍ତ । ନାରୀ କ'ଣ ଏତେ ନିଷ୍ଠୁର ହୋଇପାରେ ।

ପାଞ୍ଚଭାଇଙ୍କ ଆଖି ଲୁହରେ ଛଳଛଳ । କ୍ରୋଧରେ ନାକପୁଡ଼ା ଫୁଲି ଯାଇଥାଏ ବଳରାଜଙ୍କର । ଆଖିରୁ ନିଆଁଝୁଲ ଆଉ ବାମ୍ଫ ବାହାରୁଥାଏ ସତେବା ।

ଧନରାଜ ଦାନ୍ତ କଡ଼ମଡ଼ କରି ଭୂମି ଉପରେ ବିଧା ମାରିବାର ସମସ୍ତେ ଶୁଣିଲେ ।

ଧର୍ମରାଜ ସବୁ ନିଆଁକୁ ଛଡରରେ ଧରିନେଇ କହିଲେ – ''ଆର ଚିଠା ପଢ଼, ଦେବରାଜ ।''

ଦୁଇ ନମ୍ବର ଲଫାପାକୁ ରାଗରେ ଉଠାଇ ସେ ଚିରିଦେଲେ । ଚିଠା ଗୋଟାଏ କୁଣରୁ ଚିରିଗଲା । କିନ୍ତୁ ସେଥିରେ ଲେଖାଥିବା ଇସ୍ପାତର ଖଣ୍ଡା ପରି ବାକ୍ୟ ! ସେ ନିଜେ ନ ପଢ଼ି ନଗରାଜକୁ ବଢ଼େଇଦେଲେ ।

''One son is yours''

କେବଳ ଗୋଟିଏ ପୁଅ ତୁମର ।

ଗର୍ଜି ଉଠିଲେ ପାଞ୍ଚ ଭାଇ । ବଳରାଜ ନିଜ ମୁଣ୍ଡବାଳ ମୁଠା ମୁଠା କରି ଟାଣି କ୍ରୋଧରେ ଥରିବାକୁ ଲାଗିଲେ ।

ଦେବରାଜ ଦୁଇ ହାତରେ ମୁହଁ ଘୋଡ଼େଇନେଲେ ।

ଏଠି ବି ସେଇ ଅସମାହିତ ତୀବ୍ର ବାଣ । କିଏ ସେ ଜଣକ ? ତାକୁ ଚିହ୍ନଟ କଲେ ହୁଏ ତ ଆଉ ସବୁ ସେ 'ଜାରଜ'ଟାକୁ ହତ୍ୟା କରି ପକେଇବେ ।

କିନ୍ତୁ ଦୁର୍ଭାଗ୍ୟ ପକ୍ଷରେ ବହୁମତ ତାଙ୍କୁ ବିଚିତ୍ର ଢଙ୍ଗରେ ଅଶ୍ୱସ୍ତ କଲା । ଥାଉ କିଏ ଜଣେ ଯଦି ସଚ୍ଚା ଅଛି ଆମ ଭିତରେ । ତା' ସାଙ୍ଗରେ ଆମର କ'ଣ ଅଛି ? ଆମେ ତ ଚାରିଜଣ ବେକରେ ଜୋତାମାଳ ପକେଇ ଠିଆହୋଇଛୁ !

ଅପମାନ ସତେବା ବିସ୍ତୃତ ହୋଇଗଲା । ତା ତୀକ୍ଷଣଧାର ଦନ୍ତୁରା ହୋଇଗଲା । ପାହାର ପଡ଼ି ସ୍ତବ୍ଧ କରିଦେଲା । କିନ୍ତୁ ଘା' କାଟିଲାନାହିଁ କି ରକ୍ତ ଝରିଲା ନାହିଁ ।

ଏଥର ସମସ୍ତେ ଅଳ୍ପ ସମୟ ପରେ ଶାନ୍ତ ହୋଇଗଲେ । ସାମାନ୍ୟ ଉପରକୁ ଆଖିଟେକି ଚାହିଁଲେ । ଧନରାଜ ବୋଧେ ଛାତକୁ ଚାହିଁ ରହିଲେ ଉଦାସ ଭଙ୍ଗୀରେ । ସମସ୍ତେ ସତେବା ଅଭିଯୁକ୍ତ ଆସାମୀ ।

ସେମାନେ କିନ୍ତୁ ପରସ୍ପରକୁ ଚାହିଁପାରୁ ନ ଥିଲେ ପ୍ରତ୍ୟେକର ଶଙ୍କା ହେଉଥିଲା କାଳେ ସେ ଆରଜଣକ ସେଇ ସଚ୍ଚା ପୁଅ ହୋଇଥାଇ ପାରେ ।

ଧର୍ମରାଜ ମଝିରୁ ବାକ୍ସଟିକୁ ନିଜ ଆଡ଼କୁ ଟାଣିନେଲେ । ଚୁପ୍‌ଚାପ୍ ତିନି ନମ୍ବର ଚିଠାଟିକୁ ଉଠାଇନେଇ ଖୋଲିଲେ । ଲେଖାଟିକୁ ଦେଖି ତାଙ୍କ କପାଳରୁ କୁଞ୍ଚ ଲିଭିଗଲା । ସାମାନ୍ୟ ରେଖାଏ ଉଦାସ ହସ ଦିଶି ନ ଦିଶିଲା ପରି ଲିଭିଗଲା । ସେ ସ୍ପଷ୍ଟ ସ୍ୱରରେ ପଢ଼ିଲେ ।

''No son is yours''

ପାଞ୍ଚ ପୁଅ ଭିତରୁ କୌଣସିଟି ତୁମର ନୁହେଁ !

ବଜ୍ରପାତ ହୋଇଗଲା । ଦୁଇଫାଳ ହୋଇଗଲା ପୃଥ୍ୱୀ । କେହି ଆଉ ବର୍ତିଲେ ନାହିଁ । ସମସ୍ତଙ୍କୁ ରାହୁ ଗ୍ରାସ କରିଗଲା । ସୂର୍ଯ୍ୟ, ଚନ୍ଦ୍ର, ତାରା ଓଗେର ଓଗେର ସାଙ୍ଗରେ ସାରା ଆକାଶକୁ ଗ୍ରାସିଗଲା ।

ଏ ବାକ୍ୟର ଅଗ୍ନିରେ ଦରପୋଡ଼ା ଦୌଲତରାମଙ୍କ ପିତୃତ୍ୱ ହୁତ୍‌ହୁତ୍ ହୋଇ ଜଳିଯାଇଥିବ । ପାଉଁଶ ଗଦାରୁ ନିଆଁ ବି ଲିଭିଯାଇଥିବ । ନିଷ୍କୃତି ପାଇଥିବେ ସେ ଅନନ୍ତ ଯାତନାରୁ । ହେମା ଦତ୍ତଙ୍କର ଏ ଚୂଡ଼ାନ୍ତ ଆଘାତ ପାଇଁ ଦୌଲତ ରାମ ତାଙ୍କ ପାଖରେ କୃତଜ୍ଞ ହୋଇଥିବେ । ଛଟପଟ ହେଉଥିବା ପ୍ରାଣୀଟିକୁ ମାରିଦେବା ପରମ ସମ୍ବେଦନା ଓ କରୁଣାର ନିର୍ଦ୍ଦଶନ ନୁହେଁ କି ?

ସେମିତି ପାଞ୍ଚଭାଇ ହଠାତ୍ ତାଙ୍କ ମା'ଙ୍କ ପାଖରେ କୃତଜ୍ଞ ବୋଧକଲେ । ସେମାନଙ୍କର ସମସ୍ତଙ୍କର ଗୋଟିଏ ସଂଜ୍ଞା ସ୍ଥିର ହୋଇଗଲା । ତାଙ୍କୁ ସୋରା ସୋରା ଚିରି ପକାଉଥିବା ସଂଶୟ, ସନ୍ଦେହ ଦୂର ହୋଇଗଲା ।

ଯା ପରେ ଏମାନଙ୍କ ପରି ଦୌଲତରାମ ମଧ୍ୟ ଦୀର୍ଘଶ୍ୱାସ ପକେଇ ଆଶ୍ୱସ୍ତବୋଧ କରିଥିବେ । ସେ ଧୂଳିସାତ୍ ହେବା ପରେ ଆଉ କିଛି ହେବାର ଅବକାଶ ରହି ନଥିବ ।

ଧର୍ମରାଜ ଗାଲିଚା ଉପରେ ଚିତ୍‌ମାତ୍ ଗଡ଼ିପଡ଼ିଲେ । ଉପରକୁ ନିଷ୍ପଲକ ଚାହିଁ ପଡ଼ିରହିଲେ ।

ବଳରାଜ ଉଠି ପଛରେ ହାତଛନ୍ଦି ଏ ପାଖ ସେପାଖ ଚାଲିଲେ ।

ଧନରାଜ ତଳକୁ ମୁହଁ କରି କହିଲେ – "ଉଠ ଏଥର ଯିବା ।"

କେହି କିନ୍ତୁ କିଛି ଉତ୍ତର ଦେଲେନାହିଁ । କୌଣସି ପ୍ରତିକ୍ରିୟା ପ୍ରକାଶ କଲେନାହିଁ ।

ହଠାତ୍ ଦେବରାଜ ତୀବ୍ର ଉତ୍କଣ୍ଠାରେ କହିବାର ଶୁଣାଗଲା – "ଏ କ'ଣ ?

ସମସ୍ତେ ଚମକି ପଡ଼ିଲେ । ପୁଣି ଠୁଳ ହୋଇଗଲେ । ଦେବରାଜ ବାକ୍ସ ତଳୁ ଗୋଟିଏ ପଟା କାଢ଼ି ହାତରେ ଧରିଥାନ୍ତି । ସେଇଟା ଗୋଟାଏ ଚୋରା ଖୋପ । ତାରି ଭିତରେ ଆଉ ଖଣ୍ଡେ କାଗଜ ଦିଶୁଥିଲା ।

ତାକୁ ଚଟ୍‌କିନା ସେ କାଢ଼ି ଆଣିଲେ ।

ଚିଠିଟି ହେମା ଦତ୍ତଙ୍କ ଲେଖା ।

ଧର୍ମରାଜ କହିଲେ – "ପଢ଼ ।"

"ଚିଠିଟି କିଏ ପଢ଼ିବ କିଏ ନ ପଢ଼ିବ ମୁଁ ଜାଣେ ନାହିଁ । ଏ ଚୋରା ଖୋପରେ ଯଦି ଏହା ରହିଯିବ, ତା'ହେଲେ ଚିରକାଳ ରହିଯିବ । ମୋର ସେଥିରେ ବି ଅବଶୋଷ ନାହିଁ । ଯଦି କିଏ ଏହା ପଢ଼େ ସେତେବେଳେ ମୁଁ ନଥିବି । ତଥାପି ପରିଶେଷରେ କିଏ ଜଣେ ଏହାକୁ ପଢ଼ିଦେବାକୁ ହୁଏ ତ ମୋର ଆତ୍ମାପୁରୁଷ ଚାହେଁ ।

ଦୌଲତରାମ ଖୁବ୍ ଚତୁର । ସେ ଏହି ଚିଠି ହୁଏ ତ ପାଇଯିବ । ସେ ଯାକୁ ପଢ଼ିଲାପରେ କେମିତି ତା'ର କେଶ ଉପାଡ଼ିବ ମୁଁ ଦେଖିଥିଲେ ଖୁସି ହୋଇଥାନ୍ତି । ସେ ମୋର ଶେଯ ପଟା ଲୁଗା ଚାଦର ବୋଧେ ବିଦାରି ପକାଇବ । ପିଲାଙ୍କ ପରି ହୁଏ ତ କାନ୍ଦିବ । କିନ୍ତୁ ମୁଁ ସେ ଦୃଶ୍ୟ ଦେଖିବାକୁ ନ ଥିବି ।

ହୋଇପାରେ ସେ ଏଇ ଚିଠିର ଟେର୍ ପାଇବ ନାହିଁ। ମୁଁ ଯେଉଁ ଉତ୍ତରମାନ ଦେଇ ତାକୁ ତିଳ ତିଳ କରି ହତ୍ୟା କରିଛି, ସେଥିପାଇଁ ସେ ମୋତେ କଦାପି କ୍ଷମା କରିବନାହିଁ। ମୁଁ ବି ତାକୁ ଏ ପର୍ଯ୍ୟନ୍ତ କ୍ଷମା କରିପାରିନାହିଁ। ମୋର ମୃତ୍ୟୁ ପରେ ସେ ହୁଏ ତ ମୋତେ ବିଦାରି ପକେଇବ। ଜାନୁୟାର୍ କାହାଁକା ! ଏମିତି କ'ଣ କିଏ କାହାକୁ ଭଲ ପାଏ ? – ଏତେ ଉତ୍କଟ ଭାବରେ ଏମିତି ଅନ୍ଧ, ପ୍ରମତ୍ତ ଭାବରେ ? – ଏମିତି ଜନ୍ତୁ ଭଳି ? କାମୁଡ଼ି ଖାଇଯିବାଭଳି, ଅତ୍ୟାଚାର କରେ, ଅଧିକାର କରେ ?

ସେ ମୋତେ ସର୍ବଶ୍ରେଷ୍ଠ ସୁନ୍ଦରୀ ବୋଲି କହେ। ମୁଁ ବି ଜାଣେ ମୁଁ ସୁନ୍ଦରୀ। କିନ୍ତୁ ସୁନ୍ଦରୀ ହେଲି ବୋଲି ମୁଁ ତ ବାରନାରୀ ନୁହେଁ। ସେ ଚିରକାଳ ମୋ ଚରିତ୍ରରେ ସନ୍ଦେହ ଆରୋପ କରିଛି। ମୁଁ ପ୍ରଥମେ ପ୍ରଥମେ ସେଇଟା ଈର୍ଷାଳୁ ଦୃଷ୍ଟି ପଡ଼ିବା ସ୍ୱାଭାବିକ। ଦୌଲତରାମ ଭାବେ ଯେ, ମୁଁ ସେମାନଙ୍କୁ ହୁଏତ ଆଖିଠାରି ଦେଉଛି, ଚାହିଁ ହସୁଛି। ମୁଁ ତା ଭୟରେ ସାମାଜିକ ଶିଷ୍ଟାଚାର ଭୁଲିଗଲି। ପ୍ରାୟ ଆଉ ପଦାକୁ ବାହାରି ନାହିଁ। ସେ ମୋତେ ଘରେ ରଖି ଜନ୍ତୁ ଭଳି ଭୋଗିବାକୁ ଚାହିଁଲା। ସେ ସମୟରେ ମୋ ଚିରକାଳ ଗର୍ଭାବସ୍ଥା। – ଓଃ ସହିବାର ସୀମା ତ ପୁଣି ଅଛି ! ଘରକୁ ଯେ କେହି ଆସିଗଲା, ସେ ତା ସହିତ ମୋର ସମ୍ପର୍କ ଯୋଡ଼ି ସନ୍ଦେହ କରି ବସିଲା। ଏପରି କି ବାହାରକୁ ଯିବାର ବାହାନା କରି ସେ ମୋ ଉପରେ ଲୁଚି ଲୁଚି ଗୋଇନ୍ଦାଗିରି କଲା।

ଦିନେ ସେ ନ ଥିବାବେଳେ ଭାଇ ଆସି ପହଞ୍ଚିଥାନ୍ତି। ଆମେ ବାଲକୋନିରେ ବସି ଚା' ଖାଉଡୁ। ସେ ଗାଡ଼ିରୁ ଓହ୍ଲେଇ ଦୁମ୍‌ଦୁମ୍ ପଶିଆସିଲା। ଆମ ଆଗରେ ଠିଆହୋଇ ସେ ଯେଉଁ ଢଙ୍ଗରେ ପଚାରିଲା – "କ'ଣ ଚାଲିଛି ?" ମୁଁ ଲଜ୍ଜା ଅପମାନରେ ସଢ଼ିଗଲି।

ଭାଇ ଚା' କପ୍ ହାତରେ ଧରି ଠିଆହେଲେ। "ଆରେ ଦୌଲତ୍ ଭାଇ ! ହେମା, ଦୌଲତଙ୍କ ପାଇଁ ଚା' ଆଣ !"

"ନା ଚା' ଫା' ବାହାନାର ପ୍ରୟୋଜନ ନାହିଁ। ମୁଁ ସବୁ ବୁଝିପାରୁଛି !"

କ'ଣ କହିବାକୁ ଚାହୁଁଥିଲା ସେ ଜାନୁଆରଟା।

ସେଇଦିନ ଭାଇ ଚାଲିଗଲେ। ସେଇଦିନ ମୁଁ ତା ସହିତ ସମ୍ପର୍କ ଛିନ୍ନକଲି।

ତା'ପରେ ମୋ ସହିତ କଳି ତକରାଳ ଅତ୍ୟାଚାର, ଧର୍ଷଣ ଅନବରତ ଲାଗି ରହିଥାଏ। ମୁଁ କଲିକତା ପଳେଇଲି। ସେଇଠି ଯାହାହେଲା ସେଥିପାଇଁ ମୁଁ ସାତଜନ୍ମଯାଏ ତାକୁ କ୍ଷମା ଦେଇ ପାରିବି ନାହିଁ।

ମୁଁ ଦୁଃଖରେ ଭାଙ୍ଗିପଡ଼ିଥାଏ। ପିଲାମାନେ ମୋ'ଠୁ ଦୂରରେ। ଆଉ ଏଇଟା ଦିନକୁଦିନ ମୋ ଜୀବନ ଦୁର୍ବହ କରୁଥାଏ। ମୁଁ ଅସୁସ୍ଥ ଥାଏ। ଖଟରେ ପଡ଼ିଥାଏ। ବାବା ଆସି ମୋ ତକିଆ ପାଖରେ ବସିଲେ। ମୁଁ ତାଙ୍କ କୋଳରେ ମୁଣ୍ଡ ରଖିଥାଏ। ସେ ମୋ ମୁଣ୍ଡରେ ହାତ ବୁଲାଇ ମୋତେ ସାନ୍ତ୍ୱନା ଦେଉଥାନ୍ତି।

ସେ କେତେବେଳେ କଲିକତା ଆସି ସିଧା ମୋ ଶୋଇବା ଘରେ ଯାଇ ଠିଆହୋଇଗଲା । ମୋତେ ଆଉ ବାବାଙ୍କୁ କଟମଟ ଚାହିଁଲା ।

ବାବା ଆସ୍ତେ ଉଠି ଚାଲିଗଲେ । ତା' ପରେ ମୋ ଖଟ ପାଖୁ ଆସି ଯାହା କହିଲା, ମୁଁ ତାହା ଶୁଣି ସେଇଠି ମରିଯିବା ଉଚିତ୍ ଥିଲା । ମୁଁ ତା ତଣ୍ଟିଚିପି ତାକୁ ହତ୍ୟା କରିବା ଉଚିତ୍ ଥିଲା । ସେଇଟା ପଶୁ ସ୍ତରକୁ ଓହ୍ଲେଇ ସାରିଥିଲା ।

ମୁଁ ଆଉ ସହିପାରିଲି ନାହିଁ । ତାକୁ ରାମ୍ପି ପକେଇଲି, ତାକୁ ବିଧାଗୋଇଠା ମାରିଲି ମନଇଚ୍ଛା – ସେ ମୋତେ ଲଙ୍ଗଳା କରି ପକାଇଲା । ଜାନୁଆର୍ କାହାଁକା ! ବହୁ କଷ୍ଟରେ ମୁଁ ଏଠିକି ଆସିବାକୁ ରାଜିହେଲି । ଖୋଲାଖୋଲି ବିଦ୍ରୋହ କଲି । ପିଲାଙ୍କ ପାଖକୁ ଯିବାକୁ ସାହସ କଲିନାହିଁ, କାଳେ ଏ କ'ଣ ବୋଇଲେ କ'ଣ ଭାବିବ । ...କାରଣ ସେ ସେତେବେଳ୍କୁ ପାଗଳ ଭଳି ଆଚରଣ କରୁଥାଏ ।

ଦିନେ ଭୋଳା ମୋତେ କ'ଣ ଖାଇବାକୁ ଦେଇ ବାହାରି ଯାଉଥାଏ । ସେ ସେମିତି କୋଉଠି ଲୁଚିଥିଲା, ଆସି ପୁଣି ସେମିତି ଅସହ୍ୟ ଅଭଦ୍ର କଥା ଗୁଡ଼ାକ କହିଲା । ମୋର ସେଇଦିନ ତା'ପ୍ରତି ଘୋର ଚୂଡ଼ାନ୍ତ ଘୃଣା ଜାତ ହେଲା । ମୁଁ ସେଇଦିନ ସ୍ଥିରକଲି ପ୍ରତିଶୋଧ ନେବି ।

ତା'ର ଅପମାନଜନକ ପ୍ରଶ୍ନ ପାଇଁ ପ୍ରଥମ ଚିଠାରେ ଉତ୍ତର ଦେଇଥିଲି । ସେ କେବେ ଆଶାକରି ନଥିଲା ଯେ ତା'ର ସନ୍ଦେହ ଏପରି ଭୟଙ୍କର ସତ ହୋଇପାରେ । ସେ ତେଣିକି ସଢ଼ିବା ଆରମ୍ଭ କଲା । ମୁଁ ଅଲଗା ରହିପାରିଲି, ଇଚ୍ଛା ଅନୁସାରେ ବୁଲିଯାଇ ପାରିଲି । ସେ ଆଉ ବାଧା ଦେଲାନାହିଁ । କେବଳ ଅନୁନୟ କଲା, ଜାଣିବାକୁ କେଉଁ ପୁଅଟି ତା'ର ନୁହେଁ । ଜାଣିଥିଲେ ହୁଏତ ସେ ସେଇ ଅନୁସାରେ ଉଇଲ ପତ୍ର ଲେଖିଥାନ୍ତା । ମୁଁ ତାକୁ କୌଣସି ଉତ୍ତର ଦେଲିନାହିଁ । ତା' ପ୍ରତି ମୋର ତିଳେମାତ୍ର ଦୟା ନଥିଲା । ପ୍ରାୟ ଦେଢ଼ବର୍ଷ ପରେ ସେ ଖାଇବାପାଇଁ ଆୟୋଜନ କଲା । ମୋତେ ଡାକିଥିଲା, ସେଇଠି ସେ ପୁଅଟାର ନାଁ କହିବାକୁ । ମୁଁ ଖାଇବାକୁ ତ ଗଲିନାହିଁ, ଦ୍ୱିତୀୟ ଚିଠା ପହଞ୍ଚାଇଦେଲି । ସେ ପାଗଳ ପରି ଛେଚି କଚାଡ଼ି ହେଲା । ପଳାଇଲା କାହିଁ କୁଆଡ଼େ ତିନିମାସ । ସେଇଠୁ ଆସି ଆଉ କଥା ହେଲାନାହିଁ ।

ସେ ନିଶା ଖାଉଥିଲା ପ୍ରଚୁର । ପ୍ରେତ ପରି ଦିଶୁଥିଲା । ନହେଲେ ତା' ଭଳି ଚେହେରା ମୁଁ କୋଉଠି ଦେଖିବି ବୋଲି ମୋର ମନେହୁଏ ନାହିଁ । ତଥାପି ମୁଁ ତାକୁ କ୍ଷମା ଦେଇପାରିଲି ନାହିଁ ।

ଯା ଭିତରେ ଧର୍ମରାଜର ବିଭାଘର ହେଲା । ମୁଁ ତାକୁ ଦଣ୍ଡ ଦେବାକୁ ଯାଇ ନିଜେ ଅକଥନୀୟ କଷ୍ଟ ଭୋଗୁଥିଲି । ମୁଁ ମୋ ନିଜ ପିଲାଙ୍କ ମୁହଁକୁ ଚାହିଁପାରୁ ନଥିଲି । ବିଭାଘରୁ ସେ ଚାଲିଆସିଲା ପରେ ମୁଁ ନିଷ୍ପତ୍ତି ନେଇଗଲି ଯେ, ମୋ ପିଲାଙ୍କୁ ଏ

ନିଆଁ ଧାସରୁ ବଞ୍ଚେଇ ରଖିବି । ସେମାନେ ଦୂରରେ ଅଛନ୍ତି । ସେମିତି ଦୂରରେ ରହନ୍ତୁ । ମୁଁ ସେମାନଙ୍କଠାରୁ ଏକ ପ୍ରକାର ବିଦାୟ ମାଗି ଚାଲିଆସିଲି ।

ତା' ଉପରେ ମୋର ଶେଷ ଆଘାତ ମୁଁ ସେ ତିନି ନମ୍ବର ଚିଠାରେ ଲେଖି ମୋ ପାଖରେ ରଖିଛି ।

ଏଇଲାଗ ରାତି ବୋଧେ ଗୋଟାଏ । ମୋର ଅଳଙ୍କାର ବାକ୍ସ ଖାଲିକରି ତା ତଳେ ଏ ଚିଠିଟାକୁ ଲୁଚାଇ ରଖିଦେବି, ସେଇ ବାକ୍ସରେ ହିଁ ତିନି ନମ୍ବର ଚିଠା ଥୋଇ ମୁଁ ବିଦାୟ ନେବି । ନିଦ ଔଷଧର ବୋତଲ ଖାଲିକରି ଶୋଇଯିବି ।

ତେବେ ଶେଷ ସ୍ୱୀକାରୋକ୍ତି ଏଇଠି ଲେଖିଦିଏ । ମୁଁ ଈଶ୍ୱରଙ୍କୁ ସାକ୍ଷୀ ରଖି କହୁଛି ଯେ, ମୁଁ ଦୌଲତରାମ ସିବା ଅନ୍ୟ କୌଣସି ପୁରୁଷକୁ ମୋତେ ସ୍ପର୍ଶ କରିବାକୁ ଦେଇନାହିଁ । ପାଞ୍ଚଟିଯାକ ପୁଅ ତା'ର । ହେ ଭଗବାନ, ସେମାନଙ୍କୁ ସୁଖରେ ରଖ ! ମୁଁ ଜୀବନସାରା ଯେଉଁ ନିଆଁରେ ଜଳିଛି, ତା'ର ଧାସ ତାଙ୍କୁ ନଲାଗୁ । – ଦୌଲତରାମ କେମିତି ବଞ୍ଚିବ କି ମରିବ ସେଥିରେ ମୋର କିଛି ଯାଏଆସେ ନାହିଁ । କିନ୍ତୁ ସେ ବିଚରା କି ଦୁଃଖ ନ ଭୋଗିବ ! ଓଃ –

॥ ଇତି ॥

ହେମା ଦତ୍ତ

ପାଞ୍ଚଭାଇ ସ୍ତବ୍ଧ । ତାଙ୍କ ଆଖି ଆଗରେ ଜଉଘର ହୁତ୍‌ହୁତ୍ ହୋଇ ଜଳିଯାଉଛି । ସେମାନେ ବି ସେଇଠି ଜଳିଯାଇଥାନ୍ତେ । କିଏ ତାଙ୍କୁ ମାଟିତଳ ସୁଡ଼ଙ୍ଗରେ ପାରିକରି ନେଇ ଆସିଲା ନଈକୂଳ କାକର ପବନକୁ ?

□□□

# ଲୁଚକାଳି – ଏକ ପିଲାଖେଳ

ସେଦିନ ଅଚାନକ ମୋତେ ମୋର ବାଲ୍ୟକାଳହିଁ ଆବୋରି ରହିଥିଲା ଚତୁର୍ଦ୍ଦିଗରୁ । ପଚାଶ ବର୍ଷ ତଳର ପୃଥିବୀ ଆକାଶ, ପବନ ଓ ପଦ୍ମପୋଖରୀ ମୋତେ ଶୋଷି ନେଲେ ତାଙ୍କ ଗର୍ଭକୁ ।

ସହସା ଜୀବନର ଶ୍ୱାସପତନ ସରଳ, ସହଜ, ଗ୍ରନ୍ଥିବିହୀନ ହୋଇଗଲା । ପରିଚିତ ମୁହଁମାନଙ୍କର ଆପଣାପଣର ହସ ଚହଟିଗଲା ।

ମୁଁ ଚାହିଁଥିଲି କି ଆଖି ବୁଜି ଦେଖୁଥିଲି ମନେନାହିଁ । କିନ୍ତୁ ଆଉ ଗୋଟାଏ ପୃଥିବୀକୁ ପହଁରି ଯାଇଥିଲି କିଛି ସମୟପାଇଁ । ସେଇଠି ଖୁବ୍ ଉଞ୍ଚ ଉଞ୍ଚ ଦେଖାଯାଉଥିଲେ ମଣିଷମାନେ । ମେଘ ଉହାଡ଼ରେ ଦଉଡୁଥିବା ଜହ୍ନ ଥୋପି ପଡୁଥିଲା ଛାତରେ ମାଡ଼ିଥିବା କାକୁଡ଼ି ଫୁଲ ଉପରକୁ ।

ଭାରି ନିବିଡ଼ ସାନ୍ଦ୍ର ନିଷ୍କପଟ ପୃଥିବୀ । ଧୂଳିରେ ପାଣି ପଡ଼ିଲେ ବାସୁଥିଲା ମା' ପରି । ତା' ଉପରେ ଲୋଟିପଡ଼ିଲେ ଲାଗୁଥିଲା ଉଷୁମ କୋଡ଼ପରି । କୌଣସି ପକ୍ଷୀର ନାଁ ନଥିଲା ସନ୍ଧ୍ୟାର କାକଳି ଭିତରେ । କୌଣସି ଫୁଲର ନାଁ ନଥିଲା ସକାଳର ମହକ ଭିତରେ ।

ମେଣ୍ଢାଛୁଆ କାନ ପରି କଅଁଳ ନରମ ପଳାଶପତ୍ର । ଗାଲରେ ବାଜିଲେ ଦେହସାରା ରୁମ ଟାଙ୍କୁରି ଉଠୁଥିଲା । ସଜ ଗୋଲାପର ବାସ୍ନାରେ ବିଭୋର ହୋଇ ତାକୁ ଦାନ୍ତେଇବାକୁ ମନ ଡାକୁଥିଲା । ଝରଣାର ଝିଲିମିଲି ପାଣି ଭିତରେ ଝିଲିମିଲି ମାଛ । ପାଣିରେ ଟିପ ବାଜିଗଲେ ଉଭାନ୍ ।

ରଙ୍ଗା କଙ୍କିର ଲମ୍ବା ଲାଙ୍ଗୁଡ଼କୁ ଟିପରେ ଧରିବାପାଇଁ ଅରମା ଅସନା ଖାଲଢିପ ଚାକୁଣ୍ଡାବଣ ପାରି ହେଉଥିଲା ଛୋଟ ଛୋଟ ଦୁଇଟି ଖାଲିପାଦ, କଅଁଳ ପାପୁଲିର ସରୁ ସରୁ ଆଙ୍ଗୁଠି, ଝାଳ ସରସର ପିଠି, ବେକ, ବୁକୁ ଆଉ ତରା ପରି ଦାଉଦାଉ ହଳେ ଆଖି । ମୁଁ ଆଖି ମଟମଟ କରି ଅନାଇଦେଲି । ସାବୁନ୍ ଫେଣର ବିରାଟ ଝଲମଲ ଫୋଟକା ଚଟ୍‌କିନା ଲିଭିଗଲା । ମୁହଁରେ, ବୁକୁରେ ବୁଣି ହୋଇଗଲା କେତୋଟି ସିକର ବିନ୍ଦୁ ।

ମୁଁ ପୁଣି ମୋର ଏଇ ଅପ୍ରିୟ ପୃଥିବୀକୁ ଫେରି ଆସିଲି । ଆଖି ବୁଜିଲେ ବି ଏହାର ଅନାତ୍ମୀୟ ଦିଗ୍‌ବଳୟ ମୋତେ ଘେରି ରହିଲା । ଉଭେଇ ଯାଇଥିଲା ସ୍ୱପ୍ନକାଳ । ଅନ୍ତର୍ହିତ ହୋଇ ସାରିଥିଲା ଅପୋଗଣ୍ଡ ପୃଥିବୀ ।

ମୁଁ ଏଇଠି ମୋ ଚାରିଆଡ଼େ ଏକ ଅଦୃଶ୍ୟ ବାଡ଼ ପଡ଼ିଥିବାର ଅନୁଭବ କରେ । ହାତ ବଢ଼େଇ କାହାକୁ ଛୁଇଁପାରେ ନାହିଁ, କେହି ବି ମୋତେ ଛୁଇଁ ପାରନ୍ତି ନାହିଁ ।

ମୁଁ ଜନଗହଳି ଭିତରେ ନିତାନ୍ତ ଏକୁଟିଆ ରହିଥାଏ । ଏଇଠି ନିଜ ନିଜ ସ୍ୱପ୍ନରେ ନିମଗ୍ନ ଗୁଡ଼ିଏ ରେଳଯାତ୍ରୀ ଦୈବାତ୍ ଗୋଟିଏ ଡବାରେ ଏକାଠି ବସିଯାଇଛନ୍ତି । ପଇ ସାଙ୍ଗରେ ଚକର ମାଡ଼ ହେଲାବେଳେ ଏକାଠି ସ୍ପନ୍ଦିତ ହେଉଛନ୍ତି । କିନ୍ତୁ ଯେଝା ରାଜ୍ୟ ତା'ର; ଯେଝା ଦୁଃଖ ତା'ର ।

ସେମିତି ମୋ ଦ୍ୱିତୀୟପକ୍ଷ ସ୍ତ୍ରୀ ଓ ତା'ର ପିଲାମାନେ, ମୋ ପ୍ରଥମ ସ୍ତ୍ରୀର ପୁଅ, ଝିଅ, ମୋ କକେଇ ଦଦେଇ ପୁଅ, ଭାଇମାନେ । ତାଙ୍କଠୁ ତ ଆଉ ଆପଣାର ବୋଲି ମୋର କେହି ନାହିଁ । ଅଥଚ...

ମୁଁ ମନକୁ ମନ ବୁଝାଏ । ସେମାନଙ୍କ ମନ ନେଲାଭଳି କଥା କହେ, ଅଭିନୟ କରେ । ସେମାନେ ବି ଅଭିନୟ କରନ୍ତି । ମଞ୍ଚ ଉପରୁ ଓହ୍ଲେଇଗଲେ ଆମେ କାଚ ଆଖିରେ ଚାହିଁରହୁ ଅଚିହ୍ନା ଭଳି ପରସ୍ପରକୁ ।

ଜରାୟୁରୁ ଜରା ଯାଏଁ ଯେଉଁ ଉଷୁମ ଟିକକ ପ୍ରାଣକୁ ବେଢ଼ି ରହେ ବୋଲି ବଞ୍ଚିହୁଏ, ସେଇଟା ଆସ୍ତେ କାକର ପଡ଼ିଯାଏ । ଶୀତ ମାଡ଼ିଆସେ ଚତୁର୍ଦ୍ଦିଗରୁ ।

ସେଦିନ ବାହାର ବଖରାରୁ ହାସ୍ୟରୋଳ ଶୁଭୁଥିଲା । ମୁଁ ପହଞ୍ଚିବାମାତ୍ରେ ଥମିଗଲା । ସେଇଠୁ ଜଣଜଣ ହୋଇ ସେମାନେ ଉଠି ଚାଲିଗଲେ । ନ ଯିବେ କେମିତି ? ମୋ ପ୍ରତି ଯେ ସେମାନଙ୍କର ଅଗାଧ ଭକ୍ତି ଆଉ ସମ୍ମାନ !

ମୁଁ ଓହ୍ଲେଇଗଲି ରାସ୍ତା ଉପରକୁ । ଭାବିଥିଲି ବାଲ୍ୟକାଳ ହିଁ ମୋ ସାଙ୍ଗରେ ଓହ୍ଲେଇଯିବ । ଆମେ ହାତ ଧରାଧରି ହୋଇ କିଛିବାଟ ଚାଲିବୁ । କିନ୍ତୁ ତା' ନ ହୋଇ ମୋ ସାଙ୍ଗରେ ଓହ୍ଲେଇଗଲା ଏକ ଦୀର୍ଘଶ୍ୱାସ ।

''ଠିକ୍ ହେ, କୋଇ ବାତ୍ ନହିଁ ।'' – ମୁଁ ଦଶ-କୋଡ଼ିଏ ପାହୁଣ୍ଡ ବେଶ୍ ଜୋର୍‌ରେ ଚାଲିଗଲି ।

ବଜାରର ଜନଗହଳି କ୍ରମଶଃ ପାଖେଇ ଆସିଲା । ତା'ରି ଭିତରେ ମୋର ମନେ ହେଉଥାଏ ମୁଁ ଜଣଜଣକୁ ଚିହ୍ନିପାରୁଛି । ସେ ଯେ କାତୁଆମୁଣ୍ଡା ମଣିଷଟି ଧୋତି ପଞ୍ଜାବୀ ପିନ୍ଧି ଚାଲିଯାଉଛି, ସେ ଫକୀର ନୁହେଁ ତ । ବେସାଇଜ୍ ଗେଞ୍ଜି ଆଉ ପାଇଜାମା ପିନ୍ଧିଥିବା ମଣିଷଟି 'ଫେଲୁ' ନୁହେଁ ତ ! ମୋର ବାଲ୍ୟବନ୍ଧୁମାନଙ୍କୁ ଅନ୍ୟ ଏକ ସମୁଦ୍ରରେ ଖୋଜିବା ମୋର ଭ୍ରମ । ତଥାପି ସେମିତି ବୋକାମି କରିବାକୁ ମୋତେ ଭଲ ଲାଗୁଥାଏ ।

ସେ ଲୋକାରଣ୍ୟ ଭିତରେ ମୁଁ କାହାକୁ ଜାଣେନାହିଁ; ମୋତେ କେହି ଜାଣେନାହିଁ । ଅଥଚ ଦେହକୁ ଦେହ ଘସି ହେଉଛି । ଶ୍ୱାସ ପ୍ରଶ୍ୱାସ ବାରି ହେଉଛି ନିକଟରୁ ।

ଏତିକିବେଳେ ମୋର ମନେହେଲା ଯେ ମୋ ପଛକୁ କେହି ଜଣେ ଲାଗିଆସିଛି । ମୁଁ ଛିଡ଼ା ହେଇଗଲି । ଲୋକ ସବୁ ମୋତେ ଝୁଣ୍ଟିଲେ, ପଥରଖମ୍ବ ମନେକରି ଆଡ଼ହେଇ ଚାଲିଗଲେ ।

ମୁଁ ଚଟ୍‌କିନା ପଛକୁ ଚାହିଁଦେଲି; କେହି ନାହିଁ ।

ବାଲ୍ୟକାଳର ସ୍ମୃତି ହେଇଥିବ ବୋଲି ଦରାଣ୍ଡିଲି । 'ନୀଳ ଦାଢ଼ି'ର ଟହଟହ ହସୁଥିବା କଟା ମୁଣ୍ଡମାନ ମନେପଡ଼ିଲା । ଅବରୁଦ୍ଧ କବାଟ ମନେପଡ଼ିଲା । ଦେହସାରା ଶୀତକଣ୍ଟା ମାରିଗଲା ।

ମୁଁ ଗହଳି ଭିତରୁ ଆଡ଼ ହେଇଗଲି ରାସ୍ତା କଡ଼କୁ । ଗଛମୂଳେ ପରିସ୍ରା କଲି । ମନେହେଲା ସେ ମୋ ପଛରେ ଠିଆହେଇଚି । କିଏ ବୋଲି ଲେଉଟି ପଡ଼ିଲି । କେହି ନାହିଁ, ପାଦତଳ ମାଟିଠାରୁ ମୁଣ୍ଡ ଉପର ଆକାଶଯାଏ । ମଝିରେ କୋଠାବାଡ଼ି, ବଜାର, ଗାଡ଼ି ମଟର, ମଣିଷଙ୍କ ଭିଡ଼ ଚଳଚ୍ଚିତ୍ର ପରି ।

'ନୀଳ ଦାଢ଼ି' ଅର୍ଥାତ୍ ବ୍ଲୁ ବିଅର୍ଡ଼ ! ଏତେକାଳ ପରେ ପଛରେ ରହି ଏମିତି ଡରେଇବାର କ'ଣ ମତଲବ ? ମୁଁ କ'ଣ ଆଉ ସେ କଙ୍କି ଧରୁଥିବା ପିଲା ହେଇ ରହିଚି ?

ମୁଁ ମାନୁଛି ମୋତେ ତୁମ ହସ ମନେ ପକେଇଲେ ଡର ମାଡୁଚି । ବାଲ୍ୟକାଳ ସାଙ୍ଗରେ ତୁମେ ଏମିତି ଗୁନ୍ଥିହେଇ ରହିଛ ବୋଲି ମୋର ଧାରଣ ନ ଥିଲା ।

କିନ୍ତୁ ତୁମେ ଜାଣିଚ କି ନାହିଁ କେଜାଣି – ଏବେ ମୁଁ ବି ତୁମଭଳି ଏ ଦାଢ଼ିଆ ମଣିଷ । ତଫାତ୍ ଏତିକି ଯେ ମୋ ଦାଢ଼ିଟା ନୀଳ ନୁହେଁ କି ମୁଁ ତୁମଭଳି ସେମିତି ଟହଟହ ହସି ପାରିବି ନାହିଁ ।

ତୁମେ ବୋଧେ ଦୂର ପାହାଡ଼ରେ ରହ, ଆକାଶରେ ବିଚରଣ କର ବୋଲି ତୁମେ ନୀଳ ! ନା କ'ଣ କହୁଚ ?

ତୁମେ ମୋ ସାମ୍ନାକୁ ଚାଲି ଆସୁନ । ମୋ ସାଙ୍ଗେ ଦୋସ୍ତି କରିବାକୁ କ'ଣ ତୁମକୁ ଡର ମାଡୁଚି ? – ହେଇ, ଆସ, ମୋ ହାତ ଧର ! ତୁମ ହାତ ଯେତେ ଥଣ୍ଡା ହେଇଥିଲେ ବି କିଛି ଯାଏଆସେ ନାହିଁ । ଚାଲ ସାଙ୍ଗହେଇ ସାମ୍ନା କାଠ କେବିନରୁ ଚା' ଖାଇବା । ମୋର ମନେ ହେଉଚି, ତୁମକୁ ଆଉ 'ନୀଳଦାଢ଼ି' ଡାକିବା ଠିକ୍ ହେବନାହିଁ । ତୁମକୁ ବରଂ ଈଶ୍ୱର ଡାକିଲେ କେମିତି ହୁଅନ୍ତା ?

ମୋତେ ଖୁବ୍ ହସ ମାଡ଼ିଲା ! – ତା' ହେଲେ କ'ଣ ଏ ନୀଳଦାଢ଼ି ହିଁ ମୋ ଈଶ୍ୱର ? – ବ୍ଲୁ ବିଅର୍ଡ଼ ହେଉଚି ଗଡ୍ ? ବାଃ ଏତେକାଳ ସେ ଗୁମର ଧରାପଡ଼ିଲା ।

ମୁଁ ପୁଣି ରାସ୍ତାକୁ ଓହ୍ଲେଇଲି । କିନ୍ତୁ ମୋ ପଛରେ ଆଉଜଣେ କିଏ ଲାଗି ରହିଥିବାର ସ୍ପଷ୍ଟ ଅନୁଭବ କଲି । ବେଳେବେଳେ ମୋର ମନେ ହେଉଥିଲା ଯେ ସେ ମୋ ବାଁ କଡ଼େ ଅସ୍ପଷ୍ଟ ରହି ଚାଲିଥିଲା । ମୁଁ ମୋ ଆଖି କୋଣରୁ ଖାପ୍‌ସା ଦେଖି ପାରୁଥିଲି । କିନ୍ତୁ ମୁହଁ ବୁଲେଇ ଚାହିଁଦେଲେ କେହି ନାହିଁ ।

ମୁଁ କାଠ କେବିନର ବେଞ୍ଚ ଉପରେ ବସି ଚା' ବରାଦ କଲି ଦୁଇକପ୍ । ଚା' ବିକାଳି ମୋ ଆଗପଛକୁ ଚାହିଁ ପଚାରିଲା –

"ଆଜ୍ଞା, କ'ଣ ଦୁଇକପ୍ ?"

କାହିଁକି ସେମିତି ବରାଦ୍ କଲି କେଜାଣି ? ମୁଁ କ'ଣ ଆଶା କରୁଥିଲି ବ୍ଲୁ ବିଅର୍ଡ଼ ମୋ ପଛରୁ ପଚାଶ ବର୍ଷର ଗହୀର ତଳୁ ଉଠିଆସି ମୋ ସହିତ ଚା' ଖାଇବ ?

ମୁଁ ମୋ ୱାକିଂ ଷ୍ଟିକ୍ ଉପରେ ଗୋଟାଏ ଗୋଡ଼ ଥୋଇ ଅପେକ୍ଷା କରିଥାଏ । ମୁଣ୍ଡରୁ ଟୋପି କାଢ଼ି ବେଞ୍ଚ ଉପରେ ରଖିଥାଏ । ମୋର ଭାରି ଇଚ୍ଛା ହେଉଥାଏ ଆଉ ଜଣେ କିଏ ମୋ ସାଙ୍ଗରେ ବସି ଚା' ଖାଉ ।

ଛୋଟ କାଚ ଗ୍ଲାସରେ ହାଉ ବାହାରୁଥିବା ଦୁଇଟା ଚା' ଆଣି ମୋ ପାଖରେ କିଏ ଥୋଇଦେଲା । ମୁଁ ସେମିତି ମୋ ୱାକିଂଷ୍ଟିକ୍ ଉପରେ ଗୋଡ଼ ହଲେଇ ବସିଥାଏ । ଚାହିଁଥାଏ ସାମ୍ନାକୁ । ବୋଧହୁଏ ଶୂନ୍ୟକୁ ।

ହଠାତ୍ ମୋ ଡାହାଣ ପାଦ ସଳସଳ ଲାଗିଲା ।

ମୁଁ ତଳକୁ ଅନେଇଦେଲା ବେଳକୁ ଗୋଟେ ଶୁ' ସାଇନ୍ ଟୋକା ମୋ ଜୋତାକୁ ଟାଣୁଚି । ମୁଁ ଚଟ୍‌କିନା ପାଦ କାଢ଼ିନେଲି । ସେ ସେମିତି ଭୂଇଁ ଉପରେ ବସି ସଲାମ କରି କରି ସାକୁଲେଇଲା –

''ବାବୁ, ଜୁତା ଚମ୍‌କାଦେଙ୍ଗେ । ଲାଓନା ବାବୁ !''

ତା' ଧୂଳି ସରସର, ମଳି ସରସର ଦେହ, ନୁଖୁରା ଭୁତୁରା ମୁଣ୍ଡ । କିନ୍ତୁ ମୁହଁଟିର ଗଢ଼ଣ କି ସୁନ୍ଦର, ଆଖି ଦାଉ ଦାଉ, ଦାନ୍ତ ଚକ୍‌ଚକ୍, ନାକ ଠିଆ ।

ମୁଁ ତାକୁ ଚାହିଁ ଆମୋଦରେ ପଚାରିଲି – ''କ୍ୟା ପୈସା ଲେଗା ?'' ମୁଁ ଖାଲି ଅଭ୍ୟାସରେ ପଚାରିଲି ସିନା, ସେ ଯାହା ମାଗିଥିଲେ ମୁଁ ଦେଇଥାନ୍ତି ।

''ଏକ୍‌କୋ ରୁପିଆ ।''

ମୋର ତା' ସହିତ କୌତୁକ କରିବାକୁ ଇଚ୍ଛା ହେଉଥାଏ ।

''ଆରେ, ନାହିଁ, ଆଧାରୁପିଆ ଲେଗା ?''

''ସେ ମୋ ପାଦରୁ ଜୋତା ଫିଟେଇବାପାଇଁ ପୁଣି ଟାଣିଲା ।

''ନହି ବାବୁ, ଏକ୍‌କୋ ରୁପିଆ ଦେଓ !''

ମୁଁ ପାଦ ଛଡ଼େଇବାର ବାହାନା କରି ତାକୁ ଜୋତା କାଢ଼ିବାରେ ସହଯୋଗ କଲି ।

ସେ ଜୋତା ହଳକ ଖଟୁଳିରେ ରଖିଲାପରି ନିଜ କୋଳରେ ଥୋଇଲା । ଭୂଇଁରେ ଚକା ପକେଇ ଝୋଲା ଫିଟେଇଲା । ମୋତେ ଚାହିଁ ଦାନ୍ତ କାଢ଼ି ହସିଲା ।

ତା'ରି ବୟସର ମୋର ଗୋଟେ ନାତି ଟୋକା ଅଛି । ସେଇଟା ଏକଦମ୍ ସାଇବ ଛୁଆ ! ଏମିତି କଉତୁକ ହବାକୁ ତା' ପାଖରେ ବେଳ କାହିଁ ? ସେ ଇଂରାଜୀ ପଢ଼େ, ଇଂରାଜୀ କହେ ! ସେ ଶଳା ନାତି ଟୋକା କ'ଣ ବ୍ଲୁ ବିଅର୍ଡ଼ ପଢ଼େ ?

ମୁଁ ଚୁପ୍ କିନା ଜବ୍‌ଦି ଗଲି । ମୋ ପଛରେ ସେ କିଏ ? ''ଆସୁନ, ସାଙ୍ଗହେଇ ଚା' ଖାଇବା !''

ମୁଁ ବୋଧେ କ'ଣ କହିପକେଇଲି ।

ଶୁ' ସାଇନ୍ ଟୋକା ପଚାରିଲା – "କ୍ୟା ବୋଲା ଆପ୍ ?"

ମୋ ମୁହଁରେ ହସରେ ବାକି ସବୁ ଆପଣାପଣ, ଭାବଦୋସ୍ତି ଦେଖି ଥଙ୍ଗେଇଲା ପରି ସେ ତା' ଫୁଙ୍ଗୁଳା ସାନ ହାତଟି ବଢ଼େଇ ତା' ଗ୍ଲାସ୍‌ଟିକୁ ଧରିନେଲା ।

ମୋ ମୁହଁକୁ ଚାହିଁ ଅଜସ୍ର ମହମହ ଫୁଲ ଅଜାଡ଼ିଦେଲା ତା'ର ନିର୍ମଳ ପରିତୃପ୍ତ ହସରେ ।

ଆମେ ଦୁହେଁ ଏକା ସାଙ୍ଗରେ ଏକା ଛନ୍ଦରେ ଚା' ଶୋଡ଼ୁକୁଥିଲୁ । ମୁଁ ତା'ରି ଭଳି ଶୋଡ଼କିବାର ଶବ୍ଦ କରିଥିଲି । ମୋର ମନ ହେଉଥିଲା ତା' ସାଙ୍ଗରେ ତଳେ ଚକାପକେଇ ବସିବାକୁ । ମନ ହେଉଥିଲା ତାକୁ ଟାଣିଆଣି ମୋ ସହିତ ବେଞ୍ଚରେ ବସେଇବାକୁ । ତା' କାନ୍ଧରେ ହାତ ପକେଇ ତା' ମୁହଁକୁ ଚାହିଁବାକୁ । ତା' ସାନ ଗୋଡ଼ ଯୋଡ଼ିକ ସେ ଦୋଳେଇଲାବେଳେ ମୋ ଗୋଡ଼ ତା' ସାମ୍ନାରେ ରଖି ତାକୁ ଚିଡ଼େଇବାକୁ, ତା' ଗାଲ ଟିପିଦେବାକୁ, ତା' ମୁଣ୍ଡ ସଲସଲ କରିଦେବାକୁ ।

ସେ କେତେବେଳୁ ଚା' ପିଇସାରି ଜୋତାକୁ ବ୍ରସ୍ ମାରି ଲାଗିଥାଏ ।

ପୁଣି କେତେବେଳୁ ମୋତେ ଜୋତା ପିନ୍ଧେଇଦେଇ ମୋ ସାମ୍ନାରେ ହାତ ପତେଇ ଠିଆ ହୋଇଥାଏ ।

ମୁଁ ତାକୁ ଟଙ୍କାଟିଏ ବଢ଼େଇଦେବାରୁ ସେ ହସିଦେଇ ଉଭାନ୍ ହେଇଗଲା ।

ଚା' ଦୋକାନୀ ପାଟିକଲା, "ଆବେ, ହେ ଟୋକା, ଗ୍ଲାସ୍ ଧୋଇଦେଇ ଯା' ।

କେହି ଶୁଣିଲେନାହିଁ । ସେ ମୋ ଉପରେ ରଗରଗ ହେଲା ।

"ହେ, ବୁଢ଼ାବାବୁ, ଏ ଗ୍ଲାସ୍ ଏଇନା ଧୋଇବ କିଏ ?"

ମୁଁ କିଛି ନ ଭାବି କହିଲି – "ମୁଁ ଧୋଇଦେବି !"

ଚା' ବିକାଳି କେବିନ୍‌ରୁ ଓହ୍ଲେଇ ଆସିଲା ।

"କ'ଣ ହେଲା, ଆପଣ ଧୋଇବେ ? ଆମେ କ'ଣ ମରିଗଲୁ ? ଆପଣ ଗରାକ, ଆପଣ ଆମ ଲକ୍ଷ୍ମୀ !"

ଏମିତି କ'ଣ ସବୁ କହି କହି ଦୁଇଟି ଗ୍ଲାସ୍ ଗୋଟେଇନେଲା ।

ମୁଁ ଠିଆହେଇ ପଚାରିଲି – "କେତେ ହେଲା ?"

ସେ ଅସ୍ୱାଭାବିକ ଢଙ୍ଗରେ କହିଲା – "ଆପଣ ଯାହା ଦେବେ ।"

ମୁଁ ତାକୁ କ'ଣ ବଢ଼େଇଦେଲି । ସେ ସଲାମ୍ ମାରି ଆଡ଼ ହେଇଗଲା । ମୁଁ ଆସ୍ତେ ରାସ୍ତା ଉପରକୁ ପାଦ ବଢ଼େଇଲି ।

ଭିଡ଼ ଭିତରେ ପୁଣି ଏକାକୀ; ପୁଣି ପଛରେ କିଏ ଲାଗି ରହିଥିବାର ଅନୁଭବ ।

"କିଏ ମହାପାତ୍ର ବାବୁ କି ?"

ମୁଁ ଚମକି ପଡ଼ିଲି । ଓଃ, ତା'ହେଲେ ଏ ଜନ ସମୁଦ୍ରରେ କେହି ଜଣେ ତ ମୋତେ ଚିହ୍ନିଲା ।

ମୁଁ ଚାହିଁଲାବେଳକୁ ଜଣେ ଅଚିହ୍ନା ବ୍ୟକ୍ତି ହସି ହସି ପାଖେଇ ଆସୁଛି । ମୋ ପାଖକୁ ଆସି ସେ ଆଉ ମୋତେ ଚାହୁଁନାହିଁ । ମୋତେ ଭେଦି ଆଉ କାହାକୁ ଅନଉଚି ।

ପଛରୁ ଶୁଭିଲା – ‘‘ଆରେ, ଦୋରା ବାବୁ ଯେ ।’’

ଅପ୍ରତିଭ କାଛଟିଏ ପରି ମୁଁ ମଝିରେ ଛିଡ଼ାହୋଇ ଯାଇଛି । ସେମାନେ ମୋତେ ବସ୍ତୁଜ୍ଞାନ କରି ଚାହୁଁନାହାନ୍ତି ।

ତା’ହେଲେ ମୋ ପଛରେ ଏ ମହାପାତ୍ରଟା ହିଁ ଠିଆହେଉଥିଲା । ମୋ ବେକଷଣ୍ଢା ଉପରେ ନିଃଶ୍ୱାସ ମାରୁଥିଲା, ଅଥଚ ମୋତେ ଜାଣିବାକୁ ଚାହୁଁନଥିଲା । ଯାଃ, ଶଳା, ଗଲା ଯେ ଭଲହେଲା ।

ମୁଁ ଚାହିଁଲି ବେଖାତିର୍ । ଏଠି ମୋତେ କିଏ ଜାଣିଚି ଯେ ମୋର କ’ଣ ବିଗାଡ଼ି ପକେଇବ ?

ତଥାପି ମୋତେ ବାରମ୍ବାର ସେଇ ଅପରିଚିତ ସ୍ୱରରେ ଶୁଭୁଥିଲା – ‘‘କିଏ, ମହାପାତ୍ର ବାବୁ କି ?’’ କେତେ ଖୁସି ଲାଗିନଥାନ୍ତା ଯଦି ସତକୁସତ ମୁଁ ଏଇଠି ଏକମାତ୍ର ମହାପାତ୍ର ହୋଇଥାନ୍ତି । ମୋତେହିଁ ଠଉରେଇ ନେଇ ଲୋକେ ବାରମ୍ବାର ଆନନ୍ଦ ବିସ୍ମୟରେ ପଚାରୁଥାନ୍ତେ – ‘‘ଆରେ ମହାପାତ୍ର ବାବୁ କି ?’’

ମୁଁ ଅନ୍ୟମନସ୍କ ଚାଲୁ ଚାଲୁ ଗୁଡ଼ାଏ ବାଟ ଚାଲିଗଲି । ସେଇଟା କଚେରୀ ରାସ୍ତା । କଚେରୀ ପରେ ଆଉ କିଛି ନାହିଁ । ରାସ୍ତା କିନ୍ତୁ ବଢ଼ିଯାଇଛି ଆଗକୁ, ପୃଥିବୀର ସବୁ ସହରକୁ ।

ମୁଁ ଗୋଟେ ପୋଲ ଉପରେ ବସିଲି କିଛି ସମୟ । ସେଇ ବିଚିତ୍ର ଅନୁଭବ ମଝିରେ ମଝିରେ ଆସିଯାଉଥାଏ । କେହି ଜଣେ ମୋ ପଛରେ ଠିଆହୋଇ ରହିଛି ସତେବା ।

ଖୁବ୍ ନିରୋଳା ଜାଗା । ମୁଁ ପାଟି ଖୋଲି ପଚାରିଲି –

‘‘ଆଚ୍ଛା, ତୁମେ ଯଦି ସତରେ କେହି ହୋଇଥାଅ, ସାମ୍ନାକୁ ଆସୁନାହଁ କାହିଁକି ?’’

ମୋର ମନେହେଲା ସେ ଅସୀମ ଶିଷ୍ଟାଚାର ଦେଖାଇ ମୋ ପଛରେ ହିଁ ଠିଆହୋଇ ରହିଛି । ଅପେକ୍ଷା କରିଚି । ଯଥା ସମୟରେ ସାମ୍ନାକୁ ଆସି କୁଣ୍ଡିସ୍ କରିବ, ନିମନ୍ତ୍ରଣ କରିବ ତା’ ଘରକୁ ଯିବାପାଇଁ ।

ସେ କ’ଣ ବ୍ଲୁ ବିଅର୍ଡ଼ ନା ଗଡ୍ ?

ମାଛି ଅନ୍ଧାରକୁ ମୁଁ ପୁଣି ସେଇ ରାସ୍ତାରେ ଫେରିଲି । ମଝିରେ ଖଣ୍ଡେ ନିଛାଟିଆ ଜାଗା ।

ସେଇଠି ଜାଣି ମୋତେ ପ୍ରଥମଥର ପାଇଁ ଡର ମାଡ଼ିଲା ।

ଲାଗିଲା, ମୋ ପଛରେ ଯେ ଅଛି ସେ ମଣିଷ ନୁହେଁ, ବାଘ !

ମୋ ପାଦ ତଳିପା ସିର୍‌ସିର୍ ହେଲା ।

ତଳିପେଟ ଅଣ୍ଡକୋଷ ସାଙ୍କୁଡ଼ିଗଲା ।

ମଝିପିଠିରେ ବିଛାଟାଏ ଚଢ଼ିଆସିଲା ବେକମୁଣ୍ଡା ଯାଏଁ ।

ମୁଁ ଥମ୍ ହୋଇ ଠିଆହୋଇଗଲି । ମୋ ନିଃଶ୍ୱାସ ଜବ୍‌ଦିଗଲା । କପାଳରେ ଝାଳ ଜକେଇଗଲା । ମୁଁ ହଠାତ୍ ପଛକୁ ବୁଲିପଡ଼ିଲି ।

ନାଃ ! – କେହି ନାହିଁ । ମୁଁ ଖୁବ୍ ଚିଡ଼ିଗଲି । ବକିଲି ଅଭାଷିଆ, ଅଶ୍ଳୀଳ ଶବ୍ଦରେ ଯାହା ମନକୁ ଆସିଲା । ଖୁବ୍ ପାଟିକରି ସେପରି ଶବ୍ଦମାନ ମୁଁ କେବେ ହେଲେ ଜୀବନରେ ଉଚ୍ଚାରଣ କରିନଥିଲି ।

ଆଶ୍ଚର୍ଯ୍ୟ ଲାଗିଲା ଯେ ଏତେ କାଳ ମୋର ନାବାଳକି କଟିନଥିଲା । ମୁଁ ବେଶ ସୁସ୍ଥ, ସ୍ଥିର ବୋଧକଲି । ମୋ ମନରୁ ଭୟ ଘୁଞ୍ଚିଗଲା । ବୋଧହୁଏ ସେ ବି ଡରିଲା ଅଶ୍ଳୀଳ ଶବ୍ଦର ନିର୍ବିଚାର ବିସ୍ଫୋରଣକୁ ।

ମୋ ଚାଲିବା ବେଗ ବି ଅନେକ ବଢ଼ିଗଲା ।

ସେଥିପାଇଁ ଚଞ୍ଚଳ ପହଞ୍ଚିଗଲା ବଜାର ।

ସେଇଠି ପୁଣି ସେଇ ଅଶ୍ୱସ୍ତିକର ଅନୁଭବ । ଭୟ, ଅସହାୟ, କ୍ରୋଧ, ବିରକ୍ତି, ଘୃଣା, ଜିଘାଂସା ସବୁ ମିଶାମିଶି ଗୋଟାଏ ଅସହ୍ୟ ଅନୁଭବ ।

ମୁଁ ବଜାର ଭିତରେ ଏଣେତେଣେ ଘୁରି ବୁଲିଲି । ଗୋଟାଏ ଦୋକାନୀର କାଚ ଆଲମାରି ପାଖରେ ମୁଁ ଠିଆହୋଇଥାଏ । ମୋ ଡାହାଣରୁ କେହି ଜଣେ ଛପ୍‌କିନା ବାହାରି ଆସିଲା । ମୋତେ ଲାଗିଲା ସେ ମୋ ଠିକ୍ ପଛରୁହିଁ ବାହାରି ଆସିଲା ।

ସେ ପିନ୍ଧିଥିଲା ଗୋଟାଏ କଳା ସୁଟ୍ । ମୁଁ ତା' ବାଁ ପାଖ ପ୍ରୋଫାଇଲ୍‌ଟା ହିଁ ଦେଖିପାରୁଥିଲି । ପିଠି ପାଖ ଦେଖିପାରୁଥିଲି । କିନ୍ତୁ ମୁହଁଟା ଦିଶୁ ନଥିଲା ।

ସେ ଚଟ୍‌କିନା ଡାହାଣେ ବୁଲିପଡ଼ି ଚାଲିଗଲା ତରତର ହୋଇ ।

ସେ ଚାଲିଗଲା ପରେ ମୁଁ ସଚେତନ ହେଲି ଯେ ସେ ଚାଲିବାରେ କିମ୍ବା ଚଳପ୍ରଚଳ ହେବାରେ ବୋଧେ ଆଦୌ କିଛି ଶବ୍ଦ ହେଉ ନଥିଲା । ସତେବା ଛାଇଟାଏ ।

ମୁଁ ସାଙ୍ଗେ ସାଙ୍ଗେ ସେଇ ଦିଗରେ ମୋଡ଼ିଗଲି । ଜାଣିବାକୁ ଚାହିଁଲି ସେ କଳାସୁଟ୍ ପିନ୍ଧା ଲୋକଟା କିଏ । ମୋ ଠିକ୍ ପଛରେ କିଏ କାଶିଲା କି ?'

ମୁଁ ଚମକି ପଡ଼ି ବୁଲି ଦେଖିନେଲି । କେହି ନ ଥିଲା । ମୁଁ ଗହଳି ଭିତରେ ତାକୁ ଠାବ କରି ପାରିଲି ନାହିଁ । କଳା ସୁଟ୍ ପିନ୍ଧିଥିବା କେହି ହେଲେ ଆଖିରେ ପଡ଼ିଲା ନାହିଁ । ସେ କ'ଣ ଉଭାନ ହୋଇଗଲା ?

କିଏ ସେ ଲୋକଟା ? କାହାର ମୃତ୍ୟୁରେ ଶୋକପାଳନ କରିବାକୁ ସେ ସେଇ କଳା ସୁଟ୍‌ଟା ପିନ୍ଧିଥିଲା ?

ଅଯଥା ଅଠାହାଣ୍ଡିରେ ଗୋଡ଼ ବୁଡ଼ିଗଲା ପରି ମୋତେ ଲାଗୁଥିଲା । ରାତି ଆଗେଇ ଆସୁଥିଲା ।

ମୁଁ ସ୍ଥିରକଲି, ଯେତେ ଅସୁଖକର ହେଉପଛେ ମୁଁ ସେଇ ଘରକୁ ଫେରିଯିବି । ସେଇଠି ଅନ୍ତତଃ ଚିହ୍ନା ମୁହଁ ତ ଦେଖିବାକୁ ମିଳିବେ । ଆପଣପଣ ତ ଗୋଟେ ଛାଇ । କେତେବେଳେ କେଉଁ ମୁହଁ ଉପରେ ମଡ଼େଇ ହୋଇଯାଏ । ସବୁବେଳେ ସବୁଠି ତାକୁ କାହିଁକି ଆଶା କରିବା ?

ଦୁଆର ମୁହଁରେ ସମସ୍ତେ ଉଦ୍‌ବିଗ୍ନ ହୋଇ ଚାହିଁ ରହିଥିଲେ । ସେଦିନ ବି ମୁଁ ଘରେ ପହଞ୍ଚିଲା ବେଳକୁ ସତକୁସତ ସମସ୍ତେ ଠିଆହୋଇଥିଲେ । ସତକୁସତ ସମସ୍ତେ ଉଦ୍‌ବିଗ୍ନ ଜଣାଯାଉଥିଲେ ।

ମୋ ସ୍ତ୍ରୀ ସମସ୍ତଙ୍କ ଆଗରେ ମୋ ହାତ ଧରି ପକେଇ ପଚାରିଲେ – ''ତମେ ଏମିତି ଧଇଁସଇଁ ହଉଚ କାହିଁକି ? ତୁମ ମୁଣ୍ଡରୁ, ମୁହଁରୁ ଏତେ ଝାଳ କାହିଁକି ନିଗିଡ଼ି ଯାଉଚି ?''

ମୋର ଅପରିଚିତ ପରିବାର ମୋ ଚାରିଆଡ଼େ ଖୁବ୍ ନିବିଡ଼ ହୋଇ ବେଢ଼ିଗଲା ।

ମୋ ସାମ୍ନାରେ ସେ ନାତି ଟୋକା ।

ମୁଁ ତାକୁ ଚାହିଁ କହିଲି – ''ବଲ୍ ଖେଳୁଥିଲି, ଡେରି ହେଇଗଲା ।''

''ତମେ ବଲ୍ ଖେଳୁଥିଲ ? ନୋ, ୟୁ ଆର୍ ଜୋକିଙ୍ଗ୍ ।''

ମୋତେ ସମସ୍ତେ ନେଇ ସୋଫାରେ ବସେଇ ଦେଇଥିଲେ । ମୋର ୱାକିଂ ଷ୍ଟିକ୍ ନେଇଯାଇଥିଲେ । ମୋ ପାଦରୁ ଜୋତା କାଢ଼ି ନେଇଥିଲେ । ଜଣେ କିଏ ମୋ ଜାମାର ବୋତାମ ଫିଟାଇ ମୋ ଝାଳ ପୋଛିଦେଇଥିଲା ।

ମୁଁ ସେଇ ନାତି ଟୋକାକୁ ପାଖକୁ ଡାକି ବସେଇଲି, ତା' ମୁଣ୍ଡ ସଲସଲ କରିଦେଲି । ତା' କାନ୍ଧରେ ହାତ ରଖି ତା' ମୁହଁକୁ ଚାହିଁଲି – ''ଆରେ ନୋ ଜୋକିଙ୍ଗ୍ ! ମୁଁ ବ୍ଲୁ ବିଅର୍ଡ଼ ସାଙ୍ଗରେ ବଲ୍ ଖେଳୁଥିଲି । ସେଇଟା ଡରୁଆଟାଏ । ମୋ ସାମ୍ନାକୁ ଜମା ଆସୁନଥାଏ ।''

ମୋ ପୁଅ, ସ୍ତ୍ରୀ କ'ଣ ସବୁ ଫିସ୍ ଫିସ୍ କଥା ହଉଥାନ୍ତି । ବଡ଼ ପୁଅ ତରବର ହେଇ କୁଆଡ଼େ ବାହାରିଗଲା । ଆର ପୁଅ କହିଲା – ''ବାପା, ତମେ ଅସୁସ୍ଥ । ତମେ ବେଡ଼ରୁମ୍‌କୁ ଚାଲ ।'' ସେ ମୋ ଛାତି ଉପର ହାତ ରଖି ଉଦ୍‌ବିଗ୍ନ ହୋଇ କହୁଥିଲା ।

ମୋ ବୁକୁ ଦାଉଁ ଦାଉଁ ତା' ହାତ ପାପୁଲିରେ ବାଡ଼େଇ ହେଉଥିବାର ମୁଁ ଅନୁଭବ କଲି । ମୋତେ ନିଃଶ୍ୱାସ ଜୋର୍‌ରେ ନେବାକୁ ପଡୁଥିଲା ।

ମୁଁ ବୁଝିପାରୁ ନଥିଲି ସେମାନେ କାହିଁକି ଏତେ କାତର ହୋଇପଡୁଥିଲେ ।

ଆରେ ବଲ୍ ଖେଳିଲେ ହାଲିଆ ହେବାକୁ ପଡ଼େ – ତା' ପୁଣି ବ୍ଲୁ ବିଅର୍ଡ଼ ସାଙ୍ଗରେ !

ମୁଁ ନାତି ଟୋକା ମୁହଁକୁ ଚାହିଁ ଆଖି କୁଞ୍ଚେଇ ହସିଲି । ମୋ ସ୍ତ୍ରୀଙ୍କୁ କହିଲି – ''ଟୁ କପସ୍ ପ୍ଲିଜ୍ ! ଦୁଇ କପ୍ ଚା' ଆଣ । ମୁଁ ଆଉ ଇଏ ମିଶି ପିଇବୁ । – ମାନେ

ମୁଁ ଆଉ ଶୁ' ସାଇନ୍ ବୟ । ...ମାନେ ମୁଁ ଆଉ ବ୍ଲୁ ବିଅର୍ଡ଼ ! ...ମାନେ, ମୁଁ ଆଉ ଗଡ଼୍ !!''

ତା'ପରେ ମୋତେ ସବୁ କେମିତି ଝାପ୍‌ସା ଦେଖାଯାଇଥିଲା । ମୁଁ ପରେ ଜାଣିଲି ଯେ ସେ ରାତିସାରା ଖୁବ୍ ଧାଁ-ଧଉଡ଼ ଚାଲିଥିଲା । ଡାକ୍ତର ଆସି ବସିଥିଲା । ମୁଁ କୁଆଡ଼େ ଯାଉ ଯାଉ ରହିଗଲି ।

ଆଜି ଚାରିବର୍ଷ ପରେ ମୁଁ ଏ କଥା ଲେଖିଲାବେଳକୁ ପୁଣି ମୋତେ ମୋର ବାଲ୍ୟକାଳ ଆଛନ୍ନ କରି ଆସୁଚି । ବ୍ଲୁ ବିଅର୍ଡ଼ ସାଙ୍ଗେ ଏଥର ଦେଖା ହେଇଯିବ କି ସାମ୍ନାସାମ୍ନି ?

□□□

# ପ୍ରସ୍ତ ପ୍ରସ୍ତ ଆବରଣ

ସେ ଲୋକଟାକୁ ଦେଖିଦେଲେ ହିଁ ଅସୁବିଧା ।

ତା' ଆଖିକୁ ମୁହଁକୁ ଚାହିଁଲେ ଯେ କୌଣସି ସାପର ଫଣା ନଇଁଯିବ । ସେମିତି ଗୋଟାଏ କିଛି ତେଜସ୍ୱୀ ମୁହଁ ତାର ନୁହେଁ, ଝଟ୍‌ଝଟ୍ ଚମକୁଥିବା ବ୍ୟକ୍ତିତ୍ୱ ମଧ ତାର ନାହିଁ । ନୂଆଣିଆ କପାଳ ନୁଆଁଣିଆ ଥମ୍ ଥମ୍ ଆଖି । ମୁଣ୍ଡରେ ଛୋଟ ଛୋଟ ବାଳ ଅଧେ ପାଚିଲା ଅଧେ କଞ୍ଚା ।

କିନ୍ତୁ କେମିତି କେଜାଣି ତାକୁ ଦେଖିଲେହିଁ କ'ଣଟାଏ ମଡ଼େଇ ପଡ଼ିଲାପରି ଲାଗେ ।

ସତେବା ଚିନ୍ତା ନାଏକ ଏ ଅକଳନ୍ତି ଦୁଃଖର ପାହାଡ଼ ।

ତା'ର ଉଦାସ ମୁହଁରେ ଆଖି ଯୋଡ଼ିକ ଚିକ୍ ଚିକ୍ କରୁଥାଏ । ନିର୍ବାକ ଓଠରେ ପଥରବନ୍ଧ ପରି ସଂକଳ୍ପ । ପାଟି ଫିଟିଲେ ଦୁଃଖର ଲୁଣାପାଣି ମାଡ଼ିଯିବ ସଚରାଚର କିମ୍ବା ନିଆଁ ଲାଗିଯିବ ବନସ୍ତରେ । କିନ୍ତୁ ଚିନ୍ତା ନାଏକ ଚୁପ୍‌ଚାପ୍ ଠିଆହୁଏ । ସତେବା ଏ ପୃଥିବୀରେ ତା'ର କାହାକୁ କିଛି କହିବାର ନାହିଁ । ଅଥଚ ସେ ହିଁ ପାଟିଖୋଲି ଏ ସଂସାରକୁ ଜାଳିଦେବା କଥା ।

ତାକୁ ଦେଖିଲେ ଏମିତି ଲାଗେ ।

ସତକୁସତ ତା ଜୀବନର ସୁଖ କେତେ ଦୁଃଖ କେତେ କେହି ଜାଣନ୍ତିନାହିଁ ।

ସେ କାହାକୁ କହେନାହିଁ ।

କହେ କେବଳ ଅନ୍ୟମାନଙ୍କ କଥା ।

ହେଇ ସେଦିନ ଘଣ୍ଟି ବାଜିଲା । ମୁଁ କବାଟ ଫିଟେଇ ଦେଖିଲାବେଳକୁ ଚିନ୍ତା ନାଏକ ।

''କିରେ ଚିନ୍ତା ତୁ କୁଆଡ଼େ ? କ'ଣ କାହାରି ଅସୁବିଧା ହେଉଚି କି ?''

''ନାଇଁ ସାର୍, ସେମିତି କିଛି ଜରୁରୀ ନୁହେଁ । ହେଲେ ଆପଣଙ୍କୁ ଟିକିଏ କଷ୍ଟ ଦବାକୁ ଆସିଲି । କିଛି ମନେ କରିବେ ନାହିଁ – ଏମିତି ଆପଣଙ୍କ ଉପରେ ଭରସା ଥିଲାବୋଲି ମୁଁ କହିଦେଲି ଆପଣଙ୍କୁ ପଚାରିବାକୁ, ବସିର ମିଆଁକୁ ବାଂଲାଦେଶୀ ବୋଲି ପୁଲିସ୍ ତାକୁ ତଡ଼ିଦେବାକୁ ବସିଛି । ସେ ଏଠିକାର ବାସିନ୍ଦା ବୋଲି ଯେତେ କହିଲେ ମାନୁନାହିଁ । ଆପଣଙ୍କୁ ପଚାରିବାକୁ ମୁଁ କହିଲି । ଆପଣ ତାକୁ ଜାଣିଛନ୍ତି ବୋଲି କହିଦେଲେ ସେ ବଞ୍ଚିଯାନ୍ତା ।''

''ଆରେ ବସିର୍ ମିଆଁକୁ ତ' ମୁଁ କେବେ ଦେଖିନାହିଁ । ଦେଖିଥିଲେ ବି ଜାଣିନାହିଁ'' – ମୋର ସ୍ୱର ଓ ବାକ୍ୟରେ କାର୍ପଣ୍ୟ ଘୋଡ଼େଇ ହୋଇ ରହିଥିଲା ।

ଏସବୁ ମହା ଝାମେଲା କଥା । ପୁଲିସ୍ କୋର୍ଟ କଚେରୀ ମାମଲାରେ କାହିଁକି ଜାଣିଶୁଣି ପଶିବି । ମୁଁ ଜାଣିଚି କହିଲେ ସେ ପଚାରିବେ କେମିତି ଜାଣିଚି, କେତେ ବର୍ଷ ହେଲା ଜାଣିଚି, ତା ପରିବାରର ଆଉ ସମସ୍ତଙ୍କୁ ଜାଣିଚି କି ନାହିଁ –

ମୋର କୁଣ୍ଠିତ ସ୍ୱରରୁ ଚିନ୍ତା କ'ଣ କିଛି ଅନୁମାନ କରିନେଲା । ସେ ମୁହଁ ଆଡ଼କରି ତଳକୁ ଚାହିଁଲା ।

"ହଉ ସାର୍, ମୁଁ ତା'ହେଲେ ଆସୁଚି, ଆପଣଙ୍କୁ କଷ୍ଟ ଦେଲିବୋଲି କିଛି ଭାବିବେନାହିଁ ।"

ସେତିକିବେଳେ ମୁଁ ଅନୁଭବ କଲି ଯେ ଚିନ୍ତା ନାଏକ ତା' ସହଣିକ ପଣିଆରେ ମୋତେ କ୍ଷମା କରୁଚି ! ଭାବୁଚି ହୁଏତ ମୋତେ ସେ ଭୁଲ ବୁଝିଥିଲା । ମୁଁ ଯାହା ଦିଶେ ପ୍ରକୃତରେ ମୁଁ ତା'ଠୁ ଢେର ଛୋଟ ଗୋଟାଏ ମଣିଷ । ମୋ'ଠୁ ସେ ଅଯଥା ଗୁଡ଼ାଏ ଆଶା କରି ଭୁଲ୍ କରିଥିଲା ।

ଇସ୍ ! ଚିନ୍ତା ନାଏକ ପାଖରେ ମୁଁ କେତେ ସାଙ୍କୁଡ଼ିଗଲି ।

ଡାକିଲି – "ଆଚ୍ଛା, ସେମାନେ କେବେ ପଚାରିବାକୁ ଆସିବେ ?"

ଚିନ୍ତା ସେମିତି ଆଗକୁ ପାଦ ବଢ଼ାଇ ଥମିଗଲା । ସେ ଠିକ୍ ଶୁଣୁଚି ତ । ମୁଁ ଦୋହରାଲି – "ସେମାନେ କେବେ ଆସିବେ ପଚାରିବାକୁ ?" "ଆଜିଠୁ ଯେ କୌଣସି ସମୟରେ ସେମାନେ ଆସିପାରନ୍ତି ସାର୍ ।" ସେ ସେହିପରି ଅବିଶ୍ୱାସରେ ଅପେକ୍ଷାକଲା । ଶୁଣିବାକୁ ମୁଁ କ'ଣ କହୁଚି ତେଣିକି ।

"ଶୁଣ ଚିନ୍ତା, ମୁଁ ସତରେ ବସିରକୁ ଜାଣେନାହିଁ । ତୁ ହିଁ ଜାଣିତୁ । ମୁଁ ତୋ ସୁପାରିଶ୍‌ରେ ହିଁ ତାକୁ ଜାଣିଚି ବୋଲି କହିଦେଇ ପାରେ । କିନ୍ତୁ ତା' ବିଷୟରେ ମୋତେ ଯାହା ଜାଣିତୁ କହ । ଆଉ ସମ୍ଭବ ହେଲେ ତାକୁ ଆଣି ମୋ ସହିତ ପରିଚୟ କରେଇ ଦେ ।

ଚିନ୍ତା ନାଏକ ବୁଲିପଡ଼ି ପୁଣି ମୋ ସାମ୍ନାରେ ଆସି ଠିଆହେଲା । ତା'ର ସେ ଆଖି ଯୋଡ଼ିକ ଛଳଛଳ ଦେଖାଗଲା । ସେ କେବଳ କହିଲା – "ମୁଁ ଆପଣଙ୍କଠାରୁ ଏହାହିଁ ଆଶା କରୁଥିଲି ସାର୍ ।"

ସେଦିନ ତିନିଟାରୁ ଚାରିଟା ଭିତରେ ମୋ ଦୁଆରେ ଆସି ଚିନ୍ତା ହାଜର ହେଇଗଲା । ସାଙ୍ଗରେ ବସିର ମିଆଁ । ମୁଁ ଆମ ବଗିଚାର ୱିଲୋ ଗଛତଳେ ସିମେଣ୍ଟ ବେଞ୍ଚରେ ବସିଥାଏ, ସେ ଦୁହେଁ ମୋ ପାଖକୁ ଆସି ଘାସ ଉପରେ ବସିଗଲେ ।

"ଏଇ ସାର୍, ବସିର ମିଆଁ । ଯା ସାଙ୍ଗରେ ଆପଣ ଓଡ଼ିଆରେହିଁ କଥା ହେବେ । କାରଣ ବସିର୍ ଆଉ କୌଣସି ଭାଷା ଜାଣିନାହିଁ ।"

ସତକୁସତ ବସିର ଖାଣ୍ଟି ଗାଉଁଲି ଓଡ଼ିଆ କହିଲା । ମୋର ଷୋଳଅଣା ବିଶ୍ୱାସ ଆସିଗଲା ଯେ ସେ କଦାପି ଅଣଓଡ଼ିଆ ନୁହେଁ । ଏଣୁ ସେ ବାଂଲାଦେଶୀ କଦାପି ନୁହେଁ ।

"ଠିକ୍‌ଅଛି, ଚିନ୍ତା ମୁଁ ବର୍ତ୍ତମାନ ବିନା ଦ୍ୱିଧାରେ ବସିରଙ୍କୁ ଏ ଅଞ୍ଚଳର ବାସିନ୍ଦା ବୋଲି କହିପାରେ । ମୁଁ ତାକୁ ଦେଖିଚି ଓ ଜାଣିଚି ବୋଲି ମଧ କହିପାରେ ।

ଚିନ୍ତା ମୋତେ ଧନ୍ୟବାଦ ଦେବାପରେ ଆସ୍ତେ କହିଲା –

"ଆପଣ ବୋଧେ ଜାଣନ୍ତିନାହିଁ ସାର୍, ବସିର ମିଆଁର ଦୁଃଖ । ସେ ଚାଉଳ ବେପାର କରୁଥିଲା । ତା'ର ଭଲ ରୋଜଗାର ହଉଥିଲା । ଦିନେ ତା' ଚାଉଳ ଗୋଦାମରେ ନିଆଁ ଲାଗିଗଲା । କିଏ ସବୁ ଅସହଣିକ ଲୋକ ତାକୁ ଜାଳିଦେଲେ । ବସିର ଏ ସହରକୁ ଚାଲିଆସିଲା । ଅଳ୍ପ ପଇସା ଆଣିଥିଲା । ପରିବା ଦୋକାନରେ ଖଟେଇଦେଲା । କେହି କିଛି କିଣିଲେ ନାହିଁ । ସବୁ ପରିବା, ଶୁଖା ପୋଚାରେ ଗଲା । ସେ ତେଣିକି ଖଣ୍ଡେ ଟ୍ରଲି ରିକ୍‌ସାରେ ମାଲ୍ ବୋହିଲା ସେଥିରେ ସେମାନେ ଚଳିଗଲେ । ସହରଗଳିରେ କୁଡ଼ିଆ କରି ବସିର୍ ମିଆଁ ରହିଲା ତା' ପିଲାପିଲିଙ୍କୁ ନେଇ ।

ମୋର ଧୈର୍ଯ୍ୟହାନି ହେଉଥାଏ । କିନ୍ତୁ ଚିନ୍ତା ନାଏକ କହିବା ଢଙ୍ଗଟି ଏତେ ଚମତ୍କାର ଯେ ତାକୁ ନ ଶୁଣି ଉପାୟ ନାହିଁ । ସେ ମୋ ଚେହେରାରୁ କ'ଣ ଇସାରା ପାଇଗଲା ବୋଧେ ଠେ-କିନା କଥା ସାରିଦେଲା ।

"ତା ବିବି ମରିଗଲା ଯକ୍ଷ୍ମାରେ । ତା' ଝିଅ ଚାଲିଗଲା ଗୋଟାଏ ଟୋକା ସାଙ୍ଗରେ । ସେ ଏଇନେ ଏକୁଟିଆ ।

ଏତକ କହିଦେଇ ସେ ଉଠିଲା । ବସିର୍ ଉଠିଲା କଳ କଣ୍ଢେଇପରି । ଦୁହେଁ ଆଗପଛ ହେଇ ଚାଲିଗଲେ ।

ସତକୁସତ ପୁଲିସ୍ ପକ୍ଷରୁ ଦୁଇଜଣ ସାଦା ପୋଷାକଧାରୀ ମୋ ପାଖରେ ଆସି ପହଞ୍ଚିଲେ ତା'ର ଦି' ଦିନ ପରେ ।

ପ୍ରାରମ୍ଭିକ ଶିଷ୍ଟାଚାର ପରେ ଜଣେ କାଗଜ କଲମ ନେଇ ସଜ ହେଲେ । ମୁଁ ସଜହେଲି ବସିର ମିଆଁ ବିଷୟରେ କହିବାକୁ ।

ସେ ଠୋକିନା ପଚାରିଲେ – "ଆପଣ ଚିନ୍ତା ନାହାକକୁ ଜାଣନ୍ତି ?" ମୁଁ ହଠାତ୍ ଅଚମ୍ଭା ଖାଇଗଲି । ସେ ଏମିତି ପଚାରିବେ ବୋଲି ମୁଁ ଆଦୌ ପ୍ରସ୍ତୁତ ନଥିଲି । ନିଜକୁ ସମ୍ଭାଳିବାକୁ ସାମାନ୍ୟ ସମୟ ଲାଗିଲା । ଏଣୁ ମୁଁ ପଚାରିଲି – "କାହାକୁ ?"

"ଚିନ୍ତା ନାହାକ, ବୟସ ଅନ୍ଦାଜ ପଞ୍ଚତିରିଶ । ଛୋଟ ବାଳ ଛୋଟ କପାଳ । ନୁଆଁଣିଆ ଆଖି, ରଙ୍ଗ ସାବନା, ଉଚ୍ଚତା ପାଞ୍ଚଫୁଟ ସାତ ଇଞ୍ଚ ।"

ମୁଁ କହିଲି – "ଜାଣେ ।" କିନ୍ତୁ ମୋ ସ୍ୱରରେ ଆଦୌ ଜୋର୍ ନଥିଲା । ଧମକେଇ ଦେଇଥିଲେ ହୁଏତ ଜାଣେନାହିଁ ବୋଲି ମଧ କହିଦେଇ ପାରିଥାନ୍ତି । ଏମିତି ଦୁର୍ବଳ ଦୋଦୋପାଞ୍ଚ ଉତ୍ତର ମୁଁ କାହିଁକି ଦେଲି କେଜାଣି । ପୋଲିସ୍ ପଚାରୁଚି ବୋଲି ବେଶୀ ସତର୍କ ହେଇଗଲି କି ସେତକ ମୋର ଚରିତ୍ର ଦୋଷ କହିପାରୁ ନାହିଁ । ତା'ପରେ କିନ୍ତୁ ମନେ ମନେ ନିଜକୁ ଧିକ୍‌କାରିଲି ଆଉ ଟାଣେଇଗଲି ।

''କେମିତି ଜାଣନ୍ତି, କେତେଦିନ ହେଲା ଜାଣନ୍ତି ?''

''ଢେର୍ ଦିନ ହେଲା ଜାଣେ '' –ସ୍ୱର ଏଥର ଖୁବ୍ ସ୍ପଷ୍ଟ ଓ ଦୃଢ଼।

''ସେ କ'ଣ କରେ ଏବଂ ଆପଣଙ୍କ ପାଖକୁ କାହିଁକି ଆସେ ?''

''ମାନେ, ସେ ମୋତେ ସମ୍ମାନ କରେ । – ବେଳେବେଳେ ଆସେ ଅନ୍ୟମାନଙ୍କ ପାଇଁ ସାହାଯ୍ୟ ମାଗିବାକୁ ।''

ପୋଲିସ୍ ଦୁଇଜଣ ପରସ୍ପରକୁ ଚାହାଁଚାହିଁ ହେଲେ ।

''ଆପଣ ତାଙ୍କୁ କେବେ ସନ୍ଦେହ କରିଛନ୍ତି – ମାନେ, ତାର ଗତିବିଧ ଚାଲିଚଳଣ କଥାବର୍ତ୍ତାରେ ବିଶେଷ କିଛି ଲକ୍ଷ୍ୟ କରିଛନ୍ତି କି ?''

''ସନ୍ଦେହ କାହିଁକି କରିବି ? ତେବେ ମାନୁଛି ଯେ ତା' ବିଷୟରେ ମୁଁ ବିଶେଷ କିଛି ଜାଣିପାରିନାହିଁ । ତାର କାରଣ ହେଲା ଯେ, ମୁଁ ତାକୁ ପଚାରିନାହିଁ କି ସେ ବି ମୋତେ କିଛି କହିନାହିଁ । ଆପଣ ତା ବିଷୟରେ ମୋତେ କାହିଁକି ଜେରା କରୁଛନ୍ତି ?''

''ତା ପାଖରୁ ହିଁ ଆପଣଙ୍କ ଖବର ମିଳିଲା ତ । ଚିନ୍ତା ନାହକର ନିଜର ଉପାର୍ଜନ ନାହିଁ, ଅଥଚ ସେ ଭଲ ଖାଇ ପିନ୍ଧି ଚଳେ । ଘରଟାଏ ବି ନେଇଚି ଭଡ଼ାରେ । କୋଉଠୁ ପଇସା ପାଏ ? ସେ ଯା ନାଁରେ ତା' ନାଁରେ ପଇସା ଚାନ୍ଦା କରେ । ସେଥିରେ କିନ୍ତୁ ସେ ସେମିତି ଚଳିପାରନ୍ତା ନାହିଁ । ସେ ଏଇଠି ବହୁ ପ୍ରକାର ଲୋକଙ୍କ ଘରକୁ ଯାଏ ଏବଂ ବେଳେବେଳେ କୁଆଡ଼େ ହଠାତ୍ ଚାଲିଯାଏ ଆଠ-ଦଶ ଦିନ ପାଇଁ । ଆମେ ତା' ବିଷୟରେ ଅଧିକ ଜାଣିବାକୁ ଚାହୁଁଛୁ । ତାର ଚାଲିଚଳଣ ଆମକୁ ସନ୍ଦେହଜନକ ମନେ ହେଉଛି ।''

ମୁଁ ସେମାନଙ୍କୁ ଆଉ କିଛି କହିବା ଉଚିତ ମଣିଲିନାହିଁ ।

ସେମାନେ ଚାଲିଗଲେ ।

ବସିର ମିଆଁ କଥା ତ' କାହିଁ ଆଦୌ ଉଠେଇଲେ ନାହିଁ ?

ଚିନ୍ତା ନାହାକ ଉପରେ ତା'ହେଲେ ପୁଲିସ୍‌ର ଦୃଷ୍ଟି ଅଛି । ସେଇଟା କ'ଣ ତା'ହେଲେ ଯାହା ଦିଶେ ତାହା ନୁହେଁ । ତା' ଚେହେରା, ତା କହିବା ଭଙ୍ଗୀ ଗୋଟାଏ ଖୋଳ ?

ସେ କ'ଣ ବିଦେଶୀ ଗୁପ୍ତଚର ?

ସେ କ'ଣ ସନ୍ତ୍ରାସବାଦୀ ? ସ୍ମଗ୍ଲର୍ ?

ସତେତ' ! ତା'ର ଉପାର୍ଜନ କ'ଣ, ସେ କେମିତି ଚଳୁଚି ? ତାକୁ ମୁଁ ବା କେତେଦିନ ହେଲା ଜାଣିଚି ? ଏଇ ପାଞ୍ଚ-ଛ' ମାସ ! ତା' ପୂର୍ବରୁ ସେ କୋଉଠି ଥିଲା ମୁଁ କହିପାରିବି ନାହିଁ । ତା' ସାଙ୍ଗେ ତ' ମୋର ଦେଖା ହେଇନାହିଁ । ମୁଁ କହିବି କେମିତି ?

ତଥାପି ଲୋକଟାକୁ ଟିକିଏ ଦୂରରେ ରଖିଲେ ଭଲ ।

ତା'ର ଦୁଇଦିନ ପରେ ସେ ପୁଣି ହଠାତ ଆସି ପହଞ୍ଚିଲା । ମୋତେ କିଛି ସମୟ ଧରି ଚାହିଁଲା ନୀରବରେ ।

ମୁଁ ତା'ର ସେ ମୁହଁକୁ ଚାହିଁ ପୁଣି ଦ୍ରବିଭୂତ ହେଲି । ସେ ବୋଧେ ସେତକ ପାଇଁ ଅପେକ୍ଷା କରିଥିଲା ।

କହିଲା – "ପୁଲିସ୍ ଆପଣଙ୍କୁ ଆସି ହଇରାଣ କଲେ ସାର୍, ମୁଁ ସେଥିପାଇଁ କ୍ଷମା ମାଗୁଛି । ସେମାନେ କିନ୍ତୁ ବସିର୍ ମିଆଁକୁ ନେଇଗଲେ ସାର୍, କୁଆଡ଼େ ନେଲେ କହିପାରିବି ନାହିଁ ।

ମୁଁ ପଚାରିଥିଲି – "ଆରେ ବସିର୍‌କୁ ସେମାନେ କାହିଁକି ନେଲେ ?" ଚିନ୍ତା ଚଟ୍‌କିନା ମୋ' ଆଖିକୁ ଚାହିଁ ତଳକୁ ମୁହଁ କରିନେଲା ।

"କେଜାଣି ସାର୍ । ଆପଣ ତାଙ୍କୁ କ'ଣ କହିଲେ ବୋଧେ ।"

"ଆରେ ମୁଁ ତାଙ୍କୁ କ'ଣ କହିବି, ସେମାନେ ତା' କଥା ମୋତେ ପଚାରିଥିଲେ ସିନା କହିଥାନ୍ତି ।

"ଓ, ମୁଁ ଭାବିଥିଲି ସେମାନେ ଆପଣଙ୍କୁ ତା' କଥା ପଚାରିବାକୁ ଆସିଥିଲେ ।"

ମୋର ମନେହେଲା ଚିନ୍ତା ଟିକିଏ ଉଦ୍‌ବିଗ୍ନ ଜଣାଗଲା ।

ମୁଁ ଅତର୍କିତ ଭାବରେ ପଚାରିଲି – "ଆଚ୍ଛା ଚିନ୍ତା ! ତୁ' କରୁ କ'ଣ ? ଚଳୁ କେମିତି ?

ସେ କିଛି ନ କହି ମୋ ମୁହଁକୁ କେବଳ ଚାହିଁଲା ।

"ତୁ ଏଠିକି ଆସିବା ଆଗରୁ କୋଉଠି ଥିଲୁ ? – ତୁ ମଝିରେ ମଝିରେ କୁଆଡ଼ ଆଠ-ଦଶ ଦିନ ପାଇଁ ଚାଲି ଯାଉଛୁ ?"

ସେ କିଛି ନ କହି ଆସ୍ତେ ତଳକୁ ଚାହିଁ ପାଦ କାଢ଼ିଲା ।

"ଆରେ କିଛି କହିଲୁନାଇଁ ଯେ ।"

"ଥାଉ ସାର୍, ମୋ' ବିଷୟରେ ଜାଣି ଆପଣଙ୍କ ଲାଭ କ'ଣ ? ମୁଁ ବସିର୍ ମିଆଁକୁ ଖୋଜିବାକୁ ଯାଉଛି । ନିର୍ଦ୍ଦୋଷକୁ ସନ୍ଦେହ କରିବା, ତାକୁ ଅସହାୟ ଦେଖି ଦଣ୍ଡ ଦେବା କ'ଣ ଆପଣମାନଙ୍କର ବିଧି ?"

ମୁଁ ପୁଣି ତା' କଥାରେ ପରାସ୍ତବୋଧ କଲି, ଚହଲିଗଲି ।

"ଆରେ ମନ କଷ୍ଟ କଲୁକି ଚିନ୍ତା, ମୁଁ ଖାଲି ଏମିତି ଜାଣିବାକୁ ଚାହିଁଥିଲି ?"

"ନାଇଁ ସାର୍ । ଆପଣ କାହିଁକି ଜାଣିବାକୁ ଚାହୁଁଛନ୍ତି ମୁଁ ବୁଝିପାରୁଛି । ଆମଭଳି ଛୋଟ ମଣିଷଟିଏ ବଞ୍ଚିଯିବା ଭାରି କଷ୍ଟ । ବଞ୍ଚିଗଲେ ଆପଣମାନଙ୍କୁ ସବୁବେଳେ ତାକୁ କୈଫିୟତ ଦବାକୁ ପଡୁଥାଏ ସେ ବଞ୍ଚିଲା କାହିଁକି ଓ କେମିତି ?"

"ଆରେ ନାହିଁ, ମୁଁ ତତେ କୌଣସି କୈଫିୟତ୍ ମାଗୁନାହିଁ ।"

"ମାଗନ୍ତୁ ସାର୍ । ମାଗିବା ଆପଣଙ୍କ ଅଧିକାର । ଆପଣଙ୍କୁ ସନ୍ତୁଷ୍ଟ କରିବା, ସନ୍ତୁଷ୍ଟ କରି ରଖିବା ଆମର ଦାୟିତ୍ୱ । ଶୁଣନ୍ତୁ ସାର୍, ଗୋଟିଏ କୈଫିୟତ୍ । ମୁଁ

ପାହିରେ ମଝିରେ ସୁବର୍ଣ୍ଣପୁର ଗାଁଏ । ସେଇଠି ମୋ ଧରମ ମା' ଅଛି । ତା' କଥା ଧୁକ୍ଧୁକି କରିଦେଇ ଥାଏ । ଏଇଠି ବିଡ଼ି ବଳିବା କାମ କରେ, ରାତିରେ । ଦିନବେଳେ ଅନ୍ୟ କାମ ଲାଗିଯାଏ, ଦେଳ ଅଣ୍ଟେନାହିଁ ! – ମୁଁ ନିଜେ ନିଆଁରେ ଜଳି ଜଳି ପୋଡ଼ାଖୁଣ୍ଟା ହୋଇଯାଇଚି । ଆଉ କାହା ଦୁଃଖ ଦେଖିଲେ ସହିପାରେ ନାହିଁ ।''

କେଜାଣି କାହିଁକି ମୁଁ ତା' ପିଠିରେ ହାତ ରଖିଦେଲି । ଆସ୍ତେ କଢ଼େଇନେଲି ବଗିଚାକୁ । ଓ୍ଵିଲୋ ଗଛ ତଳର ବେଞ୍ଚ ପାଖକୁ । ସେ ଘାସରେ ହିଁ ବସିଗଲା ।

ମୁଁ ସିମେଣ୍ଟ ବେଞ୍ଚରେ ନ ବସି ତା' ସାମ୍ନାରେ ଘାସ ଉପରେ ବସିଲି । ସେ ପ୍ରଥମେ ସଙ୍କୋଚ କଲା । ତା'ପରେ ସହଜ ହୋଇଗଲା ।

ମୁଁ ତୋ ମନରେ ଆଘାତ ଦେବାପାଇଁ ପଚାରି ନଥିଲି । ମୁଁ ତତେ ଏକ ପ୍ରକାର ଭୁଲ୍ ବୁଝିଯାଇଥିଲି ।

ସେ ମୋ' ଆଖିକୁ ଚାହିଁଲା । ମୁଁ ଚୁପ୍ ହେଇଗଲି ।

''ମୋର ନିଜର ମା'ଟିଏ ଥିଲା, ଭଉଣୀଟିଏ ଥିଲା । କଂକ୍ରିଟ୍‌ର ହ୍ୟୁମ୍ ପାଇପ୍‌ଟାଏ ଭିତରେ ଆମେ ରହୁଥିଲୁ । ଦିନେ ସକାଳୁ ଦେଖିଲାବେଳକୁ ମୋ ମା' ସେଇଠି ନଥିଲା । ମୋତେ ପାଞ୍ଚବର୍ଷ, ମୋ ଭଉଣୀକୁ ତିନି ବର୍ଷ । ଆମେ ଖୁବ୍ କାନ୍ଦିଲୁ । ଖୁବ୍ ଡାକିଲୁ କେହି ଶୁଣିଲେ ନାହିଁ ।''

ସେ ଥମିଗଲା । ତା' ସ୍ୱର ତେଣିକି ଖୁବ୍ ଦୂରରୁ ଶୁଣାଗଲା ।

''ଦିନେ ମୋ' ଭଉଣୀ ବିନିକୁ ଜର । ସେଦିନ ହୋଟେଲ ବନ୍ଦ । ବାହାର ଅଇଁଠା ଡ୍ରମ୍‌ରେ କୁକୁର ବେଢ଼ି ରହିଥାନ୍ତି । କିଛି ଖାଇବାକୁ ନ ଥାଏ । ମୁଁ ଭାବୁଥାଏ ଯେ ବିନିକୁ କେବଳ ଭୋକ କରୁଚି । ଟିକିଏ ଖାଇଦେଲେ ସେ ଭଲ ହେଇଯିବ । ମୁଁ ଏମିତି ରାସ୍ତାକୁ ଚାହିଁଲାବେଳକୁ ଗୋଟାଏ ବାବୁ ପଇଡ଼ ପିଇ ଫୋପାଡ଼ି ଦେଲା । ମୁଁ ଦୌଡ଼ିଗଲି ଗୋଟେଇବାକୁ । ସେତେବେଳକୁ ଆଉ ଦୁଇଟି ପିଲା ଝପଟି ଆସିଲେ । ମୁଁ ସେମାନଙ୍କ ସାଙ୍ଗରେ ପ୍ରାଣପଣେ ଲଢ଼ିଲି । ସେମାନେ ମୋ'ଠୁଁ ଛଡ଼େଇ ପାରିଲେ ନାହିଁ । ମୋତେ କିନ୍ତୁ ରାମ୍ପୁଡ଼ି ବିଦାରି ପକେଇଲେ । ପଇଡ଼ବାଲା ଖେଦି ଆସିବାରୁ ପଳେଇଲେ । ମୁଁ ସେ ପଇଡ଼କୁ ଆଣି ପଥରରେ ଛେଚିଲି । ଛେଚି ଛେଚି ହାଲିଆ ହେଇଗଲି । ତା' କଣାରେ ଟିପ ଗଳେଇ ଦେଖିଲି ଯେ ସେ ଭିତରେ ଶସ ଅଛି । ମୁଁ ଲାଗିପଡ଼ି ତାକୁ ଫଟେଇଲି, ତା' ଭିତରୁ ଲହୁଣୀ ଭଳି ଥୋଲାଏ ବାହାରିଲା । ତାକୁ ରାମ୍ପି ଆଣି ବିନି ପାଟିରେ ଦେଲି । ବିନି ତାକୁ ଖାଇ ମୋତେ ଚାହିଁ ହସିଲା । ସେଇ ରାତିରେ ବିନି ମରିଗଲା ।

ମୁଁ ତାକୁ ସେଇଠି ତା' କନା ଘୋଡ଼େଇ ଦେଇ ଚାଲିଗଲି ।

ମୁଁ ତିନିଦିନ ନଖାଇ ନପିଇ ବୁଲିଲି ଆଉ କାନ୍ଦିଲି । ଏଇ ସୁବର୍ଣ୍ଣପୁର ମା' ମତେ ଖାଇବାକୁ ଦେଲା । ପାଖରେ ରଖିଲା, ପାଳିଲା । ସେ ଏବେ ଅପାରଗ ହୋଇଗଲା । ମୁଁ ତା' କଥା ବୁଝିବାକୁ ଚାଲିଯାଏ ।

ମୋ ଉପରେ ସେତେବେଳକୁ ପାହାଡ଼ ମଡ଼େଇ ହୋଇଯାଇଥାଏ ।

ମୁଁ ଚିନ୍ତା ନାହାକକୁ ଚାହିଁପାରୁ ନଥାଏ ।

ସେ ବି ଚୁପ୍ ହେଇଯାଇଥାଏ । ଆମ ମୁଣ୍ଡ ଉପରେ ଓ୍ବିଲୋ ଗଛର ଡାଳ ଲୁହ ଥୋପା ପରି ଓହଳି ରହିଥାଏ ।

ମୁଁ ମନେ ମନେ ସ୍ଥିର କରୁଥାଏ ଯେ ଯଦି ସେ ପୁଲିସ୍‌ବାଲା ପୁଣି କେବେ ଆସନ୍ତି ତାକୁ ସବୁ କହି ତାଙ୍କ ଭ୍ରମ ଦୂର କରିବି – ସେମାନଙ୍କୁ ଭଲକରି ଦି'ପଦ ଶୁଣାଇଦେବି । ନାଲାଏକ ଲୋକଗୁଡ଼ାକ. ବିନା କାରଣରେ ଗୋଟାଏ ନିର୍ଦ୍ଦୋଷ ମଣିଷ ପଛରେ ଲାଗିଛନ୍ତି ।

ଚିନ୍ତା ନାହାକ ମୋ ମନ କଥା ଜାଣିଲା ପରି କହିଲା –

''ଏଠି ଓ ସହରରେ ଲୋକଙ୍କୁ ଚିହ୍ନିବା କଷ୍ଟ । ସେମାନେ ଘଡ଼ି ଘଡ଼ିକେ ଆନ ଆନ ଦେଖାଯାନ୍ତି । ମୋ ଆଖିରେ କେତେ କଥା ପଡ଼ିଚି । ବଡ଼ ଲୋକଙ୍କ କଥା ସେମିତି ହେଇଥିବ ପରା ଭାବି ମୁଁ ଦେଖି ନ ଦେଖିଲାପରି ଥାଏ । ରାତିରେ ପିଣ୍ଡାରେ ବସି ବିଡ଼ି ବଳିଲାବେଳେ ମୁଁ ଦେଖିଚି ନିର୍ଜନ ରାସ୍ତାରେ କିଏ ଯାଏ କିଏ ଆସେ । ରାତି ଅନ୍ଧାରରେ ସେମାନେ ଲୁଚି ଲୁଚି ଢେର୍ କଥା କହନ୍ତି । – ମୁଁ ସେତେବେଳେ ଚୋରକୁ ଦେଖିଚି । ପୁଲିସ୍‌କୁ ବି ଦେଖିଚି । ଦୁହିଁଙ୍କୁ ଏକାଠି ଗଛମୂଳ ଅନ୍ଧାରରେ ଠିଆହେବାର ଦେଖିଛି । ମୋର ଅଭ୍ୟାସ ହେଇଗଲାଣି ମୁଁ ଆଖି ବୁଜି ବିଡ଼ି ବଳିପାରେ । ଅନ୍ଧାରରେ ହିଁ ମୁଁ ବସି କାମ କରୁଥାଏ ସେଇଠୁ ମୁଁ ସବୁ ଦେଖେ । ମୋତେ କେହି ଦେଖି ପାରନ୍ତିନାହିଁ । ସେଦିନ ଗୋଟାଏ ବିଡ଼ି ପିଇବାକୁ ମୁଁ ଲଗେଇଦେଇଚି ସେ ପୁଲିସ୍‌ବାବୁ ଝପଟି ଆସିଲା । ମୋତେ ଥାନାକୁ ଭିଡ଼ିନେଇ ନାନା କଦର୍ଥନା ଦେଲା । ତା'ର ଡର ମୁଁ କୁଆଡ଼େ ତା' ଗୁମର ଅନ୍ୟ କାହାକୁ କହିଦେବି । ସେ ମୋ ପିଛା ଲାଗିଛି ମୋ ମୁହଁ ବନ୍ଦ କରିବାପାଇଁ ।

ଚିନ୍ତା ନାହାକ ମନକୁ ମନ ହିଁ କଥା ହଉଥିଲା ସେମିତି । ସେ କାହାକୁ କିଛି କହେନାହିଁ । ମତେ ବି କିଛି କହିନଥିଲା । କିନ୍ତୁ ସେଦିନ କଥା ନିଆରା ।

ସେ ଉଠିଲା । ବସିର୍ ମିଆଁକୁ ଠାବ କରିବ । ତାକୁ ମୁକୁଳେଇବ ଏଇଟାହିଁ ଚିନ୍ତା ନାହାକର ସଂକଳ୍ପ ।

ସେ ଚାଲିଯିବା ପରେ ବି ମୁଁ ସେଇଠି ବସି ରହିଲି ଅନେକ ବେଳ ଯାଏଁ – ବାରମ୍ବାର ତା' କଥା ମନେପଡ଼ିଲା, ବାରମ୍ବାର ମୁଁ ବିଚଳିତ ବୋଧ କଲି । ଘରକୁ ଆସିବା ପରେ ମଧ ମୋ ଚେତନା ଆଛନ୍ନ ଥିଲାପରି ମୋର ବୋଧ ହେଲା ।

ମୁଁ ତା' ଆର ଦିନ ସ୍ଥିର ରହିପାରିଲି ନାହିଁ । ଉପରଓଳି ଫୋନ୍ କଲି । କହିଲି – ''ମୁଁ ଗୌରାଙ୍ଗ ରାୟଗୁରୁ । ମୋ ପାଖକୁ ଦୁଇଜଣ ସାଦା ପୋଷାକଧାରୀ ପୁଲିସ୍ ଚିନ୍ତା ନାହାକ ବିଷୟରେ ଲୋ [illegible] ଆସିଥିଲେ । ମୁଁ ସେମାନଙ୍କୁ କହି [illegible] ଅଛି ।''

ଆର ପାଖରୁ କିଏ ଜଣେ କହିଲା – "ଆଚ୍ଛା ଠିକ୍ ଅଛି । ଆପଣ ଅଧଘଣ୍ଟା ଅପେକ୍ଷା କରନ୍ତୁ ।"

ସତକୁସତ ଅଧଘଣ୍ଟା ଭିତରେ ଗୋଟାଏ କଳାକାଚ ଲାଗିଥିବା କଳା ଆମ୍ବସେଡ଼ର ଗାଡ଼ି ଆମ ଦୁଆରେ ଆସି ଲାଗିଲା । ସେଥିରୁ ଦୁଇଜଣ ପୁଲିସ୍ ପୋଷାକରେ ଓହ୍ଲେଇଗଲେ । ଗାଡ଼ି ଚାଲିଗଲା ନିଃଶବ୍ଦରେ ।

ସେମାନେ ମୁଣ୍ଡରୁ ଟୋପି କାଢ଼ି ଅଭିବାଦନ ଜଣାଇଲେ ।

ମୁଁ ସେମାନଙ୍କୁ ଚିହ୍ନିଲି । ଆଶ୍ୱସ୍ତ ବୋଧ କଲି ।

ସେମାନେ ବସୁ ବସୁ ଆରମ୍ଭ କଲେ –

"ଆପଣ ବସିର୍ ମିଆଁର ସନ୍ଧାନ ପାଇଲେ କି ?"

ମୁଁ ବୋଧେ ଆକାଶରୁ ଖସିପଡ଼ିଲି । ଏ ପୁଣି କିଏ ?

ମୁଁ ଆବାକାବା ହେଇ ତାକୁ ଅନେଇବାର ଦେଖି ସେମାନେ ପରସ୍ପରକୁ ଚାହିଁଲେ । ଜଣେ ଜଣକୁ ବୋଧହୁଏ ଆଖିରେ ଠାରିଦେଲା ।

ସେ ମୋ ପାଖକୁ ଲାଗିଆସି ଫିସ୍‌ଫିସ୍ କହିଲା –

"ଚିନ୍ତା ନାହାକ ହିଁ ବସିର୍ ମିଆଁ । ଚିନ୍ତା ନାହାକ ତା'ର ଛଦ୍ମନାମ ।"

ମୋ ନିଃଶ୍ୱାସ ବନ୍ଦ ହେଇଗଲା । ପାଟି ଓହଳିଗଲା । ଆଖି ତରାଟି ହୋଇଗଲା ।

ମୋ ତୁଣ୍ଡରୁ ଗୋଟାଏ ଶବ୍ଦ ବାହାରିଗଲା – "ଇମ୍ପସିବଲ୍ ।"

କହିବା ଲୋକଟି ଅଳ୍ପ ହସି ଘୁଞ୍ଚିଗଲା ।

ସେମାନେ ବୋଧେ ଏଇଭଳି ପ୍ରତିକ୍ରିୟା ପାଇଁ ପ୍ରସ୍ତୁତ ଥିଲେ ।

ଆରଜଣକ ସ୍ୱାଭାବିକ ସ୍ୱରରେ କହିଲା – "ଏବେ ଆପଣ ଚିନ୍ତା ନାହାକ ବିଷୟରେ କ'ଣ କହିବାକୁ ଚାହାଁନ୍ତି କୁହନ୍ତୁ ।"

ମୋତେ ଆଫା ଆଫା ଲାଗିଲା । ମୋ ତୁଣ୍ଡରୁ ବଚନ ସ୍ଫୁରିଲାନାହିଁ । ମୁଁ କେବଳ ଦୋହରାଇଲି – "ଇମ୍ପସିବଲ୍ ।"

ସେ ଦୁହେଁ ଖୁବ୍ ଆମୋଦିତ ବୋଧ କରୁଥିଲେ ।

ମୁଁ କିଛି ସମୟ ଦମ୍ ନେଲାପରେ କହିଲି – "ଆପଣମାନେ ବୋଧହୁଏ ଭୟଙ୍କର ଭୁଲ୍ କରି ବସିଛନ୍ତି । ଚିନ୍ତା ନାହାକ ଓଡ଼ିଆ ପିଲା । ଜୀବନରେ ଖୁବ୍ କଷ୍ଟ ପାଇଛି । ସେ ଅନ୍ୟର ଦୁଃଖ ଦେଖିଲେ ସହିପାରେ ନାହିଁ । ବସିର୍ ମିଆଁକୁ ଆପଣ କୁଆଡ଼େ ନେଇଯାଇଛନ୍ତି । ସେ ତାକୁ ମୁକୁଳେଇବାକୁ ଚାହେଁ । ସେ ଖୁବ୍ ଇମାନଦାର ପିଲା । ରାତିରେ ବିଡ଼ି ତିଆରି କରି ରୋଜଗାର କରେ । ସୁବର୍ଣ୍ଣପୁରରେ ତା ପାଳିତା ମା'କୁ ଦେଖିବାକୁ ଯାଏ । ତା'ର ସମସ୍ତଙ୍କୁ ସେ ହରାଇଛି ।"

ସେମାନେ ମୋତେ ଚାହିଁ ମୁଚ୍‌ମୁଚ୍ ହସିବାରୁ ମୁଁ ନିରୁତ୍ସାହିତ ବୋଧ କଲି । ଆଉ କିଛି କହିପାରିଲି ନାହିଁ ।

ତାଙ୍କ ଭିତରୁ ଜଣେ କହିଲା – ''ତା ଭଉଣୀ ବିନି ମରିଯିବା କାହାଣୀ ଆପଣ ଜାଣିନାହାନ୍ତି ନା' କ'ଣ । ଖୁବ୍ ପାୱାରଫୁଲ୍ କାହାଣୀ । ସେ ଅଇଁଠା ପଇଡ଼ କଥା ବାକି ବ୍ଲା ବ୍ଲା ?''

ମୁଁ ସଂପୂର୍ଣ୍ଣ ବିମୂଢ଼ ହୋଇ ତାକୁ ଚାହିଁଥାଏ । ମୋ ଭିତରେ କ'ଣ ସବୁ ବିଧ୍ୱସ୍ତ ହୋଇଯାଉଥାଏ ଭୂମିକମ୍ପରେ ।

''ଶୁଣନ୍ତୁ ରାୟଗୁରୁ ସାହାବ । ଆମେ ବସିର୍ ମିଆଁ ବିଷୟରେ ଅନେକ ଖବର ନେଇସାରିଛୁ । ସେ ହୁଏତ ଆପଣଙ୍କୁ କହିଥିବ ଯେ ତାକୁ ବାଂଲାଦେଶୀ ବୋଲି ଆମେ ସନ୍ଦେହ କରୁଛୁ । ପ୍ରକୃତରେ ତା ନୁହେଁ । ସେ ଉତ୍ତର ବାଲେଶ୍ୱର ବାସିନ୍ଦା । ସେ ଏଠି ବାଂଲାଦେଶ ତରଫରୁ ଗୋପନ କର୍ମ କରୁଛି ବୋଲି କିଛି କିଛି ଅନୁମାନ କରାଯାଉଛି ।

ମୁଁ ବାଧା ଦେଲାପରି କହିଲି – ''ସେ ବସିର୍ ମିଆଁ ମୋ ସାଙ୍ଗରେ ସାକ୍ଷାତ୍ ପରିଚୟ କରାଇଛି । ମୁଁ ତାକୁ ଦେଖିଛି, ତା ସାଙ୍ଗେ କଥା ହେଇଚି ।''

''ସେ ଲୋକଟା ତାର ସହଯୋଗୀ । ସେ ନିଜେହିଁ ବସିର୍ ମିଆଁ ।'' ମୋ ପାଟି ଅଠାଅଠା ହୋଇଯାଉଥାଏ । ଆଦୌ ବିଶ୍ୱାସ ହେଉନଥାଏ ସେମାନଙ୍କ କଥାରେ । ଚିନ୍ତା ନାହାକର ଚେହେରା ତା ସ୍ୱର ମନେପଡୁଥାଏ, ମନ୍ଥି ହୋଇଯାଉଥାଏ ଭିତର ।

''ଶୁଣନ୍ତୁ, ସେ ବୋଧହୁଏ ଆପଣଙ୍କ ପାଖକୁ ଆସନ୍ତା କାଲି ସଞ୍ଜବେଳେ ଆସିପାରେ । ସଶସ୍ତ୍ର । ଆପଣ ସାବଧାନ ଥିବେ । ଆମକୁ ଫୋନ୍ କଲାପରେ କବାଟ ଖୋଲିବେ । କାଲି ବୋଧେ ଏ ନାଟକର ଶେଷ ଦୃଶ୍ୟ ।''

ସେମାନେ ଚାଲିଗଲେ ।

ମୁଁ କ୍ଳାନ୍ତ ଘର୍ମାକ୍ତ ହୋଇ ସୋଫା ଉପରେ ପଡ଼ିରହିଲି ସନ୍ଧ୍ୟାବେଳଯାଏ ।

ଜଣାଯାଉଥିଲା ମୋତେ ସେ ସମସ୍ତ ବ୍ୟାପାର ।

ଗୋଟିଏ କଥା ମୋତେ ବାରମ୍ବାର ବ୍ୟଥିତ କରୁଥିଲା । ଚିନ୍ତା ନାହାକ ଓରଫ୍ ବସିର୍ ମିଆଁ କାହିଁକି ମୋତେ ବାଛିଲା ତା' ସହିତ ଜଡ଼ିତ ହେବାପାଇଁ ? ମୁଁ ତାକୁ ବିଭିନ୍ନ ସମୟରେ ଚାନ୍ଦା ଦେଇଛି । କେବେ କାହା ରୋଗିଣା ପିଲାପାଇଁ ଔଷଧ ଦେଇଛି । କେବେ ବେଓ୍ୱାରିସ୍ ଶବ ସତ୍କାର ପାଇଁ ମଶାଣି ଖର୍ଚ୍ଚ । କେବେ କାହା ଝିଅ ବିଭାରେ ଭୋଜି ଖର୍ଚ୍ଚ । ଏମିତି କେତେ କ'ଣ ?

ଧରାଯାଉ ସେ ପଇସା ସେ ଠକି ନେଇଚି ।

ଏତେଦିନ ପରେ ସେ ତା' ଜୀବନର ଦୁଃଖ କାହାଣୀ କହିଲା ।

ଜଣେ କ'ଣ ମନଗଢ଼ା ଏମିତି କାହାଣୀ କହିପାରେ ?

ଏତେ ଜୀବନ୍ତ ଅଭିନୟ କରିପାରେ ?

ଏ କାହାଣୀ ସେ ଆଉ କାହାକୁ ବି ନିଶ୍ଚୟ କହିଚି । ନ ହେଲେ ପୁଲିସ୍ କେମିତି ଜାଣିଥାନ୍ତା ?

ମୁଁ ବେଳକୁବେଳ ବେଶୀ ଅସ୍ୱସ୍ତି ବୋଧ କଲି । ବସିର୍ ମିଆଁ କାହାଣୀ ମୋତେ

ହତବାକ୍ କରିଦେଇଥିଲା । ମୁଁ ଦୁଇଭାଗ ହୋଇଯାଇଥିଲି । ଗୋଟାଏ ଭାଗ ଚିନ୍ତା ନାହାକ ପାଇଁ ବେଦନାର୍ତ୍ତ, ଅନ୍ୟ ଭାଗଟି ପୋଲିସ୍ କାହାଣୀରେ ବିମୂଢ଼ ଚକିତ ।

ଏତେ ଉତ୍କଣ୍ଠା ନେଇ ମୋତେ ଆଉ ୨୪ ଘଣ୍ଟା ବଞ୍ଚିବା ଅସମ୍ଭବ ମନେ ହେଉଥିଲା । ମୁଁ ବୋଧେ ବିଦୀର୍ଣ୍ଣ ହୋଇଯିବି । ମୁଁ ପୁଅ ପାଖକୁ ଫୋନ୍ କଲି । ତା' ମା'କୁ ନେଇ ଆରଦିନ ସକାଳୁ ଆସିବାକୁ । ଏକୁଟିଆ ରହିବାକୁ ମୋର ସାହସ ହେଲାନାହିଁ । କେଜାଣି କ'ଣ ହେଇଯିବ କାଲି ସନ୍ଧ୍ୟା ପୂର୍ବରୁ ।

ତା' ଆରଦିନ ଘୋର ଉଦ୍‌ବେଗର ସନ୍ଧ୍ୟା ଆସିଲା । କିନ୍ତୁ ପୁଅ କିମ୍ବା ତା' ମା' ଆସିଲେ ନାହିଁ । କ'ଣ ହେଲା କେଜାଣି ।

ମୁଁ ସ୍ଥିର ହୋଇ ରହିପାରୁ ନଥାଏ । ନାଁ ଘରେ ନାଁ ବାହାରେ । ଟିକିଏ ଶବ୍ଦରେ ଚମକି ପଡୁଥାଏ ।

ଆସ୍ତେ ଅନ୍ଧାର ଘନେଇ ଆସିଲା ।

ଖୁବ୍ ଦୂରରେ ମେଘ ଗୁମୁରେଇ ଡାକିଲା ।

ସ୍ତବ୍ଧ ହୋଇଗଲା ବଗିଚା ଘର ଆଉ ଚତୁର୍ଦ୍ଦିଗ ।

ମୋ' କପାଳରୁ ଟପ୍ ଟପ୍ ଝାଳ ନିଗିଡ଼ିଗଲା । ମୁଁ ବହୁତ କଷ୍ଟରେ ଫୋନ୍ ପାଖ ଚୌକିରେ କଣ୍ଟାଗଦାରେ ବସିଲାପରି ବସିଥାଏ ।

ଖୁବ୍ ଦୂରରୁ ବସ୍ତି ସେ ମୁଣ୍ଡରୁ ଗୋଳ ଶବ୍ଦପରି କ'ଣ ଶୁଣାଗଲା । ଅସ୍ପଷ୍ଟ କିନ୍ତୁ, ଶ୍ୱାପଦର ପାଦଶବ୍ଦ ପରି ରୋମାଞ୍ଚକାରୀ ।

ତା'ପରେ ଶୁଭିଲା ସେହିପରି ନିଆଁଲିଭାଳୀ ଗାଡ଼ିର ଘଣ୍ଟି । କୋଉଠି ବୋଧେ ନିଆଁ ଲାଗିଗଲା ।

ମୁଁ ଉତ୍କଣ୍ଠିତ ବୋଧ କଲି ।

ମୋର କାହିଁକି ମନେହେଲା ଯେ ଯାହା ଘଟିବାର ଥିଲା ବୋଧହୁଏ ଘଟିଗଲା । ଏଇଠି ଆଉ କିଛି ହେବାର ନାହିଁ କିମ୍ବା କେହି ଏଠିକି ଆସିବାର ନାହିଁ ।

ମୁଁ ଚଟାପଟ୍ ପିନ୍ଧାପିନ୍ଧି କରି ବାହାରିପଡ଼ିଲି ।

ଦାଣ୍ଡ କବାଟରେ ତାଲା ଦେଲାବେଳକୁ ମୋର ମନେହେଲା କେହି ଜଣେ ଛପ୍‌କିନା ମୋ ପାଖରେ ଠିଆହୋଇଗଲା ।

ମୁଁ ତାଲାରୁ ଚାବି କାଢ଼ିବା ଅବସ୍ଥାରେ କାଠ ହୋଇଗଲି ।

ହଠାତ୍ ବୁଲିପଡ଼ି ଦେଖିଲି କେହି ନାହିଁ ।

କବାଟକୁ ଆଉଜି ବୁକୁ ଦମଦମ୍‌ଟାକୁ ସମ୍ଭାଳିଲି ।

ତା'ପରେ ରାସ୍ତାକୁ ଟାଉଟାଉ ଆଗେଇଗଲି ।

ମୋ ପଛଟା ମୋତେ ମଡ଼େଇ ହେଲାପରି ଲାଗୁଥାଏ । ମୁଁ ବାରମ୍ବାର ଲେଉଟି ଚାହୁଁଥାଏ ।

ଗୋଟାଏ ରିକ୍ସା ବତୀଖୁଣ୍ଟ ପାଖକୁ ଆସିଲା ।

ମୋ ତାଳୁରୁ ତଳିପା ଯାଏ ବିଜୁଳୀ ମାରିଦେଲା, ଚିନ୍ତା ନାହାକ ?

ନାଁ ସେ ନୁହେଁ । କିନ୍ତୁ ଅଧା ଛାଇ ଆଲୁଅରେ ସେ ଅବିକଳ ସେମିତି ଦେଖାଗଲା ।

ବସ୍ତି ସେ ମୁଣ୍ଡକୁ ଚଞ୍ଚଳ ଚଲେଇବାକୁ କହିଲି ।

ରିକ୍ସା ଗହଳି ଭିତରେ ପଶିଲା । ରାସ୍ତାକାଟି ଚାଲିଥାଏ । ବଜାର ଭିତରେ ମୋତେ କିଛି ଦିଶୁନଥାଏ ।

ମୋଡ଼ ବୁଲିଲାବେଳକୁ ନିଆଁଧୂଆଁ ଆକାଶକୁ ଚହଟି ଉଠୁଥିବା ଦେଖାଗଲା ।

ତଳ ବସ୍ତିରେ ହିଁ ନିଆଁ ଲାଗିଥିଲା ।

ଝାଟିମାଟି ବାଉଁଶପଟିର ଝୁମ୍ପୁଡ଼ି ବସ୍ତି । ଜଳିପୋଡ଼ି ପାଉଁଶ ହୋଇଯାଇଥିବ ।

ଏଥିରେ ବସିର୍ ମିଆଁ ରହୁଥିଲା । ସେ କ'ଣ ନିଜେ ନିଆଁ ଲାଗିଦେଲା ? ଚିନ୍ତା ନାହାକ, ତା'ର ନୁଆଣିଆ ଛଳଛଳ ଆଖି – ସେ କ'ଣ ଏମିତି କରିଦେଇ ପାରିଲା ?

ଜଳାପୋଡ଼ା ପାଖକୁ ରିକ୍ସା ଯାଇପାରିଲା ନାହିଁ ଆଗକୁ ଅନ୍ତିବାଟ ଥିଲା: ମୋତେ ଓହ୍ଲେଇଦେଲା । ମୁଁ ସେଆଡ଼କୁ ଟାଉଟାଉ ଚାଲିଲି ।

ନିଆଁ ଲିଭାଳି ଲାଗିସାରିଥିଲେ ।

ମହୋତ୍ସବ ସରି ସାରିଥିଲା ।

ଗୋଟାଏ ପାଖରେ ଗହଳି ଦେଖି ସେଇଆଡ଼କୁ ଗଲି ।

ପୁଲିସ୍‌ବାଲା ଘେରି ରହିଥିଲେ ।

ମଝିରେ ଯେ ଭୂଇଁରେ ପଡ଼ିଥିଲା ତାକୁ ଦେଖି ମୁଁ ଚମକି ପଡ଼ିଲି ।

ସେଇତ ଚିନ୍ତା ନାହାକ ।

ତା' ମୁହଁଟା ଏମିତି ରକ୍ତରେ ଲତପତ କାହିଁକି ହୋଇଥିଲା ?

ଶୁଣିଲି ତାକୁ ସେମାନେ ଗୁଳିକରିଦେଲେ ।

ଶୁଣିଲି ସେ ଜଳନ୍ତା ଘରୁ ଗୋଟେ ଛୋଟ ଝିଅଟାକୁ ଧରି ବାହାରି ଆସୁଥିଲା । ସେ କୁଆଡ଼େ ହାତରେ ଗ୍ରନେଡ଼ ଧରିଥିଲା । ପିଲାଟାକୁ ଆଡୁଆଳ କରିଥିଲା, ନିଜେ ବଞ୍ଚିବାପାଇଁ ।

ଶୁଣିଲି, ପୁଲିସ୍‌ପକ୍ଷରୁ ସନ୍ଦେହ କରାଯାଇଥିଲା ଯେ ବସିର୍ ମିଆଁ ଗୋଟାଏ ମୁଖା ପିନ୍ଧିଥିଲା ।

ମୁଖା କାଢ଼ିବାକୁ ତା ମୁହଁଯାକ ସେମାନେ ଛେଲିପକେଇଛନ୍ତି । ନିଆଁରେ ଝଲସି ଯାଇଥିବା ବାଳ, ଆଉ ରକ୍ତ ସାଲୁବାଲୁ ମୁହଁରେ ଚିନ୍ତା ନାହକକୁ ମୁଁ ଚିହ୍ନିପାରୁ ନଥିଲି ।

ସେମାନେ କିନ୍ତୁ ଜୋର ଦେଇ କହୁଥିଲେ ଯେ ବସିର୍ ମିଆଁକୁ ସେମାନେ ଠିକ୍ ଚିହ୍ନିଛନ୍ତି । ତାକୁ ଗୁଳି କରିଛନ୍ତି । ତା' ହାତରୁ ଗ୍ରିନେଡ୍ ଉଦ୍ଧାର କରିଛନ୍ତି ।

ସତେ ?

ମୋତେ ସେମାନେ ରାଜସାକ୍ଷୀ କରି ଠିଆ କରେଇବେ । ମୁଁ କ'ଣ ସନାକ୍ତ କରିବି ? ମୁଁ କ'ଣ କହିପାରିବି ଯାହା ମୁଁ କହିବାକୁ ଚାହୁଁଛି ? ମୁଁ ହୁଏତ କହିବି ।

ଏ ରକ୍ତକୁ ଚିହ୍ନଟ କରୁଚି ଧର୍ମାବତାର । ଏଇଟା ଛେଳି ରକ୍ତ ନୁହେଁ ।

ସେ ଦରପୋଡ଼ା ବାଳକୁ ଚିହ୍ନଟ କରୁଚି, ନିଆଁକୁ ବି ଚିହ୍ନଟ କରୁଚି ।

ଏ ଗୁଳିକୁ ବି ଚିହ୍ନଟ କରୁଚି ଧର୍ମାବତାର । ଆପଣଙ୍କ ଏ ଶାନ୍ତିବାହିନୀକୁ ଚିହ୍ନଟ କରୁଚି ।

କିନ୍ତୁ ଏ ଲାୱାରିସ୍ ଲାସ୍‌କୁ ନୁହେଁ ।

□□□

# ସହଯାତ୍ରିକ

ସେଇଟା ଧର୍ମସଭା କି ସଙ୍ଗୀତସଭା ଠିକ୍ କରି କହିବା ସମ୍ଭବ ନୁହେଁ । ଗୋଟିଏ ଅନ୍ଧାରୁଆ ହଲ୍ ଭିତରେ ଫେଣ ବଜ୍‌ବଜ୍ ହୋଇ ଉତୁରି ପଡୁଥାନ୍ତି ଅସଂଖ୍ୟ ମଣିଷ । ଦୁମ୍‌ଦାମ୍ ପିଟାପିଟି, ଗଡ଼ାଗଡ଼ି, ପେଲାପେଲି, ଶୋଧାଶୋଧ୍ ତୁମୁଳ ହଟ୍ଟଗୋଳ ଚାଲିଥାଏ । ପିଲା, ବୁଢ଼ା, ମାଇକିନିଆ, ମରଦ, ଟୋକାଟୋକି ବିଭିନ୍ନ ପ୍ରକାରର ଚିତ୍କାର କରୁଥାନ୍ତି । ସମସ୍ତେ ଝାଳ ସରସର, ସମସ୍ତେ ବ୍ୟସ୍ତ, ଉଦ୍‌ବିଗ୍ନ, କ୍ଳାନ୍ତ ! – କେହି, କିନ୍ତୁ ସେଇଠୁ ବାହାରିଯିବାକୁ ଚେଷ୍ଟା କରୁ ନଥାନ୍ତି ।

ବଡ଼ ବି ପନ୍ନ ଜଣାପଡୁଥାଏ ସେ । ତା'ର ସ୍ନାୟୁଗୁଡ଼ିକ ବୋଧହୁଏ ଛିଣ୍ଡି ପଡ଼ିବେ । ଗୋଟାଏ ବିକଟ ଚିତ୍କାର କରି ସେ ମୂର୍ଚ୍ଛା ଯିବ ଏବଂ ଆଉ ଉଠିବ ନାହିଁ । କିନ୍ତୁ ସେଭଳି କିଛି ହେଲାନାହିଁ । ବରଂ ତୋବା ତୋବା ଶୂନ୍ୟ ଆଖିରେ ସେ କୌଣସି ସଚେତନ ରୋଗୀ ଭଳି ନିଜ ଅନ୍ତନାଳୀର ଅସ୍ତ୍ରୋପଚାର ଦେଖୁଥିଲା । ସେମିତି କେତେବେଳ ଧରି ଦେଖୁଥିଲା କେଜାଣି, କିନ୍ତୁ ସେ ଯେ ଖୋଲା ବିଦ୍ରୋହ କରି ପାରୁନଥିଲା, ଏକଥାଟି ନିରାଟ ସତ ।

ହଲ୍‌ର ଗୋଟିଏ ପ୍ରାନ୍ତରେ ହଠାତ୍ ଗୋଟାଏ କିଳିକିଳା ଶବ୍ଦ ଭିତରୁ କ'ଣଟାଏ ଉପରକୁ ଉଠିଗଲା । ଅନେକ ଜୟଜୟକାର ଭିତରେ ସେ ବ୍ୟୂହଭେଦକରି ଗୁଡ଼ାଏ ଫୁଙ୍ଗୁଳା ଭୋଟଦିଆ ହାତ ଉପରେ ଗୋଟାଏ ମଣିଷକୁ ଅନ୍ୟ ସମସ୍ତଙ୍କ ମୁଣ୍ଡ ଉପରେ ଗଡ଼େଇ ଅଣାଗଲା । ସେ ଖସିପଡୁଥାଏ । ଲେଉଟି ପଡୁଥାଏ । ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି ଓହଳି ପଡୁଥାଏ । ତାକୁ ଭିଣାଭିଣି କରି ଉଶ୍ୱାସ ତୁଳା କଣ୍ଢେଇଟିଏପରି ଆଣି ମଝିରେ ଛେଚି ଦିଆଗଲା । ''ସଭାପତିଙ୍କର ଜୟ'' ଚିତ୍କାର କଲା ସମଗ୍ର ହଲ୍ । କାନ୍ଥ ଚାରୋଟି ଏବଂ ଛାତ, ଖୁବ୍ ଅସହାୟ ଭାବରେ କମ୍ପିଲେ । ତୁଳା କଣ୍ଢେଇ ସେମିତି ଚିଙ୍ଗୁଡ଼ି ପରି ମୁଦା ହୋଇ ପଡ଼ିଥାଏ । ତାକୁ ପୁଞ୍ଜାଏ ହାତ ଏକଡ଼ ସେକଡ଼ କରି ଗଡ଼େଇଦେଲେ । ସେ ବି ନିର୍ବିରୋଧ ଗଡ଼ିଗଲା । ତା' ଆଖିଯୋଡ଼ିକ ସ୍ଥିର । ବୁକୁରେ ପବନ କେତେବେଳୁ ସରିଯାଇଛି । ସଭାପତିଙ୍କର ମୃତ୍ୟୁ କିଛି କମ୍ କଥା ନୁହେଁ । ଜୟ ଜୟକାର ଆହୁରି ତେଜିଲା । ସେ ଧୋବ ଧାଉଳିଆ ମୁର୍ଦ୍ଦାରଟିକୁ ସେ ଅନେଇ ରହିଲା । ପ୍ରାୟ ତା'ରି ପରି ଦିଶୁଥିଲା ସେ ମୁର୍ଦ୍ଦାର ।

ଚିପି ହୋଇ ଆସୁଥିବା ଚାପ ଭିତରୁ ସେ ଗୋଟାଏ ଛଲାଂ ମାଇଲା ଶୂନ୍ୟକୁ । ଚାରିଆଡୁ ଖୁନ୍ଦିହୋଇ ରହିଥିବା ଚିତ୍କାରଗୁଡ଼ାକ କାଦୁଅପରି ଆଡ଼େଇ ହୋଇଗଲା । ଗବ୍‌କିନା ପୁଣି ତା'ରି ଭିତରକୁ ସେ ଖସିଆସିଲା । ଏମିତି ବାରମ୍ବାର କରିବାଦ୍ୱାରା

ସେ ଆସ୍ତେ ଘୁଞ୍ଚିବାର ଅନୁଭବ କଲା । ଅନବରତ ସଂଘର୍ଷ ପରେ ପଶ୍ଚିମ କାନ୍ଥର ସେ ସରୁ ନିର୍ଗମ ପାଖରେ ପହଞ୍ଚିବାକୁ ତାକୁ ପନ୍ଦରବର୍ଷ ଲାଗିଗଲା ।

x x x ବାହାରକୁ ଆସିବାମାତ୍ରେ ଖପ୍‌କିନା ସେ ଘୋଡ଼ାଗାଡ଼ିଟି ଭିତରକୁ ପଶିଯାଇଥିଲା । ତାକୁ ଡର ନଥିଲା କିଛି ଦେଖିବାକୁ କିମ୍ବା ବୁଝିବାକୁ । ସେ ଚାହୁଁଥିଲା କେମିତି ସେଇଠୁ ପଳେଇବ । ଗାଡ଼ି ଭିତରେ କୁଢ଼େଇ ହେଲାପରି ସେ ବସିପଡ଼ିଲା । ତାକୁ କେହି କିଛି ପଚାରିଲେ ନାହିଁ । ଉଁ କି ଚୁଁ କିଛି ନାହିଁ । ଅନ୍ଧାରରେ ଗାଡ଼ି ଘୁଞ୍ଚିଲା । ଟାପୁଶବ୍ଦ ତାକୁ ଜଣାଗଲା ଅତି ଆପଣାର । କଲିଜାଟି ମଧ ତା'ରି ଛନ୍ଦରେ ଧପ୍ ଧପ୍ କଲା । ନିଃଶ୍ୱାସ ଚଳିଲା ସେଇଭଳି । ଅନ୍ଧାରରେ ସେ ଅନୁଭବ କଲା ଯେ ଆଉ ଚାରିଜଣ ଯାତ୍ରୀ ସେ ଗାଡ଼ିରେ ବସିଛନ୍ତି । ବେଶ୍ ଭଲକଥା । ସମସ୍ତେ ନୀରବ । କେବଳ ଘୋଡ଼ା ଚାଲୁଚି ବୋଲି ଟାପୁ ଶବ୍ଦଗୁଡ଼ିଏ କଉଡ଼ି ପରି ବୁଣି ହେଇଯାଉଚି ରାତିର କଳା ଗାଲିଚାରେ ।

ଏତେ କୋଳାହଳ ପରେ ଏତେ ନୀରବତା ପାଇଁ ସେ ପ୍ରସ୍ତୁତ ନଥିଲା । ମଣିଷ ସ୍ୱରରେ ଦି'ପଦ କଥା ଶୁଣିବାକୁ ତା'ର ପ୍ରବଳ ଇଚ୍ଛା ହେଲା । ସେ ଖୁସ୍‌ମୁସ୍ ହେଲା, ତା' ପଡ଼ିଶା ଯାତ୍ରୀଟି ପାଖକୁ ସାମାନ୍ୟ ଟିକିଏ ଘୁଞ୍ଚିଲା । ହାତ ବାଜିଗଲା ଶାଢ଼ୀରେ । ଚମକିଲା ପରି ସେ ଘୁଞ୍ଚି ଆସିଲା ପୂର୍ବାବସ୍ଥାକୁ । ଘୋଡ଼ା ଟାପୁ କିଛି ତେଜିଗଲା ତା' ରକ୍ତରେ । ସେ ନୀରବରେ ବସି କେବଳ ଛେପ ଢୋକିଲା । ଗାଡ଼ି ଚାଲିଥାଏ, ଆଗପାଖେ ତିନିଜଣ ବସିଥାନ୍ତି । ସେମାନେ ବି ନୀରବ । କିଏ ସବୁ ସେମାନେ ? ପଚାରିବା ଢଙ୍ଗରେ ସେ ଗୋଟିଏ ଖଣ୍ଡିକାଶ ଦେଲା । ପ୍ରତିଉତ୍ତରରେ କେହିହେଲେ କାଶିଲେ ନାହିଁ । ଏମାନେ ଗୁଡ଼ିଏ ମୁର୍ଦ୍ଦାର କି ? ସେ ଯଦି ତା' ପ୍ରତିବେଶିନୀ ସାଙ୍ଗରେ ଫିସ୍‌ଫିସ୍ କଥା କହେ, ସେମାନେ କ'ଣ ଶୁଣି ପାରିବେ ? ସେ କଚୁଆନ୍ ଶୁଣିପାରିବ ? ସେ ଘୋଡ଼ା ଶୁଣି ପାରିବ ? ...ସେ କିନ୍ତୁ ଶୁଣିପାରୁଥିଲା ସମସ୍ତଙ୍କର ଶ୍ୱାସପତନ । ମାଳି ଗଢ଼େଇଲା ପରି ଅନ୍ଧାର ଭିତରେ ସେ ଶୁଣି ପାରୁଥିଲା ତା' ପ୍ରତିବେଶିନୀର ଶହଶହ ନିଶ୍ୱାସ । ଘୋଡ଼ା ଟାପୁ କିନ୍ତୁ ଆଉ ଶୁଭୁ ନ ଥାଏ । ସେ ଟା ମିଶି ସାରିଥାଏ ଭିତରର ସ୍ପନ୍ଦନରେ । ଗାଡ଼ିଟି ଦୋହଲୁଥାଏ ଦୋଳିପରି ।

ଆଗପାଖ ବାଁ କୁଣରୁ ଛୋଟ କାଶଟିଏ ଶୁଭିଲା । ସେ ପ୍ରାୟ ଚମକି ପଡ଼ିଲା । ସେ ଜଣକ ନିଶ୍ଚୟ ତରୁଣୀ । ଗୋଟିଏ ଜିପ୍‌ପର ଖୋଲିବାର ଶବ୍ଦ ହେଲା । ବୋଧହୁଏ ଭେନିଟି ବେଗ୍‌ରୁ ରୁମାଲ ବାହାର କଲେ । ଆଧୁନିକାଙ୍କ ରୁଚି ଖୁବ୍ ମାର୍ଜ୍ଜିତ ନିଶ୍ଚୟ । ଜିପ୍‌ପର ବନ୍ଦ ହେଲା । ପୁଣି ସବୁ ନୀରବ !...

ସେ ତା' ଦି' ଆଣ୍ଠୁ ଉପରେ ହାତ ରଖି ଫଟୋ ହେବା ଭଙ୍ଗୀରେ ବସିଥାଏ । କାନଯୋଡ଼ିକ ଠିଆ ଠିଆ ଲମ୍ବିଯାଇଥାଏ ଗାଡ଼ିର ଛାତ ପର୍ଯ୍ୟନ୍ତ । ତା'ର କାହିଁକି ସନ୍ଦେହ ହେଲା ଯେ ସେମାନେ ସମସ୍ତେ ମହିଳା । ଆସ୍ତେ ଆସ୍ତେ ସେ ଭିନ୍ନ ଭିନ୍ନ ତେଲ ଏବଂ ପାଉଡ଼ରର ବାସ୍ନା ବାରି ପାରିଲା । 'ଓଲଡ୍ ସ୍ପାଇସ୍' ଝିଅଟି ଠିକ୍ ତା'

ପଛପଟେ । ମଝିରେ ଯେ ବସିଛନ୍ତି ସେ ନିଶ୍ଚୟ 'କାନ୍ଥାରାଡ଼ାଇନ୍' । ଯେ କାଶୁଥିଲା, ତା'ର ବାସ୍ନା ଅଚିହ୍ନା ଫୁଲପରି ମିଠା ମିଠା ଅଥଚ ଠଉରେଇବା କଷ୍ଟ । ତା'ର କାରଣ ହେଲା ଯେ ତା' ପାଖରେ ଯେଉଁ ନିର୍ଭୁଲ ଭାବରେ ଇଣ୍ଟିମେଟ୍ ଝିଅଟି ବସିଥିଲା ତା' ଦ୍ୱାରା ସେ ପ୍ରାୟ ଆଚ୍ଛନ୍ନ ହୋଇଯାଇଥିଲା । ସେ ପରିଚିତ ବାସ୍ନାର ବ୍ୟୂହ ଭେଦି ଆଉ କେହି ତା' ଘ୍ରାଣେନ୍ଦ୍ରିୟ ପାଖରେ ଅକ୍ଷୁଣ୍ଣ ପହଞ୍ଚି ପାରୁ ନଥିଲା ।

ସେ ମୁଗ୍ଧ ହୋଇ ଅନେକ ବେଳଯାଏଁ ଦୋଳିରେ ଝୁଲୁଥାଏ । ନୀରବ ବାସ୍ନା ଭିତରେ ପହରୁଥାଏ । ଆଚ୍ଛା, ଯଦି ଏମାନେ ସବୁ ତରୁଣୀ, ତାହେଲେ ଏମିତି ସ୍ଥିର ଗମ୍ଭୀର ହୋଇ ବସିଛନ୍ତି କେମିତି ? ...ଏକାଠି ଆସି ବସିଛନ୍ତି ଯେହେତୁ, ସେମାନେ ପରସ୍ପରର ବନ୍ଧୁ ନିଶ୍ଚୟ ଏବଂ ସ୍ତ୍ରୀଲୋକ ମାତ୍ରେ ଗପୁଡ଼ି । କିନ୍ତୁ ଏ ପକ୍ଷୀ ଗୁଡ଼ିକ ମଧୁର କଳରବ ନ କରି ଏମିତି ବସିଚନ୍ତି କାହିଁକି ? ଏମାନେ କ'ଣ ତା'ହେଲେ କୌଣସି କବର ପାଖକୁ ଫୁଲ ଚଢ଼େଇବାକୁ ଯାଉଛନ୍ତି ? ସେ ଯେ ଜଣକ କାଶିଲା ସେ ଅବଶ୍ୟ ସୁକଣ୍ଠୀ – ସେ କ'ଣ ନୀରବରେ କାନ୍ଦୁଛି ? ଭେନିଟ୍‌ବେଗରୁ କ'ଣ ରୁମାଲ୍ ବାହାର କଲା ଲୁହ ପୋଛିବା ପାଇଁ ? ଏକଥା ଜାଣି ମଧ 'ଓଲ୍ଡ଼ ସ୍ପାଇସ୍' ଏବଂ 'କାନ୍ଥାରାଡ଼ାଇନ୍' ତାକୁ କିଛି ସାନ୍ତ୍ୱନା ଦେଲେ ନାହିଁ କାହିଁକି ? – ଇଣ୍ଟିମେଟ୍ ମଧ କିଛି କହିଲା ନାହିଁ କାହିଁକି ? – କିଭଳି ସାଙ୍ଗ ଏମାନେ ? କିଭଳି ତରୁଣୀ ? ସେମାନେ ବୋଧହୁଏ ତା'ର ଗନ୍ଧ ପାଇସାରିଛନ୍ତି । ଏଣୁ ଏ ଅପ୍ରତ୍ୟାଶିତ ପୁରୁଷଟିଏ ତାଙ୍କ ସାଙ୍ଗେ ବସି ରହିଥିବାରୁ ତାକୁ ଅସୁସ୍ଥ ଲାଗୁଛି କି ?

ସେ – ପୁଣି ଥରେ କାଶି ଜଣେଇ ଦେଲା ଯେ ସେ ଖୁବ୍ ଭଦ୍ର, ସେ ଭାରି ମେଳାପୀ, ସେ ସେମାନଙ୍କ ସହିତ ବନ୍ଧୁତା କରିବାକୁ ଚାହେଁ । ତା' ପୂର୍ବରୁ ଅନ୍ତତଃ କିଛି ଆଳାପ କରିବାକୁ ଚାହେଁ । ନ ହେଲେ ଏ ଅନ୍ଧାର ରାସ୍ତା କଟିବ କେମିତି ? 'କାଶ'ର କୌଣସି ଉତ୍ତର ନାହିଁ । ସେ ପ୍ରାୟ ନିରାଶ ହେବା ଢଙ୍ଗରେ ନିଶ୍ୱାସ ଛାଡ଼ିଲା । କିଛି ରାଗିଯାଇ ପାଟି କଲା ।

''ହେ ଗାଡ଼ିବାଲା, କୋଉଠି ପହଞ୍ଚିଲାଣି ତମ ଗାଡ଼ି ?'' ତା' ସ୍ୱରରେ ସେ ନିଜେ ପୀଡ଼ିତ ହେଲା । ଗାଡ଼ିବାଲା ଚୁପ୍ ! – ବେ, ଆଚ୍ଛାକଥା, ଏମିତି କାହିଁକି ଚାରିଆଡ଼ ନିଶୁନ୍ ହେଇଚି ? ଏମାନେ କାହିଁକି ଏମିତି ତୁଣ୍ଡି ବାନ୍ଧିଲାପରି ବସିଛନ୍ତି । ଏମାନେ ସିନା ଲାଜକଲେ, କିନ୍ତୁ ଗାଡ଼ିବାଲା ଶଳା କାହିଁକି ଢୁନିପଡ଼ି ସେଇଠି ଢୁଳଉଚି ?–

''ହୋ ଗାଡ଼ିବାଲେ, ରୋକୋ ହମ୍ ଉତର ଜାଏଗା ।'' ପାଟିକଲା ସେ । ଗାଡ଼ି ସେମିତି ପୂର୍ବ ଛନ୍ଦରେ ଗଡ଼ିଲା । ଘୋଡ଼ାର ଗୋଟିଏ ହେଲେ ଟାପୁ ବେତାଳିଆ ପଡ଼ିଲା ନାହିଁ । ସେ ପୁଣି ଥରେ ଚିତ୍କାର କଲାବେଳକୁ ଆଗରୁ ଶୁଭିଲା, ''ଅଭିନହିଁ; ଅଭି ବହୁତ ରାସ୍ତା ବାକି ହୈ ।''

ଅତି ନିସ୍ପୃହ ଗମ୍ଭୀର ସ୍ୱରଟିଏ । ବୋଧହୁଏ ଘୋଡ଼ାର ।

ସେ ପୁଣି ଚିଡ଼ିଗଲା । – ଗାଡ଼ିବାଲା କେମିତି ଜାଣିଲା ସେ କେତେ ବାଟ ଯିବ ? ସେ ସେଇ ମୁହୂର୍ତ୍ତରେ ସେଇଠି ଓହ୍ଲେଇ ଯାଇପାରେ । ପୁରା ରାସ୍ତାର ଭଡ଼ା ଗାଡ଼ିବାଲା ଦାବୀକରୁ କିନ୍ତୁ ଓହ୍ଲେଇବାଟା ପାସେଞ୍ଜରର ମର୍ଜି ଉପର କଥା ।

ଅବଶ୍ୟ ସେ ବି ଚାହୁଁ ନଥିଲା ଆଦୌ କୋଉଠି ଓହ୍ଲେଇବା ପାଇଁ । ଏ ଅନ୍ଧାରରେ ଓହ୍ଲେଇ ସେ ଯିବ କୁଆଡ଼େ । ଏଠି ତ ଗାଁ-ଗଣ୍ଡା ମଣିଷ କିଛି ନାହିଁ ! – ନ ଓହ୍ଲେଇ ମଧ ଯିବ କୁଆଡ଼େ ? ସେ ଗାଡ଼ି କାହାର ? – ସେ ମହିଳାମାନେ କିଏ ? କେଉଁଆଡ଼େ ଯାଉଛି ନ ଜାଣି ବସି ରହିବା ମଧ କୋଉ ବୁଦ୍ଧିମାନର କାର୍ଯ୍ୟ !

ସେ ନିଜ ଉପରେ ଭୟଙ୍କର ଚିଡ଼ିଗଲା । ସେଇ ମୁହୂର୍ତ୍ତରେ ତାକୁ ଅନୁଭବ ହେଲା ଯେ ତା'ର କୌଣସି କାର୍ଯ୍ୟ ବୁଦ୍ଧିମାନର ନୁହେଁ । ସେ କିଛି ଚିନ୍ତା କରିବା ପୂର୍ବରୁହିଁ କ'ଣ ସବୁ ଘଟିଯାଉଛି । କାହିଁକି ସେ ଅଜଣା ଲୋକଙ୍କ ସାଙ୍ଗରେ ଅଜଣା ଜାଗାକୁ ଏମିତି ବୁହାହେଇ ଯିବ ଏବଂ ତା'ର ପ୍ରତିବାଦକୁ କେହି ଖାତିର କରୁନଥିବ । କାହିଁକି ? – ସେ କ'ଣ ଯା' ଉପରୁ ଡେଇଁ ପାରିବ ନାହିଁ ?? – ବେକୁବ !! ଚଳନ୍ତା ଗାଡ଼ିରୁ ଡେଇଁବା କୋଉ ବୁଦ୍ଧିମାନ୍‌ର କାର୍ଯ୍ୟ ? – ତା'ହେଲେ କ'ଣ ଏମିତି ସେ ବସିଥିବ ଏ ମୁର୍ଦ୍ଧାରଙ୍କ ଗହଣରେ ଏବଂ ଯିବ ସେମାନଙ୍କ ସାଙ୍ଗରେ କୌଣସି ଅଜଣା କବରରେ ପୋତି ହେବାପାଇଁ ? – ଡେଇଁବ ନାହିଁ କି ବସିବ ନାହିଁ ? – ଆଉ ତେବେ କ'ଣ କରିବ ବେ ଶାଲା ?? – ସେ ଚଡ଼ାଲ କିନା ନିଜ ଦୁଇ ଆଣ୍ଠୁରେ ଚାପୁଡ଼ା ମାରି ବିକଟାଳ ରଡ଼ିଯାଏ ଛାଡ଼ିଲା !

ଚମକି ପଡ଼ିଲା ଗାଡ଼ି ଅସମ୍ଭାଳ ଭୂମି କମ୍ପରେ ! ଘୋଡ଼ା ଲେପ୍‌ଟି ପଡ଼ି ଛୁଟିଲା ପ୍ରାଣମୂର୍ଚ୍ଛା । ମୁର୍ଦ୍ଧାରମାନେ ସରୁସ୍ୱରରେ ଚିତ୍କାରକଲେ । ସେ ଛିଟିକି ପଡ଼ିଥାନ୍ତା । ସମ୍ଭାଳିଗଲା ଛାତର ଗୋଟେ ବତାଧରି । – ଗାଡ଼ିବାଲା ଗର୍ଜିଲା ଘୋଡ଼ାକୁ ରୋକିବା ପାଇଁ ।

ସେ ବିଜୟୋଲ୍ଲାସରେ ପୁଣି ବିକଟାଳ ରଡ଼ିକୁ ଦୋହରାଇଲା । ଗାଡ଼ି ଉଠିଲା, ପଡ଼ିଲା, ଦୋହଲିଲା ଏବଂ ଚୂଡ଼ାନ୍ତ ମୁହୂର୍ତ୍ତରେ କୁଢ଼େଇ ହୋଇପଡ଼ିଲା ବିଦୀର୍ଣ୍ଣ ଗୋଟାଏ ଶବର ପାହାଡ଼ ଉପରେ । ଆର୍ତ୍ତନାଦ ଗୁଡ଼ିଏ ଶୁଭିଲା । ସେ ଅକ୍ଷତ ଛିଟିକି ପଡ଼ି ଠିଆ ହୋଇପଡ଼ିଲା । ଦାନ୍ତ ଜାବି ବିଡ଼ବିଡ଼ ହେଲା । 'ହାଁ ଶାଲା, ଏବେ ଯାଇଁ ତମ ବୀଣା ବାଜିଲା ? ଶାଲା, ମୁର୍ଦ୍ଧାର ହେଇ କେମିତି ମତେ ଘେରି ଯାଇଥିଲବେ ?

ସେ ଅନ୍ଧାରରେ ଦରାଣ୍ଡି, ଭଙ୍ଗା ଚକତଳୁ, ଦଣ୍ଡାତଳୁ ସେ ଚିତ୍କାର ଗୁଡ଼ିକୁ ଓଟାରି ବାହାର କରିଆଣିଲା । ଗାଡ଼ିବାଲା ବି ଜଣାଗଲା ବେଶ୍ ଅକ୍ଷତ । ସେ ଝାଡ଼ିଝୁଡ଼ି ହୋଇ ପ୍ରଥମେ ହାତ ମାରିଲା ଘୋଡ଼ା ଉପରେ । ଗରମ ବାମ୍ଫ ଏବଂ ଝାଳ ଉତୁରି ପଡୁଥାଏ ତା ଦେହରୁ, କିନ୍ତୁ ଭଙ୍ଗାଚକ ପରି, ଗୁଣ୍ଡ ଗାଡ଼ିପରି, ସେ ନିସ୍ପନ୍ଦ । ଘୋଡ଼ା ମରିଗଲା ପରେ ଘୋଡ଼ାଗାଡ଼ି ନାହିଁ । ଗାଡ଼ିବାଲା ମଧ ନାହିଁ । ସେ ଆସି ଠିଆ ହେଲା ସୁକ୍‌ସୁକ୍ କାନ୍ଦମାନଙ୍କ ପାଖରେ । ବେତାଳିଆ ନିଶ୍ୱାସଟିଏ ବିଚାରା ।

ସେ ତା ପଛ ମୁଣାରୁ ଗୋଟିଏ ବୋତଲ ବାହାର କରି ତା'ର ଠିପି ଖୋଲୁ ଖୋଲୁ କହିଲା – "ସବୁପ୍ରକାର ଦୁର୍ଘଟଣାର ଔଷଧ ମୋ ପାଖରେ ଅଛି । ଏଇଥିରୁ ପାନେ ଲେଖା ସମସ୍ତେ ପିଇ ନିଅନ୍ତୁ ।"

ସେଇ ଅନ୍ଧାରରେ ନିର୍ଭୁଲ୍ ମାତୃସ୍ତନ ପରି ଅଣ୍ଡାଳି ହୋଇ ସେ ବୋତଲଟି ସମସ୍ତଙ୍କ ମୁହଁରେ କିଛି କିଛି ରସ ନିଗାଡ଼ିଦେଲା ।

ସେ ଦମ୍ଭିଲା ସ୍ୱରରେ ପଚାରିଲା – "ଆଚ୍ଛା, ଏଇଟା କୋଉ ଜାଗା ? ଆମକୁ ତୁ କୁଆଡ଼େ ଆଣିଚୁ ?"

ପ୍ରଶ୍ନଟି ବୋଧହୁଏ ଘୋଡ଼ା ପାଇଁ ।

ଉତ୍ତର ଦେଲା ଗାଡ଼ିବାଲା – "ଜଣାନାହିଁ । ଯେ ଆଣୁଥିଲା, ସେ ମଲାଣି ।"

"ତା' ହେଲେ ଆପଣମାନେ କୁଆଡ଼େ ଯାଉଥିଲେ ?"

ଜଣେ ତା' ଭିତରୁ ଠୁସ୍ ଠୁସ୍ ଠୁସ୍ ହସିଲା ।

"ଆପଣ ତ ଆମର ମାଲିକ । ଆପଣ ଯୁଆଡ଼େ ନେବେ ।"

ଅନ୍ୟମାନେ ମଧ୍ୟ ସେମିତି ପାତଳ ପାତଳ ହସ ଦୋହରେଇଲେ ।

'ସେ'ର ମଂଜ ଥରିଗଲା ।

"ଆପଣ ସେଦିନ ରାତିରେ ମୋ ସ୍ୱାମୀକୁ ନେଇ ଲାପତା କରି ଦେଇଛନ୍ତି । ମୁଁ ତାକୁ ସେବଠୁ ରାତି ରାତି ଖୋଜିଛି ଏବଂ ଆପଣଙ୍କୁ ନ ଖୋଜି ପାଇଗଲି । ଆପଣଙ୍କୁ ଗାଡ଼ି ଅପେକ୍ଷା କରିଥିଲା ବୋଲି ନ ଜାଣି ମୁଁ ବସି ପଡ଼ିଥିଲି । ଏବେ ଆପଣହିଁ ତ ମୋତେ ଇଚ୍ଛା ଅନୁସାରେ ନେଉଛନ୍ତି ।"

"ସଟ୍‌ଅପ୍ ! ମୁଁ ସେଭଳି କୌଣସି କାମ କରିବା ଲୋକ ନୁହେଁ ।"...

"ତା'ହେଲେ ଆପଣ ମୋ ପୁଅକୁ ବିଷ ଇଞ୍ଜେକ୍‌ସନ୍ ଦେଇ ମରେଇ ନାହାନ୍ତି ? ରାଗରେ ଆପଣଙ୍କୁ ଦେଖିଲେ ଗୁଳି କରିଦେବ ବୋଲି କହିଦେଲା ବୋଲି ତା' ବାପକୁ ଫାଶୀ ହୁକୁମ ମିଳିନାହିଁ ?" କହିଲା ଆଉ ଜଣେ ।

ଅନ୍ଧାରରେ ତା'ର ଆଖି ଦାଉ ଦାଉ ହେଇ ଫାଟି ପଡ଼ିଲା । ତା' ପାଟି ଓହଳି ରହିଗଲା । ସ୍ୱର ଖୁବ୍ ଖାସ୍ ମାସୁଆ ।

"ନା' ତ ! – ମୋର ସେଭଳି କିଛି କରିବାର ମନେନାହିଁ ।"

"ହାଁ, ମନେ ନାହିଁ ? ତା'ହେଲେ ତ ମୋ କଥାବି ମନେ ନଥିବ ।" କହିଲା ତୃତୀୟ ସ୍ୱର ମୋତେ ଏବଂ ମୋ ଭଉଣୀକୁ ଆମ ବାପ ମା'ଙ୍କ ପାଖରୁ ଛଡ଼େଇ ଆଣି ମାଛ ପୋଷିଲାପରି ରଖାହେଇ ନଥିଲା ? – ମୋ ଭଉଣୀର କଣ୍ଠା ମୁଁ ଖୋଜି ଖୋଜି ପାଉନାହିଁ । ମୋତେ କେବେ ଆପଣଙ୍କ ଭୋଗ ଥାଳିରେ ପରସା ହେବ ତା'ବି ଜାଣିନାହିଁ । ଏମିତି ଲୁଚି ଲୁଚି ବୁଲୁବୁଲୁ ହଠାତ୍ ଖୋଦ୍ ଆପଣଙ୍କ ହାବୁଡ଼ରେ ପଡ଼ିଗଲି । ଆପଣହିଁ କହିବେ – ଲୁଣ ମଡ଼େଇ ଖାଇବେ ନା କଞ୍ଚା ?"

''ହି ହି, ହି ହି – ହା ହା ହା । ସମସ୍ତେ ଏକା ସାଙ୍ଗରେ ଲହଲହ ହସର ଶିଖା ତୋଳିଲେ । ସେ ହାଁ କରି କେବଳ ଠିଆ ରହିଲା ।

ବିଡ଼୍‌ବିଡ଼୍ ମନକୁ ମନ କହିଲା – ''କାହିଁ, ମୁଁ ତ ସେମିତି କରିବା ସମ୍ଭବ ନୁହେଁ ।'' – ହୁଁ ହୁଁ ହୁଁ – ବୋଧହୁଏ ସେ କାନ୍ଦି ପକେଇଲା । ସେମିତି ବିଡ଼୍‌ବିଡ଼୍ ହେଲା – ''ମୁଁ ତ ସବୁ ହାରିସାରିଛି । ମୋ ଶୈବ୍ୟା କ୍ରୀତଦାସୀ । ମୋ ପୁଅକୁ ସାପ ଖାଇ ଦେଇଛି । ମୋତେ ଆଉ ଜଣକ ଚିତାରେ ସେମାନେ ପୋଡ଼ି ଦେଉଥିଲେ । ...ମୁଁ...ମୁଁ, ହୁଁ ହୁଁ ହୁଁ...''

ସେ ପାଦ ତଳିପାରୁ କେଶାଗ୍ର ଯାଏ ଥରି ଥରି କାନ୍ଦିଲା ନୀରବରେ । ଗାଡ଼ିବାଲା କହିଲା – 'ଆରେ ସବୁ ଭୁଲ୍ ସବାରି ନେଇ ମୁଁ ଚାଲିଆସିଲି । – ମୋ ଗାଡ଼ି ! ...ମୋ ଘୋଡ଼ା ! ...ମୋ ଇଜ୍ଜତ... !!' କହି ସେ ବି ମୁହଁ ଘୋଡ଼େଇ କାନ୍ଦିଲା ସକ୍‌ସକ୍ ।

ହସ କାନ୍ଦ ଏକା ଥରକେ ବନ୍ଦ ହୋଇଗଲା ଠପ୍‌କିନା ।

ସମସ୍ତେ ମଲା ଘୋଡ଼ାକୁ ଘେରି ତାକୁ ଆଉଁସିଲେ ଅନ୍ଧାରରେ ।

ସେ ମୁର୍ଦାରର ପେଟତଳେ ଲେପ୍‌ଟି ଯାଇ ଆଖି ବୁଜିନେଲା, ମନକୁ ମନ ପଚାରିଲା, ''ମତେ କହିପାରୁ ମୁଁ କୋଉଠି ? – କୁଆଡ଼େ ଯିବି ? କେମିତି ଯିବି ? – କେମିତି ଯିବି ?...''

□□□

# ଆମେ ତେରଜଣ

''ସେଇଟା ମଣିଷ ନୁହେଁ ହୋ ! ସେ ନିଶ୍ଚେ ଡେଣା ମେଲେଇ ତୁମ ଆଖି ସାମନାରେ ଦିନେ ନା ଦିନେ ଉଡ଼ିଯିବ । ତା' ଉପରେ ସୁନାରଙ୍ଗର ପରସବୁ ଗଜରୁଥିବାର ମୁଁ ଆଖିରେ ଦେଖିଛି ପରା । ସେ ଗୋଟାଏ କ'ଣ ସାଧୁଛି । ସେତକ ସରିଗଲେ ସେ ପକ୍ଷୀ ପାଲଟିଯିବ । ମୁଁ ଖାଲି ଭାବୁଛି ସେ ଆମ ଅଞ୍ଚଳକୁ ଆସିଲା କେମିତି । ତମେ ସବୁ କିଛି ଜାଣିନ । ଶୁଣ, ଶୁଣ, ଗୋଛେଇତ କ'ଣ କହୁଛି । ସେ ମହନ୍ତ ପିଲା – ତାକୁ ସବୁ ଜଣା ।'' ...ଉହ୍ମେଇକୁ ଘେରି ଗୋଟାଏ କୁହୁଳା ଘରସାରା ଭଳି ରହିଥାଏ । ସେଇ କୁହୁଳା ଭିତରେ ଆମେସବୁ ବୁଡ଼ି ରହିଥାଉ ସମୁଦ୍ର କୁହୁଡ଼ିରେ ନଆ ଭଳି । ଖାଲି ସ୍ୱର ବାରି ଠଉରେଇବା କଥା । ଭିତରେ ଆଲୁଅ ନାହିଁ । ବାହାରେ ଶିମୁଳିଗଛରୁ ଟପ୍‌ଟାପ୍ ହୋଇ କାକର ପଡୁଥାଏ ଟିଣଛାତ ଉପରେ । ମଝିରେ ମଝିରେ ଗୋଟାଏ କୋହଲା ଭୁଆରିଆ ପବନ ସୁ-ସୁ ହୋଇ ପିଟିଦେଇ ଚାଲିଯାଉଥାଏ – ଦକ୍ଷିଣରୁ ଉତ୍ତରକୁ ।

''ମୁଁ ଆଉ କହିବି କ'ଣ ?'' ବୋଧହୁଏ ଗୋଛେଇତ କହିଲା । ''ମୁଁ ତାକୁ ଦେଖିଲା ଦିନୁ ସନ୍ଦେହ କଲିଣି । ସମୁଦ୍ର ବାଲିରେ ସେଦିନ ସେ ଠିଆହୋଇଥାଏ – ଗୋଟାଏ ପାଞ୍ଚହାତିଆ ଅର୍ଘାମଣିଷ । ରାତି ସେତେବେଳକୁ ଜମିଆସିଥାଏ । ଆଗକୁ ନିକାଞ୍ଚନ ମଶାଣି । ମୁଁ ହାରାମି 'ମାଲ୍' ଠଉରାଇ ଯାଇଥିଲି ତ ! କଅଁଳିଆ ପବନରେ ହାତଗୋଡ଼ ଫିଟେଇ ଦେଲାରୁ ଗୋଟାଏ ନିଦ କାହୁଁ ଥିଲା ଝାଙ୍କିଦେଲା । ଆଖି ଫିଟେଇଲା ବେଳକୁ ସବୁ ଚିଡ଼ିଆ ଫୁର୍ । ସମୁଦ୍ର ବେହିପୋ ଗର୍ଜୁଥାଏ । ଠାଉକିଆ ଢହ୍ନଟାଏ ଏମିତି ଦଶ-କୋଡ଼ିଏ ହାତ ଉଠିଆସିଥାଏ ସମୁଦ୍ର ଉପରକୁ । ହାଉଲେ ହାଉଲେ ଦି' ଖଣ୍ଡ ଖଣ୍ଡେ ହାଇ ମାରିଲା । ତହୁଁଉାରୁ ତ ଭାଇ, ଯାଇଁଲ, ମୋ ଗୋଡ଼ହାତ ମୂଦା ହୋଇଗଲା ! ...ଏମିତି ଖଣ୍ଡଦୂରକୁ ସେଇଟା ଠିଆହୋଇଥାଏ ।'' ଧୂଆଁ ଭିତରେ ଖସର ଖସର ହୋଇ କେତେଜଣ ଘୁଞ୍ଚିଲେ । ଉହ୍ମେଇର ଦିକି ଦିକି ରଡ଼ ଆଲୁଅରେ ଚେମେଣି ଆଖି ପରି ହଳ ହଳ ଆଖି ପାଖେଇ ଆସିଲେ ।

''ସେଇଠୁ କ'ଣ ହେଲା ?''

''ମୁଁ ଦେଖିଲି ସେଇଠି ଆଉ ଉପାୟ ନାହିଁ । ବାଲିରେ ଧାଇଁଲେ ସେ ଯୋଡ଼ାଏ ଖେପାରେ ମୋ ଉପରକୁ ଝାମ୍ପି ଆସିବ । ମୁଁ ମିଟିମିଟି ଅନେଇ ସେମିତି ନିଶ୍ଚଳ ପଡ଼ିରହିଲି । ସେଇଟା ସେମିତି ଧୂଆଁ ଖମ୍ବ ପରି ଠିଆ ରହିଥାଏ । ମତେ ସେତେବେଳକୁ ବାହାର ପାଣି ଦେଖେଇଲାଣି । ସେଇଟା ନିଶ୍ଚେ ଗୋଟାଏ ଯକ୍ଷ, ନହେଲେ ଗୋଟାଏ ପିଶାଚ । ଉଠିଲେ ମଲି, ନଉଠିଲେ ମଲି । ସେମିତି ପଡ଼ିଥାଏ । ...କେତେବେଳକୁ

ଯାଇ ସେ ହଲିଲା । ଆଉ ଉପରକୁ ଏମିତି ଜହ୍ନ ଆଡ଼େ ଅନେଇ, ବଲୁଚ, ଗୋଟାଏ ରଡ଼ି ଛାଡ଼ିଲା ।''

ଆହୁରି ଘୁଞ୍ଚିଆସିଲେ ଉହ୍ଲେଇ ପାଖକୁ ଗୁଡ଼ିଏ ଡରକୁଳା ଶେତାମୁହଁ ଆଉ ଗୋଟାଳିଆ ହଳହଳ ଆଖି ।

''ସେଇଟା କିନ୍ତୁ ରଡ଼ି ନୁହେଁ । ଧର ଯେମିତି ବାଘ ବା ସିଂହ ରଡ଼ନ୍ତି, ଏ ସେମିତି ନୁହେଁ । ଏଇଟା ଶଙ୍ଖ ପରି ଗୋଟାଏ ମଧୁରିଆ ରଡ଼ି । ମୁଁ ଚମକି ପଡ଼ିଲି ! ତା'ପରେ ଭାବିଲି କୋଉଠି ତାକୁ ଶୁଣିଛି ନା ନାହିଁ । ମୋତେ ଲାଗୁଥାଏ କୋଉଠି ହେଲେ ନିଶ୍ଚେ ଶୁଣିଛି । ଆଉଥରେ ଶୁଣିଥିଲେ ଚିହ୍ନିପକେଇଥାନ୍ତି; ମାତ୍ର ସେ ଆଉ ରଡ଼ିଲାନାହିଁ !''

''ଆଚ୍ଛା, ଗୋଛେଇତେ । ଟିକିଏ ମନେପକେଇଲ । ସେଇଟା ହଂସ ରଡ଼ି ପରି ଶୁଭୁଥିଲା କି ?''

''ଆହେ ହେ ! ସତେ ତ' ! ସେଇଭଳି ଗୋଟାଏ ପକ୍ଷୀରାବ ସେ ଦଉଥିଲା ।''

''ବାଆସ୍ । ଏଥର ତୁନିପଡ଼ ଗୋଛେଇତେ । ବାକି ମୁଁ କହୁଛି...''

''ସେଇଟାକୁ ମୁଁ ମଧ ଏମିତି ଭେଟେଣା ହେଲା ପରି ଦେଖିଥିଲି । ପିନ୍ଧିଥାଏ ଖଣ୍ଡିଏ ତଉଲିଆ । ମେଳା ଦେହ । ଖଣ୍ଡେ ମୁଣା ଝୁଲେଇଥାଏ କାନ୍ଧରୁ । ଖାଲିପାଦ । ସେ କେଉଁଠି ହେଲେ ଲୁଚିବା ଜନ୍ତୁ ନୁହେଁ । ମାତ୍ର ଦିନଯାକ କୋରଡ଼ ଭିତରେ ରହିଲାପରି ସେ ଏକୁଟିଆ ସେଇ ନିଛାଟିଆ ଭଂଗାଘରେ ରହିଥାଏ । ରାତି ଟିକିଏ ଆଗେଇ ଗଲେ ବାହାରେ ।''

ଗୋଟାଏ ଟୋକାଳିଆ ନୂଆ ସ୍ୱର ବାଜିଉଠିଲା – ''ଆଚ୍ଛା, ସେ ଶଳାଟିକୁ ପୋଲିସକୁ ଦେଇଦେଲେ କେମିତି ହୁଅନ୍ତା !''

''ଚୋପ୍‌ବେ, ଟୋକା !'' ଖିଙ୍କାରି ଉଠିଲେ ଅଧ ଡଜନେ ପୋଖତ ମଣିଷ ।

''କ'ଣ ସବୁ ଭଣ୍ଡୁର୍ କରିଦେବୁ ନା କ'ଣ ? ମାଡ଼ ମହଣ ପଇସେ ହେଇଯିବ ଏଇଲେ ଦେଖିବୁ ?''

''ହଉ, ହେଲା ହେଲା । ସେଇଟା ମକୁନ୍ଦା, ହରିଆଇ, ତା' ବାପ ମଲାଣି । ତାକୁ ଆଉ ସେମିତି ଶୋଧନା । ସେଇଠୁ କ'ଣ ହେଲା ?''

''ହବ କ'ଣ ନେଫେଡ଼ା – ଏଥିରୁ ଗୁଡ଼େ ତ ସବୁ ବିଗାଡ଼ି ଦେବେ ଦିନେ । ତମେ ଜାଣିଲଣି କଥାଟା କ'ଣ ? ନଜାଣି ନଶୁଣି କାହିଁକି କଲର୍ କଲର୍ ହେବ ଶୁଣେ । ତମେ କ'ଣ ସେ ମଶାଣିକି ଗଲାବେଳେ ତା' ବସା ଭିତରେ ପଶି ତା' ପୁଟୁଳି ଫିଟେଇଚ ?''

''ହେ ହରିଆଇ, କ'ଣ କହୁଚୁମ !''

''ଜଳୁଥିବା ଚିତା ଦେହରୁ ଆଞ୍ଜୁଳା ଆଞ୍ଜୁଳା ପାଉଁଶ ଆଉ ରଡ଼ ନିଆଁ ଆଣି ମୁଣ୍ଡରୁ କେମିତି ସେ ସ୍ନାହାନ କରେ, ଦେଖିଛ ? ପାହାନ୍ତା ବେଳକୁ ଧପାଲି

ଆସିଲାବେଳେ ତା'ର ସେ ଦାଉ ଦାଉ ଆଖି କାଳିଆ ପାଉଁଶିଆ ଭୁତୁଣ୍ଡା ହାତ ଗୋଡ଼କୁ ଦେଖିଛ ? ସେତେବେଳେ ସେ ଯେମିତି କୁନ୍ଥଉଥାଏ – ଶୁଣିଲେ ଶଳେ ସେଇଠି ଛେରି ପକେଇବ । କଣନା ପୁଲିସିକି ଦେଇଦେଉନ ! ହୁଃ ! ଏଇ ପୁଲିସିକି ଆମେ ଚିହ୍ନିନୁ । ବାବୁ, ଶୁଣ ! ସେ ଗୋଟାଏ କ'ଣ ସାଧୁଛି, ଏଇଟା ସତ । ସେଇଟା ମଣିଷ ନୁହେଁ, ଏକଥା ବି ସତ । ମୁଁ ଆଖିରେ ଦେଖିବା କଥା । ଆଉ କିଏ କ'ଣ କହିଲେ ମୁଁ କାହିଁକି ଶୁଣିବାକୁ ଯିବି ?''

ହରିମଲ୍ଲର ସ୍ୱର ଗହିରିଆ । ତା'ର ଗୋଛିଆ ନିଶ, ତହୁଁ ଗୋଛିଆ ଦାଢ଼ି, ଛେପେରା ଫାଲୁଆ ମୁହଁ, ଦିକି ଦିକି ଆଖି ବହୁ ଗୁପ୍ତକଥା ଆଡୁଆଳକୁ ଅନେଇଲା ପରି ଦିଶନ୍ତି । ସେ ଧୋବଧୂଆଁ ଭିତରେ ତାକୁ କେହି ଦେଖିପାରୁ ନଥାନ୍ତି; ତଥାପି ତା' ମୁହଁ ସମସ୍ତିଙ୍କି ଝଲମଲ ହୋଇ ଦିଶିଯାଉଥାଏ ଆମ ମନ ଭିତରେ ।

ହରିଆଇ କହି ଚାଲିଲା – ''ଦିନବେଳେ ତାକୁ କେହି ଏଯାଏଁ ଦେଖିନାହାନ୍ତି । ସେ ସେଇ ଭଙ୍ଗାଘରେ ଥାଏ । ସେ କବାଟ କେଉଁ ଯୁଗରୁ ଜଙ୍କ ଲାଗି ଫିଟେନାହିଁ । ସେ ଆସି ଭିତରକୁ ଗଳିଯାଏ ଗୋଟାଏ ଝରକା ବାଟେ । ନିଃଶବ୍ଦରେ ସଟା କରି ଚିଲା ମାରିଯାଏ । ନଦେଖିଲେ ଭାଇ ବିଶ୍ୱାସ କରିବ ନାହିଁ । ରାତିଯାକ ତା' ପଛରେ ଛାଇପରି ମୁଁ ସେଦିନ ବୁଲିଲା ପରେ ମୋତେ ହାଲିଆ ଲାଗୁଥାଏ କାହିଁରେ କ'ଣ । ଆଖି ବାଟିହୋଇ ପଡୁଥାଏ । ତଥାପି ଟିକିଏ ସକାଳ ପବନରେ ବୁଲାବୁଲି କରି ଚେଙ୍ଗା ହୋଇ ସେଇଆଡ଼େ ଫେରିଲି । ସକାଳୁଆ ଢୁଆର ଘୁ-ଘୁ ଗର୍ଜୁଥାଏ । ମୁଁ ଛପି ଛପି ଡାକିଲି । ଗୋଟାଏ ଜଙ୍କଲଗା ବୁଢ଼ିଆଣୀ ଜାଲଘେରା ଝରକା ଦେହରେ କଣାଟାଏ ଥାଏ । ହାତ ମାରିଲେ କୁଡ଼େଇ ହୋଇପଡ଼ିବ କାନ୍ଥ ଲଗାଡ଼ୁ । ସେଇ ବାଟେ ଅନେଇଦେଲା ବେଳକୁ ଭାଇ, ମତେ ସତ; ତମକୁ ମିଛ, ସେ ଘରଟା ମଝିରେ ସେ ଖାଲି ସୁନା ପରି ଜଳୁଛି । ମୁଁ ତାବ୍ଦା ହେଇ ଅନେଇଲି । ବୁଝିଲି ଯେ କାହୁଁ ଆସି ସକାଳ ଖରା ତା' ଉପରେ କୁଡ଼େଇ ହେଇ ପଡ଼ିଛି । ସେ ସେମିତି ଅନେଇଛି । ତା' ଆଖି ଯୋଡ଼ାକ ମନ୍ଦାର ପାଖୁଡ଼ା ପରି ଥୋପି ପଡୁଛି । ରାତିଯାକ ବସି ଖାଲି କୁସୁମା ଖାଇଛି ଯେମିତି ! ନିଶଦାଢ଼ି ସବୁ ସୁନା ତାର ପରି ଝଟକୁଚି । ମୁଣ୍ଡରେ କେରି କେରି ସୁନାରଙ୍ଗର ଜଟ । ମୁଁ ଚମକି ପଡ଼ିଲି – ତା' ଠାଣି ଦେଖି ତା ନାକ ଦେଖି । ଚାଖେଣ୍ଡେ ଲମ୍ବ ନାକ ଆଉ ସେ ଗୋଟାଳ ଗୋଟାଳ ଆଖି ଜମା ମଣିଷର ନୁହେଁ । ତା' ଆଖିର ପଦ୍ମ ଉପରେ ସୂର୍ଯ୍ୟ ଝଟକୁଥାଏ । ସେତିକିବେଳେ ସେ ସେମିତି ଗୋଟାଏ କୁହାଟ ଛାଡ଼ିଲା । ମୁଁ ଲଥିକିନା ବାଲିରେ ବସିପଡ଼ିଲି । ମୋ ଆଣ୍ଠୁ ହୁଗୁଳିଗଲା । ଗୋଟାଏ ମସ୍ତବଡ଼ ରାଜହଂସ ବୋବେଇଲା ପରି ଶୁଭିଲା । ଶଙ୍ଖ ଡାକିଲାପରି ସେ କୁହାଟ !''

ଆମେ ସମସ୍ତେ ନିସ୍ତବ୍ଧ ହୋଇଗଲୁ । କାହାରି ତୁଣ୍ଡରୁ କଥା ବାହାରୁ ନଥାଏ । ଏତିକିବେଳେ କେଁକଟକଟ ହୋଇ କବାଟ ଫିଟିଗଲା । ସମସ୍ତେ ଏକାସାଙ୍ଗରେ କୁଡ଼େଇ ହୋଇପଡ଼ିଲୁ ଗୋଟାଏ ପଟକୁ । ମୁକୁନ୍ଦା ଚିର୍‌ଚିରେଇ ଉଠିଲା ଭୟରେ ।

ହାଉଳି ଖାଇଗଲୁ ଆମେ ସମସ୍ତେ । ବାହାରର ଝାପସା ତରା ଆଲୁଅରେ ଦରମେଲା କବାଟ ପାଖରେ ଯେ ଆସି ଠିଆହେଲା ସେ କିଏ କେଜାଣି ! ସେ ପାଞ୍ଚହାତ ଧୂଆଁଖମ୍ବ ପରି ଠିଆରହିଲା ! ତା'ପରେ ହାତରେ ଧରିଥିବା ମୂଳିଟାକୁ ଭୂଇଁରେ ଦୁଲ୍‌କିନା ବାଡ଼େଇ ଗର୍ଜିଲା ।

"କିବେ, ହେମ୍‌ତି କ'ଣ ବୋବଉଛ ? ...କ'ଣ ହେଲା କି ?"

"ଆରେ ଗରିଲା ଆସିଲା ମ ! ଗଳା ଖଙ୍କାରି ଗୋଛେଇତେ କହିଲେ । କୋଉଠି ଥିଲୁ ଏତେବେଳଯାଏଁ କିରେ ହୁଣ୍ଡା ? ...ହଉ ଆ, ବସ୍ । ଆମେ ଯୋଉ ତେରକୁ ସେଇ ତେର ହୋଇଗଲେ । ଭାରୀ ଗହନ କଥା ପଡ଼ିଛି । ପୁଣି ବୋଲ୍ ହରିଆଇ, ସେଇଠୁ କ'ଣ ହେଲା ?"

କବାଟଟାକୁ ଧଡ଼ାସ୍‌କିନା ପେଲିଦେଇ ଗରିଲା ଧୁସିହେଲା ଅନ୍ଧାରରେ । ଠେଙ୍ଗାଖଣ୍ଡକ ଥୋଇଦେଇ ଭୁସ୍‌କିନା ବସିଲା । ତା' ନିଃଶ୍ୱାସ ସମସ୍ତଙ୍କୁ ଶୁଭୁଥାଏ ।

ହରିଆଇ ପଚାରିଲା, "କିରେ କ'ଣ ଜୋଡ଼ି ଛାଡୁଥିଲୁ କି ଏ ଅଧରାତିରେ ?"

"ଆହେ ନାଇଁ, ସେ ବହୁତ କଥା ଅଛି । ତେବେ ଆଗ ତମକଥା ସାରୁନ, ମୁଁ କହୁଛି । ତେମେ ତ ସେଇ ଭେରଣ୍ଡ ସାଧକ କଥା କହୁଥିବ । ସେ ସାଇବୀ ନିଶା ଚଳେଇଲା ଦିନୁ ତମେ ଯାପେ ବେଶୀ ବେଶୀ ଡରକୁଳା ହେଇଗଲଣି । ହଉ ଆଗ କହିସାର । ସେଇଠୁ ଶୁଣିବ ମୁଁ କ'ଣ କରିଚି ।"

ମନ ଦଭାଗ ହୋଇଗଲା । ଟିକିଏ ଛପଛପ ଲାଗିଲା ଅନ୍ଧାରରେ ଦୁଇଟି ଅଦୃଶ୍ୟ ଡେଣା । ତା'ପରେ ଅଚ୍ଛ ଟିକିଏ ଗଳା ସଫାକରି ହରିଆଇ କହିଲା –

"ହଉ, ଶୁଣ ତେବେ ଗୋଛେଇତେ । ମୁଁ ସେଇ ଝରକା ପାଖରେ ବସିଥାଏ କାନ୍ଥକୁ ଆଉଜି । ମୋତେ ଲାଗିଲା ସେ ଭୂଇଁ ଖଣ୍ଡ କମ୍ପୁଛି । ମୁଁ ଦମ୍ଭ ହୋଇ ବସିଲି । ମୋ ବୁକୁକୁ ସମ୍ଭାଳି ପୁଣି ଅନୁଭବ କଲି – ସେ ଖଣ୍ଡ ସତକୁସତ ଗୁମୁଗୁମୁ ହୋଇ କମ୍ପୁଥାଏ । ମୁଁ ଖପ୍‌କିନା ଠିଆହୋଇ ଜଳାବାଟେ ଗଳି ଚାହିଁଲି । ଭିତରେ ଆହୁରି ଆଲୁଅ ପଡ଼ିଥାଏ । ସେ ପାଣ୍ଡିଆ ପକେଇ ନଇଁ ପଡ଼ିଥାଏ ଭୂଇଁ ଉପରେ – ତା' କାଗଜ ଉପରେ । ତା'ର ସେ ଝଟକୁଥିବା ଲମ୍ବା କଲମଟା ଉପରେ ଖରାପଡ଼ି ଦାଉଦାଉ ଦିଶୁଥାଏ । ସେ ଲମ୍ବ ସାରସଟାଏ ପରି ବିଛେଇହୋଇ ବସିଥାଏ । ତା' ଗୋଡ଼ ଯୋଡ଼ାକ କେତେ ଲମ୍ବ ସତେ ! ତା' କାନ ତା' ଉପରେ ସେ ଜଟ । ମୋତେ ଲାଗିଲା ତା' ଦେହସାରା ସେମିତି ସୁନାରଙ୍ଗର ଝଟକୁଥିବା ଅସଂଖ୍ୟ ପର ଚିକ୍‌ଚିକ୍ କରୁଛି – ତା'ର ହାତେ ଲମ୍ବ ବେକ ବଙ୍କେଇ ଦେଇ ସେ କଣ ଲେଖୁଥାଏ । ତା' କଲମ ଉପରକୁ ଚିକ୍‌ଚିକ୍ ହୋଇ ଓହ୍ଲେଇ ଆସୁଥାଏ ସୂର୍ଯ୍ୟ । ସେଇଟା ଜମା ମଣିଷ ନୁହେଁ; ସେଇଟା ଗୋଟାଏ ପକ୍ଷୀ ।

"ହଠାତ୍ ଦେଖିଲି ଯେ ସେ ଘର କାନ୍ଥଯାକ ଥାକ ଥାକ ପୋଥି । ସେଇ ବୋଧହୁଏ ତାକୁ ସବୁ ସାଧିଛି । ମୁଁ ଅନେଇଥାଏ – ତା ଦେହରୁ ସୁନାର ରଙ୍ଗ ଆସ୍ତେ

ଆସ୍ତେ ଓହ୍ଲେଇଗଲା । କଲମରୁ ମଧ୍ୟ ଓହରିଗଲା ସୂର୍ଯ୍ୟ । ସେ ସେଇଠି ଶୋଇଗଲା ଭୂଇଁ ଉପରେ । ମୂର୍ଚ୍ଛା ହୋଇଗଲାଭଳି; ଆଉ ହଲିଲାନାହିଁ । ମୁଁ ଲେଉଟି ଚାରିଆଡ଼କୁ ଚାହିଁଲି । ମୋର ବୁକୁ ଦାଉଁଦାଉଁ ପଡୁଥାଏ । ମୁଁ ସେଇଠୁ ବାହୁଡ଼ି ଆସି ଗଣ୍ଡେ ଖଇ ପାଟିରେ ପକେଇ ପାଣି ମନ୍ଦେ ପିଇଦେଲି । ମନ ଲାଗିଥାଏ ତାକୁ ପୁଣି ଯାଇ ନିଘାକରିବି । ସେ ଜଳା ପାଖକୁ ଯାଇ ଦେଖିଲାବେଳକୁ ସେ ନମାଜ କଲା ଭଙ୍ଗୀରେ ଦୁଇ ଗୋଇଠି ଉପରେ ବସି ସ୍ଥିର ହୋଇ ଅନେଇଛି । ତା' ପାଖରେ କେତେ କ'ଣ ସବୁ ଧୂଆ ହୋଇଛି । ଗୋଟାଏ ମୁଣି ଫିଟି ରହିଛି । ଗୋଟାଏ କେମିତି ମତାଣିଆ ବାସ୍ନା ବାହାରୁଛି ସେ ଭିତରୁ । ଏମିତି ତିନିଦିନ ତିନିରାତି ମୁଁ ତାକୁ ଜଗିଲି । ଆଜି ସକାଳୁ ମଧ୍ୟ ତାକୁ ଦେଖିଛି । ମାତ୍ର ଓପରଓଳି ଗଲାବେଳକୁ ସେ ଭିତରେ ଅନ୍ଧାର । ଅନ୍ତର୍ଧାନ ହୋଇଯାଇଛି ସେ ଭେରଣ୍ଡ ସାଧକ । ତା' ବେଳା ହୋଇଗଲା । ଏବେ ମୁଁ ବାହାରୁଛି । ଯଦି ତାକୁ ନ ପାଉଛି ତେବେ ଜାଣ ସେ ଉଡ଼ିଗଲା । ତାକୁ କେହି ଚିହ୍ନିବା ଆଗରୁ ଏଇ ସମୁଦ୍ର ହାବାରେ ସେ ଉଡ଼ିଗଲା ।''

ହୋ-ହୋ-ହୋ ହୋଇ ହସି ଉଠିଲା ଗରିଲା – ''ବୁଝିଲୁ ହରିଆଇ ! ତୋର ସେ ଟୋକି ଖଣ୍ଡକ ମଲାଦିନୁ ତୋତେ ଖାଲି ଭେଳିକି ଲାଗିଛି । ତତେ ଦିଶୁଛି କିଏ ଉଭାନ ହୋଇଗଲା, କିଏ ଉଡ଼ିଗଲା, କିଏ ସମୁଦ୍ର ଭିତରୁ ପହଁରି ଆସିଲା ଶୂନ୍ୟରେ ।'' ଦୁଲ୍‌କିନା ଗୋଟାଏ ପୋଲା ଚାପୁଡ଼ା ହରିଆଇ ପିଠିରେ ଥୋଇଦେଇ ଗରିଲା ଏଡ଼େ ପାଟିକରି କହିଲା –

''ଆଜି ଯାଇଁଲ, ଟାଉନ୍‌ରେ ଗୋଟେ ଗୋଳ ଉଠିଲା । ଶୁଣ୍ ଶୁଣ୍ କ'ଣନା ଗୋଟେ ନମ୍ନ ହୋଇ ନହକା ଗୋରା ମଣିଷ ଲୋକଙ୍କ ଝରକା ବାଟେ ଗଳି ଆସୁଛି, ତା' ଆଖିନାକ ଚଢ଼େଇପରି । ସେ ତା' ଅଣ୍ଟାରୁ ସଳ୍‌କିନା ଗୋଟେ କଲମ ବାହାରକରି ଭୁଷିଦଉଛି ସେମାନଙ୍କ ମୁଣ୍ଡରେ । ସେମାନଙ୍କ ମୁର୍ଦ୍ଧା କଣା କରିଦଉଛି । କଥା ରାଷ୍ଟ୍ର ହୋଇଗଲା । ଆଜି ଖୋଜିଗଲେ ଚାରିଆଡ଼େ ଲୋକ । ମନ୍ତ୍ରୀଙ୍କ କାନକୁ କଥା ପହଞ୍ଚିଲା – ''ମନ୍ତ୍ରୀ ଡକେଇଲେ ମୋତେ । କହିଲେ – ଦେଖି ଗରିଲା, ତୁ ଥାଉ ଥାଉ ଜଣେ କ'ଣ କଲମରେ ଆମ ମୁଣ୍ଡ କଣା କରିଦବ ! ତୋ ମୂଳୀ ଆଉ କୋଉ କାମକୁ ଆସିଲା ।''

ମୁଁ କହିଲି – ''ମତେ ଗୋଇଠା ମାରିଲେ ସହିବି ସିନା ଖାଉନ୍ଦ, ମୋ ମୂଳୀକୁ କିଏ ପଦେ କହିଦେଲେ ତା ଦାନ୍ତ ଝାଡ଼ିଦେବି । ଆଜି ଦେଖିନିଅ ମୁଁ କ'ଣ କରୁଛି ।''

ସମସ୍ତେ ସ୍ତବ୍ଧ ହୋଇ ଶୁଣୁଥାଉ । ସବୁ ସେତେବେଳକୁ ବୁଝିଗଲୁଣି ଯେ ଗରିଲା ସେଇ ଅସାଧ ସାଧକ ସାଙ୍ଗେ ମୁକାବିଲା କରୁଛି । ଅଖଡ଼ରେ ମରିବ ଏ ହୁଣ୍ଡା ଦିନେ ।

ଗରିଲା କହିଚାଲିଥାଏ – ''ଟାଉନ୍‌ସାରା ଖୋଜା ଲାଗିଗଲା । ସମସ୍ତଙ୍କୁ କୋକୁଆ ଭୟ – ଚିଁଚପଟ୍ ନାଇଁ । ମତେ କିନ୍ତୁ ବାସିଲା ଆଉ ପ୍ରକାରେ । ମୁଁ ଖେପିଗଲି ମଶାଣିଆଡ଼େ । ବେଳ ସେତେବେଳକୁ ରତରତ । ଆକାଶ ଖଣ୍ଡକଯାକ

ସୁନା ଛାଉଣୀ ହୋଇଯାଇଥାଏ । ତା'ରି ଭିତରେ ନଦିଶିଲା ପରି ସେ ଠିଆହେଇ ଉପରକୁ ଅନେଇ କୁହାଟିଦେଲା । ସେଇ ହଂସ ରଡ଼ି । ମୁଁ ମୂଳୀ ଟେକି ଗୋଡ଼େଇଗଲି । ସେ ପଛକୁ ଅନେଇ ତା' କଲମ କାଢ଼ି ଚାହିଁଲା । ଡରିଗଲା ଶଳା ନା କଣ ! ତା'ପରେ ପହଁରିଲା ପରି ପଳେଇଲା । ଡଗଡଗ ହେଇ ଡେଣା ମେଲେଇ ପକ୍ଷୀଟାଏ ପଳଉଛି ଯେମିତି । ମୁଁ ଆଉରି ଜୋରରେ ଖେଦିଗଲି । ମୁଁ ପାଖେଇ ଗଲେ ସେ ମୁହଁ ବୁଲେଇ ହସିଲାପରି 'କିର୍' କିନା ଶବ୍ଦ କରୁଥାଏ । ମୋ ସାଙ୍ଗେ ଖେଳୁଛୁ ନା କ'ଣ । ମୋ ବ୍ରହ୍ମରେ ନିଆଁ ଲାଗିଗଲା । ଶାଲା, ଏ ପକ୍ଷୀଟାକୁ ମୁଁ ଆଜି ଖତମ୍ କରିବି । ଭିଡ଼ିଗଲି । ଗୋପୀନାଥଙ୍କ ତୋଟା ପାଖେଇ ଆସୁଥାଏ । ସେ ଭିତରେ ପଶିଗଲା ବେଳକୁ ପିଟିଦେଲି ଗୋଟେ ପାହାର ତା ଡଙ୍କଶିରା ଉପରେ, ଶାଲା ସେଇଠି କାତ ମେଲେଇ ପଡ଼ିଗଲା । ତା ଅଣ୍ଟାରେ ପାଦ ମଡ଼େଇବାକୁ ଗୋଡ଼ ଟେକିଛି, ସେ ବେକ ଟେକି ଡେଣା କହଲେଇ ସାଇଁ ସାଇଁ ତୋଟା ଭିତରେ ପଶିଗଲା — ସେ ନିଘଞ୍ଚ ଅନ୍ଧାର ଭିତରେ ଆଉ କିଛି ସତେ ଦିଶିଲାନାହିଁ ।''

ଧଡ଼ାସ୍‌କିନା ଉଠି ପଡ଼ିଲା ହରିଆଇ ! ଡଗ ଡଗ ଚାଲିଗଲା କବାଟ ଆଡ଼ିକି । ''ହେ ହରିଆଇ, କୁଆଡ଼େ କୁଆଡ଼େ'' କହି ବାକି ସମସ୍ତେ ଉଠିଲୁ । ଉଠିଲା ଗରିଲା ତା' ମୂଳୀକୁ କାନ୍ଧେଇ । ପଛକୁ ନଚାହିଁ ଖଣ୍ଡିଉଡ଼ା ଦେଲାପରି ଚାଲିଥାଏ ହରିଆଇ । ବାକି ସମସ୍ତେ ନୀରବରେ ତା' ପଛରେ ଗୋଡ଼େଇଗଲୁ । ଆକାଶରେ ଜହ୍ନ । ଛପ୍‌ଛପ୍ ହେଇ ମଶାଣି ପାରି ହୋଇଗଲା । ପାରି ହୋଇଗଲା ନିର୍ଜନ ବେଳାଭୂମି । ତୋଟା ଦାଢ଼ରେ ତେରଟି ଛୋଟ ଛୋଟ ମଣିଷ ଏକାଠି ମନ୍ଦା ବାନ୍ଧି ଠିଆହୋଇଗଲୁ । ଶୀତଦିନ ଜହ୍ନ ବିଛେଇହୋଇ ଯାଇଥାଏ ତୋଟାର ସବୁଜ ସମୁଦ୍ର ଉପରେ ।

ହରିମଲ୍ଲ ତଳକୁ ମୁହଁ ପୋତି କ'ଣ ଭାବୁଥାଏ । ବୋଧହୁଏ କାନ୍ଦୁଥାଏ । ଏତିକିବେଳେ ତୋଟା ଗର୍ଭରୁ ଗଛ ଶିଖରୁ ଅଧା ଆକାଶରୁ ଶୁଭିଲା ସେଇ ଶଙ୍ଖ ଶବ୍ଦ ! ଚମକି ପଡ଼ିଲୁ ସମସ୍ତେ । ଗରିଲା ହାତରୁ ଖସିପଡ଼ିଲା ମୂଳୀଖଣ୍ଡ । ଜହ୍ନକୁ ପାରି ହୋଇଗଲା ସେ ଶଙ୍ଖଧ୍ୱନି । ମିଶିଗଲା, ହଜିଗଲା ଅଧରାତିଆ ଜୁଆରିଆ ସମୁଦ୍ର ଗର୍ଜନରେ । ଏବେବି ଲୋକେ କହନ୍ତି — ଅଧରାତି ସରିକି ଚାରିଆଡ଼ ନିସ୍ତବ୍ଧ ହୋଇଗଲେ ଶଙ୍ଖ ଫୁଙ୍କିଲାପରି ଗୋଟାଏ ଶବ୍ଦ ସେଇଠୁ ବାହାରେ । ବହୁ ଦୂରରୁ ବହୁ ଉପରୁ ଶୁଭେ, ଆଉ ଆସ୍ତେ ମିଳେଇଯାଏ ଚାରିଆଡ଼େ ।

□□□

# ବିଯୋଡ଼ ପକ୍ଷୀ

କାହିଁକି ସେ ଦୁହେଁ ସେମିତି ନିରୋଳା ସଂଧ୍ୟା ଭିତରକୁ ଅପସରି ଯାଉଥିଲେ କେଜାଣି !

ଆଜିକାଲି କ'ଣ ଏମିତି ସମୟରେ ବୁଲିବା ଉଚିତ ?

ସିଗ୍ରେଟ ଟାଣୁଥିବା ଯୁବକଟି ଡାହାଣ ପକେଟରେ ହାତଟି ପୂରେଇ ଖୁବ୍ ଅନ୍ୟମନସ୍କଭାବେ ଚାଲିଛି । ବେଳେବେଳେ ରାସ୍ତାର ଗୋଡ଼ିଟିକୁ ଗୋଡ଼ରେ ଖୁରେଇ ଦେଉଛି ହୁଏତ । ଅଥଚ ଗଛ ଉହାଡ଼ରେ ଅନ୍ଧାର ଜମି ଆସିବାର ସେ ଲକ୍ଷ୍ୟ କରିପାରୁନାହିଁ ।

ଯୁବତୀଟି ସୁନ୍ଦରୀ । ନିରାଡ଼ମ୍ବର ମାର୍ଜିତ ରୁଚିର ପିନ୍ଧାପିନ୍ଧି । ସନ୍ଧ୍ୟାର ସୁନେଲି ଛାଇଗୁଡ଼ିକ ତା ଶାଢ଼ୀରେ ଏବଂ ଚେହେରାରେ ଚିପୁଡ଼ି ହୋଇ ଲିଭିଆସୁଛି । ସେ ସିଧା ଚାହିଁ ରହିଛି ସେଇ ଆଡ଼େ ।

ସେମାନେ କଥା କହୁନାହାନ୍ତି । ହୁଏତ କହିପାରୁ ନାହାନ୍ତି । ତା'ର ପ୍ରୟୋଜନ ବି ନ ଥାଇପାରେ । ପଶ୍ଚିମମୁହାଁ ରାସ୍ତାର ଆଗକୁ କିମ୍ବା ପଛକୁ କେହି କୁଆଡ଼େ ନାହାନ୍ତି । ମାଟି କଳସିଟିଏ ପରି ପୃଥିବୀ ଅନ୍ଧାର ଗାଡ଼ିଆରେ ବୁଡ଼ି ଆସୁଛି । ଆଉ ଟିକିଏ ପରେ ହୁଏତ ଟୁବ୍‌କିନା ବୁଡ଼ିଯିବ । ରାସ୍ତା ମଥାନ ଉପରେ ସେଦିନର ସୁନେଲି ରେଶମୀ ସ୍ମୃତି ଟିକକ ଲିଭିଯିବ । ତା'ପରେ ?

ଏମାନେ କ'ଣ ଜାଣିପାରୁ ନାହାନ୍ତି ଯେ ସହରରୁ ଦୂରେଇ ଯାଉଛନ୍ତି ବୋଲି ! ଏମାନେ କ'ଣ ବାହାରୁ କୁଆଡୁ ଆସିଛନ୍ତି ? ...ନା ଏ ସହରର ?

ଏମାନେ ତ ନିଶ୍ଚୟ ସ୍ୱାମୀ ସ୍ତ୍ରୀ ହୋଇଥିବେ ? — ହୋଇ ପାରନ୍ତି, କିନ୍ତୁ କେଜାଣି ।

ବର୍ତ୍ତମାନ ତ ଅନ୍ତତ ଏମାନେ ଫେରିବା ଉଚିତ । ମୋଟ ଉପରେ ଏମାନେ ଫେରିବେ ନା ଏମିତି ଚାଲିଥିବେ !

ଆବେ ଥାକିଯା ! କବିତା ବନ୍ଦ୍‌କର । ଦେଖୁଛୁ କ'ଣ ? କହୁଛୁ କଣ ବେ ଶାଲା ? ସଜିଲ ହୋଇଯାଅ ସମସ୍ତେ ! ଏଇ ଗଡ଼ିଆସିବ ଚିଡ଼ିଆ ! ଆବେ ଥାକିଯା ! ଏଇଟା ଥୋପ ହୋଇପାରେ ।

ଚୋପ୍‌ବେ, ପର୍‌ଫେସର ଶଳା, ଛେଚୁଆ । ଧରିଥା ଛୁରୀ, ଆଣ୍ଠିକରି; ସେ ଟୋକାକୁ ତୁଇ ଜବଦ୍ କରିବୁ ଆଜି । ତାକୁ ମୁଁ ଚିହ୍ନିଛି । ସେ ଏଇ ମୁନ୍‌ସି ଗଳିର ଛ' ନମ୍ବର ତିନିତାଲାରେ ଥାଏ । ତା କମ୍ପାନୀରେ ଦୁଇଦିନ ହେଲା ଛୁରୀ ମରାମରି ହେଇଛି । ଢେର ଲୋକ କାମରୁ ତଡ଼ା ଖାଇଛନ୍ତି ।

ତୁ ଜମା ଚିହ୍ନିନୁ ! ପରଫେସର ଯାହା କହୁଛି ସେଇଟା ଠିକ୍ । କାହୁଁ ଗୋଟେ ନୂଆ ଏସ୍.ପି. ଆଇଚି । ଠିକ୍ ଏମିତି ଚେହେରା । ତରବରିଆ ନୁହେଁ । ଏମିତି ଢମେଇଲା ପରି ଚାଲେ । ମତେ ଲାଗୁଚି ସେଇ ନିଜେ ଆସିଚି । ଆଉ ସେ ଟୋକୀ ଶାଲା ନିଜେ ଗୁଇନ୍ଦା । ଦୁଇଜଣଯାକ ପିସ୍ତଲ ନେଇ ଆସିଛନ୍ତି । ଏଇ ପାଖରେ ପୂରା ଫଉଜ ମହଜୁଦ୍ ଅଛି । କେତେ ବେପରୁଆ ସେମାନେ ଚାଲିଛନ୍ତି ଦେଖୁନୁ ! ୟାକୁ ଛୁଇଁଲେ ମଲ ।

ମୁଁ ଦେଖିଲାଣି ଏ ଧନ୍ଦା ଛାଡ଼ିଦବାକୁ ହବ, ନହେଲେ ତମକୁ ସମସ୍ତଙ୍କୁ ସଫା କରିବାକୁ ହବ । ତମର ଦିଲ୍ କାହିଁବେ, ତମେ ଡକେଇତ ହବ ? ଯାଅ ଶଳେ ଏଠୁ । ନହେଲେ ଶଳାଙ୍କୁ କିମା ବନେଇଦେବି ।

ଆବେ ସରଦାର, ହେମତି ଚିଡ୍ଡୁଚୁ କାହିଁକି ? ସବୁ ଧନ୍ଦା ତ ମାନ୍ଦା ଚାଲିଚି । ସବୁଠି ଠକେଇ, ସବୁଠି ଡର । ଦୁନିଆ ଶାଲା ବିଗିଡ଼ି ଯାଇଚି । ତା ବେଟେରୀ ସରିଗଲାଣି । କେମିତି ମିଟିମିଟି ହଉଚି ଦେଖୁନୁ । କିଛି ବେଉସା ଏଠି ଆଉ ଚାଲିବ ନାଇଁ । ତୁ ନିଜେ କହୁନୁ, ଆଗ ଯେମିତି ଗରମାଗରମ ଆମର ଧନ୍ଦା ଚାଲିଥିଲା, ଏବେ ଆଉ କାହିଁ ? ମାନସିଂ, ରୁପା ସିଂ ଦଳର ସୁଦିନ ଆଉ ଖୋଜିଲେ ମିଳିବ ? ସବୁ ଭେଜାଲ୍, ସବୁ ମିଶାମିଶି । ସାଧୁ ଚୋର, ଚୋର ସାଧୁ । ସଚ୍ଚା ଛୁରୀଟାଏ ପରା ମିଳୁନାହିଁ ଏ ଶାଲା ବଜାରରେ । ସଚ୍ଚା ଟଣ୍ଟିବି ମିଳୁନାହିଁ କାଟିବାକୁ ! ...ଆମେ ଯେମିତି ଡକେଇତ, ତୁ ବି ସେମିତି ସର୍ଦାର ।

ଚୋପ୍‌ବେ ଶାଲା ପର୍‌ଫେସର । ଶାଲା ଜୋକର !!

''ପର୍‌ଫେସର ବହୁତ ସମଝଦାର ଅଛି । ଖାସା ଚାଲାକ୍ କଥା କହୁଛି ପର୍‌ଫେସର । ନା କ'ଣ କହୁଚୁ ବଡ଼େମିଆଁ ।

ଆବେ ଚୁପ୍‌କର, ବେବ୍‌ସାବେଳେ ବକ୍‌ବକ୍ କରୁଚି କାଇଁକି ? ସଜିଲ ହେଇଯାଅ !

ସନ୍ଧ୍ୟା ଆକାଶରେ ଯେଉଁ ଆଞ୍ଜୁଳେ ଆଲୁଅ ଥିଲା, ସେ ବି ନିଗିଡ଼ି ଯାଇଥାଏ । ଏଠି ସେଠି କିଛି କିଛି ଅଳସୁଆ ଅପାରଗ ମେଘ । ରଙ୍ଗରେ ଧଳା ନୁହଁ କି କଳା ନୁହଁ । ରାସ୍ତା କଡ଼ର ଗଛ ଖୁଣ୍ଟ ସବୁ ଠିଆ ଠିଆ । ସବୁ ନିସ୍ତବ୍ଧ । ବହୁ ଦୂରରେ ମାଇରେଳଟିଏ ସରୁ ସିଟି ମାରିବାର ଶବ୍ଦ ଶୁଭୁଥାଏ କି ଶୁଭୁ ନ ଥାଏ । ରାସ୍ତା ମଥାନ ଉପରୁ ଦୁଇଟି ଛାଇ ଆସ୍ତେ ଆସ୍ତେ ଓହ୍ଲେଇ ଆସୁଥାନ୍ତି ।

ଆଚ୍ଛା, ବତୀ କାହିଁକି ଲଗୁନାହିଁ ? ଏତିକିବେଳକୁ ତ ଲାଗିଯାଉଥିଲା କ'ଣ ହେଇଥିବ ଶଳା, କ'ଣ ଠିକଣା ଆଜିକାଲି ? କିଏ କୋଉଠୁ ତାର କାଟିଦେଇଥିବ । କିଏ କାହାକୁ ଲାଞ୍ଛି ଦେଇଥିବ । ମାଲ ଭାଗ ବଣ୍ଟାରେ ଗୋଳମାଳ ହୋଇଯାଇଥିବ । ସବୁ ସରକାରୀ କଥା ଶାଳା, ନମକହାରମ ବେପାର ।

ଆଉରି ପାଖେଇ ଆସିଲେ ସେମାନେ ! ଜାଲ ଭିତରରୁ ପହରି ଆସୁଥିବା ନିରୀହ ମାଛପରି ସେମାନେ ଆଉ ଦେଖାଗଲେ ନାହିଁ । ସେମାନଙ୍କ ଉଶ୍ୱାସ ପାଦଶବ୍ଦ ଶୁଭିଲା । ଏଣେ କଲିଜା ଭିତରେ ରକ୍ତ ଫେଣେଇଲା । ନିଶ୍ୱାସ ଚାଲିଲା ଚିପିଲାପରି, ପବନକୁ ଚୋରେଇଲା ପରି । ଅନ୍ଧାରରେ ଆଖି ଡୋଳା ଡହକିଲା, ହାତମୁଠା ଭିଡ଼ିହେଇଗଲା ।

ସେ ଦୁଇଟିଯାକ ଆସି ସାମ୍ନାରେ ପହଞ୍ଚିଗଲେ । ପୁରୁଷ ଜଣକ ଠପ୍‌କିନା ସେଇଠି ଠିଆହୋଇଗଲା । ଚାରିଟା କଲିଜା ଏକାଥରେ ଢପ୍‌କରି ରହିଗଲା ଗୋଟାଏ ମୁହୂର୍ତ୍ତ । ସ୍ତ୍ରୀ ଜଣକ ଦୁଇ ପାହୁଣ୍ଡ ଆଗେଇ ଯାଇ ଚୁପ୍‌ଚାପ୍ ଠିଆ ରହିଲା ।

ଛପ୍‌କିନା ରାସ୍ତା ଉପରକୁ କୁଦା ମାଇଲା ସର୍ଦାର ।

ତା ପଛେ ପଛେ ଡେଇଁ ପଡ଼ିଲେ ଅନ୍ୟମାନେ ।

କିଛି ଘଟିବା ପୂର୍ବରୁ ଯୁବକର ଡାହାଣ ହାତଟି ପକେଟ ଭିତରୁ ବାହାରି ଆସିଲା । ଏଇ ବୋଧହୁଏ ପିସ୍ତଲ । ଅନ୍ଧାରକୁ ଦୁଇଫାଳ କରି ଗର୍ଜି ଉଠିବ । ଅନ୍ତତ ତିନିହଳ ଗୋଡ଼ ଲଡ଼ବଡ଼ ହୋଇଗଲେ, ଅକସ୍ମାତ ପାଟିଟାଏ ଶୁଭିଲା । ସ୍ତ୍ରୀ ଲୋକଟି କିନ୍ତୁ ଏ ଅଚାନକ ଆକ୍ରମଣରେ ଚିତ୍କାର କଲାନାହିଁ । ବୋଧହୁଏ ଭୟରେ ଝିମିଖାଇ ଯାଇଛି । ଲୋକଟି କିନ୍ତୁ ଖଚ୍‌କିନା ଲାଇଟରରେ ସିଗ୍ରେଟ୍ ଖଣ୍ଡେ ଲଗେଇଲା । ଅନ୍ୟମାନେ ହସିଲେ କି ଗର୍ଜିଲେ ଜଣାପଡ଼ିଲା ନାହିଁ । ସେମାନେ ଝାମ୍ପି ପଡ଼ିଲେ ସେ ଦୁହିଙ୍କ ଉପରେ । ବିଭିନ୍ନ ଢାବରେ ଧରିନେଲେ ସେ ଦୁହିଁଙ୍କୁ । ଅଭ୍ୟସ୍ତ ଢଙ୍ଗରେ ଛୁରୀ କାଢ଼ିଲେ । ଦାନ୍ତ ଚୋବେଇଲେ ଏବଂ ତା' ସନ୍ଧରୁ ହିଂସ୍ର କଥା ଖିଙ୍କାରିଲେ । ସବୁକିଛି କେମିତି ଖାପଛଡ଼ା ଜଣାଗଲା । ରଙ୍ଗମଞ୍ଚ ଉପରେ ଗୋଟାଏ ପକ୍ଷ ହଠାତ୍ ତୁନି ପଡ଼ିଗଲେ ଯେମିତି ଅଡୁଆ ଲାଗେ ପ୍ରାୟ ସେଇଭଳି ।

ସେ ସ୍ତ୍ରୀ ଚିତ୍କାର କରୁନାହିଁ କାହିଁକି ? ତା ପାଟିରେ ହାତ ଜାବି, ତାକୁ ଟେକି ନିଆହେବ କେମିତି ? ସେ ପୁରୁଷଟା ଗର୍ଜି ଉଠୁନାହିଁ କାହିଁକି ? ତାକୁ ଜବରଦସ୍ତି ହାତଗୋଡ଼ ମୋଡ଼ି କାବୁ କଲାବେଳେ ଜଣେ ଦାନ୍ତ ରଗଡ଼ି ଗର୍ଜିବ କେମିତି ? ଦୁଇଜଣ ଦୁଇଆଡୁ ସେ ଯୁବତୀଟିକୁ କୁଣ୍ଢେଇ ଧରିଥାନ୍ତି । ସେ ମାଛଭଳି ଛଟଛାଟ ହେଉନଥାଏ । ଫଳରେ ସେମାନେ ପରସ୍ପରକୁ କୁଣ୍ଢେଇଲାପରି ଠିଆହୋଇଥାନ୍ତି । ପରସ୍ପରର ଲୋମଶ ହାତ ତାଙ୍କ ଦେହରେ ବାଜୁଥାଏ । ଜୁଡ଼ାରୁ ଶାଢ଼ୀରୁ କିଛି ବାସ୍ନା ବାଜୁଥାଏ ନାକରେ । ଯା' ପରେ ଆଉ କ'ଣ କରିବାକୁ ହେବ ସେମାନେ ଜାଣିପାରୁ ନ ଥାନ୍ତି ଅନ୍ଧାରରେ, ମିଟମିଟି ଅନଉଥାନ୍ତି । ଭୁରୁ କୁଞ୍ଚଉଥାନ୍ତି କିନ୍ତୁ ନାକରେ ବାସ୍ନା ବାଜି ଭୁରୁ ପୁଣି ଫିଟିଯାଉଥାଏ ।

ପୁରୁଷଟିକୁ ପଛଆଡୁ ତଣ୍ଟି ଉପରେ ବାହୁ ବେଢ଼େଇଧରି ଦିଆହୋଇଥାଏ । ବାଁ ହାତଟିକୁ ପଛରେ ମୋଡ଼ି ଦିଆହୋଇଥାଏ । ସେ ଏଇଠେଇ ଉଧୁଳିବା କଥା । ଗର୍ଜିବା କଥା । ତଣ୍ଟି ଉପରୁ ଖାବଲା ଫିଟେଇବାକୁ ଭିଡ଼ିବା କଥା, ଆମ୍ପୁଡ଼ିବା କଥା । ସେସବୁ

କିଛି ନାହିଁ । ସେ ଚୁପ୍‌ଚାପ୍ । ଡାହାଣ ହାତରେ ସିଗ୍ରେଟ ଫୁଙ୍କି ସେମିତି ଡେରିହୋଇ ଠିଆରହିଲା । ଧୂଆଁ ଛାଡ଼ିଲା ଆକାଶକୁ ।

ଧେତ୍‌କରି । କ'ଣ ହୋଇଯିବ ଯା ପରେ ।

ସର୍ଦାର ଗର୍ଜିଲା । 'ଛୋଡ଼୍ ଦୋ' – ତିନିଜଣଯାକ ଚମକି ପଡ଼ିଲେ । ଶିକାର ଛାଡ଼ିଦେଲେ । ଆଶ୍ୱସ୍ତ ବୋଧକଲେ । ସାମାନ୍ୟ କ୍ଳାନ୍ତ ହୋଇ ଠିଆ ରହିଲେ । ଯାହାହଉ ସର୍ଦାର ବଞ୍ଚେଇଦେଲା । ଏଣିକି ସେ ଯାହା କହିବ ସେଇଆ କରାଯିବ ।

"ଉତାର ଲୋ ସବ୍ ସାମାନ୍ ।"

ଖପାଖପ୍ ପଞ୍ଝାମାନ ଦରାଣ୍ଡିଲା ଯୋଡ଼ିଏ ଚିକ୍‌କଣ ଶରୀର ଉପରେ ମୋଲାୟେମ୍, ପୋଷାକକୁ । କଲମଟିଏ, ଘଣ୍ଟାଟିଏ, ମୁଦିଟିଏ ଏବଂ ଲାଇଟରଟିଏ । ସେଠି ଘଣ୍ଟାଟିଏ କେବଳ ।

ଧେତେରି ।

ଯା ପରେ ପୁଣି କ'ଣ କରାଯିବ ? ପୁରୁଷଟି ସିଗ୍ରେଟ ଟାଣି ଆଗକୁ ପାଦ କାଢ଼ିଲା । ଏମାନେ ବୋଧହୁଏ ଆଗଭଳି ସେମିତି ଚୁପ୍‌ଚାପ୍ ଅନ୍ଧାର ରାସ୍ତା ଉପରେ ଆସ୍ତେ ଆସ୍ତେ ଦୂରେଇଯିବେ । ଏମାନେ ଏମିତି ହବ ବୋଲି ହୁଏତ ଜାଣିଥିଲେ । ଏମାନଙ୍କର ବୋଧହୁଏ ଏ ସବୁ କଥାକୁ ଖାତିର ନାହିଁ । ଏମିତି ବାରମ୍ବାର ହୁଏତ ତାଙ୍କ ଜୀବନରେ ଘଟିଛି । ଦେହସହା ହେଇଗଲାଣି ।

ଏଠି କିନ୍ତୁ ବେଜିଦ୍ ହେଇଯାଉଛି । ଭିଖମଗାକୁ ଦେଲାଭଳି କ'ଣ ଚାରିଟା ଜିନିଷ ପକେଇଦେଇ ଏମାନେ ଏଇଠୁ ଖସିଯିବେ ? ଏ ନିକାଞ୍ଚନ ରାସ୍ତା ଏ ଅନ୍ଧାର ଭିତରେ ଦଶ-ପଚିଶ ଜଣଙ୍କୁ ମାରି ହଜମ କରି ହେଇଥାନ୍ତା । ରକ୍ତରେ ଗାଧେଇ ଯାଇଥାନ୍ତା, ଏ ଉଷୁମ ରାସ୍ତା । ଅଥଚ ଏମିତି ସହଜରେ ଧରାଦେଇଥିବା ଚିଡ଼ିଆ ଏମିତି ସହଜରେ ଉଡ଼ିଯିବେ ?

ସର୍ଦାର ଖପାଙ୍କିନା ସେ ଯୁବକଟିର ବେକପାଖ କଲରଟାକୁ ଗୋଟାଏ ଥାବାରେ ଧରିନେଲା । ତାକୁ ପଛକୁ ଭିଡ଼ିଆଣି ରାସ୍ତା ତଳକୁ ଧକ୍‌କାଟାଏ ମାରିଦେଲା । ନହେଲେ କି ସେ ସର୍ଦାର । ପୁରୁଣା ରକ୍ତଖିଆ ବାଘଟି ସେ ।

"ବେ ଟୋକା ! କୁଆଡ଼େ ଏମ୍‌ତି ରଇସ୍‌ଲାଖି କଦମି କାଢ଼ି ପଳଉଚୁ । ତୋର ବିବି ଆମର ବିବି ହେବାର ମଜା ଦେଖିବୁ ନାହିଁ ?"

ସର୍ଦାର ନିଜ କଥାରେ ନିଜେ ଗୁଡ଼ାଏ ହି-ହି ହସିପକେଇଲା । ତାପରେ କହିଲା – "ତୁ ବଡ଼ା ସରିଫ୍ ଆଦ୍‌ମୀ ଜଣାପଡୁଛି । ତୁ ଶାଲା ଆଗେ ବଢ଼୍ । ତୋ ସାଙ୍ଗେ ଆମର କିଛି ମତଲବ ନାହିଁ । ହଁ ଯାର ପେଣ୍ଟ ସାର୍ଟ ଉତାରି ଦିଅବେ, ଆଉ ଲାତ ମାରି ଯାକୁ ନିକାଲିଦିଅ । ଆବେ, ତୁ କାଲି ସକାଳୁ ଏଇଠୁ ତୋ ବିବିକୁ ଆସି ନେଇଯିବୁ । ଉଁ କି ଚୁଁ କରିବୁ ତ ତତେ ଏଇଠି ଟୁକ୍‌ଡ଼ା ଟୁକ୍‌ଡ଼ା କରି ଫିଙ୍ଗିଦେବି ।"

ଅଣ୍ଡର ୱ୍ୟାର୍ ଏବଂ ହାତକଟା ଗେଞ୍ଜି ଖଣ୍ଡି ପିନ୍ଧି ସେ ମଣିଷଟି ପଛକୁ ନଚାହିଁ ପଦେ ପାଟି ନ ଫିଟେଇ ବଞ୍ଚିବ ବୋଲି ଆଗକୁ ପାଦ କାଢ଼ିନେଲା । ସର୍ଦାର ଟହ ଟହ ହସିଲା, କହିଲା – "ଆରେ ପର୍‌ଫେସର, ଏ ୱରଦ୍‌ର ଶାଢ଼ୀ ଉତାରି ଦେ । ମଛଲୀକୁ ଏଇଠୁ ପୂରା ସଫା କରି ଉଠେଇ ନିଅବେ ଆଡ୍‌ଡ଼ାକୁ, ଆଉ ଦୋସ୍ତ ଆସିଥିବେ । ଆଜି ମସ୍ତ ଭୋଜି ହବ ।"

ସର୍ଦାରର ହୁକୁମ ପାଇ ସେ ଚାରି ଖେପାରେ ଆଗକୁ ଗୋଡ଼େଇଗଲା । ମାଡ଼ିବସିଲା ସେ ଲୋକଟା ଉପରେ । ସମସ୍ତେ କାବା ହେଇ ଚାହିଁଥାନ୍ତି । ଘୁଷି, ବିଧା, ଗୋଇଠା, ମୁଖ୍‌ମାରି ଦେଇଗଲା ଆଖିବୁଜା, ଲୋକଟା ଗଁ-ଗଁ ହେଉଥାଏ । "ଶଳା ଶୁଅରକା ବଚ୍ଚା, ଶଳା ରାସ୍କେଲ ବେହିଆ, ଭାଡୁଆ, ଅମରଦ – ଶଳା ତୋ ମୁହଁରେ ଲାତ ।"

ତାରା ଆଲୁଅରେ ଦଶହାତ ଅନ୍ତରରେ ତାକୁ ଉଠେଇ କଚି ସେ ପିଟି ଲାଗିଥାଏ । "ଆବେ ଗୁଙ୍ଗା, ଶଳା ପାଟି ଫିଟା, ଶଳା ଘୁଷୁରୀ, ଆବେ ମତେ ଗାଳି ଦେ, ମତେ କାମୁଡୁ ! ଥରେ ହେଲେ ମଣିଷ ଭଳି ରାଗିଯା' ।"

ତା' ପରେ ସେ ତା ଚାରିପଟେ ଉନ୍ମତ୍ତ ହୋଇ ଡେଇଁଲା । ଏପଟୁ ସେପଟୁ ତାକୁ କଚ୍‌କାଚ୍ ଲାତ ମାଇଲା ଏବଂ ତା ବୁକୁ ଉପରେ ମାଡ଼ିବସି ମାରି ଦେଇଗଲା ଛୁରୀ ! "ମର୍ ଶାଲା, ମର୍, ମର୍ !!"

ଏତିକିବେଳେ, ଆଉ ଦୁଇଜଣ ସେ ସ୍ତ୍ରୀ ଲୋକଟିକୁ ତଳେ ପକେଇ ତା ଲୁଗା ଭିଡୁଥାନ୍ତି । ଦୁମୁ ଦୁମୁ ପାଦଶବ୍ଦ ଶୁଭିଲା । "ଉଠି ଯା' ଶଳେ ! ତା ଦିହରେ ଯେ ହାତ ଦେଉଚ ମୁଁ ତାକୁ ଖୁନ୍ କରିଦେବି । ହଟ୍ ଯାଓ !"

ତା ଚିତ୍କାରରେ ଖପ୍‌ଖାପ୍ ସେ ଦୁଇଜଣଯାକ ସର୍ଦାର ପାଖକୁ ଘୁଞ୍ଚିଗଲେ । ପେଟିକୋଟ୍‌ଟିଏ ପିନ୍ଧି ସେ ସ୍ତ୍ରୀ ଲୋକ ଆସ୍ତେ ଠିଆହେଲା । ତଳେ ପଡ଼ିଥିବା ଶାଢ଼ୀଟିକୁ ଗୋଟେଇଲା ନାହିଁ !

"ମୁଁ ତତେ ରକ୍ଷା କରିବି । ତତେ କେହି ଛୁଇଁ ପାରିବେ ନାହିଁ । ମୁଁ... ମୁଁ..." ତା ପାଟି ଖନିମାରିଗଲା । ସେ ହଠାତ୍ ଖୁବ୍ ଘାବରେଇଗଲା । ବିଜୁଳି ପରି ସର୍ଦାର ତାକୁ ଧରିନେଲା । ସମସ୍ତେ ମିଶି ତା ହାତରୁ ଛୁରୀ ଛଡ଼େଇନେଲେ ।

"ଆରେ ପର୍‌ଫେସର, ତୁ କ୍ୟା ପାଗଲ୍ ହୋ ଗୟା ? ଆବେ ଶାଲା ବେକୁବ୍..' ସେ କେବଳ ସ୍ତ୍ରୀ ଲୋକ ଆଡ଼କୁ ଚାହିଁ ରହିଥାଏ । ସେ କ'ଣ ଜାଣିପାରୁନାହିଁ ଯେ ଯା ଭିତରେ ତା ସ୍ୱାମୀକୁ ହତ୍ୟା କରାହୋଇଗଲା ? ସେ ପାଟିକରି ପୃଥିବୀକୁ ଚମକାଉନାହିଁ କାହିଁକି ? ବୁକୁ ବାଡ଼େଇ ବିକଳ ହୋଇ କାନ୍ଦୁନାହିଁ କାହିଁକି ? ବାଘୁଣୀପରି ଝାମ୍ପିପଡୁନାହିଁ କାହିଁକି ? ...ପୁଅ ଝିଅକୁ ବାହୁନି କାନ୍ଦୁନାହିଁ, ଅଭିଶାପ ବର୍ଷୁନାହିଁ କାହିଁକି ? ...କାହିଁକି ? ବେ ?

ଚିହ୍ନିକି ଉଠିଥାନ୍ତା ସେ । ଅନ୍ଧାରରେ ସ୍ୱାଭାବିକ ନାରୀ କଣ୍ଠରେ ଶୁଭିଲା ।

"ତମ ଆଡ୍‌ଡ଼ା ଏ ପୁରୁଣା ରାସ୍ତାଠଉ କେତେବାଟ ସର୍ଦାର ?"

ଏଁ ? ...ମାନେ ?? ...ତାହେଲେ ???

ଛାନିଆରେ ଚାରୋଟିଯାକ ତଳପାଟି ଓହଳି ପଡ଼ିଲେ । ସର୍ଦାର ସମସ୍ତଙ୍କୁ ପେଲି ଆଗକୁ ମାଡ଼ିଆସିଲା, ଗର୍ଜିଲା ।

"ହେ ମାଇକିଣା ! – ପଳାମୋ ସାମ୍ନାରୁ କହୁଚି । ନହେଲେ ତୋତେ ଘୁସୁରିପରି କାଟ୍ଟି ଏ କାଦୁଅକୁ ଫିଙ୍ଗିଦେବି । ଯା... ଯା... କହୁଚି..."

ବାଘପରି ଗର୍ଜି ମାଡ଼ିଗଲା ସର୍ଦାର । ସ୍ତ୍ରୀଟି ସେମିତି ପେଟିକୋଟ୍ ପିନ୍ଧି ଅପସରିଗଲା ସହର ଆଡ଼ିକି ।

ମାଳ ମାଳ ବତୀ ଚକ୍‌ଚକ୍ ଜଳିଉଠିଲା । ଲମ୍ବା ରାସ୍ତା ଉପରେ ପଛକୁ ନ ଚାହିଁ ହଣାଖିଆ ମଣିଷଟିକୁ ଆଡ଼ ହେଇ ହେଇ ଅଧାପିନ୍ଧା ମାଇକିନାଟା । ମାଇକିନାଟା ଚାଲିଯାଉଥାଏ କୁଆଡ଼େ କେଜାଣି ?

□□□

# ଉପସଂହାର

ରାଜରାସ୍ତା ଉପରେ ତାକୁ ପଛକରି ଅନେକ ଲୋକ ଠେଲାପେଲା ହେଉଥିଲେ । କୌଣସି କାରଣରୁ ସେ ଭିତରୁ କେହି ଆଗକୁ ଯାଇପାରୁ ନଥିଲେ । ସେ ବି ଗଡ଼ିଆସି ସେଇଠି ଅଟକିଗଲା ଏବଂ ସମସ୍ତଙ୍କ ମୁଣ୍ଡର ଫାଙ୍କବାଟେ, ସମସ୍ତଙ୍କ କାନ୍ଧ ଉପର ଦେଇ ଓଟେଇ ଚାହିଲା । ଆଗକୁ ତାକୁ ଦିଶିଲା କେମିତି ଗୋଟାଏ ଅପରିଚିତ ଅନ୍ଧାର । ଏକଧାଡ଼ିଆ ପିମ୍ପୁଡ଼ିଗୁଡ଼ିଏ ପାଣି ଗାର ପାଖରେ ଜମା ହୋଇଗଲାପରି ସେଇଠି ସେ ମଣିଷମାନେ ଥମିଯାଇଥାନ୍ତି । ସେମାନଙ୍କ କାହାରି ପିଠି ସହିତ ତାର ପରିଚୟ ନଥିଲା । ସେ ଦୂରପାଖ କୋଠାବାଡ଼ି ଗୁଡ଼ିକୁ ଚାହିଁଲା । ନଅ ନମ୍ବର ସରିଯାଇ ସେଇଠି ତାର ଅତି ପରିଚିତ ନାଳ ଉପରେ ତିରିଶଫୁଟର ଛୋଟ ପୋଲଟି ପଡ଼ିବା କଥା । ପୋଲ ଆରପଟେ ଉଞ୍ଚ ଉଞ୍ଚ ଦୋ'ମହଲା, ତିନି ମହଲା ଆଲୁଅରେ ଝିଲମିଲ, ଧାଡ଼ି ଧାଡ଼ି ଘର । ମାଳ ମାଳ ବତୀଖୁଣ୍ଟ ମଝିରେ ଚକ୍‌ଚକ୍ ରାଜରାସ୍ତା – ସେ ସବୁ କିଛି ତାକୁ ଦିଶିଲାନାହିଁ । ସବା ଉପରେ ଆଲୁଅର ଖମ୍ବପରି ସେ ମିନାର ବି ଦିଶିଲାନାହିଁ । ସେ ଅସୁସ୍ଥ ବୋଧକଲା । ହାତରେ ଓହଳି ରହିଥିବା ବଜାର ମୁଣାଟି ତାକୁ ଖୁବ୍ ଭାରି ଜଣାଗଲା । ସେଇଠୁ ଛଅ ନମ୍ବର ରାସ୍ତା ଉପରେ ତା' ବସାର ଗୋଟିଏ ଝରକାରୁ ଆଲୁଅ ଦିଶିବା କଥା । କାହିଁକି ଦିଶୁନାହିଁ ?...

ଘଟଣା କ'ଣ ? – ସେ ପେଲିହେଲା ଅଚିହ୍ନା ପିଠିମାନଙ୍କର ବ୍ୟୂହ ଭେଦିବାକୁ । ଏଣେ ଅନିର୍ଦ୍ଦିଷ୍ଟ କୌଣସି ବ୍ୟକ୍ତିର ଉଦ୍ଦେଶ୍ୟରେ ସେ ପଚାରି ଚାଲିଲା – "କ'ଣ ହେଲା ? କାହିଁକି ଏଠି ସବୁ ଜମା ହେଇଛନ୍ତି ? ଘଟଣା କ'ଣ ?"

ଡାହାଣ ପାଖରୁ ଶୁଭିଲା – "କିଛି ଜଣାପଡୁନାହିଁ... ସବୁ ଅନ୍ଧାର ଦିଶୁଚି ।"

ବାଁରୁ ଶୁଭିଲା – "ଏଣିକି ଆଉ କିଛି ନାହିଁ – ଭୂଇଁ ଆଉ ଦିଶୁନାହିଁ, ଏଇଠି ଛିଣ୍ଡିଯାଇଛି ।"

ସେ ଆଉରି ପେଲିହେଇ ଆଗକୁ କହୁଣେଇଲା । ତାକୁ ଶୋଷକଲା । 'ହେ, ହେ, ଭୂଇଁ ଛିଣ୍ଡିଯିବ କେମିତି କିଏ ? ଦେଖି ଦେଖି ମତେ ଛାଡ଼ିଲ; ଆଲୁଅ ଲିଭିଗଲେ, ମୁଁ ପରା ଏଠିକା ପୋକ, ଅଣ୍ଡାଳି ବାଟ କଢ଼େଇନେବି । ମତେ ଏପାଖର ସବୁ ରାସ୍ତା ଜଣା ।'

"ହୋ, ହୋ, ହୋ !" କୋଉ ବାଟ ଅଣ୍ଡାଳିବ । ଏଠି ବାଟ ଆଉ କାହିଁ ?"

ଏଇଠି ପରା "ଭୂଖଣ୍ଡ ଧସିଯାଇଛି । "ଧସିଯାଇଛି"...

"ଧସି ଯାଇଛି !" ଦୋହରାଇଲା... ଚାରିଆଡ଼େ ମଣିଷମାନଙ୍କର ସ୍ୱର !

"ମାନେ ??"

ତା'ର ହାତ ଯୋଡ଼ିକ କଣ୍ଢେଇ ହାତ ପରି ଓହଳି ପଡ଼ିଲା ? ତା' ଉଚ୍ଚତା କମିଗଲା ଚାରିଇଞ୍ଚ । କାଠ ପରି ଗୋଡ଼ ଯୋଡ଼ିକରୁ ଜିଅ ଛାଡ଼ିଗଲା ?

କେହିଜଣେ ସାମ୍ବାଦିକ କହିଲେ – "ଆଜି ସାତଟା ବାଜିବାକୁ ତେର ମିନିଟ୍ ସମୟରେ ଆଗରୁ କୌଣସି ସୂଚନା ନଥାଇ, ହଠାତ୍... ଏ ସମଗ୍ର ଅଞ୍ଚଳ ଭୂଗର୍ଭର କୌଣସି ବିରାଟ ଗର୍ତ୍ତ ଭିତରକୁ ଗଳିପଡ଼ିଲା । କିଏ ଜାଣିଥିଲା ଯେ ଏଇଟା ଗୋଟାଏ ତେଲୁଣି ଭଳି ସେ ବିବରକୁ ଘୋଡ଼େଇ ରହିଥିଲା ଏତେକାଳ ଧରି ?"

ବୈଜ୍ଞାନିକ ଢଙ୍ଗରେ ଆଉ ଜଣେ କହିଲେ – ସମୁଦ୍ର ଭିତରେ ଏମିତି ଦ୍ୱୀପଗୁଡ଼ିକ ହଠାତ୍ ଉଭେଇ ଯାଆନ୍ତି । କେତେ ଏମିତି ପର୍ବତମାଳା ଭୂପୃଷ୍ଠରୁ ଲିଭିଯାଇଛନ୍ତି । ଏଇଟା ବୋଧହୁଏ ସେଇ ପ୍ରାଗୈତିହାସିକ ଗୋଟିଏ ଫୋଟକା ଉପରେ ଓଜନ ବଢ଼ିଯିବାରୁ ଏବଂ ତଳୁ କୋରିହୋଇ ଝଡ଼ିପଡ଼ିବାରୁ ଧସିଗଲା ।

ଆଉ କିଏ ପଚାରିଲା "କୋଉଠୁ କୋଉଯାଏଁ ଧସିଗଲା ?"

"କେଜାଣି କୋଉଯାଏଁ ? କିନ୍ତୁ ଏଇଠୁ ତେଣିକି ଆଉ ନାହିଁ ।"

"ହୋଇପାରେ ହିମାଳୟଯାଏଁ, ହୋଇପାରେ ଉତ୍ତର ମେରୁ ଯାଏଁ..."

"ତା'ହେଲେ ତ ଏଠିକି ସମୁଦ୍ର ମାଡ଼ିଆସିପାରେ ।"

"ଆସୁନାହିଁ କାହିଁକି !"

"ହେ-ହେ, ଏମିତି କାଉଳି ହେଲେ ହେବ । ଆପଣ ଶୁଖିଲାରେ ଠିଆରହି କାନେଇଥାନ୍ତୁ, ଗୋଟାଏ ଘୁ-କିନା ଗମ୍ଭୀର ଶବ୍ଦ ହେବ, ବହୁ ଦୂରରେ, ବହୁ ତଳେ ? ଏଇ ଅନ୍ଧାର ଭିତରୁ ସେ ଶବ୍ଦ ଉଠିବ । ସେତିକିବେଳେ ଜାଣିବ ଯେ ସମୁଦ୍ର ଆସିଗଲା ।"

"ଆଚ୍ଛା, ଆଚ୍ଛା, ତା'ହେଲେ କିଛି ସମୟ ଅପେକ୍ଷା କରାଯାଉ ।"

ଧସିପଡ଼ିଥିବା ଭୂଖଣ୍ଡ ଉପରେ, କୋଠାବାଡ଼ି, ମଣିଷ, ଗାଈଗୋରୁମାନଙ୍କ ଉପରେ ସମୁଦ୍ର ମାଡ଼ିଯିବାପାଇଁ ସମସ୍ତେ ଅପେକ୍ଷା କରି ରହିଲେ ।

କେହି ଜଣେ କହିଲା, ଆଚ୍ଛା ସେ ନଅତାଲା ଦପ୍ତରଟା ତ ଧସିଯାଇଥିବ, ତିନି ହଜାର ବଖରା, ଆଲମାରୀ, ଅସଂଖ୍ୟ ଫାଇଲ୍ । ଛୋଟ ବଡ଼ ଟେବୁଲ୍ ଚୌକି ଏବଂ ମଣିଷ । ଦଲିଲ୍ ଦସ୍ତାବିଜ ସବୁ ଏବେ ଗଲା ।"

"ନିଶ୍ଚୟ ଗଲା – ଆମ ସମସ୍ତଙ୍କର ପିତାମାନଙ୍କର ନାମ, ଦସ୍ତଖତ ଓ ଠିକଣା, ଆମ ଠିକଣା ଆମ ନମ୍ବର, ଦେଣା, ପାଉଣା, ଟିକସ, ଫୌଜଦାରୀ, ତୋଷରପାତର କାଗଜପତ୍ର ସବୁ ହୋଇଗଲା ଘଡ଼ବ୍ । ଯା ଶଳା ପାପ ଗଲା ।"

ଲକ୍ଷେ ଟନ୍ ଚାଉଳ, ଗହମ, ଡାଲି ମହଜୁଦ୍‌ଥିଲା ସେ ଗୋଦାମରେ । ତିନିଶହ ୱାଗନ୍ ମାଛ, କଙ୍କଡ଼ା, ଚିଙ୍ଗୁଡ଼ି ବରଫଦିଆ ହୋଇ ଥୁଆହୋଇଥିଲା, ଆଜି ଚାଲାଣ ହେବାପାଇଁ । ଗୁଜରାଟି ସୁନା ଦୋକାନ, ସିନ୍ଧି ମନୋହାରୀ, ବମ୍ବେବାଲା ଲୁଗା

ଦୋକାନ; ମାଳ ମାଳ ଛୋଟବଡ଼ ବିପଣିର ସମଗ୍ର ବଜାର ଧସିଗଲା, କୋଟି କୋଟି ଟଙ୍କା ଅଜସ୍ର ସମ୍ପତ୍ତି ।

ଯା ଶଳା, ପାପ ଗଲା ।

ପୁଞ୍ଜାଏ ସ୍କୁଲ, କଲେଜ, ବହିପତ୍ର ଲାଇବ୍ରେରୀ କେତେ କ'ଣ ବିଜ୍ଞାନ ଯନ୍ତ୍ରପାତି ବିରାଟ ବିରାଟ ଦୋ'ତାଲା, ତିନିତାଲା କୋଠା, ଦଶହାଜର ବେଞ୍ଚ, ଦଶ ହଜାରଟେବୁଲ୍, ନା ଲେଖା, ପାଠପଢ଼ା ଏବଂ ପରୀକ୍ଷାର ପ୍ରସିଦ୍ଧ ଅନୁଷ୍ଠାନ ବାବୁଅମଲା, ଅଫିସରମାନଙ୍କର ତିଆରି କାରଖାନା ବୁଡ଼ିଗଲା — ଯା ଶଳା ପାପ ଗଲା !

ବିରାଟ ନାଲି କୋଠା, କଟରା କଟରା ନିଶମୋଡ଼ି କଟମଟ ଚାହିଁଥିଲା, ଉଚ୍ଚ ଆକାଶିଆ ଧଳା ପ୍ରାସାଦ ଧଳା ଜଟା କଳା କୋଟ୍ ପିନ୍ଧି ନିକିତି ଟେକି ବସିଥିଲା । ବାନା ଉଡ଼େଇ ଦେଉଳିଆ ପଥର ଘର ଧୂପ ଧୂଆଁରେ କୁହୁଳୁଥିଲା । ସବୁ ଗଲା — ଶଳା ପାପ ଗଲା ।

ସେ ତା' ବଜାର ଝୋଲା ଧରି ଠିଆ ରହିଥାଏ । ତା' ପାଟି ଫିଟୁନଥାଏ । ଗୋଡ଼ ଚଳୁନଥାଏ । ସେ ପ୍ରାୟ କିଛି ବୁଝିପାରୁ ନଥାଏ । ହେଲା ଯାହା ହେବାର ହେଲା । ସେ ପୁଣି ଚଞ୍ଚଳ ବଜାର ସଉଦା ନେଇ ପହଞ୍ଚେଇଲେ ସିନା ରନ୍ଧାବଢ଼ା ହେବ । ପିଲାଏ ଖାଇ ଚଞ୍ଚଳ ଶୋଇଗଲେ, କାଲି ସକାଳୁ ସ୍କୁଲଯିବେ । ସେ କାହିଁକି ଏମାନଙ୍କ ଗପ ଏଠି ଏମିତି ଠିଆହୋଇ ଶୁଣୁଚି ?

ଚାଇନିଜ୍ ମାଛ ପିସ୍ ଖଣ୍ଡ ତୁଛା ଘିଅ । ବୁଢ଼ା ଦେଖିଲେ ଖୁସ୍ ହୋଇଯିବ । ପାକୁଆ ପାଟିରେ ଚାପିଲାବେଳେ ଆଖିବାଟେ ହସି ହସି ଚାହିଁବ — "ଏ ମାଛ କୋଉଠୁ ଆଣିଲୁକିରେ ପୁଅ !" ବାବୁନି ତା' ନୂଆ ରଙ୍ଗ ବାକ୍ସ ଦେଖି ଆଗ ଗୁଡ଼ାଏ ଡେଇଁଯିବ ଘରସାରା । କି ଖୁସି, ଚଗଲା ଟୋକା କୁଆଡ଼େ ରାଫେଲ୍ ଭଳି ଆଙ୍କିବ । ତା' ବୋଉ ନିଶ୍ଚେ ଗରଗର ହବ । ଅଧରାତିକୁ ବଜାର ଆସିଲେ, ସେ ରାନ୍ଧିବ ଆଉ କେତେବେଳେ । ପଚାରିବ ରାଗରେ ଏବଂ ପରିହାସରେ — "କୋଉଠି ସଙ୍ଗୀତ ଶୁଣୁଥିଲ ?"

କାହିଁ ରସାତଳରୁ, ଘୁ' କିନା ଗୋଟାଏ ଗୁରୁ ଗମ୍ଭୀର ଶବ୍ଦ ଉଠିଲା । ହେମାଳ ପବନ ପିଟିଦେଲା । ସମସ୍ତେ ତୁନି ପଡ଼ିଗଲେ । ଦାନ୍ତଜାକି ଠୁକୁ ଠୁକୁ ଥରିଲେ । କିଏ ଜଣେ ତା'ରି ଭିତରେ ପାଟିକଲା — ଆସିଗଲା, ସମୁଦ୍ର ଆସି ମାଡ଼ିଗଲା । ସମସ୍ତଙ୍କର ହାଡ଼ ପାଉଁଶ ଧୂଳି ଉପରେ ସାତତାଳ ପାଣି ଚପିଗଲା ।"

ହେମାଳ ପବନରେ ସେ ଠକ୍ ଠକ୍ ଥରିଲା । ତା' ହାତ ଗୋଡ଼କୁ ଝିଆ ଚଢ଼ି ଆସିଲାରୁ ସେ ଟଳମଳ ହୋଇ ଘୁଞ୍ଚିଲା ଆଗକୁ ଏବଂ ଅନ୍ଧାରକୁ ।

"ହେ ବାବୁ, କୁଆଡ଼େ ଯାଉଛ ? ତେଣିକି ଆଉ କିଛି ନାହିଁ । କେହି ନାହିଁ । ଆଉ ଜଣେ ତା' ଡେଣାକୁ ଧରି ପଛରୁ ଟାଣିଲା — ଯାଅନାହିଁ ହେ, ଗଲେ ମରିବ !"

ଏମାନେ ପରିହାସ କରୁଥିଲେ ବୋଲି ସେ ଭାବିଲା । ଏମାନେ ଆଉ କିଛି ବିଳମ୍ବ କରେଇଦେଲେ, ବେଶୀ ଗାଳି ସେ ଶୁଣିବ । ଏମାନେ ଆଦୌ ବୁଝୁନାହାନ୍ତି କେମିତି ।

ସେ ପୁଣି ଭିଡ଼ିହେଲା ଯିବାପାଇଁ । ଛଅ ନମ୍ବର ଗଳିର ସେ ଝରକା କଥା ସେମାନେ ଜାଣିବାର ଉପାୟ ନାହିଁ । ସେ ଅଝଟ ଟୋକା, ସେ ଭୋକିଲା ବାପ, ସେ ପାତଳୀ ସ୍ତ୍ରୀଟି କଥା, କିଭଳି ଏବଂ କାହିଁକି ଏମାନେ ବୁଝିବାକୁ ଯିବେ ।

ଦୁଇଜଣ ଲୋକ ତା' ଡେଣାକୁ ଧରି ଭିଡ଼ିଲେ — କିଓ ତମେ କିଏ ? କାହିଁକି ସମୁଦ୍ରକୁ ଡେଇଁବ ? କଥା କହୁନାହଁ କାହିଁକି ?''

କେଡ଼େ ବେକୁବ୍ ଏମାନେ । ସେ କ'ଣ ଚାଇନିଜ୍ ମାଛ ପିସ୍‌ଟିଏ ଏବଂ ରଙ୍ଗ ବାକ୍ସ ଝୋଲାରେ ଧରି ପଛକୁ ଫେରିଯିବ ? କୁଆଡ଼େ ଯିବ ? କାହା ପିଣ୍ଡାରେ ଶରଣାର୍ଥୀ ହୋଇ ଗୋଟିଏ ଇଟା ଚୂଲୀ ଉପରେ ମାଛ ଭାଜିବ ଏବଂ ଏକୁଟିଆ ଖାଇବ ? ସେ ରଙ୍ଗକାଠି ଗୁଡ଼ିକରେ ଅନ୍ୟଜଣକ କାନ୍ଥରେ ଗିଲାସ, ଆମ୍ବ ଏବଂ ଚଢ଼େଇ ଚିତ୍ର ନିଜେ ବସି ଆଙ୍କିବ ? ସେ ପିଣ୍ଡା ଚାରିଆଡ଼େ ଚିଡ଼ିଆଖାନାର ଦର୍ଶକଗୁଡ଼ିଏ ଭୂଇଁଚଣା ଚୋବେଇ ତାକୁ ଚାହିଁ ରହିଥିବେ — ନିଶ୍ଚିହ୍ନ ଭୂଖଣ୍ଡର ଉଦ୍‌ବୃତ୍ତ ଜୀବଟିକୁ ।

ସେ ଭିଡ଼ିହେଲା ଆହୁରି ଜୋର୍‌ରେ । ତା' ମୁହଁରେ କିଛି ହସ, ଅନ୍ଧାରରେ କେହି ଦେଖିପାରୁ ନଥିଲେ । ସେ କହିବାକୁ ଚାହୁଁଥିଲା — ''ଭାଇମାନେ ତୁମମାନଙ୍କର ଆଲୁଅ ଏଯାଏଁ ଲିଭିନାହିଁ । ତୁମ ଭୂଇଁ ଧସିନାହିଁ । ତୁମେ ଆଉ କାହା ଉପରେ ସମୁଦ୍ର ମାଡ଼ିଯିବାର ମହରଗ ଦୃଶ୍ୟ ଦେଖିବାକୁ ଏଠି ଧାଡ଼ି ବାନ୍ଧିଛ, କୋହଲା ପବନରେ ତୁମ ଦେହ ଥରୁଚି, ମଞ୍ଚ ଥରୁଚି, ହେଲେ ମନ ଦୋହଲୁ ନାହିଁ । ମୋ ହାତରେ ଝୋଲାଟିକୁ ଦେଖି ବୁଝିଯାଅ । ମୁଁ ତୁମ ଭୂଖଣ୍ଡର ମଣିଷ ନୁହେଁ । ମୋ ପାଇଁ ମୋର ସମସ୍ତେ ଅପେକ୍ଷା କରୁଛନ୍ତି । ହୁଏ ତ ଘୁଞ୍ଚିଯାଇଛନ୍ତି । କିନ୍ତୁ ଅପେକ୍ଷା କରିଛନ୍ତି । ମୋତେ ତୁମେ କାହିଁକି ଭିଡ଼ି ରଖୁଚ ।''

ସେ କିନ୍ତୁ ନୀରବରେ ଫିଟିଯିବାକୁ ହିଁ ଟାଣି ହେଉଥିଲା ।

''ଅନ୍ତତଃ ତିନିମାଇଲ ତଳେ, ଏସବୁ ଯାଇ କଚାଡ଼ି ହେଇଥିବ । ବାଟରେ ସବୁ ଫିଟିଯାଇଥିବ । ଖଣ୍ଡି ଖଣ୍ଡି ହୋଇ ଗୋଟିଗୋଟି ହୋଇ । କୋଠାର କାନ୍ଥ ଖଣ୍ଡ ଖଣ୍ଡ; ରାସ୍ତା ଖଣ୍ଡ ଖଣ୍ଡ । ଗାଡ଼ି ଟ୍ରକ ଲେଉଟିପଡ଼ି ଘୂରି ଘୂରି ଖସିଥିବେ । ଶୂନ୍ୟରେ ଆକତା ହୋଇ ଖସିଥିବେ ଜାର୍‌ସି ଗାଇ, ମଣିଷ, ଛୁଆ, ବୁଢ଼ା । ବୁଣିହୋଇ ଯାଇଥିବ, ଖଣ୍ଡିଆ ଭୂତରେ ଶୁଖିଲା ପତ୍ରପରି ଏ ଅଞ୍ଚଳର ମାଟି ଗୋଡ଼ି ଗଛ ପଶୁପକ୍ଷୀ । ସୁ-ସୁ ଖସିଲାବେଳେ ମରିଯାଇଥିବେ ସବୁ ଜନ୍ତୁ । ସହଯାତ୍ରୀ ହୋଇଥିବେ ବିଭିନ୍ନ ଆକାରର, ବିଭିନ୍ନ ପ୍ରକାରର ଜଡ଼ପିଣ୍ଡ ଗୁଡ଼ିଏ । ଯାତ୍ରା ଶୂନ୍ୟ ଭିତରେ ଉପରୁ ତଳକୁ ମାତ୍ର ତିନି ମାଇଲ । ତଳେ ଅପେକ୍ଷା କରିଥିବ, କଠିନ ଲାଭାର ପଥର ଚଟାଣ ।

ଗୋଟାଏ ଭୀଷଣ ଶବ୍ଦରେ ଧୂଳି ଉଠିଯାଇଥିବ, ସବୁ ଗୁଣ୍ଡ ହୋଇଯାଇଥିବ । ସମସ୍ତେ ଗୁଣ୍ଡ ହୋଇଯାଇଥିବେ ।''

ସମସ୍ତେ ମିଶି ତା'ର ପଥରୋଧ କଲେ । ସେ ବୁଝିପାରିଲା ନାହିଁ କାହିଁକି ? କାହିଁକି ସେମାନେ ଚାହୁଁଥିଲେ ତା' ପିଲାକୁଟୁମ୍ବ ସେ ରାତିରେ ଭୋକ ଉପାସରେ ଶୁଅନ୍ତୁ । ସେମାନେ କଣ ତା' ବଜାର ଝୋଲାଟିକୁ ଲୁଟିନେଇ ତୋଷରପାତ କରିବାକୁ ଯୋଜନା କରୁଥିଲେ । ଉଲ୍ଲୁ କାହାଁକା ! ତାଙ୍କ ଘରେ କ'ଣ ସେମିତି ପ୍ରତିଭାବାନ ଚିତ୍ର ସଉଖୀନ୍ ପିଲା ଅଛନ୍ତି । ସେମିତି ମାଛରଙ୍କ ବୁଢ଼ାବାପ ଅଛନ୍ତି ।

ଏମାନଙ୍କୁ ଶୁଣି ଶୁଣି କେତେ ବିଳମ୍ବ କଲାଣି ସତେ । କେତେବେଳେ ତା'ହେଲେ ସେ ଯାଇ ପହଞ୍ଚିବ; ମାଛ ରନ୍ଧା ହେବ, ପିଲେ ଖାଇବେ । ବାବୁନି ଘୁମେଇବଣି, ବାପାଙ୍କର ଗୋଟାଏ ନିଦ ଭାଙ୍ଗିବଣି । ...''ହେ, ବାବୁନି, ରହ, ରହ ଶୁଅନା, ମୁଁ ଆସୁଛି ।''

ସମସ୍ତଙ୍କୁ କହୁଣି ମାରି ସେ ଉଧୁରିଗଲା, ବଜାର ଝୋଲାଟି ଧରି ଗଭୀର ପ୍ରତ୍ୟୟରେ ସେ ଅନ୍ଧାର ଭିତରକୁ ।

□□□

# ଛାଇ

କେହି ଜଣେ ଆସି ଦୁଆରେ ଠିଆହୋଇଗଲାପରି ଲାଗିଲା । ନା, କେହି ନାହିଁ । ଆଉ ପ୍ରସ୍ତେ ମେଘ କେବଳ ନଇଁଆସିଥିଲା । ବାହରେ ଝର୍‌ଝର୍ ବର୍ଷା । ଭିତରେ ଗୁଡ଼ିଏ କୋଠରୀ । ଗୁଡ଼ିଏ ନିଶ୍ଚଳ ଅସବାବ ଏବଂ ବର୍ଷାର କିଛି ପ୍ରତିଧ୍ୱନି । ନିରୁଦ୍ଦ ସେ ଗୋଟାଳିଆ ପାହାଡ଼ଟି ବୋଧହୁଏ ସତ୍ୟଯୁଗୀୟ କୌଣସି ଅଗ୍ନ୍ୟୁତ୍ପାତର ଅବଶେଷ । ତା ଉପରେ ଏ ଓଲୁ ମେଘଗୁଡ଼ିକ କାହିଁକି ଏମିତି ବର୍ଷି ଲାଗିଛନ୍ତି । ସେ ଟାଙ୍ଗରା ଶିଳା ଉପରେ ପଦ୍ମ ଫୁଟିବ ବୋଲି ? ନା ସେମାନେ ଜାଣିପାରୁ ନାହାନ୍ତି, ସେ କେତେକାଳୁ ମରିଗଲାଣି ବୋଲି ? ଅଜାଡ଼ି ଲାଗିଛନ୍ତି ଅଣାୟତ୍ତରେ, ବେଖାତିର, ବେମତଲବ ଅଯଥା ଅଲାଜୁକ ପଣିଆଁରେ ବା ନିଜର ଘନୀଭୂତ ଜଳୀୟ ଗୁରୁଭାରରୁ ଖଲାସ ହେବାପାଇଁ ।

ଏ ନିସ୍ତ୍ର ଦୀପ ଘର ଭିତରକୁ ଏ ଓଲୁ ଚୋରଗୁଡ଼ିକ ମଧ୍ୟ କାହିଁକି ପଶନ୍ତିନାହିଁ ? ଏ ଧଳାକାନ୍ଥ, ଏ ନେଳି ଝରକା, ଏ ମହାର୍ଘ ପର୍ଦା ପଛରେ ସେ ବଡ଼ ଲୁହା ବାକ୍‌ସଟା ଅଛି ବୋଲି କ'ଣ ସେମାନେ ସନ୍ଦେହ କରିପାରନ୍ତି ନାହିଁ ? ଗମ୍ଭୀର ଲୋକଟାଏ ହସିଦେଲାଭଳି ଏ ଘରେ ମିଚ୍‌କିନା ଆଲୁଅ ଜଳି ଲିଭିଗଲା ଭିତରେ ସେମାନେ ସେ ଦର୍ପଣ ବାଡ଼ଗୁଡ଼ିକର ଝଲକ କ'ଣ ଦେଖି ନାହାନ୍ତି ? ଗୁଡ଼ିଏ ତାରାଙ୍କୁ ସାକ୍ଷୀରଖି ଅନେକ ମହାର୍ଘ ଗନ୍ଧ ଏ ରେଶମୀ ପର୍ଦା ଟେକି ଆମ୍ବବାଗାନ୍‌କୁ ପହରି ଗଲାବେଳେ ସେମାନଙ୍କୁ କ'ଣ ପ୍ରଲୁବ୍ଧ କରେନାହିଁ ? ...ଶିଶୁଭଳି ଅନ୍ତତଃ ବା ଏ ମେଘଭଳି, ଏ ଅମାନିଆଁ ବତାସ ଭଳି, ନିରୁଦ୍ଦିଷ୍ଟ କୌତୁହଳ ନେଇ ଏ ଭିତରକୁ ଥରେ ପଶିଆସିବାକୁ ବା ସେ ବଡ଼ ପାଚେରୀ ଆରପଟୁ ଟପେଇ ଉହୁଙ୍କି ଅନେଇ ଦେବାକୁ କ'ଣ କିଏ ମନା କରୁଛି ତାଙ୍କୁ ? ତାଙ୍କୁ ବୋଧେ କିଏ କହିଦେଇଛି ଯେ ଏ ଘରେ ବାଘ ଅଛି... ବା ଏ କୋଠି ଭିତରେ ଭୂତ ବସାବାନ୍ଧି ରହିଛି । ଅସଂଖ୍ୟ ଭୂତୁଣୀ ଚୂଡ଼ୀ ଝମ୍‌ଝମ୍ କରି ଦକ୍ଷିଣ ପାଖ ବାଙ୍ଗିକୁ ଗାଧୋଇ ଗଲାବେଳେ ବୁଢ଼ାମାନେ ସେମାନଙ୍କୁ ଦେଖିଦେଇଛନ୍ତି !!

ହୁଏତ ବାହାରୁ ଏ ବଙ୍ଗଳାର ନଡ଼ା ଛାତଟା ଅଶିଏ ବର୍ଷର ପୁରୁଣା ଦିଶୁଥିବ । ଚିଲା ଚିଲା ଏ ଝରକାଗୁଡ଼ିକୁ ବୁଢ଼ୀଆଣି ଜାଲ ପରି ସରୁ ସରୁ ଅଲିଭା ରେଖାଗୁଡ଼ିଏ ଘେରେଇ ହେଲାଭଳି ଦିଶୁଥିବେ । ଆଚ୍ଛା, ସତେ ବାହାରୁ ଏ ଜିନିଷଟା କିଭଳି ଦିଶେ ଥରେ ଦେଖିଲେ ହୁଅନ୍ତାନାହିଁ ?

ଟପ୍ ଟପ୍ ବର୍ଷା ପଡୁଥିଲାବେଳେ ଅନବରତ ଲାଗେ କେହି ବୋଧେ ଚାଲି ଆସୁଛି, ଧେତ୍ – ଚୋର କ'ଣ ଆସିଲେ ଏମିତି ଚବର ଚବର କରି ଶବ୍ଦ କରିବ ?

ରାତି ବୋଧହୁଏ ଅନେକ । ଏ ଘଣ୍ଟା ତ' କୋଉ କାଳୁ ଶୋଇଗଲାଣି, ନହେଲେ ବା ସମୟକୁ ଗଣିହୋଇଥାନ୍ତା । ତେଣିକି ଖୁବ୍ ନିଦ ମାଡ଼ିଆସିଥାନ୍ତା, କାରଣ ରାତି ହୋଇଗଲା ପରା, ଘଣ୍ଟା କହୁଚି ।...

...ସୁରେଶ ଆଗ ସବୁ ଚିଠି ତା' ବୋଉ ପାଖକୁ ଲେଖୁଥିଲା । ଏବେ ଖୁବ୍ ଥଙ୍ଗେଇ ଥଙ୍ଗେଇ ଲେଖିଛି, ଆମେରିକାରେ ତା'ର ଚାକିରୀ ହୋଇଗଲା... କାଥେରାଇନ୍ କୁଆଡ଼େ ଭଲ ସେନ୍ତୁଳା ରାନ୍ଧି ଜାଣିଲାଣି । ସେମାନେ ତାଙ୍କ ପୁଅ ନାଁ ଦେଉଛନ୍ତି 'ହିରୋ' । – ଲେଖିଛି, ଏ ଶୀତକୁ ଗୋଟାଏ ଓଭରକୋଟ୍ ପଠେଇବ । ସେ ଦେଶଟା ପ୍ରଶାନ୍ତ ମହାସାଗରର ଆରପାରି କି ନା । ଏଣୁ ଯିବା ଆସିବାକୁ ଢେର ବାଟ, ଢେର ଅସୁବିଧା ।

...ଆଚ୍ଛା, କଟକ କ'ଣ ସେମିତି ଗୁଡ଼ାଏ ବାଟ ଏଇଠୁ ? ମଣି ମହାପାତ୍ର ବି ବୁଢ଼ା ହୋଇଗଲାଣି ନା କ'ଣ । ତା ପୁଅ ତ ପନ୍ଦର ବର୍ଷ ହେଲା କଲିକତାରେ ରହିଗଲାଣି । ଝିଅଟା ବି ଶେଷକୁ ଚାକିରୀ କରିନେଲା ରାଉରକେଲାରେ । ପାର୍ଲିୟାମା ମୋଟର ସାଇକେଲ ଚଢ଼ି ସେ ଆଉ ପୁରୀ ଯାଉଛି ନା ? ମିସ୍ କୁଣ୍ଡୁ ପାଖକୁ ? ଚୌଧୁରୀଆଣି ପାଖକୁ, ସ୍ନେହଲତା ପ୍ରହରାଜ ପାଖକୁ ? ହାରାମି କିନ୍ତୁ ବଢ଼ିଆ ହସେ । ବଇଁଶୀରେ ପେଟେ ହେବ ପାଣି ପୁରେଇଦେଲେ ସେ ଯେମିତି ବହୁ ସ୍ୱାଧୀନ ଅନାମଧେୟ ସ୍ୱରରେ କଳରବ କରେ ସେମିତି ତା ମୋଟର ସାଇକେଲ ବୋବାଏ ଏବଂ ସେ ବି ସେମିତି ଗପେ ।

କିନ୍ତୁ ସେଇଟା ଯେ ଗଲା ବୋଧହୁଏ ସେ ହୋମିଓ ଡାକ୍ତରର ମୋଟର ସାଇକେଲଟା ଚାଲିଗଲା । ...ଏମିତି ବର୍ଷା ରାତିରେ ସେ କଣ ସତରେ ରୋଗୀ ଦେଖିଯାଇଥିଲା ? ସେ ବିଚାରା ବହୁ ଅଭ୍ୟାସ କରି ଏବେ ଗମ୍ଭୀର ହୋଇ କଥା କହିଲାଣି । କିନ୍ତୁ କାହିଁକି ସେ ଚିନିଗୁଳି ଗୁଡ଼ିକ ଏମିତି ସେ ଜରୁଆ ପିଲାଟାକୁ ଗିଳାଏ ? ଓଲା ଡାକ୍ତରଟି କ'ଣ ଭାବି ସେଭଳି ଖଇଫୁଟା ତାତି ଉପରେ ଚିନି ବୁଣିଦିଏ ? ସେ କଣ ଭାବେ ଯେ ଜର ଜିଭ ଲମ୍ୱେଇ ଏଗୁଡ଼ିକୁ ଚାଟିଦେବ ଏବଂ ଲାଙ୍ଗୁଡ଼ ହଲେଇ ଓହ୍ଲେଇ ଚାଲିଯିବ । ତା'ର ମୁଣିଟିକୁ ଦିନେ ଫିଟେଇ ଦେଖିଲେ ହୁଅନ୍ତା, କେମିତି ବିଚାରା ଡାକ୍ତର ମୁକ୍ତାଫଳ ପରି ସେ ଔଷଧ ଶିଶିଗୁଡ଼ିକୁ ତା' ଭିତରେ ସଜାଡ଼ି ରଖିଛି ଏବଂ କିମିତି ତା ତଳେ ରୋଗୀମାନଙ୍କର ଝାଳୁଆ ଟଙ୍କାକିଆ ନୋଟ କେଇଖଣ୍ଡ ଓ ଶସ୍ତା ଦେଖି ପୁଞ୍ଜାଏ କମଳା ତା' ଧଡ଼ିଆ ପୁଅପାଇଁ ନେଇ ସେ ଏମିତି ରାତି ଅଧିଆ ଫେରୁଛି... ।

ଝପ ଝପ ବର୍ଷା ଅସଂଖ୍ୟ ପାଦଶବ୍ଦ ଆଣି ଝରକାମାନଙ୍କ ପାଖରେ ଗଦାକରି ଚାଲିଥାଏ । ସବୁଗୁଡ଼ିକ ଫୁଙ୍ଗୁଳା, ଓଦାସରସର ସନ୍ତର୍ପିତ ପାଦ ଗୁଡ଼ିଏ । ସେମାନେ କିଛି ନମାନି ଦୌଡ଼ି ଚାଲିଥାନ୍ତି ଦେଖିବାକୁ ଯେ ଭିତରେ କିଏ ଆତ୍ମହତ୍ୟା କରିଛି । ସେ ଯେ ମରିଗଲା ସେ କୁଆଡ଼େ ଜଣେ ଛଦ୍ମବେଶୀ ସମ୍ରାଟ । ଛନଛନିଆଁ ତରୁଣ

ମୁହଁଗୁଡ଼ିଏ, ଝାଳ ସର୍‌ସର୍ ଓଦା ସର୍‌ସର୍ ଆକାଶରୁ ଖସିଥିବା ବର୍ଷାବିନ୍ଦୁପରି, ବିଜୁଳିରେ ସ୍ନାନ କରି ଫେରିଥିବା ମୁକ୍ତାଫଳ ପରି, ଝଲଝଲ ଅସଂଖ୍ୟ ଆଖି । ନୀରବରେ ପ୍ରତି ଝରକା ପାଖରେ ସେମାନେ ବୋଝେଇ ହୋଇ ଚାଲିଥାନ୍ତି । ସେମାନେ କାହିଁକି ସଦର ଦର୍ଜା ଭିତରଦେଇ ଆସୁନଥାନ୍ତି ? ଦୁଆର ମୁହଁରେ କାନ୍ଥଟାଏ ଉଠିଯାଇଥିଲା କି ଆଉ ? କାହିଁ, ନାହିଁ ତ !! ଗୁରୁଗୁରୁ ମେଘ ଡାକିଦେଲା, ଝଙ୍କାଏ ପବନ ପିଟିଦେଲା । ସେ ଆଖିଗୁଡ଼ିକ ବିଜୁଳୀରେ ଲିଭିଗଲେ । ସେ ଫୁଙ୍ଗୁଳା ପାଦଗୁଡ଼ିକ, ବର୍ଷାବିନ୍ଦୁ ପରି ସେ ତରୁଣ ମୁହଁ ଗୁଡ଼ିକ, ନୀରବରେ କେଉଁଆଡ଼େ ଅପସରି ଗଲେ... ।

ସେଇ ଡ୍ରଇଂରୁମ୍‌ଟିରେ ଏକଦା ଚାରିଜଣ ବସୁଥିଲେ । ସେବେ ମଧ୍ୟ ବସି ପାରିଥାନ୍ତେ । ସେଇ ଟେବୁଲଟା ଉପରେ ସେ ଆଦିବାସୀଆ ଟୋକା ଢେର୍ ଜଳଖିଆ, ପାନ ଏବଂ କିଣ୍‌କିଣ୍ ପାତଳ କାଚ ଗିଲାସରେ ଅନେକ ସର୍ବତ ଯୋଗାଡ଼ି ରଖିଛି । ଏମିତି ବର୍ଷାଭଳି ହସ ଝରଝର ଝରିଯାଇଛି ତା' ଚାରିପଟେ । ଝରିଯାଇଛନ୍ତି କାଳିଦାସ, ବ୍ୟାସ ଓ ବାଲ୍ମୀକି, କ୍ୟାମୋ, ସାତର୍ ଏବଂ କିର୍କେଗାର୍ଡ଼ । ସେଦିନ ବାକି ତିନୋଟି ଚୌକିରେ ସେ ଟେବୁଲ୍‌ଟିର ଚତୁଃସୀମାରେ, ସେ କାନ୍ଥଗୁଡ଼ିକରେ କେବଳ ବର୍ଷାର ହିଁ ପ୍ରତିଧ୍ୱନି ଭରିଯାଇଥାଏ । ସୋଫା ଚୌକିଗୁଡ଼ିକ କାକର ବାହୁ ମେଲେଇ ଅପେକ୍ଷା କରି ରହିଥାନ୍ତି । ସେ ବାହୁଗୁଡ଼ିକ କ'ଣ ସେମିତି ନିଜ ଭାରରେହିଁ ଶେଷକୁ ନୀରବରେ ନଇଁ ନଇଁ ଝଡ଼ିଯିବେ ? କାଇଁ ସେ ଗାଈଜଗା ଟୋକାଗୁଡ଼ାକ କାନ୍ଥ ଡେଇଁ ପଶିଆସି ତା' ଉପରେ ଡିଆ ମାରିବାକୁ କିଏ ମନା କରିଛି । ମଣିଷ ଉଷ୍ମମରେ ସେଗୁଡ଼ିକ ଭାଙ୍ଗିଗଲେ ମଧ୍ୟ କିଏ କ'ଣ ପ୍ରତିବାଦ କରୁଛି କି ?...

...ଆରଘରେ ଗୋଟିଏ ମାତ୍ର ଖଟକୁ ଘେରି ସେ ଯେଉଁ ପାଣି ମିଶା ପବନ ଭରିଯାଇଥିଲା ସେଠି କ'ଣ ଆଉ ଦିଇଟି ଖଟ ପଡ଼ିପାରି ନଥାନ୍ତା ? ସେ ଟୋକାଟା ରାତିସାରା କାନ୍ଦେ ବୋଲି କିଏ ନ ଜାଣିଛି ଭଲା । କିନ୍ତୁ ଝିଅଟା ତ ସୁନାଟାଏ । ତାକୁ ଛ ବର୍ଷ, ଆଠ ବର୍ଷ, ଦଶବର୍ଷ ହୋଇଥିଲେ କେଡ଼େ ସୁନ୍ଦର ଭଲା ସେ ନ ଦିଶିଥାନ୍ତା ? ଗୋଟିଏ ମାତ୍ର ତକିଆରେ ଅନେକ ଦିନର ଅନେକ ଉଷ୍ମା । ସେଇଟା ତ ପହଁରି ଯାଉଥାଏ ଆମ୍ୱବାଗାନ୍‌କୁ । କିନ୍ତୁ କେହିହେଲେ ଆକୃଷ୍ଟ ହୋଇନାହିଁ, ବାରିପାରିନାହିଁ । ବାହାରେ ବର୍ଷାର ଏତେ କଳରବ, ଏତେ ଆପୋଷି ଗୁଞ୍ଜରଣ – କନ୍ତୁ ନିଃସଙ୍ଗ ସେ ତକିଆଟି କାହିଁକି ଓଲାଙ୍କ ପରି ଅପେକ୍ଷା କରିଥିଲା ଏବଂ କାହାକୁ ଭଲା ଅପେକ୍ଷା କରିଥିଲା ?

ଏବେ ବି ସେ ପଲଙ୍କ ବାଡ଼ ଆଉ ସେ ତକିଆ ଫାଙ୍କରେ ଅନେକ ସ୍ଥାନ ଅଛି । ସେ ଘରଚଟିଆ ଯୋଡ଼ିକ ସେଇଠି ଆସି ନୀଡ଼ ବାନ୍ଧିବାକୁ କ'ଣ କିଏ ମନା କରୁଛି ? କିଏ ମନାକରୁଛି ସେ ଓଲା କୁକୁରଟିକୁ ଏ ପ୍ରଶସ୍ତ ପଲଙ୍କର ଆର ସୋରାକରେ ଶୋଇଯିବାକୁ ? ବୁଢ଼ା ହୋଇଗଲା ବୋଲି କ'ଣ ସେ ଭାବୁଛି ଯେ ମହାଯାତ୍ରା

କରୁଥିବା ଏ ଯୁଧିଷ୍ଠିର ଆଖି ଯୋଡ଼ିକ ସେ ନିରବଚ୍ଛିନ୍ନ ଆକାଶ ଓ ଝଟକୁଥିବା ଶୀତଳ ଶୃଙ୍ଗ ଭିତରେ ତାକୁ ଚିହ୍ନିପାରିବେ ନାହିଁ ?

ଆଜି ପର୍ଯ୍ୟନ୍ତ ସେ ବର୍ଷା ଥମିନାହିଁ । ସେ ରାତି ପାହିନାହିଁ । ଓଲା ମେଘଗୁଡ଼ିକ ହେଇ ସେ ଟାଙ୍ଗରା ନିରୁଭିଦ ମୁଣ୍ଡିଆଟି ଉପରେ ଝର ଝର ବର୍ଷିଲାଗିଛନ୍ତି । ବୋଧହୁଏ ଭାବିଛନ୍ତି, ତା' ପିଠିରେ ପଦ୍ମ ଫୁଟିବ । ଅବୁଝା ମେଘ ଶିଶୁ ଗୁଡ଼ିଏ । ପିରାମିଡ଼୍ ସାଙ୍ଗରେ ମଧ୍ୟ ଏମିତି ସେମାନେ ଲାଗିଥାନ୍ତି, "ଆରେ ହେ, କାହିଁକି ଏମିତି ତିନକୋଣିଆ ହୋଇ ଶୋଇ ଯାଇଛୁ ? ତୋତେ ଏକୁଟିଆ ଲାଗୁଛି ବୋଲି ? ଉଠ୍‌ନା । ଆମେ ପରା ଅନେକ ଦିନ ପରେ ଆସିଚୁ ତୋତେ ଉଠେଇବୁ ବୋଲି । ...ଏ ବଙ୍ଗଳା ଚାରିଆଡ଼େ ମଧ୍ୟ ସେମାନେ ସେଇଭଳି ଛିଗୁଲେଇ ହେଉଛନ୍ତି, "ଏମିତି କାନ୍ଥ ଘୋଡ଼େଇ ହୋଇ କାହିଁକି ଶୋଇ ଯାଉଛୁ ? ସେ ଗୋଟିଏ ବିନ୍ଦୁ ଉଷ୍ମା କ'ଣ ରହିବ ? ଆ, ଚାଲିଆ ବାହାରକୁ । ଆମେ ଶାନ୍ତିପାଠ କରି ସେ ଝୁଲଟିକୁ ଲିଭେଇଦେବୁ । ଏତେ ବିସ୍ତୀର୍ଣ୍ଣ ରାତି, ଏତେ ତାରା ରାଜ୍ୟର ଅନ୍ଧାର, ଏପରି ଘନଘୋର ବର୍ଷା ଭିତରେ ଓଲାଙ୍କ ଭଳି କାହିଁକି ଢାବୁଡ଼ି ଧରିଛୁ – କ୍ରମଶଃ ଶୀତଳ ହୋଇଯାଉଥିବା ସେ ପୋଷାକ ଗୁଡ଼ିକୁ ।"

ଏକମାତ୍ର ସାଥୀ ଏ ଛାପୁଛାପୁଆ ଦର୍ପଣ ଭିତରେ ପହଁରୁଥିବା ସେ ଶୀର୍ଣ୍ଣ ଛାଇଟି !! ତାକୁ ବାରମ୍ବାର ଦେଖି ମଧ୍ୟ ଚିହ୍ନିହେଉନାହିଁ । ସେ ଆଖି ଯୋଡ଼ିକରେ ବୋଧହୁଏ ସେମାନଙ୍କ ପଛରେ ଦିକ୍‌ଦିକ୍ କରୁଛି ଅତି ଅସହାୟ, ଆତଙ୍କିତ ବିନ୍ଦୁଟିଏ । ହେଇ, ଆଉ ପ୍ରସ୍ତେ ମେଘ ନଇଁଆସୁଛି । ଛାଇ ଆଉ ଦିଶୁନାହିଁ । ତାକୁ ଅଣ୍ଡାଳି ଦେବାକୁ ହାତ ବୁଲେଇ ଦେଲେ, ଖାଲି ଚିକ୍‌କଣ, କାକର, ଓଦା ସରସର ନିର୍ଜୀବ ବସ୍ତୁଟିଏ । କାଇଁ ଏତେବେଳେ କାନ୍ଥର ସେ ଜଗନ୍ନାଥ ଛବିଟିତ ଓହ୍ଲେଇ ଆସୁନାହିଁ । ତା' ହାତରେ ତ' ଚକ୍ରନାହିଁ ! ସେ ବି ଆସିବ ନାହିଁ । ସେ ଆସେନା !! ବରଂ ପଶିଆସୁଛି ସୁ-ସୁ ପବନଗୁଡ଼ିଏ ଖୁବ୍ ଛୋଟ ଛୋଟ ବର୍ଷା ଶିଶୁଙ୍କୁ ନେଇ । 'ଆସରେ ପିଲାଏ ! ଧାଇଁଆସ, କିଏ କେଉଁଠି ଅଛ ! ରଖ ହରି, ରଖ ଜଗନ୍ନାଥ ! – ରଖରେ ପିଲାଏ ।

ଏମିତି ଡାକିଲେ ବି କେହି ଆସିବେନାହିଁ । କେବଳ ଏ ଓଲା ମେଘଗୁଡ଼ିକ ଏ ଓଦା କାନ୍ଥକୁ ଧୋଇ ଧୋଇ ଭୁଷୁଡ଼େଇ ଦେବେ । ଅଶିଏ ବର୍ଷର ଛାତଟି କୁଢ଼େଇ ହୋଇପଡ଼ିବ । ଏ ପରଦା, ଏ ଝରକା, ଏ ଆସବାବ ସବୁ ପୋତିହୋଇଯିବେ । ଆଉ ଏ ବର୍ଷାର ବି ପ୍ରତିଧ୍ୱନି ଏଠି ଶୁଭିବନାହିଁ । ...ତଥାପି, ସେ ନିଶ୍ଚିହ୍ନ ପାଚେରୀ, ସେ ମୁଣ୍ଡା ଡିହର ଅନାବନା ଉଦ୍ଭିଦ ଉପରେ ଝରଝର ବର୍ଷୁଥିବେ ଏ ମେଘଗୁଡ଼ିକ । ତାଙ୍କର ଆଶା କାଳେ ଦର୍ପଣ ବାଡ଼ ଭିତରେ ଛାଇଟି ହୁଏତ ଆଉ ଥରେ ପହଁରିଯିବ !!

□□□

# ପାହାଡ଼

ସେ ଅଞ୍ଚଳ ନିଜେ ନ ଦେଖିଲେ ବୁଝିହେବନାହିଁ । ସେଠା ଗଛ ପତର, ଅନ୍ଧାର ଆଲୁଅ, ବିଲୁଆ, ବାଘ, ମଣିଷ, ପାଣି, ପବନ, ଆକାଶ ପାହାଡ଼ ସବୁ କେମିତି ଅଲଗା । ସବୁ କେମିତି ଟିକିଏ ଉଞ୍ଚ ଉଞ୍ଚ, ତିଖ ଥିଲାଭଳି, ଦାଢ଼ ଥିଲାଭଳି । ଏମିତି ଲେସେଡ଼ା, ମାଖୁନା ଦନ୍ଥଡ଼ା ନୁହେଁ ।

...ମୁଁ ସେ ତିଖ ପାହାଡ଼ରୁ ଅତି କଷ୍ଟରେ ଓହ୍ଲଉଥାଏ । ମୋ ସାଙ୍ଗରେ ସେଥିରୁ କଉପୁନୀମରା ଶାଳଗଛାପରି ପୁଞ୍ଜାଏ ଭେଣ୍ଡିଆ ଥାଆନ୍ତି । ସେମାନେ ଆସିଥାନ୍ତି ମୋତେ ପାଛୋଟି ନେବାକୁ । ହେଲେ ଟିକିଏ ଉଁ କି ଚୁଁ କରୁନଥାନ୍ତି । କଳା ମୁଗୁନି ପରି ନିଦା ବିଷ୍ଣୁ-ଗୁଡ଼ିଏ ।

ସେତେବେଳକୁ ଆହୁରି ଅଧେ ଓହ୍ଲେଇବାକୁ ବାକିଥାଏ । ମୋର ଅଣଚାଶ ଟେକୁଥାଏ । ଗୋଡ଼ ଦି'ଖଣ୍ଡ ଓସାରି ହୋଇ ଫାତୁଙ୍ଗା ଧରିଯାଉଥାଏ । ଅଳ୍ପକେ ଅଖଞ୍ଜରେ ଛେଚି ହୋଇଯିବି; ନାକ ଦଣ୍ଡା ବାଡ଼େଇ ହୋଇଯିବ; ଆଣ୍ଠୁ ଗଣ୍ଠି ଛିଣ୍ଡି ଛିନ୍ନଛତ୍ର ହୋଇ ଗେଣ୍ଡା ଗଡ଼ିଲାପରି ଗଡ଼ିଯିବି । ଏ ଅପନ୍ତରା ରାଜ୍ୟରେ ଶେଷରେ ପ୍ରାଣଯିବ, ଆଉ ଏ ସରକାର ପେଟ ପୁରିବ । କପାଳରୁ ବେକରୁ ଝାଳ ଛିଡ଼ି ପଡୁଥାଏ । ମୁଁ ଏଇଭଳି ଚମକି ଚାଲିଥାଏ । ଲଡ଼୍‌ଥଡ଼୍ ହେଉଥାଏ ଦେହ । ଏତିକିବେଳେ ଡାହାଣ ଗୋଡ଼ଟା ଗଲାକି ଖସି ! ମୁଁ ଅତର୍କରେ ଗୋଟାଏ ବିକଟାଳ ରଡ଼ି ଛାଡ଼ିଲି । ଭୋବନିଶୋର ଯାଏଁ ଶୁଭିଥିବ ନାଁ କ'ଣ ! ଚଟୁଆ ଛେଚି ହୋଇ ଯୋଉ କଚଡ଼ା ଖାଇଲି, ବାବୁ; ଆଉ କହି ନୁହେଁ ।

ପଡୁ ପଡୁ ମୁଦା ବାନ୍ଧିଗଲି । ଏଣିକି ଗଡ଼ିଯିବା ବାକି । ଛେଚା କଚାରେ ବାଟରେ କୋଉ କାଳୁ ପ୍ରାଣ ବାହାରିଯିବ । ଝୋଲାରେ ପଡ଼ିଲାବେଳକୁ ତୁଚ୍ଛା ମୁର୍ଦାରଟା । ...ମାତ୍ର ତା' ଆଉ ହେଲାନାହିଁ । ମୋ ଆଗକୁ ଚହଟିଆସି ସେଥିରୁ କିଏ ଗୋଟାଏ ମୋତେ ମାଡ଼ିବସିଲା । ମୋ କୁଣ୍ଡଳି ଫିଟାଇ ମୋତେ ଚିତ୍‌ମାତ କରି ଶୁଆଇଦେଲା । ମୋର ବୁଝିବା ଶକ୍ତି ନଥାଏ । ମତେ ବୋଧେ ଲଙ୍ଗଳା କରିଦେଲା ନା' କଣ ! ମୁଁ କଥା କହିବାକୁ ପବନ ପାଉନଥାଏ । ଗୋଟାଏ ଉହୁଙ୍କାରେ ମୋତେ କାନ୍ଧରେ ବସାଇ ଗୋଟାଏ ହାତରେ ଲୁହା ଶିକୁଳି ପରି ମୋ ଗୋଡ଼ ଯୋଡ଼ାକୁ ଛନ୍ଦିଦେଲା । ଯାତ୍ରା ଦେଖାଳୀ ପିଲାଙ୍କପରି ମୁଁ ତା' ମେଣ୍ଢା ଲୁମିଆ ଜଟିଆ ବାଳ ଗୁଡ଼ାକୁ ଦୁଇ ମୁଠାରେ ଧରିନେଲି । ମୋତେ ଦମ୍ଭ ଲାଗିଲା । ସେ ବେଣାଚେରଗୁଡ଼ାକ ପାହାଡ଼ର ପେଟ ଭିତରୁ ବାହାରିଥିଲା ପରି ମୋତେ ଲାଗିଲା । ସେଥିରୁ ଗୋଟାଏ ଗୋଟାଏ ସିଅ

ପଥରକୁ ଭେଦି ଆଉ ପାଖେ ବି ଲଟେଇ ଥିବେ ! – କିଏ ଜାଣେ ! ପଥର ପରି ସେ ଭଙ୍ଗିଆ ଟୋକା ମୋ ତଳେ ଦୁଲୁକୁଥାଏ । ମାଣ୍ଡିଆ ଜାଉ ପରି ମୁଁ ବୋହିଯାଉଥାଏ ଏପଟରୁ ସେପଟ । ଝିଙ୍କି ଧରିଥାଏ ସେ ବେଣାଚେରକୁ । ବାଙ୍କ, ମୋଡ଼, ଗଡ଼ାଣି ସବୁ ପାଣି ପରି ସରଳ ହୋଇଗଲା । କଳା ମଚ ମଚ ଖୁରୁଙ୍ଗ ଚାରୋଟିଯାକ ଖପ୍‌ଖାପ୍ ଓହ୍ଲେଇଗଲେ ସେ ଦୁର୍ଜ୍ଜୟ ଗଡ଼ାଣି । ଓହ୍ଲେଇଗଲେ, ନିମିଷକରେ ଝୋଲା ଆର ପାରିକୁ ।

ମୋତେ ବୁଢ଼ୁଲାଟାଏ ପରି ତଳେ ଥୋଇଦେଇ ସେ ଦାନ୍ତ ଦି'ଭାଡ଼ି କାଢ଼ି ହସିଲା । ମୋ ଖାଇବି ଚଟୁଆ ଖଣ୍ଡ ଘା' ପରି ପୀଡ଼ା ହୋଇଥାଏ । ତଥାପି ଏ ବାରକ ବଞ୍ଚିଗଲି ବୋଲି ଧୋତି ଖଣ୍ଡ ଗୁଡ଼େଇ ହେବାକୁ ମାଗିଲି । ସେ ତା' କଉପୁନୀ ଟିକକ କାଛି ଭିଡ଼ିଦେଇଥାଏ । ମୋ ଗୁଡ଼ିଆ ପୁଡ଼ିଆ ଦେଖି ତାକୁ କଉତୁକ ଲାଗୁଥାଏ । ପଚାରିଲାରୁ ତା' ଭାଷାରେ କହିଲା – 'ମଇଳା ଟିକକ ଘୋଡ଼େଇବାକୁ କପଡ଼ା ବାବୁ; ନହେଲେ ଏଡ଼େ ସୁନ୍ଦର ଦେହରେ ଖରା ପଡ଼ିବ, ପବନ ବାଜିବ; ତାକୁ କାହିଁକି ଢହ୍ନଠଉଁ ଲୁଚେଇବ ?'

ପଥର ପରି ପଦେ କହିଲେ ସେ ପଦେ ଉତ୍ତର ଦିଅନ୍ତି । ନହେଲେ ସେମିତି ଟାଣ, ସେମିତି ଆଉଜିରେ ସମ୍ଭାଳିଲା ପରି ମଡ଼େଇ ହୋଇଗଲେ ତୁରିଦେଲା ପରି ସେ ଲୋକଗୁଡ଼ାକ ।

''ଆଚ୍ଛା, ହଇରେ, ଲଇଖନିଆ, ମୋତେ ସେ ପାହାଡ଼ ଶିଖ ଉପରୁ ତୁ କାନ୍ଧେଇ ଆଣିଲୁ ନାଇଁ କାହିଁକି ? ସୁକଟ ଦେଖୁଥିଲୁ । ମୁଁ କଚଡ଼ା ଖାଇ ପଡ଼ିଲା ଉତ୍ତାରୁ ଯାଇ ଟେକିଲୁ ! – ହଇବେ !''

ସେ ହସିଲା । ତା' ଭାଷାରେ ଅନ୍ଧକେ ଛିଣ୍ଡେଇଲା ପରି କହିଲା – ''ମରଦ ପିଲାକୁ କେମିତି ଟେକିବ ବାବୁ ? ତାକୁ ଲାଜ ମାଡ଼ିବ ନାହିଁ ?''

...ସେମାନଙ୍କୁ ଡାକିଲେ ଆସିବେ । ନ ଡାକିଲେ ଘୁଞ୍ଚିବେନାହିଁ । କେହି କାହାକୁ ଛୁଇଁଦେବନାହିଁ । ଯା' ଘର ଖୁଣ୍ଟି ଯଦି ଆଉ ଘର ମର୍ଦ୍ଦ ଛୁଇଁଦେଲା ସେ ଉଠିଯିବ ଆଉ ଠାଏ ଘର କରିବାକୁ । ଛୁଇଁଦେଲା ଯଦି ସେ ମାଗିଦେଲା । ମାଗିବା ସେମାନଙ୍କ ଭିତରେ ସବୁଠୁ ବେଜିଦ୍ ହୀନ କାମ । ମର୍ଦ୍ଦପିଲା କେବେ ମାଗିବ ନାହିଁ । ଫଳଟାଏ ଯେ ଗୋଟେଇଚି ସେଇ ଖାଇବ । ଫଳମୂଳର ଅଭାବ ନାହିଁ ସେ ଅକ୍ଷୟ ଭଣ୍ଡାରରେ । ଗାଈ କ୍ଷୀର ଗାଈ ପିଲା ଖାଇବ । ଗାଈକୁ ଦୁହିଁବା ମନା । ବାଘକୁ ଭୋକ କଲେ ସେ ବାଛୁରୀଟାଏ ଚୋବେଇଯିବ । ସେଇଟା ତା' ଆହାର । ଅଖଞ୍ଜରେ ନ ପଡ଼ିଲେ ସେ ମଣିଷ ଅଥବା ଗୋରୁଙ୍କୁ ଖାଇବ ନାହିଁ । ବାଘଟା ଧର୍ମ ଜନ୍ତୁ । ବାଘ ରଜା ଜନ୍ତୁ ! ତାକୁ ତା' ଆହାର ପାଖରୁ କେହି ହୁରୁଡ଼େଇବେ ନାହିଁ ।

ଏସବୁ ଶୁଣି ମୋ ମଜ୍ଜା ଭିତର ଥରିଯାଉଥାଏ । ରାତି ସାରା ମୁଁ ଚମକୁଥାଏ – ଗୁଡ଼ାଏ ରୁମ୍, ଗୁଡ଼ାଏ ଖୁର ଆଉ ପୋଟା ମାଉଁସ ଗନ୍ଧ ଘାଉଁକିନା ଗୋଟାଏ

ହେଷ୍ଟାଳରେ ବାଘ ହେଉଥିବ । ତା'ର ଭୋକବେଳେ ମୋତେ ହାବୁଡ଼ିଗଲେ ଏମାନେ କେହିହେଲେ ଚୁଁ କରିଦେବେ ନାହିଁ । ଏକ ବୁଝା ମୂର୍ଖ । ଏ ପାଳିକ ରଖିଯାଅ, ଜଗନ୍ନାଥ ବୋଲି ନିଜ ଭିତରେ ବିଳବିଳଉଥାଏ ।

ଏମିତି ଏମିତି ରାତି ପାହିଲା । ସକାଳ ପହରୁ ସେମାନଙ୍କର ଜମିଜମା କାଗଜନଥି କାଢ଼ି ବସିଗଲି । ପଡ଼ନ୍ ଆଉ ରକ୍ବା ବାରିଦେଇ ଗାର ପକେଇଦେଲି । ସେମାନେ ସମସ୍ତେ କାଗଜ ଉପରେ ଟିପ ବୁଲେଇ ଦେଲେ । ବେଳ ବୁଡ଼ ସରିକି, ଖଣ୍ଡେ ଜମି ବିବାଦରେ ବାହାରିଲା । ଛ' ଏକରିଆ ଥାଳି ପରି ଗହୀର ଜମି । ମହାଜନ ନାରେ ସେ ଖଣ୍ଡ ହୋଇଯିବା କଥା ।

ଲଇଖନିଆ କୁଆଡ଼େ ଦୁଇବର୍ଷ ତଳେ ଆସି ମହାଜନ ଦୁଆରେ ଠିଆହୋଇଥିଲା । କହିଥିଲା ଯେ ତା'ର ମାଇକିନିଆ ମରିଗଲା । ତାକୁ ସେ ଯୁଇ ଆଙ୍କିଦେଲା । ତା'ର କିଛି ମଦ ପାଣି ନିଅଣ୍ଟ ହେଉଛି ! – ସେତେବେଳକୁ ତା' ଆଖିମାନ ରଙ୍ଗ ଧରିଥାଏ । ସେ ଖାଇ ସାରିଥାଏ ପ୍ରଚୁର ନିଶା । କିନ୍ତୁ ତା' ହୋସ୍ ବୁଡ଼େଇବାକୁ ଆଉ କିଛି ଶୋଷ ବାକିଥାଏ ।

ଲଇଖନିଆ କାହା ଦୁଆରେ ଆସି ହାତ ପତେଇ ଠିଆହେବ ଏଇଟା କାହାରି ହେଲେ ବିଶ୍ୱାସ ହେଲାନାହିଁ । ତାର ତିନିମାସ ଆଗରୁ ବଛୁଆ ବୋଲି ଭେଣ୍ଡିଆ ଟୋକା ଲଇଖନିଆ ମାଇପକୁ ଧରି ପକେଇଲା – ସେ ପାଖ ଗାଁରୁ ସେଇଥ କରି ମୁହଁ ପାଇଯାଇଥାଏ । ଲଇଖନିଆ ଶୁଣିବା ମାତ୍ରେ ଝାମ୍ପି ପଡ଼ିଲା । ବଛୁଆ ତୋଟିରେ ଦାନ୍ତ ଲଗେଇ ଭିଣି ଦେଲା । କଞ୍ଚାରେ ରକ୍ତ ପିଇଗଲା । ବାଘ ପରି ମର୍ଦ ଏଇ ଲଇଖନିଆ । ସେ ଆସି ସାଧବ ଦୁଆରେ ଠିଆହେବା ବଡ଼ ଆଚମ୍ବିତ କଥା ।

ଲଇଖନିଆ ମହାଜନ ମୁହଁକୁ ଚାହିଁଲା । ନିଶ ଡେରିଦେଇ କହିଲା, 'ମତେ ନିଶା ଖାଇବାକୁ ପଇସା କିଛି ଦେଇପକା । ମୋର ବଡ଼ ଜମିଟାକୁ ଲୋଭ କରିଥିଲୁ ନାଁ ? ତତେ ସେଇଟା ଦେଇଦେଲି । ମୋର ମାଇକିନିଆ ମରିଗଲା । ମତେ ନିଶା ଖାଇବାକୁ ପଇସା ଦେ !'

ଛ'ଅଣା ପଇସାରେ ପେଟେ ମଦ ଖାଇ ଗଡ଼ିପଡ଼ିଲା ଲଇଖନିଆ । ସେଇ ଦିନଠୁ ସେ ଜମିରେ ପାଦଦେଲାନାହିଁ । ସାଧବ ମଧ ସାହସ କଲାନାହିଁ ସେଥିରେ ହଳ ପକେଇବାକୁ । ସରକାରୀ କବଲା ହେବାଯାଏଁ ଟାକି ରହିଥାଏ । ସେ ଚକବନ୍ଦିରେ ସବୁଠୁ ଖତିଆନ୍ ଏକ ଚକଡ଼ା ଛ' ଏକରିଆ ଜମି ଲଇଖନାର । ବଣ ହୋଇଯାଇଥାଏ ଦୁଇବର୍ଷ ଭିତରେ ।

ସାଧବ କହିଲା – "ମୁଁ ସେ ଜମି ନେଲେ ଧର୍ମ ସହିବ ନାହିଁ ବାବୁ । ଲଇଖନିଆକୁ ଡାକି ପଚାରିଦିଅ । ସେ କହିଲେ, ତା' ନାରେ କରିଦିଅ ।" ଗାଁ ମୁଖିଆ କହିଲା – 'କରିଦିଅ ।' ବାକି ଯାହାକୁ ପଚାରିଲେ ସେ କହିଲା, 'କରିଦିଅ' ।

ଛ'ଅଣା ପଇସାରେ ଛ' ଏକର ସୁନା ପରି ଜମି ଚାଲିଯିବ, କେଉଁ ଗୋଟାଏ ବେହୋସି ବେଳର କଥା ଉପରେ । ମୁଁ କହିଲି – ''ଲଇଖନିଆ, ତୁ କହିଦେ, ମୁଁ ତୋ' ନାରେ ଲେଖିଦେଇ ଚାଲିଯିବି ।''

ଫାଉଁକିନା ଚେକାମାରି ବସିଲାଠୁ ପାଞ୍ଚହାତ ଉପରେ ଫଣା ଟେକିହୋଇଗଲା। ଲଇଖନିଆର ନିଶ ଉପରକୁ । ତା' ମୁହଁ ଉତୁରି ପଡୁଥାଏ । କହିଲା – ''ଆରେ, ନାଇଁ ବାବୁ ! ଥରେ ଛେପ ପକେଇ ଦେଇଛି । ସେଇଟା ଆଉ ଚାଟିବି ନାହିଁ । ଆରେ ଯା !''

ଏତିକି କହି ତା' ହାତରେ ଧରିଥିବା ମୂଳିଟାକୁ ଟେକି ଭୂଇଁରେ ଜବରଦସ୍ତ ଗୋଟାଏ ଡିହ ବସେଇଦେଲା । ଗଡ଼ିଶ ମାଛ ମୁଣ୍ଡ ଶିଳପୁଆରେ ଛେଚି ହେଲାପରି ତା' ବୁଢ଼ା ଆଙ୍ଗୁଠି ଗାଲେସିରୁ ବଜବଜିଆ ରକ୍ତ ଛିଟିକି ପିଲା । ଲଇଖନିଆ ତଳକୁ ଲଇଁ ଚାହିଁଦେଲା ନାହିଁ । ଠେଙ୍ଗାଟାକୁ ଘା' ଉପରୁ କାଢ଼ିନେଲା ନାହିଁ । ଦାନ୍ତ ଚାବି ସେମିତି ନିଶ ଠିଆକରି କଟମଟ ଚାହିଁ ରହିଥାଏ । କେହି ତା' ଫଣା ଆଗରେ ପାଟି ଫିଟେଇ ପାରିଲେ ନାହିଁ ।

ମୋ ତଳ ପାଟି ଓହଳି ପଡ଼ିଥାଏ । ହାଁଟା କରି ମୁଁ ଅନେଇଥାଏ । ଲଇଖନିଆ ସେମିତି ଦାବିଲାପରି ଦୁଇପଦ ଦୋହରାଇ ଦେଲା । ମୁଁ ଛେପ ପକେଇ ଦେଇଛି । ଆଉ ଚୋକିବିନାହିଁ । ଜମି ତା'ର !...

ସେ ବୁଲିପଡ଼ି ଚାଲିଗଲା । ତଳକୁ ଲଇଁନାହିଁ କି ପଛକୁ ଚାହିଁନାହିଁ । ଗୋଟି ଗୋଟି ହୋଇ ଗାଁର ବାକି ସବୁ ଉଠି ଚାଲିଗଲେ । ନ ପଚାରିଲେ ତ' କାହାରି ପାଟି ଫିଟିବ ନାହିଁ । କେହି କିଛି ନ କହି, ଜନ୍ତୁଭଳି ବାହାରିଗଲେ ।

ମୁଁ ରାଗିଥାଏ କି ଶଙ୍କିଯାଇଥାଏ ଅଥବା ଦୁଃଖରେ ଭାଙ୍ଗି ପଡ଼ିଥାଏ କହିପାରିବି ନାହିଁ । ଝୋଲା ମାରିଲା ପରି ପଡ଼ିଯାଇଥାଏ । ରାତି ଗୋଟାଯାକ ନିଦ ନାହିଁ । ଲେଉଟି ଲେଉଟି ସେ ମୁହଁଟା ଦିଶିଯାଉଥାଏ । ମୁଁ ଚମକି ପଡୁଥାଏ । ସେ ମୁହଁଟା ବାଘର କି ଲଇଖନିଆର ବାରି ହେଉନଥାଏ ।

ବେଳ ଉଇଁ ଆସୁଥାଏ । ଜଣେ ଆସି ପହଞ୍ଚିଲା । କିଛି ଯେମିତି ଘଟିନାହିଁ ଭଳି ତା'ର ହାବଭାବ ।

ପଚାରିଲି – ''କିରେ କ'ଣ ?''

''ଲଇଖନିଆ ବାହାରିଗଲା ବାବୁ !''

ମୁଁ ଧଡ଼ପଡ଼ ହୋଇ ଉଠି ବସିଲି । ସେ ସେମିତି ମିଟିମିଟି ଅନେଇଥାଏ – ''କିରେ, କ'ଣ, ସେ ଗାଁ ଛାଡ଼ି ବାହାରିଗଲା ?''

''ହଇ !''

''ଆରେ, କହ, କ'ଣ ହେଇଚି କହୁନାହୁଁ କାହିଁକି ? ତାର ଜମି ଚାଲିଗଲା ବୋଲି !!''

"ନାହିଁ ।"

"ତେବେ କ'ଣ ହେଲା ? ଆଉ କ'ଣ ହେଲା ?" ମୁଁ ଠିଆହୋଇ ପାଦ କାଢ଼ିବାକୁ ଯାଉଥାଏ ।

"କାଲି ରାତିରେ ତା'ର ପିଲାଟାକୁ ବାଘ ଖାଇଦେଲା ।" "ହେଁ ! ଏଁ ?" ହୋଇ ମୁଁ ଚମକି ଡେଇଁ ପଡ଼ିଲି । ତା' କାନ୍ଧକୁ ଝୁଙ୍କି ପଚାରିଲି – "କ'ଣ କହୁଛୁ ?" – ଲଇଖନିଆ ଥିଲା କି ନାହିଁ ?"

"ଥିଲା ।"

"ହେଁ !" ମୁଁ ଚିତ୍ ମାତ୍ ହୋଇ ପଡ଼ିଯାଇଥାନ୍ତି ଛାନିଆରେ । – "ତା ଆଗରେ ତା' ପୁଅକୁ ବାଘ ଖାଇଗଲା ।"

"ହଇ ।"

"ହଇ !!! ପାଞ୍ଚ ମିନିଟ୍‌ଯାଏ ମୋର ହୋସ୍ ଥିବା ପର୍ଯ୍ୟନ୍ତ ମୋ ଭାଷାରେ ମୁଁ ଯାହା ପାରିଲି ଶୋଧିଦେଇଗଲି । ତା' ପରେ ଧାଇଁଲି ଏକମୁହାଁ ସେଇଠୁ ।

ସେ ସେମିତି ମୋ ପଛେ ପଛେ ଠୁକ୍ ଠୁକ୍ ଚାଲି ଆସୁଥାଏ, ଯେମିତି କିଛି ହୋଇନାହିଁ ।

ନୂଆ ଖରା ପାହାଡ଼ ପିଠିରେ ପଡ଼ିଥାଏ । ପଛମୁହାଁ ପାହାଡ଼ଟାକୁ ଅଗଟିପରେ ଚଢ଼ି ଚାଲି ଯାଉଥାଏ ଲଇଖନିଆ ।

ମୁଁ ମସ୍ତବଡ଼ ରଡ଼ିଟାଏ ଛାଡ଼ିଲି । ହାଲିଆ ହୋଇ ମାଣ୍ଡିଆ ଜାଉ ପରି ଲେସେଡ଼ି ପଡ଼ିଲି ଭୂଇଁ ଉପରେ । ଝୋଲା ଧାରର ସେ ମହିଷିଆ ଘାସଗୁଡ଼ାକୁ ମୁଠା ମୁଠା କରି ଉଞ୍ଚ୍ ଆଣୁଥାଏ । କାନ୍ଦୁଥାଏ ଏବଂ ଅନେଇଥାଏ ଖରାରେ ଦାଉ ଦାଉ ଝଟକୁ ଥିବା ସେ ତିଖ ପାହାଡ଼କୁ । ଲଇଖନିଆ ଉଠିଯାଉଥାଏ ଉପରୁ ଉପରକୁ ।

□□□

# ସାପ

ମୁଁ ରୋଜ୍ ପାଞ୍ଚଟାରେ ଘରକୁ ଫେରେ । ତିରିଶ ଦିନରେ ଦରମା ପାଏ । ଚାକିରୀ ଆଉ ଏଗାରବର୍ଷ ଦୁଇମାସ । ବଞ୍ଚିବି ବୋଧେ କୋଡ଼ିଏ ବର୍ଷ । ମୋ ନାଁ ଗୋବିନ୍ଦ ଦଳବେହେରା । ଘର କୋଇଲି ।

ମୁଁ ମୋଟେ ତାକୁ ଜାଣିନାଇଁ । ସେ ବି ମୋତେ ଜାଣିନାଇଁ । ଜାଣିବା ସହଜ ନୁହେଁ, ସମ୍ଭବ ନୁହେଁ, ସମୀଚୀନ ନୁହେଁ । ବିରାଟ ତିନିତାଲା କୋଠା । ସେଇଠି ଅସଂଖ୍ୟ ଗୁମ୍ଫା । ଶଗଡ଼ ଶଗଡ଼ କାଗଜ । ମାଇଲ ମାଇଲ ଫିତା । ମଣିଷଗୁଡ଼ିକ ତଳମୁହାଁ, ଉପରମୁହାଁ, ଗୋଜମୁହାଁ, ଚକୁଳିମୁହାଁ । ସେମାନଙ୍କ ଭିତରେ ଚୌକି ଚୌକିର ସମ୍ପର୍କ । ମାଛ ପିଠିକୁ ମାଛ ପିଠିରେ ଘସିଦେଇ ପହଁରିଯିବା ଭଳି ସହାବସ୍ଥାନ । ଅତି ଉଦାର ଏକ ନିସ୍ପୃହତା । ଜଣେ ଝଡ଼ିଗଲେ ଆରଜଣକର ମୁକୁଟ କୌଣସି ପବନରେ ଦୋହଲିବାର ଆଶଙ୍କା ନାଇଁ । ଏଠି ବରଂ ପରସ୍ପରକୁ ଜାଣିବା ଏକ ଜ୍ୱାଳା, ଏକ ମୁକାବିଲା, ଦାଢ଼ରେ ଦାଢ଼ର ସଂଘର୍ଷ । ନ ଜାଣିବା ଢେର ଭଲ, ଢେର ସ୍ୱାଭାବିକ । ଚମତ୍କାର ଏକ ନୀରବତା ।

ସେ ନିଜେ ହିଁ ଆସି ସେଦିନ କହିଲା ଯେ ତା' ଘର ଜଳେଶ୍ୱର । ତା ନାଁ ସିଦ୍ଧେଶ୍ୱର ବସା । ତା'ର ମାଛ ପୋଖରୀ ଅଛି । ତା' ସ୍ତ୍ରୀ ଭାରି ସୁନ୍ଦରୀ ଇତ୍ୟାଦି । ଏ ତାଲିକାର ଅର୍ଥ କିଛି ନାଇଁ । ଏଥିରୁ ତାକୁ ଠଉରେଇବା ମଧ ସମ୍ଭବ ନୁହେଁ । ବରଂ ତାକୁ ଚିହ୍ନିବାର ଉପାୟ ହେଲା ତା'ର ସେ ମୟୁରଭଞ୍ଜିଆ ମଠାକୁରୁତା । ତା' ଚେହେରା ଶତକଡ଼ା ହିସାବରେ ହାରାହାରି ଚେହେରାଟିଏ । ତା' ସ୍ୱର ମଧ ମଣିଷ ସ୍ୱରର ଗ:ସା:ଗୁ:ଟିଏ ଖୁବ୍ ସାଧାରଣ ଦଫ୍ତରୀ ଦୃଷ୍ଟାନ୍ତଟିଏ ସିଦ୍ଧେଶ୍ୱର ବସା ।

ଆମେ ଏକାଠି ଚା' ଖାଇଲୁ । ସେଇଠି ଢେର୍ ଭିଡ଼ । ପାଞ୍ଚ ପଇସା ଶସ୍ତାରେ ଚା' ମିଳେ । ବାସ୍ନା ନ ଥାଉ । ଚିନି କିନ୍ତୁ ଢେର, ଆଉ ଭାରି କଡ଼ା 'ଡିକାସିନ୍' । ସେଇଠି କଥା କହିବା ସମ୍ଭବ ନୁହେଁ । ହାଟପରି ହାଉହାଉ, ନୂଆ ଚିହ୍ନା ଲୋକଟି ସାଙ୍ଗରେ ମୂଳରୁ ଗର୍ଜିବା ପ୍ରୟୋଜନ ନଥିଲା । ସେ ଚା' ପଇସାଟା ଆଗତୁରା ଦେଇଦେଲା । ମୁଁ ଦେଲି ପାନ । ଭଦ୍ରତାରେ ଏମିତି ଦିଆହୋଇଥାଏ । ଉଭୟେ ପରସ୍ପରକୁ ଚାହିଁ ଟିକିଏ ହସିଲୁ । ସେ ତେଣିକି କ'ଣ ଗୁଡ଼ିଏ ନରମ କଥା କହିଲା । ମୁଁ ମଧ ତାକୁ ଷୋଳଅଣା ଅନେଇଦେଲି ସିଧା ତା' ପିତୁଳା ଭିତରକୁ । ସେତିକିରେ ସେ ମୋ ଭିତରଟା ଦେଖିଦେଲା । ଆମେ ଚାଲୁ ଚାଲୁ ଅନେକ ବାଟ ବାହାରି ଯାଇଥିଲୁ । ଖଣ୍ଡିଏ ପାନ ପାଟିରୁ ସରିବା ଭିତରେ ସେ ଛକରୁ ଏ ଛକଯାଏ ଆସିହୁଏ

ବୋଲି ଜାଣିଲି । ଏକୁଟିଆ ସେଇ ବାଟତକ ପାଇଁ ମୁଁ ଅନ୍ତତଃ ଦୁଇଖଣ୍ଡ ପାନ ଚୋବାଇଥାନ୍ତି ।

ତା' ଜେଜେ କୁଆଡ଼େ ଜମିଦାର ଥିଲେ । ତାଙ୍କର କଲିକତାରେ କୋଠା ଥିଲା । ଥିଲା ପୁରୀରେ । ...ହଅଅ... ଆମର ମଧ ମହେଞ୍ଜୋଦାରୋ ଥିଲା, ହରପ୍ପା ଥିଲା । ସୂର୍ଯ୍ୟକୁ ଅନେଇ କହୁନା ଆଗକୁ କ'ଣ ହେବ । ସେ ଛାଇଟାକୁ ମାପି ଲାଭ କ'ଣ ? ଏଆଡୁ ଆଲୁଅ ଯେତେ ତଳକୁ ନଇଁଯିବ, ସେ ଛାଇ ସେତିକି ଲମ୍ବିଯିବ ଦିଗ୍‌ବଳୟ ଆଡ଼େ । ସେଇଟାକୁ ଛାଡ଼... ସେ ଏକ ଧୋକାବାଜି ।

ଆମେ ଆଉ ଖଣ୍ଡେଲେଖାଁ ପାନ ଖାଇଲୁଁ । ଫେରିଲା ବାଟରେ ସେ କହିଲା ଏ ଯୁଗ କୁଆଡ଼େ ଠକ ଜୁଆଚୋରଙ୍କ ଯୁଗ । ସମସ୍ତେ ଚୋରୀ କରୁଛନ୍ତି । ମିଛ କହୁଛନ୍ତି କାରଣ ଦର ବଢ଼ିଗଲା । ଖାଇବାକୁ ମିଳୁନାଇଁ, ଡାଲ୍‌ଡ଼ା, ଚିନି, ଚାଉଳ । ସେ ହୁଏତ କହୁନଥିଲା, କହୁଥିଲେ ଅନ୍ୟମାନେ । ଏ ସହରର ପଚାଶ ହଜାର ଛୋଟ ବଡ଼ ମଣିଷ । ସେ କେବଳ ପ୍ରତିଧ୍ୱନି କରୁଥିଲା । ମୁଁ ହୁଏତ ତାକୁ ଶୁଣି ନାଇଁ । କିଛି କହିବା ପ୍ରୟାସରେ ପାନଟି ସାରିଦେଲି । ଦୁଇ-ଚାରିଥର ପିକ ପକାଇବାରେ ମୁଁ ମଧ ପ୍ରାୟ ସେଇଆ କହିଲି, ଯାହା ସେ ବା ଅନ୍ୟମାନେ ଅହରହ କହୁଥିଲେ । ତା ସ୍ୱର ହଜିଗଲା ସାଧାରଣ କୋଳାହଳ ଭିତରେ । ସେ ହଜିଗଲା ଭୋକିଲା ମେଣ୍ଢାପଲ ଭିତରେ । ପୁଣି ଶୁଭିଲା – ''ଧନଞ୍ଜୟ ମିଶ୍ର ଲାଞ୍ଚ ଥାଏ । ପଣ୍ଟୁ ମହାନ୍ତି ଚାରି ନମ୍ବର କୋଠା ପିଟୁଚି । ଇଲା ବେହେରା ମଦ ଖାଏ ।'' ତା'ପରେ ତା' ଦାନ୍ତ ସଂଧାରୁ ଫିସ୍ ଫିସ୍ ଶୁଭିଲା, ଏ ଶଳାଙ୍କୁ ମାରିବାକୁ ହେବ । ଯାଙ୍କ ଘର ପୋଡ଼ିବାକୁ ହେବ । ଯାଙ୍କ ଗାଡ଼ି ଜାଳିଦେବାକୁ ହେବ । ମୁଁ ସେ ମାଛି ଅନ୍ଧାରରେ ଶୀତେଇଗଲି । ମୁହଁ ଟେକି ଚାହିଁଦେଲି । ଗୋଟିଏ ସରୁ ସାପ ତା'ର ତିନିକୋଣିଆ ମୁଣ୍ଡ ଟେକି ଅନେଇଚି । ଆଖିରେ ଅବୁଝା କ୍ରୋଧ । ତା' ପାଟିରେ ରକ୍ତ । ତା' ଦେହରେ ମୟୂରଭଞ୍ଜିଆ ମଠାକୁର୍ତା । ସେ ହସୁଚି । ସିଦ୍ଧେଶ୍ୱର ବସା ପାନ ଖାଇ ପାଟି ମେଲେଇ ହସୁଚି – ନିଃଶବ୍ଦରେ ହସୁଚି ସାପ ପରି ।

ହଠାତ୍ ସେ କହିଲା ପାଠଚକ୍ର ଯିବ । ସେଇଠି ଧ୍ୟାନ କରିବ । ସେଠିକି ସ୍ୱାସ୍ଥ୍ୟ ସେକ୍ରେଟେରୀ ଆସନ୍ତି ଗାଡ଼ିରେ । ଗୁଲାବ୍ ସିଂ ଆସନ୍ତି ତାଙ୍କ ଗାଡ଼ିରେ । ତାଙ୍କ ଝିଅମାନେ ଆସନ୍ତି । ତାଙ୍କର ଗୋଟିଏ କୋଠା ପାଠଚକ୍ରକୁ ଲାଗି ତୋଳା ଚାଲିଚି । ଆସନ୍ତି ଅଧ୍ୟାପକ ମହାନ୍ତି, ପ୍ରଫେସର ମହାପାତ୍ର । ପ୍ରବଚନ କରନ୍ତି ଶ୍ରୀ ଦାସ, ଆଗ ଧ୍ୟାନ । ତା'ପରେ ଧ୍ୟାନ । ତା'ପରେ ପୁଣି ଧ୍ୟାନ । ସେ ମୋତେ ଡାକିଲା ଯିବାପାଇଁ । ମୁଁ ମନା କରିଦେଲି କିନ୍ତୁ ଫେରିବାକୁ ହେଲେ ମୋପାଇଁ ଅନ୍ୟ ବାଟ ନଥିଲା । ଏ ହାରାମଜାଦା ସହରରେ ବାଟ ଭାଙ୍ଗିଗଲେ ତିନିମାଇଲ ଅଧିକ ଚାଲିବାକୁ ପଡ଼େ । ଅଗତ୍ୟା ସେ ପୁଣି କହିଲା ଏବଂ ମୁଁ ପୁଣି ଶୁଣିଲି । ସେ ପଣ୍ଡିଚେରୀ ଯାଉଚି । ସେଇଠି ଭଲ ଖାଇବାକୁ ମିଳେ । ଆଶ୍ରମ ବାହାରେ ମାଛ ମିଳେ, ମଦ ମିଳେ । ଯାହା

ଖୋଜିଲେ ତାହା ମିଳେ । ସେ ଗୋଟିଏ ବିଦେଶୀ କଲମ କିଣିଚି ସେଇଠୁ । ସେ ତିରୁପତି ଯାଇଚି । ସେଇଠି ଦର୍ଶନ ପାଇଁ ଲମ୍ବା କ୍ୟୁ ଲାଗିଥାଏ । ଠାକୁର ଗୋଟିଏ କେବଳ ଠିଆ ରାମାନନ୍ଦି ଚିତା । ତା' ଦେହରେ ବହୁତ ଦାମୀ ଅଳଙ୍କାର । ଗୋଟିଏ ନବରତ୍ନ ବାହୁଟି କୁଆଡ଼େ ତିନି କୋଟି ଟଙ୍କା । ସେ ସତ୍ୟ ସାଇବାବାଙ୍କୁ ଦେଖିଚି । ତାଙ୍କର ଲିମୋସାଇନ୍ ଗାଡ଼ିକୁ ମୁଣ୍ଡିଆ ମାରିଚି । ତାଙ୍କର ଦିନ ଭିତରେ ପାଞ୍ଚଥର ବେଶ ବଦଳିଯାଏ । – ସେ ଦେଖିଚି ।

ମୁଁ କେମିତି କେଜାଣି ଭାରି ଅସୁସ୍ଥ ବୋଧକଲି । ହୋଇପାରେ ମୁଁ ପାଞ୍ଚଟାକୁ ଫେରିପାରିନଥିଲି । ମୋତେ ହୁଏତ ଭୋକ ବି କରୁଥିଲା । ହୁଏତ ଅମ୍ଳରୋଗୀର ଆକାଶ ଗୁଡ଼ାକ ଭାରି ନିଘଞ୍ଚ । ସେଥିରେ ଅନେକ ଅନ୍ଧାର । ସେ ଅଞ୍ଚଳେ ରୁନ୍ଧି ହୋଇଯାଏ । ତାକୁ ଅସୁସ୍ଥ ଲାଗେ ।

ସିଦ୍ଧେଶ୍ୱର ବସା ପୁଣି କହିଚାଲିଥାଏ । ମୋ ଅସୁସ୍ଥତା ବଢ଼ିଚାଲିଥାଏ । କହିଲା, ମୋ ପିଲାଦିନ ସାଙ୍ଗ ଶିଖରେଶ୍ୱର । ପ୍ରଚଣ୍ଡ ନୀତିବାଦୀ ଶିଖରେଶ୍ୱର ଟଙ୍କା ତୋଷରପାତ କରୁଥିବା କଥା ସମସ୍ତେ ଜାଣନ୍ତି । ମୁଁ ନ ଜାଣିବା ତାକୁ ବିସ୍ମିତ କଲା । ସେ ବିନୟରେ ନଇଁଗଲା । ଗ୍ଲାନିରେ ଖଣ୍ଡ ଖଣ୍ଡ ହୋଇଗଲା । କହିଲା, ବନ୍ଧୁ ବିଷୟରେ ମୋତେ ସେ ଭଳି କହି ସେ ଅପରାଧ କରିଚି । ତା'ପରେ କିନ୍ତୁ ପ୍ରସଙ୍ଗ ବଦଳେଇଲା ଭଳି କହିଲା, ମୋର ଅଧ୍ୟାପକ ବନ୍ଧୁ ଅମରେନ୍ଦ୍ର ପ୍ରଖର ବକ୍ତା । ସର୍ବଶାସ୍ତ୍ର ପାରଙ୍ଗମ ଅମରେନ୍ଦ୍ର କିଛି ଜାଣେନାହିଁ । ପାଠ ପଢ଼ାଏ ନାହିଁ, ଠକେ । ଏଣୁ ପିଲାଏ ତାକୁ ଥଟ୍ଟା କଲେଣି । ତା ପାଇଁ ଗୋଟାଏ ସରକାରୀ ତାଗିଦା ଆସୁଚି ।

ରାସ୍ତା ଉପରକୁ ସନ୍ଧ୍ୟା ନଇଁ ଆସୁଥାଏ । ଗାଡ଼ି ଆଲୁଅ ସେ ଅରମା ଅନ୍ଧାରକୁ ଚଷି ଚାଲିଯାଉଥାଏ । ବାକୁଣ୍ଡା ଗଛ ଉପରେ ଗୁଡ଼ାଏ ବେକୁବ୍ ବଣୀ ସିଦ୍ଧେଶ୍ୱର ବସାର କଥାଗୁଡ଼ାକୁ ବାରମ୍ବାର ଚିତ୍କାର କରି କହୁଥାନ୍ତି । ଆଉ ଗୁଡ଼ିଏ ସେଥିରୁ ବିସ୍ମୟରେ ଅବିଶ୍ୱାସରେ ଥଣ୍ଟମେଲେଇ ଅନେଇଥାନ୍ତି । ହୋଇପାରେ ତାଙ୍କପାଇଁ ରାତି ହୋଇଯାଇଥିଲା । ହୋଇପାରେ ମୋ ପାଇଁ ମଧ୍ୟ ରାତି ହୋଇଯାଇଥିଲା । ମୁଁ ଚଞ୍ଚଳ ଶୋଇଥାଏ । ସହଳ ଉଠିଲେ ଏଇ ବଣୀ ଭଳି ଲାଗେ ବୋଲି; ଏମିତି ପୋକ ଗୋଟେଇ ସଞ୍ଜକୁ ଫେରିହୁଏ ବୋଲି ।

ସିଦ୍ଧେଶ୍ୱର ବସା ଅମାୟିକ । ଭାରି ଚମତ୍କାର ତା'ର ଭଦ୍ରତା । ଯେତେ ବଡ଼ ଘା' ହାଣିଦେଇ ସେ ଚିକ୍କଣେଇ ଦେଲେ ଚମ ଯୋଡ଼ି ହୋଇଯାଏ । ସେ ଜାଣିଥିଲା ମୁଁ କ'ଣ କରେ । ମୋ ଚୌଦ ପୁରୁଷ କ'ଣ କରିଛନ୍ତି । ମୁଁ କେଉଁଠି ବିଭା ହୋଇଚି । ମୋ ଶଳାଏ ଦେଖିବାକୁ କିପରି । ମୋ ପିଲାଏ କାହିଁକି ଭଲ ପଢ଼ନ୍ତିନାହିଁ । କେମିତି ସେ ଏତେ କଥା ଖବର ରଖିଚି ମୁଁ ଜାଣିନାହିଁ । ମୁଁ କେବଳ ନ୍ୟୁନ ହୋଇଗଲି, ଝାଉଁଳିଗଲି, ଲାଜେଇଗଲି । ସେ ସେମିତି ନିଃଶବ୍ଦରେ ହସୁଥାଏ । କହୁଥାଏ ସହାନୁଭୂତିରେ, ବିନୟରେ । ତା' ବିଷୟରେ ମୁଁ କିଛି ଜାଣିନାହିଁ । ମୁଁ ଜାଣିନାହିଁ

ସେ କିଏ । ମୋ ପାଇଁ ସେ ସିଦ୍ଧେଶ୍ୱର ବସା, ଘର ଜଳେଶ୍ୱର । ତା' ଢେଙ୍କେର ଦୁଇଟା କୋଠା । ଗୋଟାଏ ସେଥିରୁ କଲିକତାରେ, ଆଉ ଗୋଟାଏ ପୁରୀରେ । ତା' ବାପ କିଏ ମୁଁ ଜାଣେନାଇଁ । ତା ଶଶୁର କିଏ, ତା ଶଳା, ତାର ବନ୍ଧୁବାନ୍ଧବ, ପୁଅଝିଅ କିଛି ମୁଁ ଜାଣେନାଇଁ । କିନ୍ତୁ ସେ ମୋତେ ଜଣେଇଦେଇ ସାରିଥାଏ ଯେ ସବୁ ଗୁଣରେ ସେ ମୋଠାରୁ ଭଲ । ତା' ପୁଅ ହୁଏତ ବିଜ୍ଞାନ ପ୍ରତିଭା ବୃତ୍ତିପାଏ । ତା' ଝିଅ ଆମେରିକାରେ ଥାଏ । ତା' ଶଳା ହୁଏତ ବାଙ୍ଗାଲୋରରେ ଡାକ୍ତର । ତା' କଥାର ହାଓ୍ୱାରୁ ଏମିତି ସୂଚନା ମିଳିବା ଅନବାର୍ଯ୍ୟ ।

ପାଠଚକ୍ର ଗୁଡ଼ାକ ଖୁବ୍ ଦୂର । ଅନ୍ଧାରରେ ମଠାକୁର୍ଣ୍ଣା କଥା କହେ । କାନପୁରୀ ଚପଲ କଥା କହେ । କାଣ୍ଠାରାଡ଼ାଇନ୍ ତେଲ କଥା କହେ । ମୋ ଭିତରେ ଯାହା ଜଳୁଥିଲା ବେଶୀ ତେଜିଗଲା । ଯାହା ଭାଙ୍ଗୁଥିଲା ଭୁସୁଡ଼ି ପଡ଼ିଲା । ମୋତେ ବୋଧହୁଏ ବେଶୀ ଭୋକ କରୁଥିଲା । ମୋର ଫେରିବା ଅନେକ ବିଳମ୍ବ ହୋଇଯାଇଥିଲା । ଆକାଶ ସେମିତି ପାଟି ମେଲେଇ ହସିଲା । ଶୁଭିଲା ସେ କହୁଚି ଭାରି ବିନୟରେ, ଖୁବ୍ ଥଙ୍ଗେଇ ଥଙ୍ଗେଇ ଯେ ମୋ ନାଁରେ ମଧ୍ୟ ସେ କେତେ କଥା ଶୁଣୁଚି । କିନ୍ତୁ ଆଦୌ ବିଶ୍ୱାସ କରୁନାଇଁ । ବରଂ ସବୁ ନିନ୍ଦୁକଙ୍କୁ ସେ ଜବଦ୍ କରିଦଉଚି । ସେ ହିଁ ମୋର ପରମ ହିତୈଷୀ । ସେମାନେ ସବୁ କିନ୍ତୁ ନିମକ୍‌ହାରାମ୍ । ସମସ୍ତେ ତାକୁ ଘେରିଗଲେ ସେ ଡ଼ାକୁ କହେ ଯେ ମୁଁ ସକାଳୁ ଉଠେ, ପୂଜା କରେ । ମୁଁ କ'ଣ ଲାଞ୍ଚ ଖାଇପାରେ ? ମୋ ଝିଅ କଥା ସବୁ ଉଡ଼ା ଖବର । ମୋ ପୁଅ କେବେ ଚୋରି କରିନାଇଁ । ମୋ ଘରଲୋକ ଯାହା ବୋଲି ସେମାନେ କହୁଚନ୍ତି ସେ ସବୁ ମିଛ ।

ମୁଁ ଦାନ୍ତ ଜାକି ଗୁଡ଼ାଏ ଅସ୍ଥିର ଭୂମିକମ୍ପ ଉପରେ ମାଡ଼ିବସିଲି । ମୋ ସର୍ବାଙ୍ଗ ଝାଳେଇଗଲା । ନିଆଁଝୁଲ ଆଖିବାଟେ ଖସିପଡ଼ିଲା ଥୋଲା ଥୋଲା ହୋଇ । ମୁଁ ଏକଦା ଫୁଟବଲ୍ ଖେଳୁଥିଲି । ବଲଟାକୁ ଗୋଟାଏ କିକ୍‌ରେ ଏପାରି ସେପାରି ଉଡ଼େଇ ଦେଇପାରୁଥିଲି । ମୋର ମନେହେଲା ବିପକ୍ଷରୁ ସେପରି ଗୋଟାଏ ବଲ ଛୁଟିଆସିଲା ମୋ ତଳିପେଟ ସଳଖା । ମୁଁ ଅଳ୍ପ ଘୁଞ୍ଚିଗଲି । ବାହୁମେଲେଇ ଦେଇ ବସେଇଦେଲି ଗୋଟାଏ କିକ୍ । ସେଭଳି ଜୋର୍‌ରେ ମୁଁ କେବେ ବଲ ମାରିନଥିଲି । ମୁଁ ଦେଖିଲି ଅନ୍ଧାରରେ ବିପକ୍ଷ ଖେଳାଳୀ କିଛିବାଟ ଉଠିଗଲା ଉପରକୁ । ବଲ ପହଁରିଗଲା ଆକାଶକୁ ।

ମୋ ଚାରିଆଡ଼େ ଘୋର କୋଳାହଳ । ପଡ଼ିଆ ଚାରିପଟେ ଘୋର କୋଳାହଳ ମୁଁ ସେଦିନର ବିଜୟୀ । ମୋ ପାଖରେ ଗୋଟାଏ ଗାଡ଼ି ଆସି ଠିଆହୋଇଗଲା । ସେଥିରୁ ଓହ୍ଲେଇଗୁଡ଼ିଏ ଖାକି ପୋଷାକ ମୋତେ ଘେରିଗଲେ । ପଚାରିଲେ କ'ଣ ହେଲା ? ...ମୁଁ କାହିଁକି ସିଦ୍ଧେଶ୍ୱର ବସା ଅଣ୍ଡକୋଷ ଉପରେ ଲାତ ମାରି ତାକୁ ହତ୍ୟା କଲି ? ...କାହିଁ ମୁଁ ତ କିଛି ଜାଣିନାଇଁ ସିଦ୍ଧେଶ୍ୱର ବସା ସେଇଠି ମରିଗଲା ବୋଲି ।

ଇସ୍, ଏମାନେ ସବୁ ବୋକା, କେହି କିଛି ଜାଣନ୍ତିନାହିଁ । ସେମାନେ ତା ମୁହଁ ଉପରୁ ଚାଦର ଟେକି ଦେଖନ୍ତୁ ସେ ଯଦି ପାଟି ମେଲେଇ ନିଃଶବ୍ଦରେ ହସୁନଥିବ ମୁଁ ସବୁ ବାଜି ହାରିଯିବି । ସେ ଶୋଇଗଲେ ମଧ ଚେକା ମାରିଥିବ । ତା ତନିକୋଣିଆ ମୁଣ୍ଡରେ ସାନ ସାନ ଆଖିରେ ପଲକ ନଥିବ । ସେମାନେ ଭୁଲ୍ କରୁଛନ୍ତି । ସେ ହିଁ ଏ ଯୁଗର ଏକମାତ୍ର ଶୁଦ୍ଧ ଆତ୍ମା । ସେ ଶାଳା କ'ଣ କେବେ ମରିପାରିବ ? ଏତେ ଚିକ୍କଣ, ଏତେ ଭଦ୍ର, ଏମିତି ନୀରବରେ ହସୁଥିବା, ଏମିତି ଶାଳୀନ ଶବ୍ଦ କହୁଥିବା ସନ୍ଥ କ'ଣ ଗୋଟାଏ ଲାତରେ ମରି ପାରିବ ?

ଇସ୍, ସିଦ୍ଧେଶ୍ୱର ବସା, ଘର ଜଳେଶ୍ୱର – ଏମାନେ ତୁମକୁ ଜାଣନ୍ତି ନାହିଁ । ବିଶ୍ୱାସ କର; ମୁଁ ହିଁ ତୁମ ମୃତ୍ୟୁକୁ ଗ୍ରହଣ କରି ପାରୁନାହିଁ । ତମେ କ'ଣ ଏତେ ସହଜରେ ମରିପାର ?

□□□

# ତ୍ରାଣକର୍ତ୍ତା ଆସିବେ

''ଭାବିଛି ରକ୍ତଚାପରେ ମରିବା ଅପେକ୍ଷା ଏ ସବୁ ଫୁଲଗଛ ଉପାଡ଼ି ଫିଙ୍ଗିଦେବି । କିଏ ନ ହେଲେ ଏ ହାରମଢାଦାଙ୍କ ସାଙ୍ଗରେ ନିତି ସକାଳୁ ବକ୍ ବକ୍ ହୋଇ ମୁଣ୍ଡ ଖରାପ କରିବ ? ଯେତେ ତାଲା ଦିଅ, କଣ୍ଟାବାଡ଼ ଘେରାଅ, ଆକଟ ଅର୍ଗଳ ଖଟାଅ ସେ କିଛି ମାନିବେ ନାହିଁ । ତୁମ ସାମ୍ନାରେ ତୁମ ଘରେ ପଶି ଫୁଲଗଛ ଗୁଡ଼ିକୁ ମୁଣ୍ଡିଦେବେ, କହିଲେ ବେଖାତିର କରି ଅନେଇବେ । ଛିଗୁଲେଇ ହେବେ । ଅଭାଷିଆ ଗାଳିଦେବେ । ତୁମ ଆଡ଼କୁ ମୁହଁକରି ମୁତିବେ ଏବଂ ସଦର୍ପେ ଚାଲିଯିବେ ଆଙ୍କୁଡ଼ି ଆଉ ଫୁଲ ଅଖା ଧରି । ବାପ ଶଳାଟିମାନ ଘରେ ବସିଥିବେ ପୁଅଙ୍କ ରୋଜଗାରକୁ ଅପେକ୍ଷାକରି । ପର ବାଡ଼ିରୁ ଫୁଲ ଆସିଲେ ତାଙ୍କ ଠାକୁର ବସିବେ । ଧନ୍ୟ ସେ ନିଲାମକିଣା ଠାକୁର ! ଫୁଲ ସାଙ୍ଗରେ ପୁଅ ଯଦି ଦଶ-କୋଡ଼ିଏ କାଠି ସଜନା ଛୁଇଁ ଏବଂ ପୁଞ୍ଜାଏ ବାଇଗଣ ନେଇ ଆସିଥାଏ ତା'ର ପାରିଲାପଣ ଦେଖି ବାପ ମା' କୁରୁଳିବେ, କାରଣ କିଛିକାଳ ପରେ ସେଇ ପୁଅ ତ ପୁଣି ସେମିତି ବିଡ଼ା ବିଡ଼ା ନୋଟ୍ ଆଣି ତାଙ୍କ ଆଗରେ କୁଢ଼େଇଦବ । ତଥାପି ପୁଅକୁ ତ ତିଆରି ପଦେ କହିବାକୁ ହେବ । ନହେଲେ ସେ ଅଳ୍ପକେ ସନ୍ତୁଷ୍ଟ ହେଉଥିବା ମାଆ ହେଇ ଯିବନି ? ଏଣୁ ସଜନା ଛୁଇଁ, ବାଇଗଣ ସାଙ୍ଗକୁ କାହିଁକି ସେ ଟମାଟୋ ଗଣ୍ଡେ ଯୋଗାଡ଼ କରି ପାରିଲାନାହିଁ ସେଥିପାଇଁ ଗାଳି ଶୁଣେଇବେ । ...ଏଥିରେ କ'ଣ କରିବା ? ...ସେଗୁଡ଼ାଙ୍କ ସାଙ୍ଗରେ ହାତାହାତି ହୋଇଯିବାକୁ ମନ ହେଇଯାଉଛି । କିନ୍ତୁ ତେଣିକି କ'ଣ ହବ କହିହଉ ନାହିଁ । ଅଲିଅଳ ସର୍ବଗୁଣାଧାର ପୁତ୍ରମଣିଙ୍କ ପାଇଁ ବାପଶଳେ ମାଲକଚ୍ଛା ମାରି ଭିଡ଼ି ଆସିବେ । ଫୁଲଗଛ ତ ଫୁଲଗଛ, ମଣିଷକୁ ସୁଦ୍ଧା ସେମାନେ ଦଳି ଚକଟିଦେବେ । ଅଗୁଁଆର, ଅଭଦ୍ର, ଅରଣାଥାଟ ସଙ୍ଗେ କିଏ ବା ମୁକାବିଲା କରିବ ? ହଁ, ସେଗୁଡ଼ାଙ୍କୁ ଗୁଳି କରି ଉଡ଼େଇଦେଇ ପାରିଲେ ପୃଥ୍ୱୀ ଉଶ୍ୱାସ ହୁଅନ୍ତା । ଦୁର୍ଜନମାନେ ସଂହାର ହୋଇଯାନ୍ତେ । କେତେଥର ମୁଁ ସେମାନଙ୍କୁ ତୋପ ମୁହଁରେ ଉଡ଼େଇଚି, ଖଣ୍ଡାରେ ହାଣିଚି, ଖୁଣ୍ଟରେ ବାନ୍ଧି କୋରଡ଼ା ମାରିଛି । – କିନ୍ତୁ ଏସବୁ ଖାଲି ମନେ ମନେ । ଫଳରେ ଏତେ କ୍ରୋଧର ବାମ୍ଫ ପେଟ ଭିତରେ ରଖିବାରୁ ରକ୍ତଚାପ ବଢ଼ିଚି । ଅସହାୟତା, ନିପାରିଲା କ୍ରୋଧ ଏବଂ ଅପମାନ ମିଶି ଆଖିବାଟେ ଧୂଆଁ ବାହାରି ଯାଇଚି । ମୋତେ ଲାଗିଛି ଏଇମାନେ ମୋ ଘରେ ପଶି ଫୁଟିଲା ଫୁଲପରି ଅନୂଢ଼ା କନ୍ୟାକୁ ଏମିତି ବଳାତ୍କାର ଉଠି ନେଇଯିବେ, ଇଜ୍ଜତ୍ ଲୁଟିନେବେ, ଧନମାନ

ମର୍ଯ୍ୟାଦା ଲୁଟିନେବେ । ଏଇମାନେ ବେଙ୍କ ଲୁଟିନେବେ । ସରକାରୀ ତହବିଲ୍ ମାରିନେବେ । ଦେଶର ଇଜ୍ଜତ୍ ବିକିଦେବେ... ଏମାନେ... ଏମାନେ ଚମ୍ବଲ୍ ଡକାୟତ, ଏମାନେ ନିମକ୍‌ହାରାମ୍ ଜାଗିରଦାର, ଏମାନେ ଗଜନିର ମାମୁଦ । ...ମାର, ମାର ଏ ଶତ୍ରୁଙ୍କୁ କିଏ କେଉଁଠି ଅଛ ।''

ଏମିତି ଦିନେ ସୁଯୋଗ ପାଇ ପାଟିକଲି । ମୋ ଆଗରେ ମୋଠୁ ଆହୁରି ବୁଢ଼ା, ଆହୁରି ଅପାରଗ, ପଡ଼ିଶାଘର ମଧୁଭାଇନା ବସିଥାନ୍ତି । ମୁଁ ଯେତେ ପାରିଲି ଛେଚି ଦେଇଗଲି ବକ୍ତ୍ର । ତାଙ୍କ ଆଖିପତା ବେଳେବେଳେ ଟେକି ହେଇ ଯାଉଥିଲା, ପୁଣି ସବୁ ସ୍ଥିର ହେଇ ଯାଉଥିଲା । ସେ ନିଶ୍ଚଳ ବସି ମୋର ଶୂନ୍ୟ ବାତୁଳି ମାଡ଼ ଦେଖୁଥିଲେ । ବୋଧହୁଏ ଉପଭୋଗ ବି କରୁଥିଲେ ।

''...ମୋର ରାଗ, ସତ କହୁଚି ଭାଇନା, ସେଇ ବୋପାମାନଙ୍କ ଉପରେ ଯୋଉମାନେ ମାଛି ଅନ୍ଧାରରୁ ତାଙ୍କ ଡିମ୍ବପିଲାଙ୍କୁ ଉଠେଇ ତାଙ୍କ ହାତରେ ନଗି ଧରେଇ ଦିଅନ୍ତି । ଚୋରା ତମ୍ବାତାରରେ ଆଙ୍କୁଡ଼ି ତିଆରି କରି ଧରେଇ ଦିଅନ୍ତି । ନାଲାଏକ କେବେ ଜାଣିପାରନ୍ତି ନାହିଁ ଯେ ଛପି ଛପି ପର ବାଡ଼ିରେ ପଶିବା ବିଦ୍ୟାଟି ତାଙ୍କ କୁଳଚନ୍ଦ୍ରମା ଏଇ ଡିମ୍ବାବସ୍ଥାରୁ ଆୟତ୍ତ କରି ଓସ୍ତାଦ୍ ଚୋରଟିଏ ହେବ ବା ଜାଣି ଶୁଣି ତାକୁ ଶ୍ରେଷ୍ଠ ବିଦ୍ୟା ଭାବି ତାଲିମ ଦେଇଥାଆନ୍ତି... ସେଇ ପାପିଷ୍ଠ ବାପଗୁଡ଼ାଙ୍କୁ ହତ୍ୟା କଲେ କୌଣସି ପାପ ନାହିଁ ।''

''କିରେ, କଣ ହେଇଚି ତୋର ? କାଇଁ ହେମ୍‌ତି ଗୁଡ଼େ ଗର୍ଜୁଚୁ ? ତୋରି ବଗିଚାରେ ତ' ଗଣ୍ଡେ ଫୁଲ । ସେଇଠି ସମସ୍ତିଙ୍କ ଆଖି । ଯାହା ବାଡ଼ିରୁ ହେଲେ ମାଗି କରି ନବା କଥା ନାଁ । ଯଦି ବଳାତ୍କାର କରୁଛନ୍ତି ପୁଲିସିକୁ କହି ଧରେଇ ଦଉନୁ ?''

ମୋ ଦେହରେ ନିଆଁ ଲାଛି ହେଇଗଲା ।

''ରଖ ହେ ତମ ପୁଲିସି ! ସେଥିରୁ ଗୁଡ଼େ କାଇଁ ମତେ ଶୁଣଉଚ ? କୋଉ ପୁଲିସି କାହା ପିଠିରେ ପଡ଼ିଚି ? ମୁଁ ଥରେ ଯାଇ ଏମିତି ତମ୍‌ତମ୍ ହେଇ ଫାଣ୍ଡିରେ ସକାଳୁ କହିଲି । ସେଇଟା ପାଟି ମେଲାକରି ହାଇ ମାଇଲା । ତା' ଉତ୍ତାରୁ ହସିଲା । କହିଲା – ''ଓହୋ, ଆପଣ ଯେମିତି ଢଙ୍ଗରେ କହିଲେ ମୁଁ ତ ଭାବିଥିଲି ଡକେଇତି ହେଇଗଲା ବୋଲି । ...ଧନ ସମ୍ପତ୍ତି କ'ଣ ଲୁଟି ନେଇଥିଲେ ସିନା ଆମେ କ'ଣ କରିଥାନ୍ତୁ ? ...ଆଉ ଏଇ ଫୁଲ ଦିଟା... ହି, ହି, ହି – ଆପଣ ବୃଥାରେ ଆସି ପାତଳ ନିଦଟାକୁ ଭାଙ୍ଗିଦେଲେ ।''

ଆଉ ଯାହା ଆଗରେ ଗୁହାରିଲେ ମଧ ସେଇଆ । ଏଠି ମୋଟରୁ ଫୁଲଗଛ ନ ଲଗେଇବା ଭଲ । ମଧୁ ଭାଇନା ପାକୁଆ ପାଟି ମେଲେଇ ହାଇ ମାରିଲେ । ତାଙ୍କ ପାଟିବାଟେ ଗୋଟେ ଭୁଷଣ୍ଡ କାକ ଅକ୍ଲେଶରେ ଗଳିଯାଇ ପାରିଥାନ୍ତା । ତାକୁ ବାରଣ କରିବାକୁ ବୋଧହୁଏ ସେ ଚାରୋଟି ଚୁଟୁକି ମାରିଲେ ଗୁମ୍ଫା ମୁହଁରେ । – ମୁଁ ଉଠିପଡ଼ି

ପଳେଇଥାନ୍ତି । ବହୁ କଷ୍ଟରେ ସମ୍ଭାଳି ଗଲି । ଫଳରେ ରାଗିଗଲି ଆହୁରି ଅଣଚାଶ ଗୁଣ ଏବଂ ରକ୍ତଚାପ ବଢ଼ିଲା ଅକଳନ ।

''ବୁଝିଲୁ ବାପ, ଏ ଯୁଗ ଏମିତି ହେଇଗଲାଣି । ଏଥକୁ ତୋ ଆୟତ୍ତ ନାଇଁ କି କାହା ଆୟତ୍ତ ନାଇଁ । ଏଠି ଏମ୍ତି ସହି ରହିବାକୁ ପଡ଼ିବ । ପାପଭାରା ବଢୁଚି । ଆଉରି ବଢ଼ିବ ।''

ମୁଁ ଦାନ୍ତ କାମୁଡ଼ି ନୀରବ ରହିଲି ।

ବୈଠକ ଘରୁ ବଗିଚାକୁ ନ ଚାହିଁବାଭଳି ଚୌକିରେ ମୁଁ ବସିଥିଲି । ବଗିଚାକୁ ଚାହିଁଦେଲେ ହିଁ ମୋ ବ୍ରହ୍ମରେ ନିଆଁ ଲାଗିଯିବ । ଦିନେ ଏମ୍ତି ନିଷ୍ଫଳ କ୍ରୋଧରେ ହିଁ ମୁଁ ମରିଯିବି ।

ମଧୁ ଭାଇନା ଆସ୍ତେ ଆଖି ବୁଜି ଶୋଇଗଲେ । ସେ ଲୋକ ସଂପୂର୍ଣ୍ଣ ସ୍ଥବିର । ମୁଁ ସେଇଠୁ ଛାଟ ମାରିଲାପରି ଉଠିପଡ଼ିଲି । ପିଣ୍ଡା ଉପରୁ ହତଶ୍ରୀ ବଗିଚାଟାକୁ କଟମଟ ଅନେଇଲି । ତା'ପରେ ବାଡ଼ିପଟେ ପଶିଗଲି ଗୋଟାଏ ଅଭ୍ୟାସରେ । ଆଉରି ଗୋଟାଏ ହୁଳାରେ ନିଆଁ ଲାଗିଗଲା ।

ସାରା ସାହିର ନର୍ଦ୍ଦମା ପାଣି ବାଡ଼ିରେ ଆସି ଟଳମଳ ହଉଥିଲା । ଆମ ପଡ଼ିଶାର ଗେଣ୍ଡା ନାହାକ କୁରାଡ଼ିରେ ଅଳ୍ପ ମାଟି ଆଡ଼େଇ ପାଣିତକ ମୋରି ବାଡ଼ିକୁ ବାଗେଇ ଦେଇଚି । ସେ ଗେଣ୍ଡା ନାହାକର ନାକଦଣ୍ଡା ଫଟାଇ ଦେବାକୁ କେତେଥର ମୁଁ କ୍ଷେପିଯାଇଛି ବାଦବାଡ଼ ପର୍ଯ୍ୟନ୍ତ । କିନ୍ତୁ ତା' ବାଡ଼ିରେ ପ୍ରଳୟ ଦେଖି ଥମିଯାଇଛି । ପାଣି ଏମିତି ମାଡ଼ିଆସୁଚି ପଶ୍ଚିମରୁ ପୂର୍ବରୁ ଭୂଇଁ ଗଡ଼ାଣିରେ ! ଉପର ମୁଣ୍ଡାରେ ସହରର ବଡ଼ ରାସ୍ତା । ତାକୁ ଭେଦିଛି ଗୋଟାଏ ପୋଲ । ପୋଲ ଆରପାଖେ ସାରା ସହରର ପୋଚା ପାଣି ଜମା ହବାକୁ ଅନାବାଦି ସନ୍ତସନ୍ତିଆ ଖାଇ । ...ସେଇଠୁ ଉଛୁଳୁଛି ଏ ପାଣି... ତେବେ ଏ ମନ୍ଦାକିନୀକୁ ରୋଧିବ କିଏ ? — କୋଉଠି ରୋଧିବ ? ଏ ସାରା ସହରକୁ ଲଙ୍ଗଳ ମୁନରେ ତାଡ଼ିଦେଇ ପାହାଡ଼ ଆରପାରି ଫୋପାଡ଼ି ଦବାକୁ କିଏ ବା ସମର୍ଥ ?...

ଆମ ବସ୍ତିରେ ଛୋଟ ବଡ଼ ସମସ୍ତଙ୍କର ମୁହଁ ଦିଶିଗଲା । ଗୋଟାଏ ଅସ୍ରା ବର୍ଷା ପରେ କେମିତି ଆଣ୍ଠୁଯାଏ ଲୁଗା ଟେକି ଏଇ ନର୍ଦ୍ଦମା ପାଣିରେ ଚବର ଚବର ସମସ୍ତେ ଚାଲନ୍ତି । କେଡ଼େ ଅବହେଳିତ, କେଡ଼େ ଦୁଃଖୀ ଗୁଡ଼ିଏ ଆମେ । ଆମେ ଅନ୍ୟର ନର୍ଦ୍ଦମା ପାଣିରେ ହିଁ ବୁଡ଼ିରହିଥିବୁ । ସେଇ ପାଣିରେ ଆମ ମହାଦେବ ଜଳାଶାୟୀ ହଉଥିବେ । ତେବେ ବି ଆମେ ପରସ୍ପରକୁ ଏମିତି ଘୃଣା କରୁଥିବୁ, ଅପମାନ ଦଉଥିବୁ । ଓଃ !...

ଉଷୁମ ଲୁହ ଗୁଡ଼ାଏ ତବତବ ନିଗିଡ଼ି ଗଲା ।

ମୁଁ ସେଦିନ ସତକୁ ସତ ଚାହିଁଥିଲି ଘରଦ୍ୱାର ଛାଡ଼ି ଚାଲିଯିବାକୁ; ଚାହିଁଥିଲି ମରିଯିବାକୁ । ମୋ ହାତରେ କିଛି ହବନାହିଁ ବୋଲି ଖୁବ୍ ତୀବ୍ର ଅନୁଭବଟାଏ ଆସିଥିଲା । ମୁନ୍ନା ଷଡ଼ଙ୍ଗୀ ଏଡ଼ିକି ଠକ ବୋଲି ମୁଁ କେମିତି ଜାଣିଥାନ୍ତି ? ସେ କେଡ଼େ ବିଶ୍ୱାସରେ କହିଲା ସେ ଦିବ୍ୟସିଂହ ରାୟ ପାଖକୁ ଯାଉଛି । ମୁଁ ଦେଇଥିବା ଚିଠି, ଟଙ୍କା ଆଉ ଜିନିଷପତ୍ର ପେଡ଼ିନେଇ ନିଜ ହାତରେ ଦେଇଦବ । ସେ ଚିତାକାଟି ଯାଇ କଟକରେ ଲାଖିଯାଇଛି । ଏଣେ ଦିବ୍ୟସିଂହ ଗର୍ଜୁଛି । ସବୁଯାକ ଜମି ବେଦଖଲ କରିବାକୁ ଧମକ ଦେଲାଣି । ପୁଅ ସେ ସବୁ ମୋ ହାତରେ ତା ପାଖରେ ପହଞ୍ଚାଇବାକୁ ଦେଇଛି । ଆଉ କୋଉ ମୁହଁରେ ତାକୁ ସେ କଥା କହିବି ? 'ମୁନ୍ନା' ଚୁଚୁନ୍ଦ୍ରାର ଦୁଆର ମୁହଁରେ ନିତିଦିନ ଯାଇ ଅଧଘଣ୍ଟାଏ ବସି ଆସୁଚି । ତା'ର ଦେଖାନାହିଁ । ତା' ଘରେ କେହି ତା' ପାଇଁ ଦାୟୀ ନୁହନ୍ତି । ମୁଁ ବେକୁବ୍, ତା' ହାତରେ ସେତକ ଜିନିଷ କାହିଁକି ଟେକି ଦଉଥିଲି ? ଜାଣିଶୁଣି ଏମିତି କ୍ଷତି କରାଇଲା ପରେ ମୋ'ର କ'ଣ ବଞ୍ଚିବା ଉଚିତ ? ମୁଁ ଖାଲି ଚାକି ବସିଛି, ସେ ମୁନ୍ନା ପାଷଣ୍ଡକୁ ଦେଖିଲେ ଆଗ ଖୁନ୍ କରିବି । ତା'ପରେ ନିଜେ ମାରି ହୋଇଯିବି ସେ ଜିନିଷ ନେଲାବୋଲି ନୁହେଁ, ମୋତେ ଏମିତି ବେକୁବ୍ ବନେଇଲା ବୋଲି । ଦୁର୍ଜନକୁ କ୍ଷମା ଦିଆଯାଇପାରେ, ବେକୁବ୍‌କୁ ନୁହେଁ ।

ବାଁ ପାପୁଲିରେ ବିଧାମାରି ମୁଁ ଦାନ୍ତ କାମୁଡ଼ି ଗର୍ଜିଲି । ମୋତେ ସବୁ ଅନ୍ଧାର ଦେଖାଗଲା । ନିଶ୍ୱାସ ତୋଳିହେଲା । ଏଇଭଳି ଅନେକ ବର୍ଷ ଆଗେ ମୁଁ ମୋ ସ୍ତ୍ରୀର ଅଳଙ୍କାରଯାକ 'ଗୁଗୁନ୍' ମାରୱାଡ଼ି ପାଖରେ ରଖିଦେଇଥିଲି । ସେ ଯୋଡ଼ିଏ ଲଡ୍ଡୁ ଖୁଆଇ ପାଖରେ ବସେଇ ମୋ ଦୁଃଖ ଶୁଣିଥିଲା । ପଇସା ନ ଥିଲା ବୋଲି ଟଙ୍କା ପଚିଶଟି ଦେଇ ପରେ ସବୁ ହିସାବ କରିଦେବ ବୋଲି କହିଥିଲା । ମୁଁ ବିଶ୍ୱାସରେ ଅଳଙ୍କାର ପୁଟୁଳାଟିକୁ ତା' ହାତକୁ ବଢ଼େଇ ଦେଇ ଚାଲିଆସିଥିଲି । ସେ ହାରାମି ଆଉ ଧରା ଦେଲାନାହିଁ । ବେଶୀ ପାଟିତୁଣ୍ଡ କରିବାରୁ ଲୋକ ଲଗେଇ ଘଉଡ଼େଇ ଦେଲା । ...ସେଥିପାଇଁ ତା'ର ବଂଶ ବୁଡ଼ିଗଲା । ହେଲେ ମୋର କ'ଣ ହେଲା ? ଚିରଦିନ ମୋ ସ୍ତ୍ରୀ ପାଖରୁ ଖୁଣ୍ଟା ଖାଇ ଆସିଲି । ସେ ମୋତେ ଆଦୌ କ୍ଷମା କରିପାରିଲା ନାହିଁ । ଆମ ସଂସାର ବିଷାକ୍ତ ହେଇଗଲା । ଏବେ ସେ ପୁଅ ପାଖରେ ଥାଇ ନିଶ୍ଚୟ ମନା କରିଥିବ ଟଙ୍କା ପଠେଇବାକୁ । କିନ୍ତୁ ଓଃ, ମୁଁ ବୋଧେ ଆଉ ସହିପାରିବି ନାହିଁ । ମୋ ନିର୍ବୋଧପଣକୁ ଆଉ ସମ୍ଭାଳି ପାରିବିନାହିଁ ।

ସେଦିନ ସନ୍ଧ୍ୟାରେ ମୋତେ ସେମାନେ ବଡ଼ ଡାକ୍ତରଖାନାରେ ଭର୍ତ୍ତିକରି ଦେଇଥିଲେ । ପୁଅକୁ ଟେଲିଗ୍ରାମ କରି ଡକେଇ ଆଣିଥିଲେ । ଶୁଣିଲି ସବୁ ଫୁଲଚୋରଙ୍କ ବାପମାନେ ଆସି ଧାଁ-ଦଉଡ଼ କରିଥିଲେ । ନିଜେ ଗେଣ୍ଡା ନାହାକ କୁଆଡ଼େ ଟେଲିଗ୍ରାମ କରିଥିଲା ।

ମୁଁ କୁଆଡ଼େ ଦଶଦିନ ପରେ ସମସ୍ତଙ୍କୁ ଚିହ୍ନି କଥାବାର୍ତ୍ତା କରିପାରିଥିଲି । ଏମାନଙ୍କୁ ମୋ ଚାରିଆଡ଼େ ଘେରିଥିବାର ଦେଖି ବୁଝିପାରି ନ ଥିଲି ତାଙ୍କ କାରସାଦି । କିଛିଟା ପୁଣି ଉତ୍ୟକ୍ତ ହୋଇପଡ଼ିଥିଲି । ମୋର ସବୁ ଶତ୍ରୁପକ୍ଷ କେମିତି ମୋ ପକ୍ଷକୁ ଗଳିଆସିଲେ ? ବେଇଜ୍ଜତ୍ କାହାଁକା । ସେମାନେ ବୋଧହୁଏ ମୋତେ ଏବଂ ମୋ ଶତ୍ରୁପଣକୁ ବେଖାତର କରି ମୋ ଖଟ ପାଖକୁ ଲାଗିଆସିଥିଲେ । ମୁଁ ଆହୁରି ଉତ୍ତେଜିତ ହେଲି । ମୋର ବୁକୁ ଧଡ଼ଧଡ଼ ହେଲା । ଝାଳ ଢକେଇ ଗଲା ମୁହଁରେ ଦେହରେ । ...ସେମାନେ ବୋଧେ ଖୁବ୍ ପାଖରୁ ମୋର ମରଣ ଦେଖିବାକୁ ସେମିତି ଘେରି ରହିଥିଲେ । ଉପଭୋଗ କରିବାକୁ ଠିଆହେଇଥିଲେ !!

ମୋର ରକ୍ତଚାପ ବଢ଼ିଯାଇଥିଲା । ଖୁବ୍ ଧାଁ-ଦଉଡ଼ ହେଇଥିଲା । ଡାକ୍ତର ଆସି ଇଞ୍ଜେକ୍ସନ ଫୋଡ଼ିଥିଲା । ତା' ପୂର୍ବରୁ କିନ୍ତୁ ସେ ଯେମିତି ଧକିଆ ମାରି ସେ ଭଣ୍ଡ ଗାଳୁଆଙ୍କୁ ସେଇଠୁ ତଡ଼ିନେଇଗଲା, ସେତିକିରେ ମୋର ପ୍ରାଣ ଶୀତଳ ହେଇଗଲା । ବିନା ଇଞ୍ଜେକ୍ସନରେ ସୁଦ୍ଧା ମୁଁ ହୁଏତ ଶୋଇଯାଇଥାନ୍ତି । ବାଃରେ ଡାକ୍ତର, ତୁ ବୋଧେ ପାରିବୁ ଏ ବ୍ୟାଧିମାନଙ୍କୁ ସଂହାର କରି । ସେ ଟୋକା ଡାକ୍ତର ମୁହଁକୁ ଚାହିଁ ମୁଁ ଅଳ୍ପ ହସିଥିଲି । ସେ ଉଦ୍‌ବିଗ୍ନ ଦେଖାଯାଉଥିଲା, କିନ୍ତୁ ଦିଶୁଥିଲା ଖୁବ୍ ଆପଣାର । ମୋ ଆଗରେ ମୋ ଶତ୍ରୁକୁ ସେ ଧକ୍କା ମାରି ପାରିଥିଲା ତ !

ଆଖି ଖୋଲିଲେ ମୋତେ ଛାତ ପଙ୍ଖା ଦିଶୁଥିଲା ଏବଂ ଡାହାଣପାଖେ ସୁକ୍‌ସୁକ୍ କାନ୍ଦ ହଠାତ୍ ବନ୍ଦ ହେଇଯାଉଥିଲା ।

'କେମିତି ଲାଗୁଚି ତମକୁ ?'

'ଦିବ୍ୟ ପାଲିଙ୍କିରେ ବସିଲାପରି ଲାଗୁଚି ।' ହୁଁ ! ନାଲାଏକ କାହାଁକା ! ବେଶୀ ମାଇପପଣିଆ ଦେଖେଇ ହଉଚି ! – କାହିଁକି ସେଭଳି ଗୋଟେ ମାଖୁନା ପ୍ରଶ୍ନ ସେ କରୁଥିଲା ? ସେ ତ' ମୋ ସ୍ତ୍ରୀ । ଜୀବନଯାକ ମୋତେ ବେକୁବ୍ ବୋଲି ଶୋଧି ଶୋଧି ବଜରା କରି ଦେଇଛି । ମୁଁ ଆଉ ସହି ନ ପାରି ଚିଡ଼ଚିଡ଼ା ହେଇଯିବାରୁ ମତେ ଛାଡ଼ି ପୁଅ ବୋହୂ ପାଖରେ ଯାଇ ରହୁଛି । ତା'ର କି ଗଲା ମୋତେ ଯେମିତି ଲାଗିଲେ ? ତା' ବୋପାର କି ଗଲା ? ତା'ର ଖାଇବା ପିନ୍ଧିବାରେ କ'ଣ ତଫାତ୍ ପଡ଼ିଯାଉଛି ? ...ମୋ ରକ୍ତଚାପ ପୁନଶ୍ଚ ବଢ଼ିଥିଲା ।

ଡାକ୍ତର ଅନ୍ୟ ଉପାୟ ନ ଦେଖି କେବଳ ନିଦ ଓଷୁଅରେ ମୋତେ ବୁଡ଼େଇ ରଖିଲେ ।

ଚେତା ଥିଲାବେଳେ ଟୋକା ଡାକ୍ତରଟି ମୋତେ ତିଆରିଲାପରି କହୁଥିଲା, "ଆପଣ ଆଉ ଚିଡ଼ନ୍ତୁ ନାହିଁ । ସେଥିରେ ଆପଣଙ୍କରହିଁ କ୍ଷତି !" ମୁଁ ଏଇ ପଦକ ଶୁଣି ଆହୁରି ଚିଡ଼ି ଯାଇଥାନ୍ତି । 'ଆରେ ବେକୁବ୍, ମୁଁ କ'ଣ ଲାଭ କ୍ଷତି ବିଚାର କରି ଚିଡ଼ିବି ନା କ'ଣ ! ମୋ ଆୟତ୍ତରେ କ'ଣ ମୁଁ ଚିଡୁଚି ? ମୋ ବାରୁଦ ଘରେ ନିଆଁ

ଲାଗିଯାଉଚି । ମୋ ଦହି ଚହଲି ଯାଉଚି । ମୁଁ ତେଣିକି ସମ୍ଭାଳି ପାରୁନାହିଁ । ...ହଉ, ଛାଡ଼ୁ ତୋ' ମୁହଁଟି ବେଶ୍ ସୁନ୍ଦର । ତୁ ମୋ ନାତି ଟୋକା ଭଳି ଦିଶୁଚୁ । ...ତୁ ଜାଣିଚୁ ନା ବାବୁନିକୁ ? ସେ ବି ତୋ'ଭଳି ଡାକ୍ତର ହେଇଗଲାଣି । ଏବେ ଚଣ୍ଡୀଗଡ଼ରେ ଅଛି ।'

ଏଣୁ ମୁଁ ଡାକ୍ତର କଥାରେ ଚିଡ଼ିଲି ନାହିଁ । ତାକୁ କୌଣସି ଉତ୍ତର ବି ଦେଲିନାହିଁ । କେବଳ ତାକୁ ଚାହିଁ ବୋଧେ ଟିକିଏ ହସିଦେଇଥିଲି । ସେ ଖୁବ୍ ଖୁସିହେଇ ଯାଇଥିଲା । ସେଇ ଖୁସିରେ ମୋତେ ଗୋଟାଏ ଇଞ୍ଜେକ୍ସନ ଫୋଡ଼ିଦେଇଥିଲା । ନାଲାଏକ୍ କାହାଁକା !

ସେଇ ଟୋକା ଡାକ୍ତର ବୋଲରେ ପଡ଼ି ମତେ ସେମାନେ କିଛି ଖବରକାଗଜ ପଢ଼ି ଶୁଣାଇବାର ବ୍ୟବସ୍ଥା କରିଥିଲେ । ଓଃ, ମାତ୍ର ଗୋଟିଏ ଦିନରେ ସେ ଯୋଜନା ରଦ୍ଦ ହେଇଗଲା । ନ ହେଲେ ମୁଁ ଆଜି ବଞ୍ଚି ରହି ନଥାନ୍ତି । ଇସ୍ – ମନ୍ତ୍ରୀଟାଏ ଏମିତି ଡାହା ମିଛ କହିଦେଇ ଚାଲିଗଲା ସାଧାରଣ ସଭାରେ ! ପାଞ୍ଚ ହଜାର ଲୋକ ବେକୁବ୍ ଭଳି ସେଇଠି ବସିଥିଲେ । କେମିତିଆ ମରି ଅଫିସର ଆମର ସବୁ ଗୁପ୍ତ ଖବର ବିକ୍ରିକରି ଦଉଛନ୍ତି... ସମସ୍ତେ ତାହା ବି ସମ୍ଭାଳି ଯାଉଛନ୍ତି ।

ପ୍ରତି କଥାରେ ମୋ ରକ୍ତଚାପ ବଢ଼ିଲା । ମୁହଁ ରଙ୍ଗ ପଡ଼ିଗଲା । ମୁଁ ଉଦ୍‌କ୍ଷିପ୍ତ ହୋଇ ହାତ ମୁଠା ମୁଠା କରି ଦାନ୍ତ କାମୁଡ଼ି ବିଡ଼୍‌ବିଡ଼୍ ହେଲି । ବୋଧେ ମୂର୍ଚ୍ଛା ଗଲି ।

ଅଗତ୍ୟା ସେ ଯୋଜନା ସେମାନେ ବନ୍ଦ କଲେ । ଖୁବ୍ ସାବଧାନ ରହି ସୁଦ୍ଧା ସେମାନେ ମୋତେ ବଞ୍ଚାଇ ପାରିବେ ନାହିଁ ବୋଲି କଥାଭାଷା ହେବାର ମୋ କାନରେ ପଡ଼ିଥିଲା ।

ଏମିତି ନିଆଁ ଚେଁକ ଖାଇ ଅନ୍ୟମାନେ କେମିତି ସ୍ଥିର ରହି ପାରିଛନ୍ତି ଦେଖି ମୁଁ ବିସ୍ମିତ ହେଉଥିଲି । ସେମାନେ ହୁଏତ ନିଜକୁ ନିଜେ ଠକି ଦଉଚନ୍ତି । ରାଗିବାକୁ ଇଚ୍ଛା କରି ରାଗୁନାହାନ୍ତି – ଏହା ଭାବି ମୁଁ ଆହୁରି ଉତ୍ତେଜିତ ହଉଥିଲି । ସେଭଳି ଅଲାଜୁକ ନିରକ୍ତିଆ କେଞ୍ଚୁଆମାନେ କାହିଁକି ବଞ୍ଚିଛନ୍ତି... ମୁଁ ଏଇ କଥାରେ ତାତି ଉଠୁଥିଲି । ମୋର ରକ୍ତଚାପ ରୋଗ ଆଉ ଭଲ ହବାର କୌଣସି ଉପାୟ ନଥିଲା ।

ହପ୍ତାଏ ପରେ ଚିଠିଟାଏ ଆସି ପହଞ୍ଚିଲା ମୋ ନାଁରେ ସେଇ ହସ୍‌ପିଟାଲ ଠିକଣାରେ । ଲେଖିଥିଲା ମୋ ନାତି ଟୋକା । ଚଣ୍ଡୀଗଡ଼ରେ ଡାକ୍ତର ବନୁଥିବା, ମତେ ଚିରକାଳ ବିରୋଧ କରୁଥିବା, ମୋର ଆଦିମ ଶତ୍ରୁ, ମୋର ପ୍ରାଣରୁ ବଳି ପ୍ରିୟ ନାତିଆ । ତା' ନାକ ତଳେ ନିଶ ଗଜୁରିବା ଦିନଠାରୁ ମୁଁ ଜାଣିଚି ଯେ ସେ ଏଇ ହାରାମିଖୋର, ଦଗଲବାଜିଆ ସଂସାରକୁ ମୁକାବିଲା କରିପାରିବ । ଯାକୁ ସାବାଡ଼ କରି ଥୋଇଦବ । ଦୁରୁସ୍ତ କରିଦବ ମୋ ନାତି ଟୋକା । ସେଇ ହଉଚି ସଚ୍ଚା ସେର୍‌କା ବଚ୍ଚା । ମୋ ଭିତରେ ବେକୁବ୍ ମେଣ୍ଢାଟାଏ ଡରିମରି ରହିଚି । ଗୋଟାଏ ସିଂହ ବି

ବନ୍ଧାପଡ଼ି ଗର୍ଜୁଚି । ମୋ ପୁଅଟା ସେଇ ମେଣ୍ଢା । କିନ୍ତୁ ମୋ ନାତିଆ... ହୁଁ ! ସେଇ ମୋ ସିଂହ !! ରଇଥା ବେ, ଦେଖିବ ତାକୁ । ସେ ଖାଲି ଆସିଯାଉ ଏଠିକି !! ଚିଠିଟା ଖୁବ୍ ଛୋଟ । "ଜେଜେ, ମୁଁ ଆସୁଚି । ତୁମେ କିଛି ଚିନ୍ତା କରିବ ନାହିଁ ।"

ଓଃ, ସେ ତା'ହେଲେ ଆସୁଚି । ...ସେ ଏମାନଙ୍କୁ କେବେ ଛାଡ଼ିବ ନାଇଁ । ୟାଙ୍କ ଥୋମଣି ଉଡ଼େଇଦବ । ସବୁ ପୋଚାପାଣି ଲେଉଟେଇଦବ । ସଜାଡ଼ି ଦବ ଏ ଖଣ୍ଡିଆ ଦଦରା ନାଲାଏକ ପୃଥିବୀକୁ ।

ମୋର ଆଉ ଜମ୍ମା ରକ୍ତଚାପ ବଢୁନାଇଁ । ତା' ମୁହଁ ମନେ ପଡ଼ିଲେ ସେ ହସିଦଉଚି । ସେତିକିରେ ମୋ ଭିତରେ ଭରସା ଜମି ଯାଉଚି ଶ୍ରୀମନ୍ତ ହିମାଳୟପରି । ମୁଁ ବି ହସିଦଉଚି ସବୁ କଥାରେ । ମୋ ପାଇଁ ଆଉ ସମସ୍ୟା ନାଇଁ କି ଦାୟିତ୍ୱ ନାଇଁ... ।

ସେଇ ଚିଠି ପହଞ୍ଚିବା ଦିନ ଗେଣ୍ଡା ନାହାକ ପଶିଆସିଥିଲା । ମୋ ମୁହଁ ଫଣଫଣ ହେଇ ଉତୁରିଲା ନାହିଁ । ମୁଁ ତାକୁ ନିର୍ବିକାର ଚାହିଁ ରହିପାରିଲି । ସେ ଖୁବ୍ ଉଦ୍‌ବିଗ୍ନ ଦେଖାଯାଉଥିଲା । ମୋ ପାଦ ଉପରୁ ବୋଧେ ଚାଦର ଖସିଯାଇଥିଲା । ସେ ତାକୁ ଆସ୍ତେ ସଜାଡ଼ିଦେଲା । ମୋତେ ଚାହିଁ ଅଳ୍ପ ହସିବାର ଉପକ୍ରମ କରିଥିଲା । ମୋତେ ଲାଗିଲା ସେ ଗେଣ୍ଡା ନାହାକ ମୋଟେ ନୁହେଁ । ତା'ର ଭଲ ନାଁ'ଟିଏ ଅଛି । ଜି ନାଏକ ମାନେ ଗୋବର୍ଧନ ନାଏକ । ସେ କେବେ ହେଲେ ଗେଣ୍ଡା ନାହାକ ନଥିଲା । ଗେଣ୍ଡା ନାହାକ ବୋଲି କେହି ପ୍ରକୃତରେ ନାହିଁ ।

ଦୁମ୍‌ଦୁମ୍ ପାଦ ଶବ୍ଦ ଶୁଭିଲା । ଧାଇଁଲା ଭଳି ପଶିଆସିଲା ମୋ ସ୍ତ୍ରୀ । ଖଟ ଉପରକୁ ଝୁଙ୍କିପଡ଼ି ଆଗ ଗୋଡ଼ଠଉଁ ମୁଣ୍ଡଯାଏ ଆଉଁସି ଦେଇଗଲା । ମୁଁ ସେତିକିରେ ଧନୁଷ୍ଟଙ୍କାର ରୋଗୀପରି କ୍ରୋଧରେ ବାଙ୍କିଗଲି ନାହିଁ । ତା'ର ସେ ଡରିଲା ଡରିଲା ଆଖି ଆଉ ମୁହଁ, ଥରିଲା ଥରିଲା ହାତ, ଭଲ ଲାଗିଲା । ସେ ମୋତେ ଚାହିଁ ଉଶ୍ୱାସରେ ଆଶଙ୍କାରେ ପଚାରିଲା — "କେମିତି ଲାଗୁଚି ?"

ଉତ୍ତରରେ ମୁଁ ମୁଚୁମୁଚୁ ହସିଦେଲି । ଚାଳିଶ ବର୍ଷର ମେଘ ଘୁଞ୍ଚିଯାଇ ଅତି ପୁରୁଣା ଜହ୍ନଟିଏ ଉଇଁଗଲା ଆମ ମଧ୍ୟାକାଶରେ । ...ମୋ ଭିତରେ ଇତସ୍ତତ ପଡ଼ିଥିବା ଭଗ୍ନସ୍ତୂପ ସବୁ ସଜାଡ଼ି ହେଇଗଲା; ପୁନଶ୍ଚ ଶଙ୍ଖମଲମଲ ପଥରର ଗମ୍ବୁଜଗୁଡ଼ିଏ ଗଣିହେଇଗଲା; ଝଟକିଲା ଜହ୍ନ ଆଲୁଅରେ ।

ଗୋବର୍ଧନ ନାଏକଙ୍କ ମୁହଁ ଉଜ୍ଜ୍ୱଳ ଦିଶିଗଲା ।

ଖୁବ୍ ଗହଳିଟାଏ ଜମିଗଲା ମୋ ବିଛଣା ଚାରିପଟେ । କାହିଁ ଥିଲା ସେ ଟୋକା ଡାକ୍ତର, ଝପଟି ଆସି ସମସ୍ତଙ୍କୁ ଠେଲିପେଲି ପକାଇଲା । ମୋ ନାଡ଼ି ଚିପି ବୁକୁ ଉପରେ ଯନ୍ତ୍ର ରଖି କାନେଇଲା । ସମସ୍ତେ ଚୁପ୍ ହେଇ ଚାହିଁ ରହିଲେ । ସେ ଭୁରୁ କୁଞ୍ଚେଇ ପୁଣି ନିଠେଇ ନିଠେଇ କାନେଇଲା । ସମସ୍ତେ ଉଦ୍‌ବିଗ୍ନ ଦେଖାଗଲେ । ମୋ କଲିଜା ବି ଦି'ଥର ପିଟିହେଇଗଲା ପଞ୍ଜରାରେ ।

ଆସ୍ତେ ତା ଭ୍ରୂରୁ ସଳଖିଗଲା । ତା' ମୁହଁ ଉଜ୍ଜଳିଗଲା ସଜଫୁଟା ପଦ୍ମପରି । ସେ ମୋ ନାତି ଟୋକାପରି ଦିଶୁଥିଲା ସେତେବେଳେ । ଉପରକୁ ଦୁଇ ହାତ ଟେକି ଆଲେକ୍‌ଜାଣ୍ଡାର ଭଙ୍ଗୀରେ ସେ କହିଲା – "ଆଉ ଚିନ୍ତା ନାହିଁ । ସବୁ ବିପଦ କଟିଗଲା । ଏଣିକି ଆପଣ ଆଉ ଚିନ୍ତନ୍ତୁ ନାହିଁ ।"

ମୁଁ ପିଲାଙ୍କଭଳି ମୁଣ୍ଡ ଟୁଙ୍ଗାରି ରାଜି ହେଇଗଲି । ମୋ ନାତିଟୋକାର ଚିଠିଟାକୁ ବାଁ ହାତରେ ଉପରକୁ ଟେକିଧରି ସମସ୍ତଙ୍କ ଆଗରେ ନାଗଫଣା ପରି ଖେଳେଇଲି ।

ସମସ୍ତେ ମୁଗ୍ଧ, ସମସ୍ତେ ପରାସ୍ତ ।

ମୋର କାହାପ୍ରତି ଆଉ କ୍ରୋଧ ନାହିଁ, ଆସକ୍ତି ନାହିଁ, ଦ୍ୱେଷ ଆକ୍ରୋଶ ନାହିଁ । ମୋ ଭିତରେ ମୁକ୍ତା ଫଳ ପରି ଟଳମଳ କରୁଚି ଏକ ଅଦ୍ଭୁତ ଭରସା ।

...ମୋ ତ୍ରାଣକର୍ତ୍ତା ଆସୁଚି ।

□□□

# ନଈପାରି

ଅନେକ ଜନପଦ ପାରି ହୋଇ ସେ ଯେତେବେଳେ ଆସି ନଈ କୂଳରେ ପହଞ୍ଚିଲେ ସେତେବେଳକୁ ପ୍ରାୟ ସନ୍ଧ୍ୟା ସମୟ । ଶରୀରଟା ତାଙ୍କର ବାଲିହୁଡ଼ାଟାଏ ପରି ବିଛେଇହୋଇ ପଡ଼ିଲା, ରେଣୁ ରେଣୁରେ ଯେମିତି କିଛି ଆଉ ସମ୍ପର୍କ ନାହିଁ । କୌଣସି ଗୋଟାଏ ବିସ୍ମୃତ ଅଭ୍ୟାସ ବଶତଃ କେବଳ ଏକାଠି କୁଢ଼େଇହୋଇ ପଡ଼ିରହିଥାଏ । ମନ ଭିତରେ ତାଙ୍କର ବହୁ ରଙ୍ଗର ଆଦିମ ଅରଣ୍ୟ, ଅନେକ ଅନ୍ଧ ସଂଘର୍ଷର ଲୋହିତ ସ୍ମୃତି । ଏ ସମସ୍ତ ଘୋଡ଼େଇଲାଭଳି କିନ୍ତୁ ଗୋଟାଏ ବିସ୍ମୟ । ଏଇଟା କଣ ସେଇ ନଈ ଯାହାର ଆରପାରି ଦିଶେନାହିଁ ।

ଆଖି ଖୋଲି ଅନେଇଲାବେଳକୁ ଚାରିଆଡ଼ୁ ଅନ୍ଧାର ନଇଁଆସିଲାଣି । ତରଳ ଝଡ଼ଟାଏ ପରି ନଈସୁଅ ପିଟି ଚାଲିଛି; ଅନ୍ଧାରରୁ ଅନ୍ଧାରକୁ । ''ତା'ହେଲେ ଏଇଟାକୁ ମୋତେ ପାରି ହେବାକୁ ପଡ଼ିବ ! କେମିତି ? ମୁଁ ତ ଯାକୁ ପାରି ହେଲାପରି ଲାଗୁନାହିଁ ।'' ଝୁରୁଝୁରିଆ ବାଲିକୁ ଆଉଜି ପଥିକଟି ଏମିତି ଭାବିଲାବେଳକୁ ଦେଖିଲେ ଯେ ଗୋଟିଏ ଛାଇ ତାଙ୍କ ପାଖକୁ ପହଁରି ଆସିଲା – ନିକଟରେ ଆସି ଠିଆହେବାରୁ ସେ ଦେଖିଲେ ଯେ ତାଙ୍କରି ଭଳି ସେ ଜଣେ ନଈକୂଳରେ ବିଡ଼ମ୍ବିତ ପଥିକ । ପଚାରିଲେ – ''ଆପଣ କିଏ ?''

''ମୁଁ କେବଳ ଅନୁମାନ କରୁଛି ଆପଣ କ'ଣ ଜାଣିବାକୁ ଚାହାନ୍ତି । କିନ୍ତୁ ମୋତେ ସେଥିପାଇଁ ଅନେକ ମନେ ପକେଇବାକୁ ପଡ଼ିବ । ମନେ ପଡ଼ିଲେ ମଧ୍ୟ ମୁଁ ବୋଧହୁଏ ଠିକ୍ ଉତ୍ତର ଦେଇ ପାରିବି ନାହିଁ ।

– ଆପଣ ଯେ କେହି ହୁଅନ୍ତୁ ଆପଣ ଯେ ମୋ ଭଳି କ୍ଳାନ୍ତ ଏବଂ ଆପଣଙ୍କୁ ଏ ନଈ ପାରିହେବାକୁ ପଡ଼ିବ ଏଇଟା କଣ ସତ ନୁହେଁ ?

''ଆପଣଙ୍କ ଭଳି ନ ହେଲେ ମଧ୍ୟ ମୁଁ ବୋଧହୁଏ କ୍ଳାନ୍ତ ! କିନ୍ତୁ କେଉଁ ନଈର କଥା ଆପଣ କହୁଛନ୍ତି ?''

''ଆପଣ ଟିକିଏ ଆଗକୁ ଅନେଇଲେ ଦେଖିପାରିବେ ।''

''ଓ, ଏଇ କଥା ତ ମୁଁ ଢେର ଆଗରୁ ଶୁଣି ଆସିଛି । କିନ୍ତୁ ଏଇଟା କଣ ନଈ ? ମୋତେ ତ ଦିଶୁଛି ଆକାଶ ବା ତାଠାରୁ ଆହୁରି କିଛି ଗୋଟାଏ ପାତଳ ଉପାଦାନ । ଆଉ ଏଇଟା ହୁଏତ ଚାଲୁନାହିଁ ଆମେ ଚାଲୁଥିବାରୁ ଏମିତି ସ୍ରୋତଟାଏ ଦିଶୁଛି କେବଳ – ହେଲା ବା ସେଇଟା ଆପଣଙ୍କ ଭାଷାରେ ଗୋଟାଏ ନଈ । ତାକୁ ପାରି ହେବା ଆପଣଙ୍କୁ କାହିଁକି ଏତେ ବିବ୍ରତ କରିପକଉଛି –

''ଏତେ ଭୀଷଣ ସ୍ରୋତ, ଏଡ଼େ ଗହୀର, ନଈ ପାରି ହେବାପାଇଁ ମୋର ନିଜର ବଳ ନାହିଁ । ଆଉ ମଧ ଏହାର ଆରପାରି ଦିଶୁନାହିଁ ।

''ବାସ୍, ସେଇଆ, ଆରପାରିଟା ଦିଶୁନାହିଁ ବୋଲି ଏପରି ଲାଗୁଛି – ତାପରେ ଭାବନ୍ତୁ ନା, ଆପଣ ପାରନ୍ତୁ ବା ନ ପାରନ୍ତୁ ଆପଣଙ୍କୁ ଏଥିରେ ପଶିବାକୁ ହିଁ ହେବ । ଆପଣଙ୍କୁ କଣ ଏଠି କେହି କେବେ ରଖେଇ ଦେବ । ଯଦି ନିହାତି ଏଥିରେ ଝାମ୍ପ ଦେବାକୁ ହିଁ ହୁଏ, ତେବେ ଏତେ ଭାବନା କାହିଁକି ?''

ମୁଁ ଦେଖୁଛି ଆପଣ ମୋଠାରୁ ଢେର ଶକ୍ତିଶାଳୀ ଲୋକ ! ଆପଣଙ୍କ ସାହସ ତ କିଛି କମ୍ ନୁହେଁ ।'' ,

''ମୁଁ ଆଗରୁ ଖଣ୍ଡିଏ ନୌକା ପାଇଁ ମୂଲ୍ୟ ଦେଇଛି – ନାଉରୀଟି ମୋର ପାଇଚି ତ ।''

ଏତକରେ ଅବଶ ଅଙ୍ଗଗୁଡ଼ିକ ହଠାତ୍ ଯୋଡ଼ିହୋଇ ଯିବାରୁ ପଥିକଟି ବସିପଡ଼ି ଆଗ୍ରହରେ ଆରମ୍ଭ କଲା –

ମହାଶୟ, ମୁଁ ଆପଣଙ୍କ ନୌକାରେ ଏଇ ଅଳ୍ପ ବାଟ ପାରି ହୋଇଗଲେ ଆପଣଙ୍କର ସେଥିରେ କ'ଣ ବିଶେଷ ଆପତ୍ତି ଅଛି –

ନା, ମୋର ସେଥିରେ ବା ଆପତ୍ତି କ'ଣ ଥାଇପାରେ, ସେ ମୋତେ ଯେମିତି ପାରି କରିବ ଆପଣଙ୍କୁ ମଧ ସେପରି ପାରି କରିନେବ ।

ଆମେ କଣ ଏକାଠି ପାରି ହୋଇ ପାରିବା ନାହିଁ ?

ଏକାଠି କେବେହେଲେ ସମ୍ଭବ ହେଇନି ! ଆପଣଙ୍କ ଚୁକ୍ତି ଅଲଗା ମୂଲ୍ୟ ଅଲଗା ବେଳା ଓ ମାର୍ଗ ମଧ ଅଲଗା –

ଆଛା ନାଆ, ନାଉରୀ, ନଈ ତ ଉଭୟଙ୍କ ପାଇଁ ଏକା –

ଆଜ୍ଞା ନା, ସେ ବି ସବୁ ଅଲଗା ।

ଆପଣ କଥାଟାକୁ ଜାଣିଶୁଣି ଏମିତି ଜଟିଳ ଓ ଭୟାବହ କାହିଁକି କରୁଛନ୍ତି ?

ତାହା ମୋର ଗୋଟେ ଉଦ୍ଦେଶ୍ୟ ନୁହେଁ । ମୋତେ ଯାହା ଦିଶୁଛି, ମୁଁ ତା' କେବଳ ପ୍ରକାଶ କରି ଦେଉଛି । ଆପଣଙ୍କର ତାହା ସହ୍ୟ ହେଉନାହିଁ ।

ତା' ନୁହେଁ ଯେ, ମୁଁ ଭାବୁଥିଲି ଯଦି ପ୍ରତି ମୁହୂର୍ତ୍ତରେ ପୁରାତନର ବିଲୟ ହୋଇ ଚାଲିଛି ତେବେ ଆପଣ ଯେ ମୋ ପ୍ରଶ୍ନର ଉତ୍ତର ଦେଉଛନ୍ତି ଏବଂ ଗୋଟିଏ ବର୍ଣ୍ଣ ସହିତ ଆଉ ଗୋଟିଏ ବର୍ଣ୍ଣ ମିଶି ଶବ୍ଦ ସୃଷ୍ଟି ହେଉଛି ଏବଂ ନିର୍ଦ୍ଦିଷ୍ଟ ଅର୍ଥବାଚୀ ହେଉଛି ତାହା ଅପ୍ରମାଣିତ ହୋଇଗଲା ।

କିଛି ତ ସମ୍ପର୍କ ଆପଣଙ୍କୁ ସ୍ୱୀକାର କରିବାକୁ ହେବ, ନ ହେଲେ ଆପଣ ଅସମ୍ପର୍କ ମଧ ବୁଝି ବୁଝେଇ ପାରିବେ ନାହିଁ –

ଛାଡ଼ନ୍ତୁ ଆପଣ ଯେଉଁ ନାଆ ଓ ନାଉରୀ ପାଇଁ ମୂଲ୍ୟ ଦେଇଛନ୍ତି ବୋଲି କହୁଥିଲେ ସେମାନେ ଆପଣଙ୍କୁ ପାରି କରି ଦେବେ ବୋଲି ଆପଣ ବିଶ୍ୱାସ କରନ୍ତି –

ଅଗତ୍ୟା । ଯଦି ବା ପାରି ନ କରନ୍ତି ସେଥିରେ ଉପାୟ କ'ଣ ? ଭାସିଗଲେ ଯିବା... କିଏ କ'ଣ କେଉଁଠିକି ଭାସିବ ତ ଠିକ୍ ଜଣାନାହିଁ – ଭାସିଯିବ ବା ସତକୁ ସତ ଆରପାରିରେ ପହଞ୍ଚିବ ତା' ମଧ୍ୟ ଏମିତି ଶୁଣାଶୁଣିରେ କେବଳ । ଦେଖାଯିବ ଯାହା ହେବ ।

ମୋର ମଧ୍ୟ ମତ ପ୍ରାୟ ସେଇଆ । କିନ୍ତୁ ଏ ନଈର ଆରପାରି ଦିଶୁ ନଥିବାରୁ ମୁଁ ଟିକିଏ ଶଙ୍କି ଯାଇଥିଲି । ସଂସାରରେ ତ ଆମେ ଢେର ନଈ ପହଁରିଛୁ... ପ୍ରତ୍ୟେକ ପରିସ୍ଥିତି ହୁଏତ ଗୋଟିଏ ଗୋଟିଏ ନଈ ଯାହାର ଆରପାରି ଦିଶେ ନାହିଁ । ଏଠି ଏବେ ସେମିତି ଗୋଟାଏ କିଛି ହେବ – ସେମିତି ନ ହେଇ ଆଉ ପ୍ରକାରେ ହେବାକୁ ମନା ନାହିଁ – କାରଣ ପରିଶେଷରେ କୌଣସିଥିରେ କିଛି ଯାଏଆସେ ନାହିଁ...

ମୁଁ ମଧ୍ୟ ପ୍ରାୟ ସେଇଆ ଭାବୁଛି । ପ୍ରଥମେ ଏଇ ପରିଚିତ କୂଳ ଛାଡ଼ି ଯଦି ମୁଁ ନାଆରେ ବସିଯାଏ, ତେବେ ନାଆରେ ବସିବା ଭଳି ନୀତିନିୟମ ପାଳିବାକୁ ହେବ, ସ୍ୱୀକାର କରିବାକୁ ହେବ ନାଆ ନାଉରୀ ଏବଂ ନଈକୁ । ସ୍ୱୀକାର କରିବାକୁ ହେବ ତାର ଗତିକୁ ତାପରେ ହୁଏତ ଗୋଟାଏ ସମୟରେ ଏକୂଳ ନାହିଁ କି ସେକୂଳ ନାହିଁ ସେତିକିବେଳେ ନାଆ ଖଣ୍ଡିକ ଅତି ଆପଣାର ବୋଧ ହେବ । ତଳେ କାଟି ଚାଲିଥିବା ସ୍ରୋତ ହୁଏତ ସମଗ୍ର ସତ୍ତାକୁ ଅସ୍ୱୀକାର କରି ତାକୁ ଉପହାସ କଲାପରି ଦିଶିବ । ନାଉରୀ ସେଇଠି ଏକମାତ୍ର ବନ୍ଧୁ । ତାପରେ ଆସ୍ତେ ଯଦି ଆରପାରି ଦିଶେ ତେବେ ନଈ ଜଣାଯିବ ଅଳ୍ପ ବିରୋଧୀ ଏବଂ ନାଆ ଅଳ୍ପ ଆପଣାର, ନାଉରୀ ମଧ୍ୟ ସେଇ ପରିମାଣରେ ପରମାଶ୍ରୟରୁ କିଛି ନ୍ୟୂନ । ଆରପାରି ଯଦି ପହଞ୍ଚିଗଲା ସ୍ରୋତ ରହିଯାଏ ପଛରେ ନାଆ ମଧ୍ୟ ପଛରେ । ଆଉ ନାଉରୀ, ସେ ବି ବୋଧହୁଏ ପଛରେ – ତାପରେ ସେ ସବୁ କଣ, ଆରପାରି କଥା । ନାନା ପ୍ରକାର ବର୍ଣ୍ଣନା ପରେ ମଧ୍ୟ ଅଜ୍ଞେୟ ରହିଯାଏ –

ହଉ – ମୋର ସମୟ ହେଇଗଲା, ମୁଁ ଚାଲିଲି ।

ହଉ । ଏଥିରେ ଆମର କର୍ତ୍ତୃତ୍ୱ ଅଛି କି ? ଚାଲନ୍ତୁ ପୁରୁଣା ରୀତିରେ କହିଲେ ଆପଣଙ୍କ ଯାତ୍ରା ପାଇଁ ମୋର ସମସ୍ତ ଶୁଭେଚ୍ଛା ରହିଲା – ମୋ ବେଳକୁ ଗୋଟାଏ କୀର୍ତ୍ତନିଆ ମେଳରେ ଯାତ୍ରୀବାହୀ ଭେଳାରେ ବସିଯିବି ବୋଲି ଭାବୁଛି – ନହେଲେ ଦେଖିବା ଏ ସୁଅ କେତେ ଗହୀର – ହଉ ରହିଲି ।

ଆପଣଙ୍କ ଶୁଭେଚ୍ଛା ପାଇଁ ଧନ୍ୟବାଦ ।

ପଥିକଟିର ସମଗ୍ର ଶରୀର ସେଇ ବାଲିହୁଡ଼ାଟାଏ ପରି ବିଛେଇହୋଇ ପଡ଼ିଛି... ଏସବୁ ସ୍ୱଗତୋକ୍ତି ପରେ ମଧ୍ୟ କୌଣସି କେନ୍ଦ୍ରରେ କିଛି କମ୍ପନ ହେବାର କେହି ଲକ୍ଷ୍ୟ କରି ନାହାନ୍ତି –

□□□

**ଚନ୍ଦ୍ରଶେଖର କଥାସରିତ୍ :** କ୍ୱଚିତ୍ ନିବନ୍ଧକାର ସମପରିମାଣରେ ସାର୍ଥକ କଥାକାର ରୂପେ ସମ୍ମାନ ଓ ସ୍ୱୀକୃତି ଲାଭକରିଥାନ୍ତି । ଚନ୍ଦ୍ରଶେଖର ଗଳ୍ପ କ୍ଷେତ୍ରରେ ପ୍ରବେଶ କଲାବେଳକୁ ସେ ଜଣେ ପ୍ରାବନ୍ଧିକ ଭାବରେ ପ୍ରତିଷ୍ଠିତ ହୋଇସାରିଲେଣି । ଆରମ୍ଭରୁ ହିଁ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ତାଙ୍କର ଅବିଶ୍ରାନ୍ତ ଗଳ୍ପଧାରା ପାଠକକୁ ମୁଗ୍ଧ ଓ ବିସ୍ମିତ କରିଛି । ଚନ୍ଦ୍ରଶେଖରଙ୍କ ଗଳ୍ପରେ ପ୍ରକଟ ଅପେକ୍ଷା ଅପ୍ରକଟର ମାତ୍ରା ବେଶି । ଅନେକ ସମୟରେ ତାଙ୍କ ଗଳ୍ପର ନାୟକ ଜୀବନ ଅପେକ୍ଷା ବୃହତ୍ତର । ପ୍ରତ୍ୟେକ ଗଳ୍ପ ତା'ର ପରିବେଶ, ସଂଳାପ, ସଂକଟ ଉତ୍ତରଣ ଆଦିରେ ପରିଣତ ଦୃଷ୍ଟିଭଙ୍ଗୀ, ପରିପକ୍ୱ ରୁଚି, ପ୍ରକାଶ ପରିପାଟି ଓ ଗଭୀରତାର ଏକ ସ୍ୱତନ୍ତ୍ର ପରିଚୟ ବହନକରେ । ବହୁ କ୍ଷେତ୍ରରେ ଚନ୍ଦ୍ରଶେଖର ଲୋକୋତ୍ତର ଅନୁଭବର ପରିବେଷଣରେ ପାଠକକୁ ରୋମାଞ୍ଚିତ କରନ୍ତି ।

ତାଙ୍କର ଭାଷା କାବ୍ୟଧର୍ମୀ ଜୀବନ୍ତ ତରଳ । ତାଙ୍କର ବର୍ଣ୍ଣନା ମୁଖ୍ୟତଃ ଦୃଶ୍ୟପ୍ରଧାନ । ଗଳ୍ପର ଆରମ୍ଭ, କ୍ରମବିକାଶ ଓ ପରିଣତି ଏକ ସୁସଂହତ ନିର୍ମାଣ । ପଢ଼ି ସାରିଲା ପରେ ପାଠକକୁ କିଛି ସମୟ ପାଇଁ ସ୍ତବ୍ଧ ଚକିତ କରି ରଖିବା ଏବଂ ତା'ର ସ୍ମୃତିରେ ଗଭୀର ରେଖାପାତକରିବା ଚନ୍ଦ୍ରଶେଖରଙ୍କ ଅଧିକାଂଶ ଗଳ୍ପର ଅସାମାନ୍ୟ ସାମର୍ଥ୍ୟ ।

ଅଦ୍ୟାବଧି ତାଙ୍କର ୧୨ଟି ସଂକଳନରେ ପ୍ରକାଶିତ ଶତାଧିକ ଗଳ୍ପ ଓ ଅସଂକଳିତ ଅନେକ ଗଳ୍ପକୁ ଏକତ୍ର ଗ୍ରନ୍ଥାକାର ପ୍ରଦାନକରିବାରେ ଏହା ପ୍ରଥମ ପ୍ରୟାସ । [ପ୍ରକାଶକ]

**ଚନ୍ଦ୍ରଶେଖର ରଥ** – ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ପ୍ରଥମ ଆବିର୍ଭାବ ୧୯୬୨ରୁ । ଆରମ୍ଭ ସମୟରୁ ଅଦ୍ୟାବଧି ତାଙ୍କର ଲେଖନୀ ଧାରାସ୍ରାବୀ ଓ ପ୍ରତ୍ୟେକ ବର୍ଗରେ ସେ ଯଶସ୍ୱୀ ।

୧୯୬୩, ୧୯୬୭ ଓ ୧୯୭୨ରେ ବିଷୁବ ସମ୍ମାନ ପୁରସ୍କାର ଓ ପ୍ରଶଂସାପତ୍ର/ ୧୯୭୯ 'ଧରିତ୍ରୀ ସମ୍ମାନ'/୧୯୮୦ ଉପନ୍ୟାସ 'ଅସୂର୍ଯ୍ୟ ଉପନିବେଶ' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର/୧୯୮୧ 'ଅଶ୍ରୁତ ସ୍ୱର' ମୌଳିକ ନିବନ୍ଧ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର/୧୯୮୧ 'ସମ୍ରାଟ ଓ ଅନ୍ୟମାନେ' କ୍ଷୁଦ୍ରଗଳ୍ପ ପାଇଁ ଶାରଳା ପୁରସ୍କାର / ୧୯୮୯ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଭରତଚନ୍ଦ୍ର ସ୍ମାରକୀ ସାହିତ୍ୟ ପୁରସ୍କାର / ୧୯୯୭ ଜଗନ୍ନାଥ ସମ୍ମାନ/ ୧୯୯୭ 'ସବୁଠାରୁ ଦୀର୍ଘରାତି' କ୍ଷୁଦ୍ରଗଳ୍ପ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ।

ଓଡ଼ିଆ ସାହିତ୍ୟରେ ତାଙ୍କର ଅବଦାନ – ୩ଟି ଉପନ୍ୟାସ, ୧୧ଟି ନିବନ୍ଧସଂକଳନ, ୧୨ଟି କ୍ଷୁଦ୍ରଗଳ୍ପ ସଂକଳନ । ନିବନ୍ଧ କ୍ଷେତ୍ରରେ 'ରଥସପ୍ତକ' ତାଙ୍କର ଅନବଦ୍ୟ ସୃଷ୍ଟି । ଆଧ୍ୟାତ୍ମିକ ମନନ ଗ୍ରନ୍ଥ-ପାଠଚକ୍ର ଡାଏରୀର ୨ଟି ଭାଗ । ଉଚ୍ଚକୋଟିର ଭାବତାତ୍ତ୍ୱିକ ରଚନା । ଅନୁବାଦ – ସାଗର ବିହଙ୍ଗ ଓ ଶାଙ୍କର ଗୀତାଭାଷ୍ୟ । କବିତା – ତୁମ ପାଇଁ ପକ୍ଷୀଗାନ । ଚନ୍ଦ୍ରଶେଖର ନିବନ୍ଧକାର, ଗାଳ୍ପିକ, ଔପନ୍ୟାସିକ, କବି, କଳାକାର, ବାଗ୍ମୀ । ଓଡ଼ିଶାରେ, ଭାରତରେ ତଥା ଆମେରିକାରେ ବହୁ ସମ୍ମାନିତ ବକ୍ତା । ତାଙ୍କର ସୃଜନଶୀଳ ପ୍ରତିଭା ଅଦ୍ୟାବଧି କ୍ରିୟାଶୀଳ ।